ନଗର-ପ୍ରଜ୍ଞା

# ଚାଣକ୍ୟ-ନୀତି ରତ୍ନମାଳା

ଲେଖକ

ମହାପାତ୍ର ନୀଳମଣି ସାହୁ



ପ୍ରକାଶକ:



ମନୋରମା ପବ୍ଲିଶର୍ସ

ବାଲୁବଜାର, କଟକ - ୭୫୩୦୦୨

ନଗର-ପ୍ରଜ୍ଞା
# ଚାଣକ୍ୟ-ନୀତି ରତ୍ନମାଳା

ପ୍ରକାଶକ :
ମନୋରମା ପବ୍ଲିଶର୍ସ
ଅନନ୍ତ ଭବନ,
ବାଲୁବଜାର, କଟକ-୭୫୩୦୦୨
ଫୋନ୍ : ୦୬୭୧-୨୩୬୮୭୭୦

ପ୍ରଥମ ସଂସ୍କରଣ : ମାର୍ଗଶୀର, ୨୦୧୧
ଦ୍ୱିତୀୟ ସଂସ୍କରଣ : ଶାମ୍ବ ଦଶମୀ, ୨୦୧୪
ତୃତୀୟ ସଂସ୍କରଣ : ମାର୍ଗଶୀର, ୨୦୧୬

ପ୍ରଚ୍ଛଦ : ଶ୍ରୀ ଉତ୍କଳକେଶରୀ ସିଂହ

ମୁଦ୍ରଣ : ଶତରୂପା ଡି.ଟି.ପି ଓ ସଙ୍ଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ₹ ୨୨୦.୦୦ ଟଙ୍କା ମାତ୍ର

NAGARA-PRAGYĀN
# CHĀNAKYA-NEETI RATNAMALĀ

**Mohapatra Nilamani Sahoo**

Publisher :
Manorama Publishers
Anant Bhawan,
Balubazar, Cuttack-753002
Ph. : 0671-2368770

First Edition : November, 2011
Second Edition : January, 2014
Third Edition : November, 2016

Printers :
Satarupa D.T.P. & Sangeeta Printers, Cuttack

Price : ₹ 220.00 only

# ମୁଖବନ୍ଧ

ବରିଷ୍ଠ ସାହିତ୍ୟିକ ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ 'ଚାଣକ୍ୟ ନୀତି-ରତ୍ନମାଳା' ପୁସ୍ତକଟିକୁ ଏକ ନୂଆ ଢଙ୍ଗରେ ବ୍ୟାଖ୍ୟାକରି ଏ ବହିଟିର ଯଶ ଅଭିବର୍ଦ୍ଧନ କରିଛନ୍ତି। ନୀଳମଣି ବାବୁଙ୍କ ସହିତ ମୋର ସମ୍ପର୍କ ୧୯୬୮ ମସିହାରୁ। ସେ ଥାନ୍ତି ଝଙ୍କାରର ସମ୍ପାଦକ। ମୁଁ ପ୍ରଜାତନ୍ତ୍ରରେ 'ଆନ୍ତର୍ଜାତିକ ପ୍ରବାହ' ସିରୋନାମାରେ ବିଶ୍ୱ ରାଜନୀତି ଉପରେ ସେତେବେଳେ ତର୍ଜମା କରୁଥିଲି। ସପ୍ତାହକୁ ଦୁଇଥର ବୁଧବାର ଓ ଶନିବାର ପ୍ରଜାତନ୍ତ୍ରରେ 'ଆନ୍ତର୍ଜାତାକ ପ୍ରବାହ' ସ୍ତମ୍ଭ ପ୍ରକାଶ ପାଉଥିଲା। ଏହି ଆସରରେ ମୁଁ ଥିଲି ଜଣେ ସଭ୍ୟ। ସବୁଦିନ ସନ୍ଧ୍ୟାରେ ପ୍ରଜାତନ୍ତ୍ର ପରିସରରେ ବହୁ ଗୁଣୀ, ଜ୍ଞାନୀ ଲୋକଙ୍କର ସେଠି ଆସର ଜମେ। ଏହି ଆସରରେ ସବୁଠାରୁ କନିଷ୍ଠ ମୁଁ ଥିଲି। ଯେତେବେଳେ ବିଭିନ୍ନ ବିଷୟରେ ଚର୍ଚ୍ଚା ଆରମ୍ଭ ହୁଏ, ସେତେବେଳେ ସେ ଚର୍ଚ୍ଚାରେ ମୁଁ ସବୁଠାରୁ ବେଶି ଭାଗନେଉଥିଲି। ଡକ୍ଟର ମହତାବ ମତେ ଖୁବ୍ ଆଦର କରୁଥିଲେ। ପ୍ରଫେସର ସାହୁ ମଧ୍ୟ ମତେ ଖୁବ୍ ସ୍ନେହ ଶ୍ରଦ୍ଧା କରୁଥିଲେ। ସତେଯେପରି ମୁଁ ତାଙ୍କର ସମସାମୟିକ ବନ୍ଧୁ। ଯେତେବେଳେ କୌଣସି ସଂସ୍କୃତ ସାହିତ୍ୟର ବିଷୟ ବସ୍ତୁ ଆସେ, ସେତେବେଳେ ମୁଁ ସେ ସମ୍ବନ୍ଧୀୟ ଆଲୋଚନାର ପ୍ରଧାନ ପ୍ରବକ୍ତା ହୋଇଯାଏ। ପ୍ରଫେସର ସାହୁ ଜଣେ ସୁଲେଖକ, ଉଦ୍‌ବୁଦ୍ଧ ସାରସ୍ୱତ ପୁରୁଷ। ସେ ଆଜିକାଲି ଦୈନିକ 'ଧରିତ୍ରୀ'ରେ ରାଧାକୃଷ୍ଣ ପ୍ରେମରସ ଏବଂ ବୈଷ୍ଣବ ସାହିତ୍ୟ ଉପରେ ଲେଖାଲେଖି କରୁଛନ୍ତି। ଏହା ସତ୍ୟ ଯେ ପ୍ରଫେସର ସାହୁଙ୍କର ଲେଖାଲେଖି କରିବାର ଶୈଳୀ ଓ ପ୍ରକାଶ ଭଙ୍ଗୀ ଅନ୍ୟମାନଙ୍କଠାରୁ ଅଲଗା। ତାଙ୍କର ପ୍ରତ୍ୟେକ ଲେଖାରେ ମନଭିତରେ ଏକ ଦୀର୍ଘସ୍ଥାୟୀ ଛାପ ପଡ଼ିଯାଏ। ମୋର ତାଙ୍କ ସହିତ ସମ୍ପର୍କ ମତେ ବେଶି ଲାଭବାନ୍ କରିଥାଏ। ଚାଣକ୍ୟଙ୍କ 'ନୀତି ଦର୍ପଣ' ବିଶ୍ୱ ବିଖ୍ୟାତ। ପ୍ରଫେସର ସାହୁ ତା ଉପରେ ତର୍ଜମା କରିଛନ୍ତି। ସାମ୍ପ୍ରତିକ ପରିସ୍ଥିତିରେ ଏଇ ନୀତିଦର୍ପଣ ପୁସ୍ତକ କେତେ ଆବଶ୍ୟକ ଲେଖକ ତାକୁହିଁ ତର୍ଜମା କରିଛନ୍ତି। ଏହା ଏକ ନୂତନ ଶୈଳୀ, ସେ ମୋର 'ଚାଣକ୍ୟଃ' ନାମକ ସଂସ୍କୃତ ଉପନ୍ୟାସ ପଢ଼ିଛନ୍ତି ; ଏବଂ ତାଙ୍କର ନିବେଦନ ମୁଁ ତାଙ୍କର ଏହି 'ଚାଣକ୍ୟ-ନୀତିରତ୍ନମାଳା' ପୁସ୍ତକରେ ଅଗ୍ରଲେଖାଟି ଲେଖିବି। ତାଙ୍କର ଏହି ଆଦେଶ ମୋତେ ଗୌରବାନ୍ୱିତ କରିଛି। ତେଣୁ 'ଚାଣକ୍ୟ-ନୀତିରତ୍ନମାଳା' ପୁସ୍ତକରେ ଏହି ମୁଖବନ୍ଧଟି ଲେଖି ମୁଁ ଅପାର ଆନନ୍ଦ ଅନୁଭବ କରୁଛି।

ମୋର ବନ୍ଧୁ ପ୍ରଫେସର ମହାପାତ୍ର ନୀଳମଣି ସାହୁଙ୍କର ସ୍ନେହ ଓ ଶ୍ରଦ୍ଧାରେ ମୁଁ ଚିର ଋଣୀ। ମୁଁ ତାଙ୍କର କେବେ ଛାତ୍ର ନ ଥିଲି । କିନ୍ତୁ ମୁଁ ଯେଉଁମାନଙ୍କଠାରୁ ପାଠପଢ଼ିଥିଲି ସେମାନେ ଅଧିକାଂଶ ମହାପାତ୍ର ନୀଳମଣି ସାହୁଙ୍କର ଛାତ୍ର ଥିଲେ। ଡକ୍ଟର ମହତାବଙ୍କ ଅଧକ୍ଷତାରେ ପ୍ରଜାତନ୍ତ୍ର ଆସରର ପ୍ରତିସନ୍ଧ୍ୟାର ସଭାଟି ବିଭିନ୍ନ ଦିଗରୁ ବୌଦ୍ଧିକ ସ୍ତରରେ ଆଲୋଚନା ଓ ସମାଲୋଚନାରେ ପର୍ଯ୍ୟାପ୍ତ ହୁଏ । ମୋର ମନେଅଛି ସେହିଦିନଠାରୁ ବହୁ ବିଶିଷ୍ଟ ବ୍ୟକ୍ତିତ୍ୱଙ୍କ ସହିତ ମୋର ଧୀରେ ଧୀରେ ପରିଚୟ ହୋଇଗଲା । ପରସ୍ପର ପ୍ରତି ସମ୍ମାନପ୍ରଦାନର ବାତାବରଣ ଗଢ଼ିଉଠିଲା । ଆଜି ଏହି ଅଗ୍ରଲେଖାର ବିଷୟବସ୍ତୁ ଚାଣକ୍ୟଙ୍କ ନୀତି ଦର୍ପଣ ସାମ୍ପ୍ରତିକ ସାର୍ବଜନୀନ ପ୍ରୟୋଜନୀୟତା । ମୁଁ ପୂର୍ବରୁ କହିଛି ଯେ, ମହାନ୍ ପଣ୍ଡିତ ଚାଣକ୍ୟଙ୍କର ଧୀମତା ପ୍ରକୃତିର ଘାତ-ପ୍ରତିଘାତ ଭିତରେ ସମ୍ପୃକ୍ତ।

ଚାଣକ୍ୟ ସବୁଦିନେ ବ୍ରାହ୍ମ ମୁହୂର୍ତ୍ତରୁ ଶଯ୍ୟାତ୍ୟାଗ ପରେ ସ୍ନାନାଦି କାର୍ଯ୍ୟ ସମାପନ କରୁଥିଲେ। ତତ୍‌ପରେ ସୂର୍ଯ୍ୟ ଓ ଉଷାର ବନ୍ଦନା କରୁଥିଲେ । ଋକ୍‌ବେଦର ଅଷ୍ଟମ ମଣ୍ଡଳରେ ଅଛି ସୂର୍ଯ୍ୟୋପାସନା - ଯେକୌଣସି ବ୍ୟକ୍ତିର ବୁଦ୍ଧିକୁ ଊର୍ଜସ୍ୱଳ କରାଏ । ଚାଣକ୍ୟ ସେହି ସମୟରେ ପ୍ରକୃତିକୁ ଖୁବ୍ ଭଲଭାବରେ ନିରୀକ୍ଷଣ କରୁଥିଲେ। ଚାଣକ୍ୟ ଅନୁଭବ କଲେ ଗୋଟିଏ ଦିନପରେ ଝରା ଫୁଲ ପାଖକୁ ମହୁମାଛି ଯାଉନାହାଁ। ବୃକ୍ଷରୁ ଫଳ ସରିଗଲା ପରେ ପକ୍ଷୀମାନେ ସେଇ ବୃକ୍ଷକୁ ଫେରୁନାହାନ୍ତି । ବଣ ଜଳିଗଲେ ହରିଣମାନେ ସେ ବଣ ଛାଡ଼ି ଅନ୍ୟତ୍ର ଚାଲି ଯାଉଛନ୍ତି। ପୋଖରୀରୁ ପାଣି ଶୁଖିଗଲେ ସେଠି ହଂସମାନେ ଆଉ ପହଁରୁ ନାହାନ୍ତି । ଏ ସବୁ କାର୍ଯ୍ୟ-କାରଣକୁ ନିଗୂଢ଼ତର ଭାବେ ଅନୁସନ୍ଧାନ କରିବାପରେ ଚାଣକ୍ୟ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ, ଏ ସଂସାରରେ ଅତିନିଜର ଲୋକମାନେ ମଧ ଧନସଂପତ୍ତି ସରିଗଲାପରେ ତୁମକୁ ଛାଡ଼ିଚାଲିଯାଆନ୍ତି। ଆଉ ପାଖକୁ ଆସନ୍ତି ନାହିଁ । ତେଣୁ ସେହି ଶ୍ଲୋକଟିର ଅବତାରଣା କରାଗଲା :

ପୁଷ୍ପଂ ପର୍ଯ୍ୟୁଷିତଂ ତ୍ୟଜନ୍ତି ମଧୁପାଃ, ଦଗ୍ଧଂ ବଂନାନ୍ତଂ ମୃଗାଃ ।
ବୃକ୍ଷଂ କ୍ଷୀଣଫଳଂତ୍ୟଜନ୍ତି ବିହଗାଃ, ଶୁଷ୍କଂ ସରଃ ଶାରସାଃ ।୧।
ନିର୍ଦ୍ରବ୍ୟଂ ପରୁଷଂ ତ୍ୟଜନ୍ତି ଗଣିକାଃ, ଭ୍ରଷ୍ଟଂ ନୃପଂ ମନ୍ତ୍ରିଣଃ ।
ସର୍ବେଽପ୍ୟର୍ଥବସାୟିନୋ ନରପତି କଃ କସ୍ୟକୋ ବଲ୍ଲଭଃ ।୨।

କାର୍ଲମାର୍କସ ଜନ୍ମ ହେବାର ବହୁ ପୂର୍ବରୁ ଚାଣକ୍ୟ ଏହି ଅର୍ଥନୀତିର ବିନ୍ୟାସ କରିଥିଲେ। ସେ ଜାଣିଥିଲେ ଯେ, ସମଗ୍ର ସଭ୍ୟତା ମନୁଷ୍ୟ ଓ ତାର ଜଗତ ସହିତ ସମ୍ବନ୍ଧ କେବଳ ଆର୍ଥିକ। ଏବଂ ଏହାର ଉତ୍କର୍ଷ ଉଦୟରେ ତାହା ଏକ ପାରମାର୍ଥିକ ତତ୍ତ୍ୱରେ ପରିଣତ ହୋଇଯାଏ । ଆର୍ଥିକ ସମ୍ବନ୍ଧ ଲୋପହୁଏ । ଚାଣକ୍ୟଙ୍କର ଏହି ବ୍ୟାଖ୍ୟା ଏବେ

ମଧ୍ୟ ବିଶ୍ୱରେ ନିଗୂଢ଼ତତ୍ତ୍ୱର ସମାଧାନ କରିଛି। ତାଙ୍କର ଧୀମତା କାର୍ଲମାର୍କସଙ୍କ ଠାରୁ ବହୁ ଉଚ୍ଚରେ। ତାଙ୍କର ଏହି ଅର୍ଥଜନିତ ଉପପାଦ୍ୟକୁ ଯଦି କାର୍ଲମାର୍କସ ଠିକ୍ ଭାବେ ବୁଝିଥାନ୍ତେ ତାହାଲେ ତାଙ୍କ 'ଦାସକ୍ୟାପିଟାଲ୍' ପୁସ୍ତକ ଆହୁରି ପରିମାର୍ଜିତ ହେବା ସହିତ ଏ ନୂତନ ବିଶ୍ୱଜ୍ଞାନ ସୃଷ୍ଟି କରିପାରିଥାନ୍ତା।

ଏଥିରୁ ଚାଣକ୍ୟ ତାଙ୍କର ନିଗୂଢ଼ ତତ୍ତ୍ୱ ଆରମ୍ଭ କଲେ।

ଖ୍ରୀ:ପୂ ୩୨୭ ମସିହାର ଲୋକ ଥିଲେ ଚାଣକ୍ୟ । ସେ ଥିଲେ ଅର୍ଥନୀତି ଓ ରାଜନୀତି ବିଜ୍ଞାନର ସ୍ରଷ୍ଟା। ଭାରତର ଜ୍ଞାନ-ବିଜ୍ଞାନ ପରମ୍ପରାର ଜଣେ ନୀତିନିଷ୍ଠ ବିଶାରଦ ପୁରୁଷ, ଚାଣକ୍ୟଙ୍କ ପରି ଦେଶଭକ୍ତ ଭାରତରେ ଜନ୍ମ ହେବେ କି ନାହିଁ ସନ୍ଦେହ। ତାଙ୍କର ଅନ୍ୟନାମ ଥିଲା କୌଟିଲ୍ୟ, ବିଷ୍ଣୁଗୁପ୍ତ ପିତାଙ୍କ ନାମ 'ଚଣକ' ଥିବାରୁ ତାଙ୍କୁ ଚାଣକ୍ୟ କୁହାଯାଉଥିଲା। ମହାପଦ୍ମନନ୍ଦ ସେ ସମୟରେ ମଗଧର ସମ୍ରାଟ ଥିଲେ। ତକ୍ଷଶୀଳା ବିଶ୍ୱବିଦ୍ୟାଳୟରେ ଚାଣକ୍ୟ ଥିଲେ ଯୁଦ୍ଧବିଦ୍ୟାର ଅଧକ୍ଷ। ମହାପଦ୍ମନନ୍ଦ ଏକ ସମ୍ମାନ ଉତ୍ସବ ଆୟୋଜନ କଲେ। ଦେଶର ଜ୍ଞାନଜଗତର ଅତ୍ୟନ୍ତ ସମ୍ମାନିତ ବ୍ୟକ୍ତିତ୍ୱମାନଙ୍କୁ ସମ୍ମାନ ଦିଆଯିବା ପାଇଁ ସ୍ଥିର ହେଲା। ବହୁ ବ୍ୟକ୍ତିମାନଙ୍କର ତାଲିକା ପ୍ରସ୍ତୁତ କରାଗଲା। ଯେଉଁମାନଙ୍କୁ ସମ୍ମାନ ଦିଆଯିବା ସେ ତାଲିକାରେ ତକ୍ଷଶୀଳା ବିଶ୍ୱବିଦ୍ୟାଳୟର କୁଳପତି ଧର୍ମରକ୍ଷିତ ଓ ଚାଣକ୍ୟଙ୍କୁ ଭବ୍ୟ ସମ୍ବର୍ଦ୍ଧନା ପାଇଁ ବିଶେଷ ଯୋଗ୍ୟ ବିବେଚିତ କରାଗଲା।

ଗଙ୍ଗାନଦୀରେ ଶୀତ ଲହରୀ ପ୍ରବାହିତ ହେଉଥାଏ। ଚାଣକ୍ୟଙ୍କର ଚିରାଚରିତ ଅଭ୍ୟାସ ଅନୁସାରେ ରାତି ସାଢ଼େତିନିଟାରୁ ଗାଧୋଇବା ପାଇଁ ପ୍ରସ୍ତୁତି ପର୍ବ ଆରମ୍ଭ ହେଲା। ପାଟଳୀପୁତ୍ରରୁ ଗଙ୍ଗାନଦୀକୁ ଚାଣକ୍ୟ ଆସିବା ବେଳେ ଅସହ୍ୟ ଶୀତ ଲହରୀ ହେଉଥାଏ। ଧର୍ମରକ୍ଷିତ ଆଚାର୍ଯ୍ୟ ସେଇ ଗଙ୍ଗାକୂଳରେ ଥିଲେ। ଚାଣକ୍ୟ ସିଧାଯାଇ ଗଙ୍ଗା ଜଳରେ ପ୍ରବେଶ କରିଗଲେ। ଶୀତକୁ ତାଙ୍କର ଖାତିର୍ ନଥିଲା। ନଦୀକୂଳରେ ଥିବା ବ୍ୟକ୍ତିମାନେ ଯେଉଁମାନେ ଶୀତକୁ ଡରୁଥିଲେ ସେମାନେ ପରସ୍ପରକୁ ପଚାରିଲେ, "ଏ ବ୍ୟକ୍ତି ଜଣକ କିଏ?" ଆଚାର୍ଯ୍ୟ ଧର୍ମରକ୍ଷିତ ନଦୀକୂଳରେ ଥାଇ ଚାଣକ୍ୟଙ୍କୁ ଚିହ୍ନିଗଲେ। ପରସ୍ପର ପରସ୍ପରକୁ ଆଲିଙ୍ଗନ କଲେ। ସ୍ନାନ ସରିବା ପରେ ସୂର୍ଯ୍ୟମନ୍ତ୍ର ଗାନ କରାଗଲା। ସନ୍ଧ୍ୟାତର୍ପଣ ସାରି ଚାଣକ୍ୟ ପାଟଳୀପୁତ୍ରରେ ତାଙ୍କ ରହିବା ସ୍ଥାନକୁ ପ୍ରତ୍ୟାବର୍ତ୍ତନ କଲେ। ସେହିଦିନର ଏକ ଅସମ୍ଭବ ଘଟଣା ଚାଣକ୍ୟ ତଥା ଅନ୍ୟମାନଙ୍କ ଆଖିଆଗରେ ତଡ଼ିତ୍ ବେଗରେ ଘଟିଗଲା ଏବଂ ତାହାହିଁ ଈଶ୍ୱରଙ୍କ ଇଚ୍ଛା ଥିଲା । ଚାଣକ୍ୟ ଆସୁଥିବା ବେଳେ ଦେଖିଲେ, ସମ୍ରାଟ ମହାପଦ୍ମନନ୍ଦଙ୍କର ଦୁଇତିନିଜଣ ସୈନିକ ଘୋଡ଼ାରେ ଝପଟି ଆସି କୌଣସି ଜଣେ ବିଧବାଙ୍କ ଠାରୁ ତାଙ୍କର ପିନ୍ଧିଥିବା ସୁବର୍ଣ୍ଣ ଅଳଙ୍କାରକୁ ଜବରଦସ୍ତ ଛଡ଼ାଇବାକୁ ଆରମ୍ଭ କଲେ। ସେ ସ୍ତ୍ରୀ ଲୋକଜଣକ ଏହାର ପ୍ରତିବାଦ କଲାବେଳେ

ସୈନିକମାନେ କହୁଥିଲେ, "ତମ ସ୍ୱାମୀଙ୍କ ଉପରେ ଟିକସ ବାକି ଥିଲା। ସେହି ଟିକସ ବାବଦକୁ ତମ ସୁବର୍ଣ୍ଣ ଅଳଙ୍କାରକୁ ଆମେ ନବାପାଇଁ ବାଧ୍ୟ" ସ୍ୱାମୀର ଟିକସ ବାବଦକୁ ସ୍ତ୍ରୀ ଧନ ତାର ସୁବର୍ଣ୍ଣ ଅଳଙ୍କାର ଛଡ଼ାଇନେବାର ଅଧିକାର ରାଜାଙ୍କର ନଥିଲା। ଏତିକି ବେଳେ ଅନ୍ୟ ଜଣେ ଶକ୍ତିଶାଳୀ ବୀର ଘୋଡ଼ାରେ ତୁରନ୍ତ ଚାଲି ଆସି ସେ ସୈନ୍ୟମାନଙ୍କ ଉପରେ ଚଢ଼ଉ କଲେ। ଫଳରେ ସେମାନେ ସେ ସ୍ତ୍ରୀ ଲୋକକୁ ଛାଡ଼ି ଦେଇ ସେହି ସ୍ଥାନରୁ ଖସି ପଳେଇଥିଲେ। ଏକଥା ଦେଖି ଚାଣକ୍ୟଙ୍କ ଆଗରେ ଦୁଇଗୋଟି ପ୍ରଶ୍ନ ସ୍ୱତଃ ଉତ୍ଥାପିତ ହେଲା ଯେ, ମହାପଦ୍ମନନ୍ଦ ତାଙ୍କ ସୈନିକମାନଙ୍କଦ୍ୱାରା ବିଧବାନାରୀର ସ୍ୱର୍ଣ୍ଣାଦି ଅଳଙ୍କାର ସହିତ ସମ୍ପତ୍ତିକୁ ଲୁଟ୍ କରି ରାଜକୋଷରେ ଭର୍ତ୍ତି କରିବାର ଅଭ୍ୟାସ ଅତ୍ୟନ୍ତ ଅନ୍ୟାୟ। ଅନ୍ୟପକ୍ଷରେ ଏହି ଅନ୍ୟାୟକୁ ଯିଏ ପ୍ରତିରୋଧ କରୁଥିଲା ସେ ଥିଲା ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଯେ କି ମଗଧର ରାଜା ହବାକୁ ଯୋଗ୍ୟ। ଚାଣକ୍ୟଙ୍କ ମନରେ ଏକଥା ସେଇଠି ରହିଲା।

ଚାଣକ୍ୟ ମହାପଦ୍ମନନ୍ଦଙ୍କ ପୁରସ୍କାର ମହୋତ୍ସବକୁ ଯଥାସମୟରେ ଆସିଲେ। ମଗଧର ସମସ୍ତ ବୁଦ୍ଧିଜୀବୀ, ରାଜାନୁବର୍ଗ ସମସ୍ତେ ସେଠି ଉପସ୍ଥିତ ଥିଲେ। ପୁରସ୍କାର ବିତରଣ ମହୋତ୍ସବ ଆରମ୍ଭ ହେଲା। ଜଣକପରେ ଜଣେ ପ୍ରତ୍ୟେକ ସେମାନଙ୍କର ସୁବର୍ଣ୍ଣ ପୁରସ୍କାରକୁ ସ୍ୱୀକାର କଲେ, ଗ୍ରହଣ କଲେ। ଆସିଲା ଚାଣକ୍ୟଙ୍କର ପାଳି। ଚାଣକ୍ୟ ପୁରସ୍କାର ଗ୍ରହଣ ନକରି ଅତ୍ୟନ୍ତ ବିନୀତ କଣ୍ଠରେ କହିଲେ, "ମହାରାଜ! ମୋର ଆପଣଙ୍କୁ ଗୋଟିଏ କଥା କହିବାର ଅଛି, ଆପଣ ଯଦି ମୋତେ ଅନୁମତି ଦିଅନ୍ତି, ମୁଁ ମୋର ବକ୍ତବ୍ୟ ଆରମ୍ଭ କରିବି ; ଏବଂ ସେଥିପାଇଁ ଆପଣ ମୋତେ ଅଭୟ ପ୍ରଦାନ କରିବେ। ତାହାହେଲେ ମୁଁ ମୋର କଥା କହିବି। ମୁଁ କହିସାରିଲା ପରେ, ମୁଁ ନିଷ୍ପତ୍ତିନେବି ଯେ ଆପଣଙ୍କ ଏହି ପୁରସ୍କାର ମୁଁ ଗ୍ରହଣ କରିବି କି ନାହିଁ" । ଚାଣକ୍ୟଙ୍କର ଏଭଳି ଏକ ପ୍ରଶ୍ନରେ ରାଜା ମହାପଦ୍ମନନ୍ଦ ବିଚଳିତ ହେଲେ। ଯେହେତୁ ଚାଣକ୍ୟ ବ୍ରାହ୍ମଣ ଓ ପଣ୍ଡିତ, ସେ ତାଙ୍କ ପ୍ରତି ଅଭୟ ବରଦ ହୋଇ କହିଲେ, "ହେ ଚାଣକ୍ୟ! ଆପଣ ଯାହା ଭାବୁଛନ୍ତି ତାହା ନିର୍ଭୟରେ ପ୍ରକାଶ କରନ୍ତୁ।" ଚାଣକ୍ୟ ପାଟଳୀପୁତ୍ରର ଜନାକୀର୍ଣ୍ଣ ରାସ୍ତାରେ ଘଟିଥିବା ଘଟଣାକୁ ଆରମ୍ଭ କଲେ। ସେ ଅତି ଦୁଃଖରେ କହିଲେ, "ମହାରାଜ! ଯେଉଁ ନିରାଶ୍ରୟା ବିଧବାର ସୁବର୍ଣ୍ଣ ଅଳଙ୍କାରକୁ ଆପଣଙ୍କ ସୈନିକମାନେ ମୋରି ସମ୍ମୁଖରେ ଛଡ଼େଇନେବାର ପ୍ରୟାସ କରୁଥିଲେ, ତାହା ଅତ୍ୟନ୍ତ ଅନ୍ୟାୟ ଥିଲା। ସ୍ୱାମୀର ଅନାଦେୟ ପାଉଣା ଲାଗି ସ୍ତ୍ରୀଧନକୁ ଆତ୍ମସାତ୍ କରିବାର ବିଧାନ ଧର୍ମଶାସ୍ତ୍ରରେ ନାହିଁ ହେ ମହାରାଜ୍! ଏହି ଅନ୍ୟାୟଗତ ସୁବର୍ଣ୍ଣ ସମ୍ପଦ ଆଜି ଏହି ପୁରସ୍କାର ବିତରଣ ଉତ୍ସବରେ ପୁରସ୍କାର ଭାବେ

ଦିଆଯାଉଥିବାରୁ ତାକୁ ମୁଁ ଗ୍ରହଣ କରିପାରିବି ନାହିଁ। ଏବଂ ଆପଣ ମୋତେ କ୍ଷମା କରିବେ।''

ରାଜା ମହାପଦ୍ମନନ୍ଦ ଏଥିରେ ବହୁତ ବିଚଳିତ ହୋଇଗଲେ। ସେ କ୍ରୋଧାନ୍ୱିତ ହେଲେ ଏବଂ ଚାଣକ୍ୟଙ୍କର ମୁଣ୍ଡକାଟ କରିବାପାଇଁ ସଙ୍ଗେ ସଙ୍ଗେ ଆଦେଶ ଦେଲେ। ମହାପଦ୍ମନନ୍ଦଙ୍କର ମନ୍ତ୍ରୀ ରାକ୍ଷସ ଏକଥା କରିବାପାଇଁ ବାରଣ କଲେ। କାରଣ ମହାରାଜ ଅଭୟପ୍ରଦାନ କରିଥିଲେ, ଦ୍ୱିତୀୟରେ ଚାଣକ୍ୟ ଥିଲେ ବ୍ରାହ୍ମଣ। ତେଣୁ ସେ ଥିଲେ ଅବଧ୍ୟ। ଯେଉଁଠାରେ ବ୍ରାହ୍ମଣମାନେ ନିର୍ଭୟ ନଥାନ୍ତି ସେଠି ରାଜା ମହାପାପର ଭାଗିଦାର ହୁଏ। ''ବ୍ରାହ୍ମଣାଃ ସନ୍ତୁ ନିର୍ଭୟାଃ'' ଏହି କଥାକୁ ଯେଉଁ ରାଜା ରକ୍ଷାକରିପାରେ ନାହିଁ ତାର ଆଉ ରାଜା ହବାର ଅଧିକାର ନାହିଁ। ଏହି ମନ୍ତ୍ରକୁ ଯେଉଁ ରାଜା କାର୍ଯ୍ୟରେ ନିୟୋଜିତ କରିପାରେ ନାହିଁ ସେ ସବୁଠାରୁ ହୀନତମ ରାଜା ଓ ପ୍ରଜାବିରୋଧୀ। ମହାମନ୍ତ୍ରୀ ରାକ୍ଷସଙ୍କର ଏହି ଉକ୍ତିରେ ମହାପଦ୍ମନନ୍ଦ ସର୍ବ ସମ୍ମୁଖରେ ଚାଣକ୍ୟଙ୍କୁ କୌଣସି ଦଣ୍ଡ ଦେବାପାଇଁ ସମର୍ଥ ହେଲେ ନାହିଁ। କିନ୍ତୁ ତାଙ୍କର ରାଜପୁତ୍ରମାନଙ୍କୁ ସଭାସ୍ଥଳରୁ ଚାଣକ୍ୟଙ୍କୁ ଧକ୍କାମାରି ବାହାର କରି ଦେବାପାଇଁ ଆଦେଶ ଦେଲେ। ଏକାର୍ଯ୍ୟ କରିବାପାଇଁ ମଧ ମହାମନ୍ତ୍ରୀ ରାକ୍ଷସ ଭୟଙ୍କର ଭାବେ ବିରୋଧ କଲେ। ତା'ପରେ ଚାଣକ୍ୟ ପୃଥିବୀ, ଆକାଶ, ଦଶଦିଗପାଳ, ଇଷ୍ଟଦେବ ଓ ପିତୃ ପୁରୁଷକୁ ଏ ସମସ୍ତଙ୍କୁ ସାକ୍ଷୀ କରି ନିଜର ଶିଖା ବନ୍ଧନକୁ ଖୋଲିଲେ। ପ୍ରତିଜ୍ଞା କଲେ ଯେ, ମହାପଦ୍ମନନ୍ଦଙ୍କର ସମସ୍ତ ବଂଶକୁ ସଂପୂର୍ଣ୍ଣ ଧ୍ୱଂସ କରିବେ। ମହାପଦ୍ମନନ୍ଦଙ୍କ ରାଜବଂଶ ଧ୍ୱଂସ ନ ହେବା ପର୍ଯ୍ୟନ୍ତ ସେ ନିଜର ଶିଖାବନ୍ଧନ କରିବେ ନାହିଁ ଓ ତାଙ୍କୁ ବଞ୍ଚିରହିବାକୁ ପଡ଼ିବ। ସେ ସ୍ୱଇଚ୍ଛାରେ ସଭାସ୍ଥଳ ଛାଡ଼ି ଚାଲିଆସିଲେ।

ସେ ଜାଣିଥିଲେ ଯେ, ଯଦି ସେ ସ୍ଥଳପଥରେ ତକ୍ଷଶୀଳା ଫେରି ଆସନ୍ତି ତାହାହେଲେ ରାଜାର ସୈନିକ ଓ ଗୁପ୍ତଚରମାନେ ତକ୍ଷଶୀଳାରେ ପହଞ୍ଚିବା ପୂର୍ବରୁ ତାଙ୍କୁ ହତ୍ୟା କରିବେ। ତେଣୁ ହଠାତ୍ ସେ ତାଙ୍କର ନିଷ୍ପତ୍ତି ବଦଳେଇଲେ। ସେ ଜଳପଥରେ ତାଙ୍କ ବେଶ ବଦଳେଇ, ଛଦ୍ମବେଶରେ ତକ୍ଷଶୀଳାକୁ ପଳାୟନ କଲେ। ସେଇଠି ସେ ଚିନ୍ତା କଲେ ଯେ ସେ ନେଇଥିବା ଶପଥ କିଭଳି କାର୍ଯ୍ୟକାରୀ କରିବେ। ତନ୍ତ୍ରବଳରେ ସେ ଦେବତାମାନଙ୍କ ସହିତ ପରାମର୍ଶ କଲେ। ଭୟଙ୍କର ମାନସିକତାରେ ସେ ଉପାୟ ଉଦ୍ଭାବନ କଲେ।

ତକ୍ଷଶୀଳରେ ବୁଲୁ ବୁଲି ଦେଖିଲେ, ବିଶ୍ୱ ବିଦ୍ୟାଳୟ ପରିସରରେ ଦୀର୍ଘ ସାତଫୁଟ ଲମ୍ବର ଜଣେ ବଳିଷ୍ଠ ଯୁବକ ଠିଆ ହୋଇ ଗୋଟାଏ ବିରାଟ ଗଛ ଦେହରେ ଗୋଟିଏ ଚିହ୍ନ ଖୋଦିତ କରିଛି। ଦୂରରୁ ସେ ଚିହ୍ନକୁ ଶର ସଂଯୋଜନା କରୁଛି। ସେ ତା'ର ବିଚକ୍ଷଣ ଯୁଦ୍ଧବିଦ୍ୟା ପ୍ରତି ଲକ୍ଷ୍ୟ ରଖିଲେ। ସେ ପିଲାର ଲକ୍ଷ୍ୟଭେଦ ଥିଲା ଅବ୍ୟର୍ଥ। ସେହି ପିଲାକୁ

ସେ କେଉଁଠି ଦେଖିଲା ପରି ମନେହେଲା। ସେ ମନେପକେଇବାକୁ ଚେଷ୍ଟା କଲେ। ସେ ଜାଣିଲେ ଏହି ଯୁବକ ପାଟଳୀପୁତ୍ରର ସୈନିକମାନଙ୍କୁ ସେଦିନ ସମୁଚିତ ଶିକ୍ଷା ଦେଇଥିଲେ, ଯେଉଁମାନେ ଗୋଟିଏ ବିଧବାସ୍ତ୍ରୀର ସ୍ୱର୍ଣ୍ଣାଳଙ୍କାର ଛଡ଼େଇ ନବାକୁ ଚେଷ୍ଟା କରୁଥିଲେ। ସେତେବେଳେ ମହାପଦ୍ମନନ୍ଦ ରାଜବଂଶରେ ତାଙ୍କ ପରେ କିଏ ରାଜା ହେବ ଏ ବିଷୟରେ ବହୁ ତର୍କ ବିତର୍କ ଚାଲିଥିଲା। ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଜ୍ୟେଷ୍ଠପୁତ୍ର ଥିଲେ ମଧ ତାଙ୍କର ମାତା ମୂରା ଶୂଦ୍ରାଣୀ ଥିବାରୁ ସେ ରାଜଗାଦୀ ଦଖଲ କରିପାରିବେନି ବୋଲି ପଣ୍ଡିତମାନେ ମତ ଦେଉଥିଲେ। ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଅତ୍ୟନ୍ତ ଦକ୍ଷ ଥିଲେ ବି ସେ ରାଜଗାଦୀ ପାଇଁ ହକ୍‌ଦାର ହୋଇପାରିବେନି ବୋଲି ତାଙ୍କ ମନରେ ଦୁଃଖ ଥିଲା।

ଚନ୍ଦ୍ରଗୁପ୍ତଙ୍କୁ ସାଙ୍ଗରେ ନେଇ ଚାଣକ୍ୟ ମୂରାଙ୍କ ପାଖକୁ ଗଲେ। ସେ ମୂରାଙ୍କୁ ପ୍ରତିଶ୍ରୁତି ଦେଲେ ଯେ, ଆପଣ ଆପଣଙ୍କର ପୁଅକୁ ମତେ ସମର୍ପଣ କରନ୍ତୁ। ମୁଁ ତାକୁ ମଗଧର ରାଜାଧିରାଜ କରିବି। ମୁଁ ଏକଥା ଆପଣଙ୍କୁ ଦଉଛି। ଆପଣ ମତେ ବିଶ୍ୱାସ କରନ୍ତୁ। ମୂରାଙ୍କ ଆଖି ଲୋତକାପ୍ଳୁତ ହେଲା। ସେ ସେଇ ମୁହୂର୍ତ୍ତରେ ଚନ୍ଦ୍ରଗୁପ୍ତଙ୍କୁ ଚାଣକ୍ୟଙ୍କ ପାଖରେ ସମର୍ପଣ କଲେ। ଚାଣକ୍ୟ ମହାଶୂନ୍ୟକୁ ଚାହିଁ ପୁନର୍ବାର ଦେବତାମାନଙ୍କର ଶୁଭାଶିଷ କାମନା କରି ସେ ସ୍ଥାନ ଛାଡ଼ି ଚାଲିଗଲେ। ସେହିଦିନଠାରୁ ମୂରାପୁତ୍ର ଚନ୍ଦ୍ରଗୁପ୍ତ ଚାଣକ୍ୟଙ୍କଠାରୁ ଯୁଦ୍ଧବିଦ୍ୟା କୌଶଳ ଶିକ୍ଷାଲାଭ କଲେ।

ଚାଣକ୍ୟ ପରଶୁରାମଙ୍କୁ ବହୁତ ସମ୍ମାନ ଦେଉଥିଲେ। ମାନସପଟ୍ଟରେ ପରଶୁରାମ ତାଙ୍କର ଏକପ୍ରକାର ଆରାଧ ଶକ୍ତି ଥିଲେ। ସେ ଜାଣିଥିଲେ ଯେ, ଏକୋଇଶି ଥର ସମଗ୍ର ଭାରତବର୍ଷକୁ ନିକ୍ଷେତ୍ରୀ କରିଥିବା ପରଶୁରାମ ଜଣେ ଚରମ କ୍ରାନ୍ତିକାରୀ ଯୁଦ୍ଧବିଦ୍ ବ୍ରାହ୍ମଣ ଥିଲେ। ଏହି ରାଜା ମହାରାଜାମାନେ ବହୁ ଅନ୍ୟାୟ ଏବଂ ସମ୍ଭୋଗ ଭିତରେ ନିଜକୁ ବୁଡେଇ ରଖିଥିଲେ। ତେଣୁ ସେମାନଙ୍କର ନିଧନ ପର୍ଶୁରାମଙ୍କପାଇଁ ଅପରିହାର୍ଯ୍ୟ ଥିଲା। ଠିକ୍ ସେହିପରି ଆଜି ନନ୍ଦବଂଶ ଧ୍ୱଂସ ଚାଣକ୍ୟଙ୍କର ମାନସପଟ୍ଟରେ ଗୋଟିଏ ନୂତନ ଚିତ୍ର ସୃଷ୍ଟି କରିଥିଲା।

ଚନ୍ଦ୍ରଗୁପ୍ତ-ମୌର୍ଯ୍ୟଙ୍କୁ ଏକ ଭୟଙ୍କର ଦୁର୍ଦ୍ଧର୍ଷ ଯୋଦ୍ଧାରେ ପରିଣତ କଲାବେଳେ ସେ ତାଙ୍କୁ କୋଉଟା କରିବା ଠିକ୍ ଆଉ କ'ଣ କରିବା ଠିକ୍ ନୁହେଁ, ଏହି ନୀତିଶିକ୍ଷା ପ୍ରତିଦିନ ଶିକ୍ଷାଦେବାରେ ଲାଗିଲେ। ସେଇଠି ଆରମ୍ଭ ହେଲା ଚାଣକ୍ୟଙ୍କର 'କୂଟନୀତି' ବିଦ୍ୟା ପଠନ ଓ ପ୍ରଦାନର ପ୍ରଥମ ପର୍ଯ୍ୟାୟ। ନୀତିଶ୍ଳୋକମାନ ରଚନା କରି ସେ ଚନ୍ଦ୍ରଗୁପ୍ତ-ମୌର୍ଯ୍ୟଙ୍କୁ ଶିକ୍ଷା ଦେବା ବେଳେ ସମଗ୍ର ମାନବଜାତି ପାଇଁ ବହୁରତ୍ନ ପ୍ରଦାନ କରି ଦେଇଗଲେ। ଅର୍ଥନୀତିର ପ୍ରଥମ ପ୍ରବକ୍ତା ଚାଣକ୍ୟ ଚନ୍ଦ୍ରଗୁପ୍ତଙ୍କୁ ଅର୍ଥଶାସ୍ତ୍ରବିଦ୍ କରାଇଲାବେଳେ ତାଙ୍କୁ ରାଜନୀତି ଶିକ୍ଷା ଦେବାକୁ ଲାଗିଲେ। ଅର୍ଥଶାସ୍ତ୍ରରେ ମଧ

ରାଜନୀତିର ବହୁ ପ୍ରୟୋଜନୀୟତା ଅଛି। ଏକଥା ଚାଣକ୍ୟ, ଚନ୍ଦ୍ରଗୁପ୍ତଙ୍କୁ ସୂତ୍ର ଆକାରରେ ଗୋଟିଏ ପରେ ଗୋଟିଏ ପଢ଼େଇବାକୁ ଲାଗିଲେ। ଆଲେକ୍‌ଜାଣ୍ଡାର୍‌ଙ୍କ ସହିତ ଚାଣକ୍ୟଙ୍କର ତେହେରାନ୍ ଠାରେ ସାକ୍ଷାତ ହେଲା। ଆଲେକ୍‌ଜାଣ୍ଡର୍ ଚାଣକ୍ୟଙ୍କର ଜ୍ଞାନ ଦ୍ୱାରା ଏତେ ପ୍ରଭାବିତ ହୋଇଗଲେ ଯେ, ନିଜକୁ ତାଙ୍କର ଶିଷ୍ୟ ବୋଲି ମନେକଲେ। ଆଲେକ୍‌ଜାଣ୍ଡାର୍ ଚାଣକ୍ୟଙ୍କଠାରୁ ପରାମର୍ଶନେଇ ମଗଧକୁ ଯୁଦ୍ଧରେ ଜୟ କରିବାପାଇଁ ଚିନ୍ତା କଲେ। ସେ ଚାଣକ୍ୟଙ୍କୁ ତାଙ୍କ ସହ ଯିବାପାଇଁ ଅନୁରୋଧ କଲେ; କିନ୍ତୁ ଚାଣକ୍ୟ ମନାକଲେ।

ଚନ୍ଦ୍ରଗୁପ୍ତ ଓ ଚାଣକ୍ୟଙ୍କର ଭାଣେଜୀ ଚନ୍ଦ୍ରିକା - ଏ ଉଭୟଙ୍କୁ ସେ ଆଲେକ୍‌ଜାଣ୍ଡାର୍‌ଙ୍କ ସହ ଯିବାପାଇଁ ଅନୁମତି ଦେଲେ। ଗଲାବେଳେ ଚାଣକ୍ୟ ଚନ୍ଦ୍ରଗୁପ୍ତଙ୍କୁ ଏକାନ୍ତରେ ଡାକିନେଇ ବୁଝେଇଲେ ଯେ, ମଗଧର ଯାହା ଅବସ୍ଥା ତୁମେ ଚନ୍ଦ୍ରଗୁପ୍ତ ଏକାକୀ ଲଢ଼େଇ କରି ଏହି ସାମ୍ରାଜ୍ୟ ବିରୁଦ୍ଧରେ ଜିତି ପାରିବ ନାହିଁ। ତମେ ଆଲେକ୍‌ଜାଣ୍ଡାରଙ୍କ ସହିତ ରହି କେବଳ ତାଙ୍କୁ ପାଟଲୀପୁତ୍ର ପର୍ଯ୍ୟନ୍ତ ଯିବାପାଇଁ ରାସ୍ତା ବତେଇବ। ତାଙ୍କର ଯୁଦ୍ଧକୌଶଳ ବୁଦ୍ଧି ବଳରେ ଶିଖିନେବ। ମନେରଖ, ଆଲେକ୍‌ଜାଣ୍ଡାର୍ ଯୁଦ୍ଧରେ ଜିତିବାପରେ ଗ୍ରୀସ୍ ଫେରିଯିବେ। ତା'ପରେ ସବୁଗୁଡ଼ିକ ତମ ପାଇଁ ସୁବିଧା ହୋଇଯିବ। ଆଲେକ୍‌ଜାଣ୍ଡାର୍ ବହିଃଶତ୍ରୁ। ସେ କିନ୍ତୁ ଭାରତରେ ରହିବ ନାହିଁ। ତେଣୁ ଆମର ତା'ଠାରୁ ସବୁକିଛି ନବାର ଅଛି, ତାକୁ କିଛି ଦବାର ନାହିଁ । ଚାଣକ୍ୟ ଏପରି କାର୍ଯ୍ୟ କଲେ ଯେ, ମଗଧ ବିଜୟପରେ ଅନ୍ୟାନ୍ୟ ସବୁରାଜାଙ୍କୁ ଏକତ୍ରିତ କରି ଆଲେକ୍‌ଜାଣ୍ଡାରଙ୍କ ବିରୁଦ୍ଧରେ ଭୟଙ୍କର ଯୁଦ୍ଧ ଓ ପ୍ରତିରୋଧ କରିବାପାଇଁ ଯୋଜନା ପ୍ରସ୍ତୁତ କଲେ।

ଆଲେକ୍‌ଜାଣ୍ଡାରଙ୍କ ସେନାପତି ସେଲ୍ୟୁକସ୍‌ଙ୍କର ଝିଅକୁ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ସହ ନିବିଡ଼ ଭାବଗତ ସମ୍ପର୍କ ଚାଣକ୍ୟ ସୃଷ୍ଟିକରାଇଲେ। ଆଲେକ୍‌ଜାଣ୍ଡାର ଭାରତ ଛାଡ଼ି ଚାଲିଯିବାକୁ ନିଷ୍ପତ୍ତି କଲେ। ଏଥିପାଇଁ ସବୁ ଦୃଷ୍ଟିରୁ ଦାୟୀଥିଲେ ଚାଣକ୍ୟ। ଏପରି ଜଣେ କୂଟନୀତିଜ୍ଞ ଚାଣକ୍ୟ ଏବେ ସୁଦ୍ଧା ସମଗ୍ର ବିଶ୍ୱରେ ବିରଳ। କେବଳ ମହାପଦ୍ମନନ୍ଦଙ୍କ ସାମ୍ରାଜ୍ୟ ଯେ ବଦଳିଗଲା ତାହା ନୁହେଁ। ବହୁ ବହୁ ରଜାମାନଙ୍କର ସାମ୍ରାଜ୍ୟ ବଦଳିଯିବାକୁ ବାଧହେଲା। ଚନ୍ଦ୍ରଗୁପ୍ତଙ୍କର ବିବାହ ଚନ୍ଦ୍ରିକା (ଚାଣକ୍ୟଙ୍କର ଭାଣେଜୀ)ଙ୍କ ସହ ଅନୁଷ୍ଠିତ ହୋଇଥିଲା। ଚାଣକ୍ୟ ନିଜକୁ ଚନ୍ଦ୍ରଗୁପ୍ତ ଓ ମୌର୍ଯ୍ୟସାମ୍ରାଜ୍ୟଠାରୁ ଦୂରେଇ ରଖିବାକୁ ପ୍ରାୟ ନିଷ୍ପତ୍ତି ନେଇଗଲେ। ସେ ଦେଖିଲେ ଯେ, ଚନ୍ଦ୍ରଗୁପ୍ତ ଯଦି ସୁପ୍ରଶାସକ ହେବାକୁ ଇଚ୍ଛା କରନ୍ତି ତେବେ ମହାପଦ୍ମନନ୍ଦଙ୍କ ପ୍ରଧାନମନ୍ତ୍ରୀ ରାକ୍ଷସକୁ ଛାଡ଼ି ତାଙ୍କ ପକ୍ଷରେ ରାଜ୍ୟଶାସନ କରିବା କଷ୍ଟକର ହୋଇପଡ଼ିବ। ତେଣୁ ସେ ରାକ୍ଷସଙ୍କୁ ଚନ୍ଦ୍ରଗୁପ୍ତଙ୍କର

ପରାମର୍ଶଦାତା ଓ ମନ୍ତ୍ରୀରୂପେ ରହିବାପାଇଁ ଅନୁରୋଧ କରିଥିଲେ। ତାଙ୍କରି କଥା ହିଁ କାର୍ଯ୍ୟକାରୀ ହେଲା। ରାକ୍ଷସ ସେତେବେଳକୁ ବୃଦ୍ଧ, ସେ ସହାୟତା ଚାହିଁଲେ। ମହାପଦ୍ମନନ୍ଦଙ୍କର ପାଞ୍ଚଗୋଟିପୁଅଙ୍କୁ କୂଟନୈତିକ ପରାମର୍ଶ ଦେଉଥିବା ଶକଟାର୍‌ଙ୍କୁ ରାକ୍ଷସଙ୍କ ସହାୟକ ଭାବରେ ଚାଣକ୍ୟ ନିଯୁକ୍ତି ଦେଲେ। ଚନ୍ଦ୍ରଗୁପ୍ତଙ୍କର ସାମ୍ରାଜ୍ୟ ସୁରକ୍ଷିତ ରହିଲା। ସେତେବେଳେ ଚାଣକ୍ୟ ଶକଟାର୍‌ଙ୍କୁ କହିଲେ, ''ଶକଟାର୍, ମନେରଖ, ଧର୍ମ ନୀତିହୀନ ହୋଇପାରିବ ନାହିଁ। ଧର୍ମ ସହ ନୀତିକୁ ଯୋଡ଼ି ଭାରତର ଭବିଷ୍ୟତକୁ ତିଆରି କରିବାକୁ ପଡ଼ିବ। ଧର୍ମର ରୂପ ପରିବର୍ତ୍ତନଶୀଳ। ପୃଥିବୀପୃଷ୍ଠକୁ ବହୁ ଧର୍ମ ଆସେ ଓ ତାହା କାଳକ୍ରମେ ନଷ୍ଟ ହୋଇଯାଏ। ଧର୍ମକୁ ଅମରତ୍ୱ ପ୍ରଦାନକରେ ନୀତି। କିନ୍ତୁ ଶକଟାର ତମର ଏ ନୀତି ବିଷୟରେ କୌଣସି ଜ୍ଞାନ ନାହିଁ। ମୁଁ ନୀତିର ସିଦ୍ଧାନ୍ତକୁ ନୀତିଶାସ୍ତ୍ର ରୂପରେ ପ୍ରସ୍ତୁତ କରୁଛି। ମୋର ଏହି ନୀତିଶାସ୍ତ୍ର ସମଗ୍ର ବିଶ୍ୱ ଆଗରେ ପ୍ରମାଣିତ ହେବ ଯେ, 'ଏହା ହିଁ ସତ୍ୟ'।'' ଚାଣକ୍ୟଙ୍କ ସମ୍ମୁଖରେ ଥିଲା ତାଙ୍କର ଅତୀତ ଏବଂ ଭବିଷ୍ୟତ ଥିଲା ବୃଦ୍ଧାବସ୍ଥା। ବୃଦ୍ଧାବସ୍ଥାର ଅର୍ଥ ସେତେବେଳେ ଅନ୍ୟମାନେ ବୁଝୁଥିଲେ ଅନ୍ତଃକାଳର ପ୍ରତୀକ୍ଷା। ଚାଣକ୍ୟ ବୁଝିଥିଲେ ସମସ୍ତ ଜୀବନ କାର୍ଯ୍ୟସୂଚୀର ଏକ ସମୀକ୍ଷା। ମଣିଷ ଜୀବନରେ ମରଣ, ଆଦିଅନ୍ତର ସୀମା ଭିତରେ ସୀମିତ। କେବଳ ମଣିଷ ପାଇଁ ନୁହେଁ। ଏ ସଚରାଚର ବିଶ୍ୱବ୍ରହ୍ମାଣ୍ଡରେ ଯାହା କିଛି ସେ ସବୁରି ପାଇଁ ଗୋଟିଏ ମୂଲ୍ୟବୋଧ। ତାହାହେଲା ଆଦିଅନ୍ତର ସୀମା ମଧ୍ୟରେ ଅବସ୍ଥିତିର ସୀମାବୋଧ। ସ୍ୱତନ୍ତ୍ର ଭାବରେ ରହିଥିବା ଏ ସୌରମଣ୍ଡଳ କୋଟି କୋଟି ଗ୍ରହନକ୍ଷତ୍ର, ତାରକା ଏ ସମସ୍ତେ ଆଦି-ଅନ୍ତର ସୀମା ମଧ୍ୟରେ ସୀମାବଦ୍ଧ। ତେଣୁ ମନୀଷୀ, ଜ୍ଞାନୀ ଓ ବିଚାରକଙ୍କ ସମୀକ୍ଷାରୁ ଯାହା ଜଣାଯାଏ ତାହାହେଲା, ଅନାଦି ଓ ଅନନ୍ତ ତାର ସ୍ଥିତି, ସଂଜ୍ଞା ପ୍ରକାଶ କରିବା ସମ୍ଭବ ନୁହେଁ। ତାହାହିଁ ଦେହାତୀତ ଓ ତାହାହିଁ ବ୍ରହ୍ମ। ଏ ସମଗ୍ର ବ୍ରହ୍ମାଣ୍ଡ ସମୀକ୍ଷା ଓ ସୀମାର ହିଁ ପରିଚାୟକ। ଏପରି ଚିନ୍ତା କରୁଥିବା ବେଳେ ରାତ୍ରି ଚାଲିଯାଉଥିଲା। ଉଷା କାଳ ତାଙ୍କୁ ଅଭିବାଦନ କରୁଥିଲା। ସମସ୍ତ ନୀତିଶାସ୍ତ୍ରକୁ ନେଇ ଚାଣକ୍ୟ ରଚନା କଲେ ନୀତିଦର୍ପଣ। ନନ୍ଦବଂଶ ଧ୍ୱଂସ ହେବା ପରେ ଆଚାର୍ଯ୍ୟ ଚାଣକ୍ୟ ଯାହା ଭୋଗ୍ୟବସ୍ତୁ ପ୍ରାପ୍ତ କରିବାକୁ ଚାହିଁଥାନ୍ତେ ହୁଏତ ତାହା ସବୁ ଲାଭ କରିପାରିଥାନ୍ତେ। କେବଳ କ୍ରୋଧ ଓ ଅହଂକାରରେ ସେ ନନ୍ଦବଂଶ ଧ୍ୱଂସ କଲେ।

ତାହା କିନ୍ତୁ ବ୍ରାହ୍ମଣର କାର୍ଯ୍ୟ ନଥିଲା। ଏହିପରି କର୍ମ କରିବା ଫଳରେ ଚାଣକ୍ୟଙ୍କର ମୋକ୍ଷ ପଥରୁ ପତନ ହେଲା । ସେତେବେଳେ ବ୍ରାହ୍ମଣମାନେ କେହି ଚାଣକ୍ୟଙ୍କୁ ଭଲପାଇଲେ ନାହିଁ। ଏପରିକି କେହି ତାଙ୍କ ସହ କଥାବାର୍ତ୍ତା ମଧ୍ୟ ହେଲେ ନାହିଁ।

ନୀତିଦର୍ପଣରେ ଲେଖାଥିବା ସମସ୍ତ ନୀତିର ସାରତତ୍ତ୍ୱକୁ ସ୍ୱୀକାର କରିଥିଲେ ମଧ୍ୟ ତାହାକୁ ଘୃଣା କରି ଅପାଠ୍ୟ ବୋଲି ଫିଙ୍ଗିଦେଲେ। କିନ୍ତୁ ନୀତିଦର୍ପଣ ଥିଲା ବାସ୍ତବିକ ପ୍ରଗାଢ଼ ବାସ୍ତବତା।

ଏକଥା ବହୁ ଲୋକ ଜାଣନ୍ତି ନାହିଁ ଯେ, ଚାଣକ୍ୟଙ୍କର ଏହି ବାସ୍ତବତା ଓ ବସ୍ତୁବାଦ ବହୁବର୍ଷପରେ ଉନବିଂଶ ଶତାବ୍ଦୀରେ 'ଜାଁନପାଲ୍ ସତ୍ରେ' ନାମକ ଫରାସୀ ଲେଖକଙ୍କ କଲମ ମୂନରେ 'ସରିୟାଲିଜିମ୍' ଭାବରେ ଭିନ୍ନଢ଼ଙ୍ଗରେ ଲେଖାଥିଲା। ଆଲ୍‌ବର୍ଟ କ୍ୟାମୁଙ୍କ ବିଭିନ୍ନ ଉପନ୍ୟାସ ଦି ରିବେଲ, ଦି ଫଲ୍, ଦି ଆଉଟ୍‌ସାଇଡ଼ର ଆଦିରେ ଏକ ଭିନ୍ନଭଙ୍ଗୀରେ ବାସ୍ତବବାଦକୁ ପ୍ରକାଶ କରାଯାଇଛି।

ଚାଣକ୍ୟ ପାଟଳୀପୁତ୍ର ଛାଡ଼ି ଚାଲିଗଲେ। ସେ କାଶୀରେ ବସବାସ କରିବାକୁ ଲାଗିଲେ। ସାଙ୍ଗରେ ଅଳ୍ପବୟସ୍କା ବିବାହିତ ପତ୍ନୀ ବି ଥିବା ଥିଲେ। ସେତେବେଳକୁ ଚାଣକ୍ୟ ବାନପ୍ରସ୍ଥ ଅବସ୍ଥା ଲାଭ କରିସାରିଥିଲେ। କିନ୍ତୁ ନୂତନ ଗୃହସ୍ଥାଶ୍ରମ ଲାଭ କରିଥିବା ହେତୁ କାମବିଜ୍ଞାନର ସାରତତ୍ତ୍ୱ ତାଙ୍କ ପାଇଁ ଅତ୍ୟନ୍ତ ଆବଶ୍ୟକୀୟ ହୋଇପଡ଼ିଲା। କାଶୀର କୌଣସି ବ୍ରାହ୍ମଣ ପଣ୍ଡିତ ଚାଣକ୍ୟଙ୍କୁ ସହଯୋଗ କରି ନଥିଲେ। ତେଣୁ ଚାଣକ୍ୟ ଅନୁଭବ କଲେ ଯେ ଲୋକ ଆଜି ତାଙ୍କୁ ସାମାଜିକ ବୋଲି ଭାବୁନାହାନ୍ତି। ବ୍ରାହ୍ମଣ କ୍ଷତ୍ରିୟ କର୍ମ କଲେ ସେ ଆଉ ବ୍ରାହ୍ମଣ ହୋଇ ରହେନା। ଭଗ୍ନ ହୃଦୟରେ ଚାଣକ୍ୟ ପୁନର୍ବାର ପାଟଳୀପୁତ୍ରକୁ ପ୍ରତ୍ୟାବର୍ତ୍ତନ କଲେ। ରାଜା ଚନ୍ଦ୍ରଗୁପ୍ତ-ମୌର୍ଯ୍ୟଙ୍କୁ ଡକାଇ ପଠେଇଲେ। ଉତ୍ତରକାଶୀରେ ସେ ସନ୍ତୋଷ ଲାଭ କରିପାରି ନଥିବା ଚନ୍ଦ୍ରଗୁପ୍ତଙ୍କୁ ଜଣାଇଲେ। ଗଙ୍ଗାରେ ଯେତେ ସ୍ନାନ କଲେ ମଧ୍ୟ ଚାଣକ୍ୟ ମାନସିକ ଶାନ୍ତି ଲାଭ କରିପାରି ନଥିଲେ ବା ତାଙ୍କର ପାପର ପ୍ରକ୍ଷାଳନ ହୋଇ ନଥିଲା। ସେ ଏହାପରେ ଯାଇ ପ୍ରୟାଗ ତୀର୍ଥରେ ଅବସ୍ଥାନ କଲେ।

ଉତ୍ତରକାଶୀରେ ଥିବାବେଳେ ସେ 'କାମସୂତ୍ର' ପ୍ରଣୟନ କରିଥିଲେ। ସେହି କାମସୂତ୍ରକୁ ସେ ବାତ୍ସାୟନଙ୍କ ନାମରେ ଉତ୍ସର୍ଗୀକୃତ କରିଦେଇଥିଲେ। ଚାଣକ୍ୟଙ୍କ ଗୋତ୍ର ବାତ୍ସାୟନ ଥିବାରୁ 'କାମସୂତ୍ର' ଗ୍ରନ୍ଥର ଲେଖକଭାବେ ସେ ବାତ୍ସାୟନଙ୍କୁ ଅବସ୍ଥାପିତ କରାଇଲେ ଓ ତାଙ୍କରି ନାମରେ କାମସୂତ୍ର ଗ୍ରନ୍ଥ ରଚନା କଲେ। ଭାରତବର୍ଷରେ ବହୁ ଜ୍ଞାନୀ-ପଣ୍ଡିତ ଏକଥାକୁ ସ୍ୱୀକାର କରୁଥିଲେ। ପ୍ରକୃତରେ ଚାଣକ୍ୟହିଁ 'କାମସୂତ୍ର' ଗ୍ରନ୍ଥର ସ୍ରଷ୍ଟା ଓ ସେ ହିଁ ଏହାକୁ ଲେଖିଥିଲେ ଏକଥାକୁ ଆଜି ପର୍ଯ୍ୟନ୍ତ ବହୁଗବେଷକ ମଧ୍ୟ ସ୍ୱୀକାର କରନ୍ତି ନାହିଁ। ଚାଣକ୍ୟ ପ୍ରୟାଗତୀର୍ଥରେ ଏକ ସମତଳ ଜାଗାରେ ଦୁଇଜଣ ରହିବାଭଳି ଏକ ପର୍ଣ୍ଣକୁଟୀର ନିର୍ମାଣ କରି ତା'ଭିତରେ ସସ୍ତ୍ରୀକ ବସବାସ କରିବାକୁ ଲାଗିଲେ। ତାଙ୍କର

ବିଥିକାଙ୍କ ସହ ସହବାସ ଓ ସହାବସ୍ଥାନ ଏବଂ ସର୍ବୋପରି ସମ୍ରାଟ ଚନ୍ଦ୍ରଗୁପ୍ତମୌର୍ଯ୍ୟଙ୍କର ଚାଣକ୍ୟଙ୍କୁ ସର୍ବୋତଃ ସାହାଯ୍ୟ ଓ ସୁରକ୍ଷା ପ୍ରଦାନ ତାଙ୍କୁ ନିର୍ଭୟ କରିଦେଇଥିଲା।

ଚାଣକ୍ୟଙ୍କ ବିଷୟରେ ଏତେଗୁଡ଼ିଏ ଅବତାରଣା କଲାବେଳେ ମୁଁ ନିଜେ ସଚେତନ ଯେ ଚାଣକ୍ୟ ଥିଲେ ମହାନ୍ ଦାର୍ଶନିକ ପଣ୍ଡିତ। ମଣିଷର କର୍ମଫଳ ପ୍ରାରବ୍ଧ ଅତିକ୍ରମ କରିବାର ଶକ୍ତି, ନନ୍ଦବଂଶକୁ ଧ୍ୱଂସ କଲାପରେ ପରେ ସେ ହରାଇ ବସିଲେ। ଏଣୁ ତାଙ୍କର ସମସ୍ତ ସୁଖଦୁଃଖକୁ ଭୁଲିଯିବାପାଇଁ ସେ ଲେଖାଲେଖିରେ ମନଦେଲେ।

ମହାପଦ୍ମନନ୍ଦଙ୍କ ବଂଶର ସମସ୍ତ ସଦସ୍ୟଙ୍କୁ ଚାଣକ୍ୟ ନିଜ ହାତରେ ହତ୍ୟା କରିଥିଲେ। ପାଟଳୀପୁତ୍ରରେ ଛଦ୍ମବେଶରେ ଚାଣକ୍ୟ ରହୁଥିଲେ। ରାଜନବରରେ ରହୁଥିବା ବହୁ କର୍ମଚାରୀଙ୍କ ସହିତ ସେ ଗୋପନରେ ସମ୍ପର୍କ ରକ୍ଷା କରିଥିଲେ। ସେତେବେଳେ ସେ ତାଙ୍କର ନାମ ସର୍ବତୋଭାବେ ଗୋପନୀୟ ରଖିଥିଲେ। ତାଙ୍କ ନାମ ସେତେବେଳେ ଥିଲା 'ଚଞ୍ଚରୀକ'। ସେ କୂଟନୀତି ପ୍ରୟୋଗ କରି ମହାପଦ୍ମନନ୍ଦଙ୍କ ରାଜମହଲର ସମସ୍ତ ଘଟଣା ଯାହା ଘଟୁଥିଲା, ସେ ସବୁର ଟୀକା ଟୀପ୍ପଣୀ କରି ଅର୍ଦ୍ଧରାତ୍ରିରେ ପୁଲାଙ୍ଗ-ତେଲ ଦ୍ୱୀପ ଜାଳି ନିଭୃତରେ ବସି ସମୀକ୍ଷା କରୁଥିଲେ। ଚାଣକ୍ୟ ଓ ରାଜବଂଶ ପରିବାରର ଖବର ନବା ଆଣିବା କରିବା ପାଇଁ ରାଣୀ ମଧୁଲିକାର ଦାସୀ ବିଥିକା ଥିଲା ଅତି ଗୋପନୀୟ ସମ୍ବାଦଦାତ୍ରୀ। ମଧୁଲିକା ଥିଲା ଅନିନ୍ଦ୍ୟ ସୁନ୍ଦରୀ। ସେ ଥିଲା ମହାପଦ୍ମନନ୍ଦଙ୍କ ପୁଅ ପଦ୍ମକମଳଙ୍କ ସ୍ତ୍ରୀ। ପଦ୍ମକମଳ କିନ୍ତୁ ରୋଗାକ୍ରାନ୍ତ ଥିଲେ। ତାଙ୍କର ରୋଗ ଆଦୌ ଭଲ ହେଲା ନାହିଁ। ମଧୁଲିକା ଅତ୍ୟନ୍ତ ଚରିତ୍ର ହୀନା ଥିଲେ। ସେ ରାଜବଂଶର ସମସ୍ତ ସନ୍ତାନଙ୍କୁ ବିପଥଗାମୀ କରାଇଥିଲେ। ଏକଥା ପଦ୍ମକମଳ ଜାଣିଥିଲେ। କିନ୍ତୁ ସେ ତ ଶଯ୍ୟାସାୟୀ ଥିଲେ। ହଠାତ୍ ଦିନେ ପ୍ରାତଃକାଳରୁ ଶଯ୍ୟାତ୍ୟାଗ କରି ସ୍ନାନାଦି କର୍ମ ସମାପନ କରି ମହାପଦ୍ମନନ୍ଦ, ମନ୍ତ୍ରୀ ଓ ଅନ୍ୟ ରାଜକର୍ମଚାରୀଙ୍କୁ ଏକାଠି ଗୋଟିଏ କୋଠରିକୁ ଡକାଇ ସର୍ବସମ୍ମୁଖରେ ନିଜର ସ୍ତ୍ରୀ ମଧୁଲୀକାକୁ ହତ୍ୟା କଲେ। ମଧୁଲୀକାର ଚାରିତ୍ରିକ ଅଧୋପତନର ପ୍ରତ୍ୟେକ କଥା ସମସ୍ତଙ୍କୁ ଜଣାଇଦେଲେ। ମଧୁଲୀକା ମରିବା ପୂର୍ବରୁ କହିଗଲା ଯେ ମୃତ୍ୟୁପରେ ମୋର ପ୍ରେତାତ୍ମା ମଧ ପଦ୍ମକମଳର ପ୍ରେତାତ୍ମାକୁ ଛାଡ଼ିବ ନାହିଁ। ଏହା ଏକ କଳଙ୍କିତ ଇତିହାସ। ମଧୁଲୀକା ଓ ପଦ୍ମକମଳର ଇତିହାସ ଏଇଠି ଶେଷ ହେଲା।

ଚାଣକ୍ୟଙ୍କ ଜୀବନର ପ୍ରତିଟି ଘଟଣାବଳୀକୁ 'ନୀତିଦର୍ପଣ'ର ଏହି ମୁଖବନ୍ଧରେ ଗୋଟି ଗୋଟି କରି ଲେଖିବାର ଆବଶ୍ୟକତା ରହିଛି, ତା'ର କାରଣ ଚାଣକ୍ୟ ବହୁ ଆତିଶଯ୍ୟ ଦୁଃଖ, ଯୁଦ୍ଧ, ସଂଘର୍ଷ ଓ ସଂକଷ୍ଟର ଏକ କଳ୍ପଦ୍ରୁମ ବ୍ୟକ୍ତିତ୍ୱ ନୀତି ଦର୍ପଣ

ଲେଖିବାପାଇଁ ଶତତଃ ଯୋଗ୍ୟା ମଧୁଲୀକାର ଦାସୀ ବିଥିକା ଏ ସବୁ ଭଲ ଭାବରେ ଲକ୍ଷ୍ୟ କରୁଥିଲା। ତେଣୁ ସେ ଚାଣକ୍ୟଙ୍କର ଅତି ନିକଟତର ହେବାକୁ ଲାଗିଥିଲା। ସେ ଜାଣିଥିଲା ଯେ, ପଣ୍ଡିତ ଚାଣକ୍ୟ ଯାହା ଚାହୁଁଥିଲେ ତାହା କରିପାରୁଥିଲେ। ସେ ଜଣେ ସଂକଳ୍ପବଦ୍ଧ ପୁରୁଷ। ତେଣୁ ସେ ମଧୁଲୀକା ରାଜବଧୂ ଠାରୁ ନିଜକୁ ଧୀରେ ଧୀରେ ଦୂରେଇଆଣି ଚାଣକ୍ୟଙ୍କର ନିକଟବର୍ତ୍ତୀ ହୋଇଥିଲା। ମଗଧ ରାଜ୍ୟର ରାଣୀହଂସପୁରର ଅନ୍ତେବାସିନୀମାନେ କେହି ସେମାନଙ୍କର ସ୍ୱାତନ୍ତ୍ର୍ୟରକ୍ଷା କରିପାରି ନଥିଲେ। ସ୍ୱାଧୀନତା ସେମାନଙ୍କପାଇଁ ସ୍ୱପ୍ନ ଥିଲା। କିନ୍ତୁ ସେମାନେ ରାଜପରିବାରକୁ ବିପଥଗାମୀ କରାଉଥିଲେ। ଏକଥା ଚାଣକ୍ୟ ଭଲଭାବରେ ଜାଣିଥିଲେ। ମଗଧରେ ଚାଣକ୍ୟ ଯେତେବେଳେ ଆତ୍ମଗୋପନ କରିଥିଲେ, ସେତେବେଳେ ତାଙ୍କର ନାମଥିଲା ଚଞ୍ଚରୀକ। ସେ ଅଳ୍ପ ସମୟ ମଧ୍ୟରେ ଜ୍ୟୋତିଷ-ଶାସ୍ତ୍ରରେ ଖୁବ୍ ପାରଙ୍ଗମ ହୋଇ ଯାଇଥିଲେ। ରାଣୀମାନେ ଦାସ ଦାସୀଙ୍କ ଜରିଆରେ ଚଞ୍ଚରୀକଙ୍କୁ ନିଭୃତରେ ସାକ୍ଷାତ କରୁଥିଲେ। ଚାଣକ୍ୟ ଜ୍ୟୋତିଷ ଶାସ୍ତ୍ର ଅଧ୍ୟୟନ କରି ଯାହା ସବୁ କହୁଥିଲେ ସେ କଥାଗୁଡ଼ିକ ସମସ୍ତଙ୍କ ମନକୁ ପାଉଥିଲା। ଏ ସଂସାରରେ ଯାହା ସବୁ ଘଟିବାର ଅଛି ସେ ସବୁ ଅନିତ୍ୟ ଏବଂ ନ ଘଟିବା ପର୍ଯ୍ୟନ୍ତ ସେ ଘଟଣା ସଂପର୍କରେ କିଛି ସ୍ଥିର ନିଶ୍ଚିତ କରି କୁହାଯାଇ ପାରିବ ନାହିଁ ବୋଲି ଜ୍ୟୋତିଷାଚାର୍ଯ୍ୟ ଚଞ୍ଚରୀକ ସମସ୍ତଙ୍କୁ କହୁଥିଲେ। ଗ୍ରହନକ୍ଷତ୍ରମାନଙ୍କ ଗତିବିଧିକୁ ଲକ୍ଷ୍ୟକରି 'ଅଘଟଣ ଘଟଣ ପଟିୟସି' ଉଦ୍ଦେଶ୍ୟକୁ ଚାଣକ୍ୟ (ଚଞ୍ଚରୀକ) ଭଲ ଭାବରେ ଜାଣି ପାରୁଥିଲେ। ତେଣୁ ମଣିଷ ମନର ଦୁର୍ବଳତାକୁ ଏବଂ ବିଶେଷକରି ରାଜଦରବାର ନାରୀମାନଙ୍କ ଭବିଷ୍ୟତ ଜାଣିବାର ନିଜ ଜ୍ଞାନ ବଳରେ ଭଲ ଭାବରେ ବୁଝାଇବା ସହିତ ରଜମହଲ ଅନ୍ତଃପୁରର ସମସ୍ତ ଗୋପନୀୟତାକୁ ସେ ଜାଣିପାରୁଥିଲେ। ଏବଂ ସେ ସବୁକୁ ଅତ୍ୟନ୍ତ ଗୋପନ ଭାବେ ମନେମନେ ବିଶ୍ଲେଷଣ କରୁଥିଲେ। ତେଣୁ ମଗଧର ରାଜବଂଶକୁ ସମ୍ପୂର୍ଣ୍ଣ ଭାବରେ ମୂଳୋତ୍ପାଟନକରିବା ପୂର୍ବରୁ ଚାଣକ୍ୟ ତାଙ୍କର ଗୁପ୍ତ ଯୋଜନା ଆରମ୍ଭ କରିସାରିଥିଲେ। ତାହାଥିଲା ତାଙ୍କର ଗୋପନ ଚାବି।

ଗୃହଯୁଦ୍ଧ ବାତାବରଣ ଯେତେବେଳେ ଘନେଇ ଅସିଲା ତାକୁ ଚାଣକ୍ୟ ଭଲଭାବରେ ଲକ୍ଷ୍ୟକଲେ। ମଗଧରୁ ସେଇ ମୁହୂର୍ତ୍ତରେ ଚାଣକ୍ୟ ଓ ଚଞ୍ଚରୀକ ଉଭାନ୍ ହୋଇଗଲେ। ଆଉ ସମସ୍ତଙ୍କଠାରୁ ସବୁଦିନପାଇଁ ଅତି ଗୋପନୀୟ ଭାବରେ ସେ ମଗଧରେ ଜୀବନଯାପନ କରିବାକୁ ଲାଗିଲେ। ଅସମ୍ଭବ ଧୀଶକ୍ତି। ସେହିଦିନଠାରୁ ମହାପଦ୍ମନନ୍ଦଙ୍କୁ ସଂବଶେ ନିର୍ମୂଳ କରିବାପାଇଁ ଯେଉଁ ପ୍ରାକାଶ୍ୟ ଯୁଦ୍ଧର ସଂଚାଳନ କରାଯିବ ତାର ମାନଚିତ୍ରକୁ ସେ ମାନସପଟ୍ଟରେ ନିର୍ମାଣ କରିସାରିଥିଲେ।

ସେଦିନ ଥିଲା ବସନ୍ତପଞ୍ଚମୀ। ସମଗ୍ର ମଗଧ ଥିଲା ଉତ୍ସବମୟ। ମହାପଦ୍ମନନ୍ଦଙ୍କର ମନ୍ତ୍ରୀ ରାକ୍ଷସ ସେତେବେଳେ ଶଯ୍ୟାଶାୟୀ। ସେଇ ମୁହୂର୍ତ୍ତ ଥିଲା ଚାଣକ୍ୟଙ୍କପାଇଁ ଅପୂର୍ବ ମୁହୂର୍ତ୍ତ ଯାହାକୁ ସେ ଏ ପର୍ଯ୍ୟନ୍ତ ପ୍ରତୀକ୍ଷା କରିଥିଲେ। ଚନ୍ଦ୍ରଗୁପ୍ତର ସୈନିକମାନେ ଯୁଦ୍ଧ ଆରମ୍ଭ କରିଦେଲେ। ଚାଣକ୍ୟ ଏହି ଯୁଦ୍ଧର ପ୍ରତ୍ୟକ୍ଷ ନେତୃତ୍ୱ ନେଉଥିଲେ। ମହାପଦ୍ମନନ୍ଦଙ୍କ ତରଫରୁ ରୋଗଶଯ୍ୟାରେ ମନ୍ତ୍ରୀ ରାକ୍ଷସ ଥାଇ ଯୁଦ୍ଧକୁ ନିୟନ୍ତ୍ରଣ କରୁଥିଲେ। ସମଗ୍ର ମଗଧ ରାଜତନ୍ତ୍ର ଓଲଟପାଲଟ ହୋଇଗଲା। ପ୍ରତିହିଂସାର କ୍ରୋଧରେ ବଶବର୍ତ୍ତୀ ଚାଣକ୍ୟ କାହାକୁ ବି ବାଦ୍ ଦେଲେନି। ମହାପଦ୍ମନନ୍ଦ ଆତ୍ମସମର୍ପଣ କଲେବି ମଧ ତାଙ୍କୁ ଚାଣକ୍ୟ ସ୍ୱହସ୍ତରେ ନିହତ କଲେ। ନିଜେ ଚନ୍ଦ୍ରଗୁପ୍ତ ମଧ ଗୁରୁଦେବଙ୍କ ଏହି ରୂପ ଦେଖି ଭୟଭୀତ ହୋଇପଡ଼ିଲେ। ଚାଣକ୍ୟ ଜାଣିଥିଲେ ଯେ, ଯୁଦ୍ଧରେ କୌଣସି ନୀତିନିୟମକୁ ଆଖିଆଗରେ ରଖି ପରାଜୟକୁ ବରଣ କରାଯାଇ ନ ପାରେ। ଚାଣକ୍ୟଙ୍କ ସଂକଳ୍ପ ପୂରଣ ହେଲା। କିନ୍ତୁ ତାଙ୍କର ଏହି କାର୍ଯ୍ୟକ୍ରମକୁ ସମଗ୍ର ବ୍ରାହ୍ମଣ ସମାଜ ଘୃଣା କଲେ। ଏ କଥା ଆଗରୁ କୁହାଯାଇଛି। ଚାଣକ୍ୟ ନିଜେ ବ୍ରାହ୍ମଣ ହୋଇବି କ୍ଷତ୍ରିୟର ଯେଉଁ କର୍ମକୁ ଧାରଣ କଲେ ତାହା ତାଙ୍କୁ ଅତି ଦୟନୀୟ ଭାବରେ ପଥଭ୍ରଷ୍ଟ କଲା। ଚାଣକ୍ୟ ନିଜେ ମଧ ଶାନ୍ତି ଲାଭ କରିପାରିଲେ ନାହିଁ। ଆଶ୍ଚର୍ଯ୍ୟର କଥା କୌଣସି ବ୍ରାହ୍ମଣ ପଣ୍ଡିତ ଚାଣକ୍ୟଙ୍କୁ ବ୍ରାହ୍ମଣ ବୋଲି ସ୍ୱୀକାର କଲାନାହିଁ। ଉତ୍ତରକାଶୀରେ ତାଙ୍କର ଏହି ଭଳି ଅବସ୍ଥା। ତେଣୁ ସେ ଜନସମାଜଠାରୁ ଦୂରେଇ ଯାଇ ଏକାନ୍ତରେ ରହିବାକୁ ଚାହିଁଲେ। ସେଥିପାଇଁ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ତାଙ୍କ ପାଇଁ ସମସ୍ତ ଆୟୋଜନ କଲେ। ବିଥିକା ସହିତ ପ୍ରୟାଗରେ ରହି କାମ ବିଜ୍ଞାନର ପ୍ରଣେତା ଚାଣକ୍ୟ ଯେଉଁ ବିଷୟବସ୍ତୁକୁ ଅବତାରଣ କଲେ ତାକୁ ମଧ ପଣ୍ଡିତ ସମାଜ ଗ୍ରହଣ କଲେ ନାହିଁ। ବୁଦ୍ଧିଜୀବୀ ପଣ୍ଡିତମାନେ ଏହି କାମବିଜ୍ଞାନର ତତ୍ତ୍ୱକୁ ନାରକୀୟ ତତ୍ତ୍ୱ କହି ଚାଣକ୍ୟଙ୍କର ବୁଦ୍ଧିକୁ ଅପଭ୍ରଂଶ ବୁଦ୍ଧି ବୋଲି କହିବାକୁ ଲାଗିଲେ। ଚାଣକ୍ୟ ଏ କାମ ବିଜ୍ଞାନର ନିଜେ ଲେଖକ ବୋଲି କୌଣସିଠାରେ ସ୍ୱୀକାର କଲେ ନାହିଁ। ବାତ୍ସାୟନ ଗୋତ୍ରର ଅଧିକାରୀ ଏହି ବ୍ରାହ୍ମଣ ଚାଣକ୍ୟ ବାତ୍ସାୟନ ମହର୍ଷି ତାଙ୍କ ଗ୍ରନ୍ଥର ଲେଖକ ବୋଲି କହିଲେ। ତେଣୁ ଆଜି ଯେଉଁମାନେ  ଗବେଷଣାରତ ବିଦ୍ୟାବିତ୍ ସେମାନେ ସ୍ୱୀକାର କରୁନାହାନ୍ତି ଯେ ଏହି କାମସୂତ୍ରକୁ ଚାଣକ୍ୟ ଲେଖିଥିଲେ। (ମୋ ଦ୍ୱାରା ଲିଖିତ ସଂସ୍କୃତ ଉପନ୍ୟାସ ଚାଣକ୍ୟ ଦ୍ରଷ୍ଟବ୍ୟ), ଚାଣକ୍ୟଙ୍କର ନୀତିଦର୍ପଣ ଉପରେ ପ୍ରଫେସର ମହାପାତ୍ର ନୀଳମଣି ସାହୁ ଯେଉଁ ସମୀକ୍ଷାଟି କରିଛନ୍ତି ସେ ସମୀକ୍ଷାରେ କେବଳ ତତ୍ତ୍ୱ ପରିବେଶିତ ହୋଇଛି। ନୀତିଦର୍ପଣର ପ୍ରତ୍ୟେକ ଶ୍ଳୋକ ସବୁଦିନ ପାଇଁ ଭାରତବର୍ଷରେ ଚାଣକ୍ୟଙ୍କର ସ୍ଥିତି ସଞ୍ଚାର କରିବ ଏଥିରେ ସନ୍ଦେହ ନାହିଁ।

ଚାଣକ୍ୟ ଯେତେବେଳେ  କୌଟିଲ୍ୟ-ଅର୍ଥଶାସ୍ତ୍ର, କୌଟିଲ୍ୟ-ରାଜନୀତି, ନୀତିଦର୍ପଣ ପ୍ରଭୃତି ପୁସ୍ତକ ରଚନା କରିଥିଲେ ସେତେବେଳେ ସେ ନିଷ୍ପତ୍ତି ନେଇଥିଲେ ଯେ, ତାଙ୍କ ଜୀବନର ଜ୍ଞାନ, ଅନୁଭୂତି ଏବଂ କୂଟନୀତି ସବୁ, ଜନସମାଜର କଲ୍ୟାଣରେ ଲାଗିବା ତାହାହିଁ ସେ କଲେ। ଏପରିକି ବିଥିକା ସହିତ ତାଙ୍କର ସମ୍ପର୍କକୁ 'କାମ-ବିଜ୍ଞାନ' ଗ୍ରନ୍ଥରେ ପରିଣତ କଲେ। ଯେଉଁ କୂଟବୁଦ୍ଧି ପ୍ରୟୋଗ କରି ସେ ନନ୍ଦବଂଶ ଧ୍ୱଂସ କଲେ ତାଙ୍କୁ ନେଇ ରାଜନୀତିର ସୂତ୍ର ରଚନା କଲେ। ବସ୍ତୁତଃ ପ୍ରୟୋଗ ରାଜନୀତିକୁ ଏଭଳି ସୂତ୍ର ଆକାରରେ ଲେଖିବାର ପୃଥିବୀରେ କୌଣସି ରାଜନୈତିକ ବ୍ୟକ୍ତିବିଶେଷଙ୍କ ନାମ ଆଉ ଉଲ୍ଲେଖ କରାଯାଇ ନପାରେ। କୂଟନୀତି ପ୍ରୟୋଗ କରି ରାଜନୀତିର କିପରି କିପରି କାର୍ଯ୍ୟସବୁ କରିବାକୁ ହେବ ସେସବୁ ଏହି ସୂତ୍ରମାନଙ୍କରେ ଲିପିବଦ୍ଧ ହୋଇ ରହିଛି। ଏହି ସୂତ୍ରଗୁଡ଼ିକୁ ଏବେବି ପଢ଼ିଲେ ଚାଣକ୍ୟଙ୍କର ଜ୍ଞାନ କେତେ ଦିଗନ୍ତ ବ୍ୟାପୀ ତାହା ବୁଝାଯାଇପାରେ। ଚାଣକ୍ୟଙ୍କର ରାଜନୀତି ପ୍ରୟୋଗାତ୍ମକ ବହିରେ ସୂତ୍ର ଲେଖି ସେଇ ସୂତ୍ରାନୁସାରେ ରାଜନୀତି ସମ୍ପାଦନ କରିବାପାଇଁ ପ୍ରତ୍ୟେକ ରାଜନୈତିକ ବ୍ୟକ୍ତିଙ୍କୁ ନିର୍ଦ୍ଦେଶ ଦେଲେ।

ତେଣୁ ଆଜି ଚାଣକ୍ୟଙ୍କର ନୀତିଦର୍ପଣକୁ ପ୍ରଫେସର ସାହୁ ଯେପରିଭାବରେ ନିଜ ପୁସ୍ତକରେ ଉପସ୍ଥାପନା କରିଛନ୍ତି ତାହା ନିଶ୍ଚିତ ଭାବରେ ଯୁଗପୋଯୋଗୀ। ଚାଣକ୍ୟଙ୍କର ନୀତି ପୁସ୍ତକ, ଆଚରଣ ଓ ଜ୍ଞାନର ପରିସୀମା ନିଶ୍ଚିତ ଭାବରେ ଯୁଗଯୁଗବ୍ୟାପୀ। ତେଣୁ ଚାଣକ୍ୟଙ୍କୁ ଜ୍ଞାନର ଭଣ୍ଡାର ବୋଲି କୁହାଯାଇପାରେ। ଯେତେବେଳେ ଆଲେକ୍‌ଜାଣ୍ଡାର୍ ଭାରତ ଆକ୍ରମଣ କରିବାକୁ ଆସିଲେ ସେତେବେଳେ ଅମ୍ବିନରେଶଙ୍କ ରାଜ୍ୟ ଆକ୍ରମଣକରିବା ପାଇଁ ସେ ଚିନ୍ତା କଲେ। ଚାଣକ୍ୟ, ଅମ୍ବିନରେଶଙ୍କୁ କହିଲେ, 'ସମୁଦ୍ର ତରଙ୍ଗକୁ ବନ୍ଦ କରିବାକୁ ଚେଷ୍ଟା କରନି। ଆଲେକ୍‌ଜାଣ୍ଡାର୍‌କୁ ବାଧା ଦିଅନି। ସେ ଭାରତରେ ରହିବେ ନାହିଁ। ଯୁଦ୍ଧ କରି ଫେରିଯିବେ। ତେଣୁ ତାଙ୍କ ସହିତ ସନ୍ଧିସ୍ଥାପନ କର।' ଠିକ୍ ସେଇଆ ହେଲା। ଆଲେକ୍‌ଜାଣ୍ଡାର ଆଉ ଅମ୍ବିନରେଶଙ୍କୁ ଆକ୍ରମଣ ନ କରି ଚାଲିଗଲେ। ଭବିଷ୍ୟତରେ କ'ଣ ହବାକୁ ଯାଉଛି ଏକଥାକୁ ଦେଖିପାରୁଥିବା ବ୍ୟକ୍ତିମାନଙ୍କୁ ମହାମତି କୁହାଯାଏ। ଚାଣକ୍ୟ ସେହି ସମୟର ଜଣେ କୃତବିଦ୍ୟ ପୁରୁଷ। ପରଧନର ଆବଶ୍ୟକତା ତାଙ୍କର ନଥିଲା। ଏତେ ସମ୍ପଦର ଅଧିକାରୀ ହୋଇ ମଧ ସେ ନିଜକୁ ଅତି ଦରିଦ୍ର ପରିବେଶରେ ରଖୁଥିଲେ। ସୁଖ, ସମ୍ପଦର ଆବଶ୍ୟକତା ତାଙ୍କର ନଥିଲା। ମେଘାସ୍ଥିନିସ୍ ତାଙ୍କ ପୁସ୍ତକରେ ଲେଖିଛନ୍ତି,  ସେ ଯେତେବେଳେ ଚାଣକ୍ୟଙ୍କୁ ଭେଟିଲେ ସେତେବେଳେ ଚାଣକ୍ୟ ଗୋଟିଏ ପ୍ରଦୀପ ଜାଳି କିଛି ଲେଖାଲେଖି କରୁଥିଲେ।

ସେହି ସବୁ ଲେଖା ରାଜ୍ୟର ଭଲମନ୍ଦ ବିଷୟରେ ପ୍ରଶାସନିକ ଦୃଷ୍ଟିରୁ ଲେଖାଯାଉଥିଲା। ଏଣୁ ମେଘାସ୍ଥିନିସ୍ ସହିତ ସେ ଯେତେବେଳେ ଆଲୋଚନାରେ ବ୍ୟାପୃତ ହେଲେ ସେତେବେଳେ ଆଉ ଗୋଟିଏ ପ୍ରଦୀପଜାଳି କଥାବାର୍ତ୍ତାର ଆରମ୍ଭ କଲେ, ମେଘାସ୍ଥିନିସ୍ ଜାଣିଲେ ଯେ ଯେହେତୁ ଚାଣକ୍ୟ ବ୍ୟକ୍ତିଗତ କଥା ହେବାକୁ ଆରମ୍ଭ କଲେ ତେଣୁ ନିଜଅର୍ଜିତ ଧନର ତେଲରେ ଦୀପକୁ ସେ ଜାଳିଲେ। ଏହା ଥିଲା ଚାଣକ୍ୟଙ୍କର ନିଜର ନୀତି ଓ ଆଦର୍ଶ। ସେହିଭଳି ବହୁତ ଘଟଣାବଳୀ ଚାଣକ୍ୟଙ୍କ ଜୀବନରେ ଆସିଛି। ଯେଉଁଥିରେ ସେ ନିଜର ବ୍ୟକ୍ତିଗତ ଜୀବନକୁ ସବୁଠାରୁ ଉର୍ଦ୍ଧ୍ୱରେ ରଖି ନିଜକୁ ଜଣେ ଦକ୍ଷପ୍ରଶାସକ ଭାବରେ ପ୍ରତିପାଦିତ କରିପାରିଥିଲେ। ଏବେ ମଧ୍ୟ ଚାଣକ୍ୟଙ୍କ ସଂପର୍କରେ ବହୁ କାହାଣୀ ଓ କିମ୍ବଦନ୍ତୀ ଶୁଣାଯାଏ।

ଏବଂ ଚାଣକ୍ୟ ଏବେ ମଧ୍ୟ ଜ୍ଞାନର ଶିଖର ଦେଶରେ ବ୍ୟବସ୍ଥିତ। ଚାଣକ୍ୟଙ୍କ ବିଷୟରେ ବହୁ ପୁସ୍ତକକୁ ବହୁ ବଡ଼ ବଡ଼ ଲେଖକ ଓ ଗବେଷକମାନେ ଲେଖିଛନ୍ତି। ସାହିତ୍ୟ, ଦର୍ଶନ, ରାଜନୀତି, ଗୀତା, ପୁରାଣ, ଉପନିଷଦ, ବେଦବେଦାନ୍ତ ସବୁଥିରେ ସେ ଉତ୍କର୍ଷତା ଲାଭ କରିଥିଲେ। କିନ୍ତୁ ନନ୍ଦବଂଶ ଧ୍ୱଂସ କରିବା ପରେ ତତ୍‌ଜନିତ ଅପକର୍ମ ପାଇଁ ସେ ସର୍ବଦା ବିମର୍ଷମନା ରହିଲେ। କିନ୍ତୁ ତଥାପି ସେ ବୁଝିଥିଲେ ଯେ, ମୋକ୍ଷପାଇଁ ଯାହା ଆବଶ୍ୟକ ତାହା ସେ ଆଉ ଲାଭ କରିପାରିବେ ନାହିଁ। ଉପସଂହାର ତ ଶେଷରେ ଲେଖିବା କିନ୍ତୁ ଏତେ ବଡ଼ 'ଚାଣକ୍ୟ' - ଯାହାକୁ ଏବେ ମଧ୍ୟ ଐତିହାସିକମାନେ କଳନା କରିପାରିନାହାନ୍ତି ସେଭଳି ଜଣେ ବ୍ୟକ୍ତି ପ୍ରୟାଗଠାରେ ଆଶ୍ରୟ ନେଲେ, କିନ୍ତୁ ତା'ପରେ କୁଆଡ଼େ ଗଲେ ଇତିହାସ ସେ ବିଷୟରେ ପଦେ ମଧ୍ୟ କହିନି। ଏ ଭଳି ବ୍ୟକ୍ତିତ୍ୱର ଶବାଧାର କେଉଁଠି ସଂସ୍କାର ହେଲା ସେ କଥା ମଧ୍ୟ ଇତିହାସର ନଜର ନାହିଁ। କିନ୍ତୁ ଚାଣକ୍ୟ ଏବେ ମଧ୍ୟ ସମସ୍ତଙ୍କ ମନରେ ଉଜ୍ଜୀବିତ ହୋଇ ରହିଛନ୍ତି।

**ଦିବ୍ୟସିଂହ ମିଶ୍ର**

୩(ସି)/୨୮୧
ସେକ୍ଟର-୯, ସି.ଡି.ଏ.
କଟକ

# ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|

| ବିଷୟ | ପୃଷ୍ଠା |
|---|---|

| ବିଷୟ | ପୃଷ୍ଠା |
|---|---|

# ୧. କିଏ ମେଦିନୀକୁ ଭାରାକ୍ରାନ୍ତ କରେ ?

ବେଳେବେଳେ ଆମ ମନରେ ପ୍ରଶ୍ନଉଠେ - ଆମର ଏହି ମେଦିନୀ ବା ପୃଥିବୀମାତା କାହିଁକି କେତେକ ସମୟରେ ଏମିତି ଉତ୍‌କ୍ଷିପ୍ତ ହୋଇଉଠନ୍ତି ? କାହିଁକି ବେଳେବେଳେ ଭୂମିକଂପ ହୋଇ ମେଦିନୀ ଫାଟିଯାଏ ଓ ତା' ଭିତରେ ଗୋଟିଏ ସମୃଦ୍ଧ ସହର ଗଳିପଡ଼େ ଓ କୁଆଡ଼େ ପାତାଳରେ ଅଦୃଶ୍ୟ ହୋଇଯାଏ ? କାହିଁକି ବେଳେବେଳେ ପ୍ରଶାନ୍ତ ମହାସାଗର ଉଚ୍ଛୁଳି ଉଠେ ? ଉତ୍‌କ୍ଷିପ୍ତ ହୋଇ କାହିଁକି ତା'ର ଜିହ୍ୱାସଦୃଶ ଭୟଙ୍କର ଲହରୀମାନେ କୂଳ ଲଂଘନ କରି ଗ୍ରାମ ଓ ନଗରମାନଙ୍କୁ ନିଜର ଅତଳ ଗର୍ଭକୁ ଟାଣିନିଏ ? କାହିଁକି ବେଳେବେଳେ ବନ୍ୟା ଓ ବାତ୍ୟାରେ ପୃଥିବୀ ଟଳମଳ ହୁଏ ? ମହାଶୂନ୍ୟରେ ଛିନ୍ନଛତର ହୋଇ ଉଡ଼ିଯାଏ ? କାହିଁକି ବେଳେବେଳେ ମଣିଷମାନେ ହିଂସା ଓ ଈର୍ଷାରେ ଜର୍ଜରିତ ହୋଇ ନିଜ ନିଜ ଭିତରେ ଓ ଦେଶ ଦେଶ ଭିତରେ ମହାଯୁଦ୍ଧ ଲଗାଇ ନିଜେ ମରନ୍ତି ଓ ଲକ୍ଷ ଲକ୍ଷ ଲୋକଙ୍କ ଜୀବନ ନାଶ କରନ୍ତି ? କାହିଁକି ବେଳେବେଳେ କୃଷିକ୍ଷେତ୍ରରେ ଶସ୍ୟସବୁ ନଷ୍ଟ ହୋଇଯାଏ ? ଦେଶରେ ଦୁର୍ଭିକ୍ଷ ପଡ଼େ ? ମହାମାରୀରେ ଲକ୍ଷ ଲକ୍ଷ ଲୋକ ମଶାମାଛିଙ୍କ ଭଳି ମରି ଶୁଅନ୍ତି ?

ପାଠକେ ! ବିଜ୍ଞାନୀମାନେ ଏସବୁର କାରଣ ବୈଜ୍ଞାନିକ ଦୃଷ୍ଟିରୁ ବୁଝାଇଥାନ୍ତି । ଭାଗ୍ୟବାଦୀମାନେ ଏସବୁ ଦୁର୍ବିପାକଗୁଡ଼ିକ ପୃଥିବୀର ଦୁର୍ଭାଗ୍ୟ ଯୋଗୁଁ ଘଟିଥାଏ ବୋଲି କହିଥାନ୍ତି । ଆଉ କେତେ ଜ୍ଞାନୀ ଲୋକ କହନ୍ତି, ପୃଥିବୀରେ ଲୋକ ସଂଖ୍ୟା ବଢ଼ିଗଲେ କି ପ୍ରାଣୀମାନଙ୍କ ସଂଖ୍ୟା ବଢ଼ିଗଲେ ପ୍ରକୃତିମାତା ପୃଥିବୀରେ ଏକ ସମତା ଓ ସନ୍ତୁଳନ ଆଣିବାପାଇଁ ଏପରି କରିଥାନ୍ତି ।

ମାତ୍ର ଆମର ଧର୍ମଶାସ୍ତ୍ରମାନେ କହନ୍ତି ଯେ, ପୃଥିବୀରେ ଧର୍ମଭାବ ଓ ଧର୍ମକାର୍ଯ୍ୟ କମିଗଲେ ଅଧର୍ମର ପ୍ରାବଲ୍ୟ ହୁଏ, ଏବଂ ପୃଥିବୀ ସେହି ଅଧର୍ମୀ ଲୋକଙ୍କ ଉତ୍‌ପୀଡ଼ନ ସହି ନ ପାରି ସେମାନଙ୍କ ପାପଦ୍ୱାରା ଭାରାକ୍ରାନ୍ତ ହେବାରୁ ଏସବୁ ମହାମାରୀ ଉପଦ୍ରବମାନ ଘଟିଥାଏ ।

ଆମର ଭକ୍ତକବି ଜଗନ୍ନାଥ ଦାସେ ଭାଗବତରେ ଲେଖିଛନ୍ତି, ଭଗବାନ ଏ ପୃଥିବୀରେ ଅବତାର ରୂପେ ଅବତରଣ କରିବାର କାରଣ ହେଲା, ଏ ପୃଥିବୀ ଉପରେ ମଣିଷମାନେ ଦିବ୍ୟ ମଣିଷ ନ ହୋଇ ଅସୁର, ରାକ୍ଷସ ଓ ପିଶାଚ ପ୍ରକୃତିର ହୋଇଯାନ୍ତି

ଏବଂ ସେମାନଙ୍କ ଅତ୍ୟାଚାରରେ ପୃଥିବୀର ଆତ୍ମା ପୀଡ଼ା ପାଏ। ପୃଥିବୀ ସେମାନଙ୍କ ପାପଭାରା ସହି ନ ପାରି ଟଳମଟଳ ହୁଏ। ଭାଗବତର ପଦଟି ହେଲା,

"ଅସୁର ବଳ ପାଦ ଭାରେ । ମହୀ କମ୍ପିଲା ଥରହରେ ॥"

ସେଥିପାଇଁ ପୃଥିବୀ ନିରୀହ ଗାଇଟିଏ ହୋଇ ଆକାଶକୁ ଚାହିଁ କରୁଣ ସ୍ୱରରେ କ୍ରନ୍ଦନ କଲା। ଦେବତାମାନେ ସମୁଦ୍ରରେ ବାସୁକୀ ସର୍ପ ଉପରେ ଶାୟିତ ଥିବା ଭଗବାନ୍ ବିଷ୍ଣୁଙ୍କୁ ପୃଥିବୀପାଇଁ ପ୍ରାର୍ଥନା କରିବାରୁ ଭଗବାନ୍ ଶ୍ରୀକୃଷ୍ଣ ଅବତାର ହୋଇ ଅସୁରମାନଙ୍କୁ ନିଧନ କଲେ। ପୃଥିବୀ ଭାରାଶୂନ୍ୟ ହେଲା। ପ୍ରାଣୀମାନେ ସୁଖଶାନ୍ତିରେ ରହିଲେ।

ଭାଗବତର ବାଣୀ ନିଶ୍ଚୟ ସତ୍ୟ ଅଟେ। ଯୁଗ ଯୁଗ ଧରି ଏପରି ଘଟଣା ସେହି କାରଣରୁ ପୃଥିବୀରେ ବାରଂବାର ସବୁ ସ୍ଥାନରେ ଘଟିଆସୁଛି। ପୃଥିବୀରେ ମଣିଷମାନଙ୍କ ସଂଖ୍ୟା ବଢ଼ି ବଢ଼ି ଚାଲିଛି। ଅନ୍ୟ ପ୍ରାଣୀଙ୍କ ସଂଖ୍ୟା କମି କମି ଚାଲିଛି। କେତେକ ପ୍ରାଣୀ ମଧ୍ୟ ବିଲୁପ୍ତ ହୋଇଗଲେଣି। ମାତ୍ର ଏହି କ୍ରମବର୍ଦ୍ଧମାନ ମନୁଷ୍ୟଜାତି ଭିତରେ ସମସ୍ତେ କ'ଣ ସତରେ ମଣିଷ ? ନା। ଜ୍ଞାନୀ ଓ ସାଧୁସନ୍ଥମାନେ କହନ୍ତି, ସବୁ ମଣିଷ ଭିତରେ ଦେବ ଅଂଶ ଅଛି। ଅସୁର ଅଂଶ ଅଛି। ମାତ୍ର ଯେତେବେଳେ ମଣିଷଙ୍କ ଭିତରେ ଅସୁର ଅଂଶ ବଢ଼ିଯାଏ, ଅର୍ଥାତ୍ ଅସୁର ସ୍ୱଭାବ ବଢ଼ିଯାଏ ଓ ଦେବସ୍ୱଭାବ ଲୋପ ହୋଇଯାଏ, ସେତେବେଳେ ଏଇ ତଥାକଥିତ ମଣିଷମାନେ ଅସୁର, ରାକ୍ଷସ ଓ ପିଶାଚ ପାଲଟି ଯା'ନ୍ତି ଏବଂ ସେମାନଙ୍କ ପାଦଭାରାରେ ଓ ଆସୁରିକ ପୈଶାଚିକ କାଣ୍ଡକାରଖାନାରେ ଆମର ଏ ମେଦିନୀ ଭାରାକ୍ରାନ୍ତ ହୋଇ ଥରିଉଠେ; ଏବଂ ନାନା ଉତ୍ପାତ ସୃଷ୍ଟି ହୁଏ, ଯାହା ବର୍ତ୍ତମାନ ମଧ୍ୟ ଘଟୁଛି।

ପାଠକେ ! ଆମର ମହାପ୍ରାଜ୍ଞ ଚାଣକ୍ୟ କ'ଣ କହୁଛନ୍ତି ଶୁଣନ୍ତୁ। ତାଙ୍କ ଶ୍ଳୋକଟି ହେଲା :

**ମାଂସଭକ୍ଷ୍ୟୈଃ, ସୁରାପାନୈର୍ମୂର୍ଖୈଷ୍ଣାକ୍ଷରବର୍ଜ୍ଜିତୈଃ।**
**ପଶୁଭିଃ ପୁରୁଷାକାରୈର୍ଭାଽଽରାକ୍ରାନ୍ତା ଚ ମେଦିନୀ ॥ (୮/୨୧)**

ଏହାର ଅର୍ଥ ହେଲା, ମାଂସଭକ୍ଷୀ ଓ ମଦ୍ୟପାୟୀ ମଣିଷମାନଙ୍କଦ୍ୱାରା ଏବଂ ମୂର୍ଖ, ନିରକ୍ଷର, ଅଜ୍ଞାନ ମଣିଷରୂପୀ ପଶୁମାନଙ୍କ ପଦପାତରେ ଏ ମେଦିନୀ ଭାରାକ୍ରାନ୍ତ ହୋଇ ଅତ୍ୟନ୍ତ କଷ୍ଟ ପାଏ।

ପାଠକେ ! ଚାଣକ୍ୟ ପଣ୍ଡିତଙ୍କର ଏହି ଶ୍ଳୋକର ଆକ୍ଷରିକ ଅର୍ଥ ନ ବୁଝି ଆମେ ତା'ର ବ୍ୟାପକ ଅର୍ଥ ବୁଝିବା। ମଦ୍ୟପାନ ସୃଷ୍ଟି ଆରମ୍ଭରୁ ମଣିଷମାନେ କରି ଆସିଛନ୍ତି। ରାମାୟଣ, ମହାଭାରତରେ ବହୁଶିଷ୍ଟ ଓ ବିଶିଷ୍ଟ ଚରିତ୍ରମାନେ ମାଂସ ଭକ୍ଷଣ କରିଛନ୍ତି

ଓ ମଦ୍ୟପାନ କରିଛନ୍ତି। କିନ୍ତୁ ସେମାନଙ୍କଦ୍ୱାରା ପୃଥିବୀ ଭାରାକ୍ରାନ୍ତ ହୋଇ ନାହିଁ। ପୃଥିବୀ ଭାରାକ୍ରାନ୍ତ ହୁଏ - ଅସୁର, ପିଶାଚ, ଅଜ୍ଞାନ, ହିଂସ୍ରସ୍ୱଭାବ ଓ ପ୍ରମତ୍ତ ମଣିଷମାନଙ୍କଦ୍ୱାରା। ସେମାନଙ୍କର ଭଲମନ୍ଦ ଜ୍ଞାନ ନ ଥାଏ। ମନ ଓ ପ୍ରାଣରେ ସଙ୍ଗତି ନ ଥାଏ। ସେମାନଙ୍କର କିଛି ସଦାସଦ ଜ୍ଞାନ ବି ନ ଥାଏ। ସେମାନେ ସ୍ୱଭାବରେ ହିଂସ୍ର, ପେଟୁ, ଲୋଭୀ, କ୍ରୋଧୀ, ହିତାହିତ ବୋଧରହିତ ପଶୁ ବା ଜନ୍ତୁଠାରୁ ଜଘନ୍ୟ ମଣିଷ। ସେମାନେ ମାଂସପ୍ରତି ଲୋଭାନ୍ୱିତ ହୋଇ ନିରୀହ ପ୍ରାଣୀମାନଙ୍କୁ ସର୍ବଦା ମାରି ଖାଉଥାନ୍ତି। ଏପରିକି ସେମାନଙ୍କ ଉପାସ୍ୟା ଦେବୀଙ୍କଠାରେ ବଳିପକାଇ ତାକୁ ପ୍ରସାଦରୂପେ ଖା'ନ୍ତି। ଏ ଲୋକମାନେ ରକ୍ତମୁଖା ଦାନବସଦୃଶ ବଂଚୁଥାନ୍ତି। ସେହିପରି ଦିବାରାତ୍ର ମଦ୍ୟପାନ କରି ପ୍ରମତ୍ତ ହୋଇ ସେଇ ମଦମତ୍ତ ମଣିଷମାନେ ନାନାଦି କୁକାର୍ଯ୍ୟ କରି ନିରୀହ ନରନାରୀଙ୍କୁ ବହୁ ପୀଡ଼ା ଦେଉଥାନ୍ତି। ଭଗବାନ୍ ଶ୍ରୀକୃଷ୍ଣଙ୍କ ଅଧମ ବଂଶଧରମାନେ ଅଜ୍ଞାନ ଥିଲେ ଓ ମଦ୍ୟମାଂସ ଭକ୍ଷଣ କରି ଲୋକଙ୍କ ଉପରେ ବହୁ ଅତ୍ୟାଚାର କଲେ। ସାଧୁସନ୍ଥମାନଙ୍କୁ ଅପମାନ କଲେ। ତେଣୁ ସେମାନେ ପୃଥିବୀର ଭାରା ସ୍ୱରୂପ ହେଲେ। ଏହା ଦେଖି ଭଗବାନ୍ ଶ୍ରୀକୃଷ୍ଣ ତାଙ୍କ ବଂଶ ଲୋପପାଇଁ ଉପାୟ କରିଦେଲେ ଓ ଯଦୁବଂଶ ଧ୍ୱଂସ ହେଲା।



## ୨. କିଏ ଚାହେଁ ମୁକ୍ତି ? କିଏ ନରାଧମା ?

ପାଠକେ ! ମୁଁ ମହାମତି ଚାଣକ୍ୟଙ୍କର ଦୁଇଟି ଶ୍ଳୋକର ମର୍ମକଥା ଅପଣଙ୍କୁ କହୁଛି। ଦୟାକରି ପଢ଼ନ୍ତୁ।

ପ୍ରଥମ ଶ୍ଳୋକଟି ହେଲା :

**ମୁକ୍ତିମିଛସି ଚେତ୍ତାତ ବିଷୟାନ୍ ବିଷବତ୍ ତ୍ୟଜ।**
**କ୍ଷମାଽର୍ଜବଂ ଦୟା ଶୌଚଂ ସତ୍ୟଂ ପୀୟୂଷବଦ୍ ପିବ ॥** (୯/୧)

ଏ ଶ୍ଳୋକଟିର ଅର୍ଥ ହେଲା, ଯଦି ତୁମେ ସଂସାରରୁ ମୁକ୍ତି ଚାହଁ ତେବେ ସବୁପ୍ରକାର ବିଷୟବାସନାକୁ ବିଷବତ୍ ତ୍ୟାଗ କର। ସଂସାରରେ ଆମେ ସବୁ ସର୍ବଦା ନାନାଦି ବିଷୟ କାମନା କରୁ। ଭଲ ଖାଇବାକୁ ଇଚ୍ଛା, ଭଲ ପିନ୍ଧିବାକୁ ଇଚ୍ଛା, ସବୁ ଇନ୍ଦ୍ରିୟମାନଙ୍କୁ ସନ୍ତୁଷ୍ଟ କରିବାକୁ ଇଚ୍ଛା, ଧନୀ ହେବାକୁ ଇଚ୍ଛା, କ୍ଷମତା ଅଧିକାରୀ ହେବାକୁ ଇଚ୍ଛା, ଧନ, ଜନ, ଗୋପ, ଲକ୍ଷ୍ମୀ ସବୁ ପାଇବା ଲାଗି ଆମେ ସର୍ବଦା

ବ୍ୟାକୁଳ ହେଉଥାଉ; ଏବଂ ସେ ସବୁ ପିଛା ପଡ଼ିଥାଉ। ତା'ମାନେ ଆମେ ଆମର ଉପଭୋଗ୍ୟ ବିଷୟପ୍ରତି ସର୍ବଦା କାମନାସକ୍ତ ରହିଥାଉ। ଆମର ମନପ୍ରାଣ ସେଇ ସବୁ ପାଖେ ସର୍ବଦା ବନ୍ଧା ପଡ଼ିଥାଏ; ଏବଂ ସାରାଜୀବନ ଆମେ ସେଇସବୁଥିରେ ଘାଣ୍ଟି ହେଉଥାଉ। ଆମେ ଆଉ ଭଗବାନ୍‌ଙ୍କୁ ଚାହୁଁ ନାହିଁ। ଆଉ କାହାକୁ ଭଲ ପାଉନାହିଁ। ପୃଥିବୀର ସମସ୍ତଙ୍କପ୍ରତି ଓ ସର୍ବ ପ୍ରାଣୀଙ୍କପ୍ରତି ଆମର ଯେ କିଛି କର୍ତ୍ତବ୍ୟ ଅଛି, ସେକଥା ଆମେ ଭୁଲିଯାଉ। କେବଳ ଆମରି କାମନା ବାସନା ପାଖେ ଆମେ ବନ୍ଧା ପଡ଼ିଥାଉ।

ସେଥିପାଇଁ ଚାଣକ୍ୟ ମହାଶୟ କହୁଛନ୍ତି, "ଆରେ ମୂଢ଼ ମାନବ! ତୁ ତ ତୋ'ର କାମନାବାସନାରେ ବନ୍ଧା ପଡ଼ିଛୁ। ତୁ କିପରି ମୁକ୍ତି ପାଇବୁ? ତୋ' ମନରୁ କାମନାବାସନାଗୁଡ଼ାକୁ ତଡ଼ି ଦେ। ସେଗୁଡ଼ିକୁ ବିଷ ବୋଲି ଭାବ। ଏ ସଂସାରରେ କୋଉ କଥା ପ୍ରତି ଲୋଭ କରନା। ତା'ହେଲେ ତୋ'ର ମୁକ୍ତି ବା ମୋକ୍ଷର ପଥ ସୁଗମ ହୋଇଯିବ।"

ଚାଣକ୍ୟଙ୍କର ଅନ୍ୟ ଶ୍ଳୋକଟିକୁ ଏବେ ଆମେ ବିଶ୍ଳେଷଣ କରିବା। ଚାଣକ୍ୟ ପଣ୍ଡିତେ ନରମାନଙ୍କ ମଧ୍ୟରେ କେଉଁମାନେ "ନରାଧମ" ସେଇ ବିଷୟ ନିମ୍ନସ୍ଥ ଶ୍ଳୋକରେ କହୁଛନ୍ତି।

ଶ୍ଳୋକଟି ହେଲା :

**ପରସ୍ପରସ୍ୟ ମର୍ମାଣି ଯେ ଭାଷନ୍ତେ ନରାଧମାଃ।**
**ତେ ଏବ ବିଲୟଂ ଯାନ୍ତି ବଲ୍ମୀକୋଦରସର୍ପବତ୍ ॥ (୯/୨)**

ଏହାର ଅର୍ଥ ହେଲା, ଯେଉଁ ବ୍ୟକ୍ତିମାନେ ଏକତ୍ର ରହିଥାନ୍ତି ଏବଂ ବିଭିନ୍ନ କାର୍ଯ୍ୟରେ ରତ ଥାନ୍ତି; କିମ୍ବା ଗୋଟିଏ କର୍ମରେ ରତଥାନ୍ତି, ସେମାନେ ଯଦି ପରସ୍ପରର ମର୍ମକଥା ଖୋଲିଦିଅନ୍ତି ବା ପଦାରେ ପ୍ରକାଶ କରିଦିଅନ୍ତି, ତେବେ ସେମାନେ ନରାଧମ ଅଟନ୍ତି। ଏହି ଅଧମ ମଣିଷମାନେ ଉଇହୁଙ୍କା ଭିତରେ ପଶି ନଷ୍ଟ ହେଲା ପରି, ନିଜ ଭିତରେ ମରାମରି ହୋଇ ନଷ୍ଟ ହୁଅନ୍ତି।

ଏହି ଶ୍ଳୋକର ମର୍ମାର୍ଥ ହେଲା, ଯେଉଁମାନେ ଏକତ୍ର ରହିଛ ସେମାନେ ପରସ୍ପରର ଦୋଷ-ଦୁର୍ବଳତା ଜାଣିଲେ ସୁଦ୍ଧା ବାହାରେ କେବେ ପ୍ରକାଶ କରିବ ନାହିଁ। ଏକଥା କହିବାର ଉଦ୍ଦେଶ୍ୟ ହେଲା, ପ୍ରତି ମଣିଷର ପ୍ରକୃତିରେ ଓ କର୍ମରେ କିଛି ଦୋଷ-ଦୁର୍ବଳତା ଥାଏ। ଆମ ଭିତରେ ମଧ୍ୟ କିଛି ଦୋଷ-ଦୁର୍ବଳତା ନାହିଁ ବୋଲି କହିହେବନି। କିନ୍ତୁ ତା'ବୋଲି ଆମେ ଅନ୍ୟର ଦୋଷ-ଦୁର୍ବଳତାକୁ ବାହାରେ ପ୍ରକାଶ କରିବା ଉଚିତ

ନୁହେଁ। କୌଣସି ପରିବାରରେ ବା କୌଣସି ଅନୁଷ୍ଠାନରେ ଏକାଠି ମିଶି କରି ରହିବାକୁ ହୁଏ ଓ କର୍ମ କରିବାକୁ ହୁଏ। ସେପରିସ୍ଥଳେ ଜଣେ ଯଦି ଅନ୍ୟର ଗୋଇ ଖୋଲେ ବା ଗୋପନ କଥାକୁ ବାହରେ ପ୍ରକାଶ କରିଦିଏ, ତେବେ ପରସ୍ପର ମଧ୍ୟରେ ଘୋର ଅବିଶ୍ୱାସ ଓ କଳହ ଜାତ ହୁଏ, ଏବଂ ଜଣେ ଅନ୍ୟର ବିନଷ୍ଟିର କାରଣ ହୋଇଥାଏ। ସେପରିସ୍ଥଳେ ପରିବାର ଭାଙ୍ଗିଯାଏ ଏବଂ ଅନୁଷ୍ଠାନଟି ମଧ୍ୟ ଭାଙ୍ଗିଯାଏ।

ତେଣୁ ମହାମତି ଚାଣକ୍ୟ କହୁଛନ୍ତି, ବୁଦ୍ଧିମାନ୍ ଲୋକମାନେ ଏକତ୍ର ରହିଥିବା ବେଳେ କେହି କାହାର ମର୍ମକଥା ପଦାରେ ପ୍ରକାଶ କରିବା ଉଚିତ ନୁହେଁ।



## ୩. ନଷ୍ଟ ଜୀବନ କାହାର ?

ପରମେଶ୍ୱରଙ୍କ ସୃଷ୍ଟିପଛରେ ଏକ ମହତ କାରଣ ଅଛି। ପୃଥିବୀରେ ଯାହା କିଛି ସୃଷ୍ଟି ହୋଇଛି, ସେ ସବୁର ପୃଥିବୀପାଇଁ ଉପାଦେୟତା ଅଛି। ଏପରିକି ଗୋଟାଏ ଅସ୍ପା ଗନ୍ଧିଆ ପୋକର ସୃଷ୍ଟିପଛରେ ବି ଭଗବାନ୍‌ଙ୍କର ଏକ ଉଦ୍ଦେଶ୍ୟ ରହିଛି। ପଶୁ, ପକ୍ଷୀ, କୀଟପତଙ୍ଗ, ନଦୀ, ନାଳ, ସମୁଦ୍ର, ଅରଣ୍ୟ, ପାହାଡ଼, ପର୍ବତ, ଜଳାଶୟ, ଚନ୍ଦ୍ର, ସୂର୍ଯ୍ୟ, ଆକାଶ, ମାଟି, ପାଣି, ପବନ, ଅଗ୍ନି – ଏସବୁକିଛି ଏକାଠି ମିଶି ନିଜନିଜର ଗୁଣ ପ୍ରକାଶ କରି ଏ ସୃଷ୍ଟିକୁ ରକ୍ଷା କରୁଛନ୍ତି, ଏବଂ ସ୍ୱୟଂ ପରମେଶ୍ୱର ସେଇମାନଙ୍କ ଭିତରେ ନିଜକୁ ପ୍ରକାଶ କରୁଛନ୍ତି। ସମସ୍ତଙ୍କ ଭିତରେ ପ୍ରକୃତିଦେବୀ ମଣିଷକୁ ଅଗ୍ରାଧିକାର ଦେଇଛନ୍ତି। କାରଣ ମନୁଷ୍ୟ ଭିତରେ ଯେଉଁ ଅନ୍ତରାତ୍ମା ଅଛନ୍ତି, ସେ ସେଇ ମଣିଷ ଚିନ୍ତା ଓ କାର୍ଯ୍ୟ ଭିତରେ ନିଜକୁ ପ୍ରକାଶ କରୁଥାନ୍ତି। କିନ୍ତୁ ମଣିଷ ଗୋଟିଏ ନିର୍ଦ୍ଦିଷ୍ଟ ଗୁଣ ଧରି ଜନ୍ମି ନାହିଁ। ମଣିଷ ମଧ୍ୟ ଅନ୍ୟ ପ୍ରାଣୀଙ୍କ ଭଳି ଜାତିବାଚକ ନୁହେଁ।

ମଣିଷ ଭିତରେ ପଶୁଗୁଣ ଅଛି, ଜନ୍ତୁଗୁଣ ଅଛି, ଅସୁର, ପିଶାଚଙ୍କ ଗୁଣ ଅଛି। ଏବଂ ଦିବ୍ୟଗୁଣ ବା ସତ୍ତ୍ୱଗୁଣ ବି ରହିଛି। ଯେଉଁ ମଣିଷ ତା' ଭିତରେ ନିହିତ ଥିବା ଦିବ୍ୟଗୁଣକୁ ପ୍ରକାଶ କରେ, ସେ ଜୀବନରେ ଉନ୍ନତି ଲାଭ କରେ; ଏବଂ ଯେଉଁ ମଣିଷ ନିଜ ଭିତରର ପାଶବିକ ଓ ଆସୁରିକ ଗୁଣଗୁଡ଼ିକ ପ୍ରକାଶ କରେ ତା'ର ମାନୁଷୀ ଜୀବନ ନଷ୍ଟ ହୁଏ।

ମହାମତି ଚାଣକ୍ୟ ଗୋଟିଏ ଶ୍ଳୋକରେ ନିଚ୍ଚ ମଣିଷର କଥା କହିଛନ୍ତି। ଶ୍ଳୋକଟି ହେଲା –

**ଅସନ୍ତୁଷ୍ଟାଃ ଦ୍ୱିଜା ନଷ୍ଟାଃ ସନ୍ତୁଷ୍ଟାଶ୍ଚ ମହୀଭୃତଃ।**
**ସଲଜ୍ଜା-ଗଣିକା-ନଷ୍ଟା ନିର୍ଲଜ୍ଜାଶ୍ଚ କୁଳାଙ୍ଗନା ॥ (୮/୧୮)**

ଏହି ଶ୍ଳୋକଟିର ଅର୍ଥ ହେଲା, ଅସନ୍ତୁଷ୍ଟ ବ୍ରାହ୍ମଣ ନଷ୍ଟ ହୋଇଯାଏ। ଦେଶର ରାଜା ଯଦି ସର୍ବଦା ସନ୍ତୋଷରେ ଥାଆନ୍ତି ସେ ବି ନଷ୍ଟ ହୋଇଯାନ୍ତି। ଗଣିକା ବା ବେଶ୍ୟା ଯଦି ଲଜ୍ଜାଶୀଳା ହୁଏ, ତେବେ ସେ ନଷ୍ଟ ହୋଇଯାଏ। କୁଳବଧୂମାନେ ଯଦି ନିର୍ଲଜ୍ଜା ହୁଅନ୍ତି ତେବେ ସେମାନେ ମଧ୍ୟ ନଷ୍ଟ ହୋଇଯାନ୍ତି।

ପାଠକେ ! ଚାଣକ୍ୟ ମହାଶୟ ଯାହା କହୁଛନ୍ତି, ତାହା ଅକ୍ଷରେ ଅକ୍ଷରେ ସତ। 'ବ୍ରାହ୍ମଣ' ଶବ୍ଦର ଅର୍ଥ ହେଲା, ଯେଉଁ ବ୍ୟକ୍ତି ସର୍ବଦା ଶାସ୍ତ୍ର ଅଧ୍ୟୟନ ଓ ଅଧ୍ୟାପନା କରନ୍ତି - ଆତ୍ମା ଓ ବ୍ରହ୍ମଙ୍କୁ ଜାଣିବା ଲାଗି, ଉପଲବ୍ଧ କରିବା ଲାଗି ସର୍ବଦା ଧ୍ୟାନ, ତପ, ଜପ ଓ ଯଜ୍ଞରେ ନିଯୁକ୍ତ ଥାନ୍ତି, ଯାହାଙ୍କର କିଛିପ୍ରତି ଲୋଭ ନ ଥାଏ, କାହାପ୍ରତି ହିଂସା କି ବିଦ୍ୱେଷ ନ ଥାଏ; ଏବଂ ଯେ ସର୍ବଦା ଜଗତର ମଙ୍ଗଳ କାମନା କରୁଥାଏ ଓ ନିଜେ ନିଜର ଆତ୍ମସୁଖରେ ଭଗବାନ୍‌ଙ୍କୁ ନେଇ ସର୍ବଦା ସୁଖ ସନ୍ତୋଷରେ ଥାଏ, ସେ ହିଁ ପ୍ରକୃତ ବ୍ରାହ୍ମଣ ପଦବାଚ୍ୟ। ମାତ୍ର ଯେଉଁ ବ୍ରାହ୍ମଣର ଏଇ ଗୁଣତକ ନ ଥାଏ, ଯେ ସର୍ବଦା ସବୁ କଥାରେ ଅସନ୍ତୁଷ୍ଟ ହେଉଥାଏ, ସେ ବ୍ରାହ୍ମଣ ନଷ୍ଟ ହେଲା ବୋଲି ଜାଣିବ। କାରଣ, ଅସନ୍ତୋଷ ହିଁ ବ୍ରାହ୍ମଣତ୍ୱକୁ ନଷ୍ଟ କରେ।

ସେହିପରି ଗୋଟିଏ ରାଜ୍ୟର ରାଜା ବା ଶାସକ ଯଦି ମନେ ମନେ ସନ୍ତୋଷରେ ଥାନ୍ତି, ସେ ବି ନଷ୍ଟ ହୁଅନ୍ତି। କାରଣ ପ୍ରକୃତରେ ପ୍ରଜାପାଳିତ ରାଜା କେବେ ବିଳାସ ବ୍ୟସନରେ ସୁଖ ସନ୍ତୋଷରେ ନ ଥାନ୍ତି। ସେ ସର୍ବଦା ତାଙ୍କର ପ୍ରଜାମାନଙ୍କର ସୁଖପାଇଁ ଓ ସେମାନଙ୍କର ଦୁଃଖକଷ୍ଟ ଲାଘବ କରିବାପାଇଁ ଚିନ୍ତିତ ଓ ଚେଷ୍ଟିତ ଥାନ୍ତି। ଆଉ ମଧ୍ୟ ରାଜା ବା ଶାସକ ସର୍ବଦା ନିଜ ରାଜ୍ୟକୁ ଶତ୍ରୁମାନଙ୍କ କବଳରୁ ରକ୍ଷା କରିବାରେ ଚେଷ୍ଟିତ ଥାନ୍ତି। ତେଣୁ ତାଙ୍କ ଭିତରେ ଶାନ୍ତି, ସୁଖ, ସନ୍ତୋଷ ନ ଥାଏ। ମାତ୍ର ଯେଉଁରାଜା ବା ଶାସକ ରାଜ୍ୟ ବା ପ୍ରଜାଙ୍କ ମଙ୍ଗଳ କଥା ଚିନ୍ତା ନ କରି କେବଳ, ନିଜ ସୁଖ, ଶାନ୍ତି, ବିଳସବ୍ୟସନକୁ ନେଇ ସନ୍ତୁଷ୍ଟ ଥାଏ, ସେ ରାଜା ଅଚିରେ ନଷ୍ଟ ହୋଇଯାନ୍ତି ଓ ତାଙ୍କ ରାଜ୍ୟ ମଧ୍ୟ ନଷ୍ଟଭ୍ରଷ୍ଟ ହୋଇଯାଏ।

ସେହିପରି ଯେଉଁମାନେ ବେଶ୍ୟା, ଗଣିକା ବା ବାରବନିତା, ସେମାନେ ଯଦି ଲଜ୍ଜାଶୀଳା ହୁଅନ୍ତି, ତେବେ ସେମାନେ ରସିକମାନଙ୍କ ମନୋରଂଜନ କରିପାରନ୍ତି ନାହିଁ। ଗଣିକାମାନଙ୍କୁ ଲଜ୍ୟାହୀନ ହେବାକୁ ପଡ଼େ। କିନ୍ତୁ କୁଳବଧୂମାନଙ୍କ ବ୍ୟବହାରରେ କିଂଚିତ୍ ଲଜ୍ଜା ପ୍ରକାଶ କରିବାକୁ ପଡ଼େ। କାରଣ କୁଳ ବା ବଂଶର ମର୍ଯାଦା ରକ୍ଷା

କରିବା କୁଳବଧୂର ପ୍ରଧାନ କର୍ତ୍ତବ୍ୟ। ସାମାନ୍ୟ ଲଜ୍ଜା କୁଳବଧୂଙ୍କଠାରେ ନ ରଖିଲେ ସେ ନିଜେ ନଷ୍ଟ ହୁଅନ୍ତି ଓ ସେ କୁଳ ମଧ୍ୟ ନଷ୍ଟ ହୁଏ।

ପାଠକେ ! ଏଇ କେତୋଟି ଉଦାହରଣରୁ ଆପଣ ନିଶ୍ଚୟ ବୁଝିପାରୁଥିବେ - ମହାପ୍ରାଜ୍ଞ ଚାଣକ୍ୟଙ୍କର ନୈତିକ ଜ୍ଞାନ ଯେପରି ବିଶାଳ ଥିଲା - ବ୍ୟାବହାରିକ ଜ୍ଞାନ ମଧ୍ୟ ସେପରି ବିଶାଳ ଥିଲା। 'ସନ୍ତୋଷ' ବ୍ରାହ୍ମଣପାଇଁ ଏକ ଗୁଣ। ମାତ୍ର ରାଜାଙ୍କପାଇଁ ଏକ ଦୁର୍ଗୁଣ। ସେହିପରି ଲଜ୍ଜାବୋଧ କୁଳବଧୂପାଇଁ ଏକ ଗୁଣ। ମାତ୍ର ବେଶ୍ୟା ବା ଗଣିକାପାଇଁ ଏକ ଖୁଣ। ଏଥିରୁ ଜଣାପଡ଼େ କୌଣସି ଗୁଣ ବା ଦୁର୍ଗୁଣ ସବୁ ମଣିଷଙ୍କପାଇଁ ସମାନ ନୁହଁ। କାହା ପାଖେ ଗୁଣଟିଏ ଦୁର୍ଗୁଣ ହୋଇଯାଏ ଏବଂ ଆଉ କାହା ପାଖେ ଦୁର୍ଗୁଣଟିଏ ମଧ୍ୟ ଗୁଣ ହୋଇଯାଏ।



# ୪. ବିଦ୍ୱାନ୍ ବ୍ୟକ୍ତି ହିଁ ପୂଜନୀୟ ...

ମଣିଷ କେତେବେଳେ ଓ କିପରି ମନୁଷ୍ୟତ୍ୱର ବିକାଶ କରେ ? କେବଳ ମଣିଷଠାରୁ ଜନ୍ମ ହୋଇଗଲେ ଜଣେ ଯଥାର୍ଥ ମଣିଷ ହୋଇପାରେନା। ମଣିଷ ଭଳି ଚେହେରା ଥିଲେ ବି ଜଣେ ନିଜକୁ ମଣିଷ ବୋଲି ଦାବି କରିପାରିବ ନାହିଁ। ଅନ୍ୟ ପ୍ରାଣୀମାନେ ଜନ୍ମରୁ ଯାହା ହୋଇ ଜନ୍ମିଥାନ୍ତି - ମୃତ୍ୟୁପର୍ଯ୍ୟନ୍ତ ସେ ସେହି ପ୍ରାଣୀର ଯଥାଜୀବନ ବଂଚୁଥାନ୍ତି ଓ ସେହି ପ୍ରାଣୀର ସ୍ୱଭାବରୁ ବିଚ୍ୟୁତ ହୁଅନ୍ତି ନାହିଁ। ମାତ୍ର ମଣିଷ କଥା ଅଲଗା। ମଣିଷ ଗୋଟିଏ କ୍ରମବିକାଶଶୀଳ ପ୍ରାଣୀ। ସେ ତା'ର ମନ, ବୁଦ୍ଧି ଓ ହୃଦୟର ଉତ୍କର୍ଷ ସାଧନ କରି କରି ଶେଷପର୍ଯ୍ୟନ୍ତ ଚାଲିଥାଏ। ପୁନର୍ଜନ୍ମବାଦୀମାନେ କହନ୍ତି, ଯେଉଁ ମଣିଷ ଏଇ ଜୀବନରେ ମହତ କାର୍ଯ୍ୟ କରେ, ମହତ ଚିନ୍ତା କରେ ଓ ମହତ ଜୀବନଯାପନ କରେ, ତା'ର ଆତ୍ମା ଏକ ନୂତନ ସଂସ୍କାର ଲାଭ କରେ। ସେହି ସଂସ୍କାର ତାକୁ ପରଜନ୍ମରେ ଏକ ମାର୍ଜିତ ବଡ଼ମଣିଷ ହେବା ଲାଗି ସାହାଯ୍ୟ କରେ। ଏହିପରି ଜନ୍ମଜନ୍ମାନ୍ତ ଭିତରେ ମଣିଷ ତା'ର ସଂସ୍କାର ବଢ଼ାଇ ଚାଲିଛି। ତା'ର ଚେତନା ବଢ଼ାଇ ଚାଲିଛି। ଏଭଳି ମଣିଷମାନେ ସାଧାରଣ ମଣିଷର ସୀମା ଅତିକ୍ରମ କରି ଅସାଧାରଣ ମଣିଷ ହୋଇଉଠନ୍ତି।

କିନ୍ତୁ ଏହା କିପରି ହୁଏ ? କ'ଣ ତାକୁ ଏପରି ଏକ ଅସାଧାରଣ ମଣିଷରେ ପରିଣତ କରେ ? ତା'ର ବୁଦ୍ଧିର ବିକାଶ କିପରି ହୁଏ ? ତା'ର ଚିନ୍ତା କିପରି ସୃଜନଶୀଳ

ହୁଏ ? ତା'ର ଜୀବନଧାରଣର ମାନ କିପରି ବୃଦ୍ଧି ପାଏ ? କିପରି ସେ ନିଜେ ନିଜର ଉପଯୋଗୀ ଓ ସମାଜର ଉପଯୋଗୀ ଦ୍ରବ୍ୟମାନ ସୃଷ୍ଟି କରେ ? କିପରି ସେ ନବ ନବ ଉଦ୍‌ଭାବନରେ ସକ୍ଷମ ହୁଏ ? ତା'ଭିତରେ ସୁଦୂରକୁ ଜୟ କରିବାର, ଅଜଣାକୁ ଜାଣିବାର ଆସ୍ପୃହା କିପରି ଜାଗ୍ରତ ହୁଏ ? କିପରି ସେ ନୂଆ ନୂଆ ଜୀବନ ଉପଯୋଗୀ ପଦାର୍ଥ ଆବିଷ୍କାର କରେ; ବା ନିଜେ ସୃଷ୍ଟି କରେ ? ଏବଂ ଶେଷରେ କିପରି ସେ ସମାଜରେ ଜଣେ ଅସାଧାରଣ ପୂଜ୍ୟ ମଣିଷରୂପେ ଗଣ୍ୟ ହୁଏ ।

ତା'ର ଏକମାତ୍ର ଉତ୍ତର ହେଲା - ବିଦ୍ୟା ଅର୍ଜନ ଦ୍ୱାରା । 'ବିଦ୍ୟା' ଅର୍ଥ ହେଲା, ଯାହା ମଣିଷକୁ ଅଜ୍ଞାନରୁ ରକ୍ଷା କରେ । ଯାହା ମଣିଷକୁ ଅନ୍ଧକାର ଭିତରୁ ଆଲୋକ ଆଡ଼କୁ ବାଟ ଦେଖାଇଦିଏ । ସର୍ବ ଆପଦବିପଦରୁ ଯାହା ରକ୍ଷା କରେ; ଏବଂ ମଣିଷର ହୃଦୟରେ ଓ ତା'ର ବ୍ୟବହାରରେ ସତ୍ୟ, ଧର୍ମ, ପ୍ରେମ, ସେବା, ଭକ୍ତି ଇତ୍ୟାଦି ମହତ୍‌ଭାବଗୁଡ଼ିକ ଯେ ସଂଚାର କରେ - ତାହାହିଁ ବିଦ୍ୟା । ଏଇ ବିଦ୍ୟାରେ ଯେ ଯେତେ ବିଦ୍ୱାନ୍ ସେ ମଣିଷମାନଙ୍କ ଦ୍ୱାରା ସେତିକି ସମ୍ମାନିତ ହୁଏ । ବିଦ୍ୟା ବ୍ୟତୀତ ମଣିଷକୁ ଆଉ କିଛି ମାନମର୍ଯ୍ୟାଦା ମଧ୍ୟ ଦେଇପାରନ୍ତି ନାହିଁ ।

ଏ ପ୍ରସଙ୍ଗରେ ମହାପ୍ରାଜ୍ଞ ଚାଣକ୍ୟଙ୍କର ଏକ ଶ୍ଳୋକ ପଢ଼ନ୍ତୁ ।

**କିଂ କୁଳେନ ବିଶାଳେନ ବିଦ୍ୟାହୀନେନ ଦେହିନାମ୍ ।**
**ଦୁଷ୍କୁଳୀନୋଽପି ବିଦ୍ୱାଂଶ୍ଚ ଦେବୈରପି ସୁପୂଜ୍ୟତେ ॥ (୮/୧୯)**

ଶ୍ଳୋକଟିର ଅର୍ଥ ହେଲା, ଏକ ବିଖ୍ୟାତ ବିଶାଳ କୁଳରେ ଜନ୍ମ ହେଲେ କ'ଣ ହେବ ? ସେହି କୁଳରେ ଜନ୍ମଲାଭ କରିଥିବା ଲୋକଟି ଯଦି ବିଦ୍ୱାନ୍ ନୁହଁ, ଅର୍ଥାତ୍ ସେ ଲୋକଟି ଯଦି କୌଣସି ପ୍ରକାର ବିଦ୍ୟା ଅର୍ଜନ କରି ନାହିଁ, ତେବେ ସେ ଲୋକକୁ କେହି ଖାତିର କରନ୍ତି ନାହିଁ । ଜଣେ ସାହିତ୍ୟକ, ଜଣେ ଦାର୍ଶନିକ, ଜଣେ ବୈଜ୍ଞାନିକ, ଜଣେ ଧର୍ମତତ୍ତ୍ୱବିଦ୍ ଏବଂ ଏହିପରି ନାନା ଅସାଧାରଣ ବିଦ୍ୟାକୁ ଆୟତ୍ତ କରିଥିବା ଲୋକଙ୍କୁ ଆମେ ଖୁବ୍ ସମ୍ମାନ କରୁ । ସେ ଗୋଟିଏ ନିମ୍ନବଂଶରେ ବା ଜାତିରେ ଜନ୍ମ ହେଲେ ମଧ୍ୟ ଆମର ସମ୍ମାନ ପାଇବାରେ ଅଧିକାରୀ ହୋଇଥାନ୍ତି ।

ଏପରିକି ଜଣେ ବ୍ୟକ୍ତି ଯଦି ତା'ର ବଂଶଗତ ବା କୌଳିକ ବୃତ୍ତିର ବିଦ୍ୟାରେ ଧୂରୀଣ ହୋଇଥାଏ ସେ ମଧ୍ୟ ସମାଜରେ ସମସ୍ତଙ୍କ ଦ୍ୱାରା ପ୍ରଶଂସିତ ହୋଇଥାଏ । କୁମ୍ଭାର ଘରେ ଜନ୍ମିଥିବା ଜଣେ ବ୍ୟକ୍ତି ଯଦି ଭଲ କୁମ୍ଭାରଟିଏ ହୋଇଥାଏ ଓ ନୂଆ ନୂଆ ପ୍ରକାର ମୃତ୍ତିକାପାତ୍ର ନିର୍ମାଣ କରିବାରେ ପାରଦର୍ଶିତା ଦେଖାଏ, ତାକୁ ଆମେ ସମ୍ମାନ ଦେଉ । ସେହିପରି ଗୁଡ଼ିଆବଂଶରେ ଜନ୍ମ ହୋଇଥିବା ଜଣେ ବ୍ୟକ୍ତି କିମ୍ବା

କୈବର୍ତ୍ତବଂଶରେ ଜନ୍ମ ହୋଇଥିବା ଜଣେ ବ୍ୟକ୍ତି ବା ବାରିକ କି ରଜକକୁଳରେ ଜନ୍ମିଥିବା ଜଣେ ବ୍ୟକ୍ତି କିମ୍ବା ବଢ଼େଇକୁଳରେ ଜନ୍ମ ହୋଇଥିବା ଜଣେ ବ୍ୟକ୍ତି ଯଦି ତା'ର କୌଳିକବୃତ୍ତିର ବିଦ୍ୟା ଜାଣିଥାଏ ଓ ତା'ର ସଦୁପଯୋଗ କରିପାରେ, ତେବେ ସେ ସମାଜରେ ସମସ୍ତଙ୍କଦ୍ୱାରା ସମାଦୃତ ହୋଇଥାଏ।

ମୋଟକଥା ହେଲା - ପ୍ରତ୍ୟେକ ମଣିଷ ବଂଚିବାପାଇଁ ଓ ଜୀବନରେ ବିକାଶଲାଭ କରିବାପାଇଁ କିଛି ବିଦ୍ୟା ଅର୍ଜନ କରିବା ନିତାନ୍ତ ଆବଶ୍ୟକ। ବିଦ୍ ଧାତୁର ଅର୍ଥ ହେଉଛି ଜାଣିବା ଓ ସେହି ଜ୍ଞାନର ସଦ୍‌ବ୍ୟବହାର କରିବା। କଥାରେ ଅଛି, ରାଜା କେବଳ ନିଜ ରାଜ୍ୟରେ ସମ୍ମାନ ପାଏ। ମାତ୍ର ବିଦ୍ୱାନ ସାରା ଜଗତରେ ସମ୍ମାନିତ ହୋଇଥାଏ। ବିଶ୍ୱବିଖ୍ୟାତ କବି, ଦାର୍ଶନିକ, ବୈଜ୍ଞାନିକ, ଶିଳ୍ପୀ ଓ ଐନ୍ଦ୍ରଜାଲିକମାନେ ସବୁ ଦେଶରେ ସମ୍ମାନିତ ହୁଅନ୍ତି ନାହିଁ କି ?



## ୫. କାହା ନିଦ୍ରାଭଙ୍ଗ କରିବ, କାହାର କରିବ ନାହିଁ

ଆହାର, ନିଦ୍ରା, ଭୟ, ମୈଥୁନ - ଏହି ଚାରୋଟି ପ୍ରବୃତ୍ତି ସବୁ ପ୍ରାଣୀଙ୍କର ଯେପରି ଅଛି, ମଣିଷ ଭିତରେ ବି ସେମିତି ରହିଛି। ଏହି ଚାରୋଟି ପ୍ରବୃତ୍ତିରେ ମଣିଷ ଓ ଇତରପ୍ରାଣୀ ସମାନ। ମାତ୍ର ମଣିଷର ଏହାଛଡ଼ା ଆହୁରି ଦୁଇଟି ଗୁଣ ରହିଛି। ତାହା ହେଲା -ସୃଜନଶୀଳ ଓ ବିଚାରଶୀଳ ବୁଦ୍ଧି ଏବଂ ଗଭୀର ଅନୁଭବଶୀଳ ହୃଦୟ। ମଣିଷର ଏଇ ବୁଦ୍ଧି ଓ ହୃଦୟର ବିକାଶ ଲାଗି ବାଲ୍ୟକାଳରୁ ତାକୁ ଶିକ୍ଷାଲାଭ କରିବାକୁ ହୋଇଥାଏ, ଜ୍ଞାନ ଅର୍ଜନ କରିବାକୁ ମଧ୍ୟ ହୋଇଥାଏ। ମଣିଷର ବିଚାର ବୁଦ୍ଧି ବିକାଶ ଲାଭ କଲେ, ସେ ତା'ର କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ସ୍ଥିର କରିପାରେ। ଏହି କର୍ତ୍ତବ୍ୟ ଅକର୍ତ୍ତବ୍ୟକୁ ନେଇ ମହାବୁଦ୍ଧିମାନ୍ ଚାଣକ୍ୟ କେତୋଟି ଶ୍ଲୋକ ଲେଖିଛନ୍ତି। ସେଥିରେ ସ୍ଥାନ, କାଳ ଓ ପାତ୍ରକୁ ନେଇ ମଣିଷର କ'ଣ କରିବା ଉଚିତ ଓ ଅନୁଚିତ ତାହା ଦର୍ଶାଯାଇଛି। ପ୍ରଥମ ଶ୍ଲୋକଟି ହେଲା -

**ବିଦ୍ୟାର୍ଥୀ ସେବକଃ ପାନ୍ଥଃ କ୍ଷୁଧାଽଽର୍ତ୍ତୋ ଭୟକାତରଃ।**
**ଭାଣ୍ଡାରୀ ପ୍ରତିହାରୀ ଚ ସପ୍ତ ସୁପ୍ତାନ୍ ପ୍ରବୋଧୟେତ॥** (୯/୬)

ଏ ଶ୍ଲୋକଟିର ଅର୍ଥ ହେଲା, ବିଦ୍ୟା ଅଧ୍ୟୟନ କରୁଥିବା ଛାତ୍ର ବା ଛାତ୍ରୀ, ସେବାକାରୀ, ଅନ୍ୟ ସ୍ଥାନକୁ ଯାଉଥିବା ପଥିକ, ଭୋକିଲା ମଣିଷ ଏବଂ କୌଣସି

ଭୟକାତର ମଣିଷ, ଭଣ୍ଡାର ରକ୍ଷକ ଓ ଗୃହ ବା ମନ୍ଦିର ଜଗୁଆଳିମାନେ ଯଦି କୌଣସି କାରଣରୁ ଶୋଇ ପଡ଼ିଥାନ୍ତି, ତେବେ ସେମାନଙ୍କୁ ଦୀର୍ଘ ସମୟ ଶୋଇବାକୁ ନ ଦେଇ ଶୀଘ୍ର ନିଦରୁ ଉଠାଇଦେବ। ତା'ନ ହେଲେ ସେମାନେ ନିଜର କ୍ଷତି କରିବେ ବା ଅନ୍ୟର କ୍ଷତି କରିବେ।

କୌଣସି ବିଦ୍ୟା ଅଧ୍ୟୟନ କଲାବେଳେ ମସ୍ତିଷ୍କ ଭାରାକ୍ରାନ୍ତ ହୋଇ ଯଦି ଛାତ୍ର ଛାତ୍ରୀମାନେ ଟିକିଏ ଘୁମେଇ ପଡ଼ନ୍ତି, ତେବେ ସେମାନେ ଟିକିଏ ଢୁଳାଇ ପଡ଼ନ୍ତି। ସେପରିସ୍ଥଳେ ସେମାନଙ୍କୁ ଦଶ ପନ୍ଦର ମିନିଟ ଢୁଳାଇବାକୁ ଦିଅ। ମାତ୍ର ଯଦି ସେମାନେ ବହି ଧରୁ ଧରୁ ଶୋଇପଡୁଥାନ୍ତି, ତେବେ ତାକୁ ନିଦରୁ ଉଠାଇଦିଅ। ନିଦ୍ରାଳୁ ମଣିଷ ବିଦ୍ୟାର୍ଜନ କରିପାରନ୍ତି ନାହିଁ। ଆଳସ୍ୟ ପ୍ରବଣ ବ୍ୟକ୍ତି ନିଦ୍ରାଳୁ ହୋଇଥାନ୍ତି।

ସେହିପରି ଗୃହସେବକ ବା ସରକାରୀ ଚାକିରିଆମାନେ କର୍ମବେଳେ ଶୋଇପଡ଼ିବା ଅନୁଚିତ। କାରଣ ତଦ୍ୱାରା ଗୃହ ବା ଅଫିସ ପରିଚାଳନାରେ ବିଘ୍ନ ଘଟେ। ଏପରି ସେବକ ଓ କର୍ମଚାରୀମାନେ ଯଦି କର୍ମକ୍ଷେତ୍ରରେ କର୍ମବେଳାରେ ଶୋଇ ପଡ଼ିଥାନ୍ତି, ତେବେ ସେମାନଙ୍କୁ ମଧ୍ୟ ନିଦରୁ ଉଠାଇଦିଅ।

ପଥିକଟିଏ ଯଦି କ୍ଲାନ୍ତ ହୋଇ କୋଉ ଗଛ ମୂଳେ ଦୀର୍ଘ ସମୟଧରି ଶୋଇ ପଡ଼ିଥାଏ - ତେବେ ତାକୁ ଉଠାଇ ଦିଅ। କାରଣ, ସେ ତା'ର ଲକ୍ଷ୍ୟ ସ୍ଥଳରେ ଶୀଘ୍ର ପହଁଚିବା ଉଚିତ। ତା'ନ ହେଲେ ସନ୍ଧ୍ୟା ଆସିଯିବ ଓ ରାତିରେ ସେ ଆଉ ତା' ଗନ୍ତବ୍ୟସ୍ଥଳକୁ ଯାଇପାରିବ ନାହିଁ।

କ୍ଷୁଧାର୍ତ୍ତ ଲୋକଟି ଯଦି କ୍ଷୁଧାରେ ଅବସନ୍ନ ହୋଇ ଶୋଇ ପଡ଼ିଥାଏ - ତେବେ ତାକୁ ଉଠାଇଦିଅ। ନିଦରୁ ଉଠି ସେ ତା'ର ଖାଦ୍ୟ ଅନ୍ୱେଷଣ କରୁ ବା ଯୋଗାଡ଼ କରୁ। ସମୟ ଚାଲିଗଲେ ସେ ଆଦୌ ଖାଇବାକୁ ନ ପାଇପାରେ ମଧ୍ୟ। ଚାଣକ୍ୟଙ୍କର ଆଉ ଗୋଟିଏ ଶ୍ଳୋକରେ ଅଛି, "ନହି ସୁପ୍ତସ୍ୟ ସିଂହସ୍ୟ ପ୍ରବିଶନ୍ତି ମୁଖେ ମୃଗାଃ। ଅର୍ଥାତ୍ ସିଂହକୁ ହରିଣ ପଛରେ ଗୋଡ଼ାଇ ଗୋଡ଼ାଇ ତାକୁ ମାରି ଖାଇବାକୁ ହୁଏ। ଶୋଇ ରହିଥିବା ସିଂହ ମୁଖରେ କ'ଣ ହରିଣଟିଏ ବଳେ ବଳେ ଆସି ପଶିଯାଏ? ସେହିପରି ଭୟାଳୁ ଲୋକକୁ ମଧ୍ୟ ନିଦରୁ ଉଠାଇଦେବ। କାରଣ ସେ ଯାହାକୁ ଭୟ କରୁଥାଏ, ସେ ନିଶ୍ଚୟ ଶୋଇଥିବା ଅବସ୍ଥାରେ ଆସି ତାକୁ ହତ୍ୟା ବା ଲୁଣ୍ଠନ କରିପାରେ। ତୁମର ଭଣ୍ଡାର ରକ୍ଷକ ଯଦି ଭଣ୍ଡାରରେ କୋଲପ ପକାଇ ଶୋଇ ପଡ଼ିଥାଏ, ତେବେ ତାକୁ ଉଠାଇଦେବ। ତାକୁ ଜମା ଶୁଆଇ ଦେବ ନାହିଁ। କାରଣ ସେ ଶୋଇଥିବା ଅବସ୍ଥାରେ ଚୋର ଡକାଏତ୍‌ମାନେ ଘରେ ପଶି ତୁମ ଭଣ୍ଡାର ଲୁଟି କରିପାରନ୍ତି।

ଶେଷରେ ତୁମର ପ୍ରତିହାରୀ ବା ଦ୍ୱାରପାଳକୁ ମଧ୍ୟ ସବୁବେଳେ ଘୁମାଇବାକୁ ବା ଶୋଇବାକୁ ଦେବ ନାହିଁ। କାରଣ ସେ ଶୋଇଥିବା ବା ଢୁଳାଉଥିବା ଅବସ୍ଥାରେ ତୁମ ଘରେ ଚୋର ଓ ଲୁଟେରାମାନେ ପଶିପାରନ୍ତି। ମହାମତି ଚାଣକ୍ୟଙ୍କର ଏହି ସଂସାରିକ ବ୍ୟାବହାରିକ ଜ୍ଞାନ ଆମକୁ ବହୁ ପରିମାଣରେ ସଚେତନ କରିଦିଏ ନା' କି ?

ପାଠକେ! ବର୍ତ୍ତମାନ ଆମେ ପୂର୍ବ ଶ୍ଳୋକଟିର ବିପରୀତ ଶ୍ଳୋକଟିକୁ ମଧ୍ୟ ଆଲୋଚନା କରିବା। ଶ୍ଳୋକଟି ପଢ଼ନ୍ତୁ -

**ଅହିଂ ନୃପଂ ଚ ଶାର୍ଦ୍ଦୂଳଂ, କିଟିଂ ଚ ବାଳକଂ ତଥା।**
**ପରଶ୍ୱାନଂ ଚ ମୂର୍ଖଂ ଚ ସପ୍ତ ସୁପ୍ତାନ୍ ନ ବୋଧୟେତ୍॥ (୯/୭)**

ଏ ଶ୍ଳୋକଟିର ଅର୍ଥ ହେଲା, ସର୍ପଟିଏ ଯଦି ଶୋଇଛି ତେବେ ତାକୁ ଉଠାଅ ନାହିଁ। ଉଠିଲା ମାତ୍ରେ ସେ ଫଣା ଟେକି ତୁମ ଆଡ଼କୁ କ୍ଷେପି ଆସି ତୁମକୁ ଦଂଶନ କରିପାରେ। ନୃପ, ଅର୍ଥାତ୍ ରାଜା ବା ଶାସକ ଯଦି ଶୋଇଥାନ୍ତି ତାଙ୍କୁ ଅସମୟରେ ବା ସାମାନ୍ୟ କାରଣରେ ଉଠାଅ ନାହିଁ। କାରଣ କର୍ମକ୍ଳାନ୍ତ, ସମସ୍ୟାକ୍ରାନ୍ତ, ଚିନ୍ତାକ୍ରାନ୍ତ ଓ ରାଜ୍ୟର କୈଣସି ବିପ୍ତାତ ଆଶଙ୍କାରେ ଓ ସେଇ ବିପ୍ତାତରୁ ରାଜ୍ୟକୁ ରକ୍ଷା କରିବାପାଇଁ ଭାବୁ ଭାବୁ ଅକସ୍ମାତ୍ ଶୋଇପଡ଼ିଥିବା ରାଜା ବା ଶାସକଙ୍କୁ ନିଦରୁ ଉଠାଇ ଦେଲେ ସେ କ୍ରୋଧାନ୍ୱିତ ହୋଇପାରନ୍ତି ବା ଖୁବ୍ କ୍ଳାନ୍ତ ଅନୁଭବ କରିପାରନ୍ତି। ତେଣୁ ରାଜା ଓ ଶାସକ ଶୋଇପଡ଼ିଥିଲେ ତାଙ୍କୁ ଅସମୟରେ ଉଠାଇବ ନାହିଁ। ସେହିପରି ବିରୁଡ଼ି ପୋକ ତା' ଗାତରେ ଶୋଇଥିଲା ବେଳେ ତାକୁ କେଂଚି କେଂଚି କରି ଉଠାଇବ ନାହିଁ। ତା'ଫଳରେ ସେଇ ବିରୁଡ଼ି ଓ ତା'ର ପରିବାରର ଅନ୍ୟ ବିରୁଡ଼ିମାନେ ଭୟଙ୍କର ରାଗରେ ତୁମକୁ ଦଂଶି ଅସ୍ତବ୍ୟସ୍ତ କରିଦେବେ। ବାଘଟିଏ ଶୋଇଥିଲା ବେଳେ ତାକୁ କେବେ ଉଠାଇବ ନାହିଁ। ଉଠିଲାମାତ୍ରେ ସେ ତୁମକୁ ମାଡ଼ିବସି ମାରି ଆନନ୍ଦରେ ଖାଇବ। ପିଲାଟିଏ ଶୋଇଥିଲା ବେଳେ ତାକୁ ମଧ୍ୟ ଉଠାଇବ ନାହିଁ। କାରଣ, ପିଲାମାନଙ୍କ ସ୍ୱାସ୍ଥ୍ୟପାଇଁ ଦୀର୍ଘ ସମୟ ଧରି ଶୋଇବା ଉଚିତ। ଅସମୟରେ ଅକାରଣରେ ସେମାନଙ୍କୁ ଉଠାଇ ଦେଲେ, ସେମାନେ ଭୟଙ୍କର ରଡ଼ି ଛାଡ଼ି କାନ୍ଦିବେ ଓ ତୁମକୁ ଆଉ କିଛି କାମ କରାଇ ଦେବେ ନାହିଁ।

ଆଉ ଗୋଟିଏ କଥା ମନେରଖିବ। ଅନ୍ୟଲୋକର ପୋଷାକୁକୁର ବା ବୁଲା କୁକୁରଟାଏ ଯଦି ଶୋଇଛି, ତେବେ ତାକୁ ଜମା ଉଠାଇବ ନାହିଁ। ଉଠିଲାମାତ୍ରେ ସେ ଭୟଙ୍କର ଭୁକିବ ଓ ତୁମକୁ ମଧ୍ୟ ଆକ୍ରମଣ କରିପାରେ। ଏବଂ ଶେଷରେ

ବ୍ୟବହାରଜ୍ଞାନକୁଶଳୀ ଚାଣକ୍ୟ ମହାଶୟ କହୁଛନ୍ତି, ମୂର୍ଖଲୋକ ଯଦି ଶୋଇଥାଏ ତେବେ ତାକୁ ଆଦୌ ଉଠାଇବ ନାହିଁ। କାରଣ ମୂର୍ଖମାନେ ଶୋଇଥିଲା ବେଳେ ତାଙ୍କର ସାମାନ୍ୟ ବିବେକ ବିଚାର ମଧ୍ୟ ହରାଇଥାନ୍ତି। ସେମାନେ କିଛି କର୍ମ ନ କରି ବହୁତବେଳେ ଶୋଇବାକୁ ଭଲପାନ୍ତି। ସେମାନଙ୍କୁ ନିଦରୁ ଉଠାଇଦେଲେ ସେମାନେ ତୁମର ଇଜ୍ଜତ ନେଇଯିବେ। ପାଠକେ ! ଚାଣକ୍ୟ ପଣ୍ଡିତଙ୍କର ବ୍ୟବହାର ଜ୍ଞାନ କେତେ ତହା ଦେଖିଲେ ତ !



## ୬. ଭଗବାନ୍ ନିର୍ବୁଦ୍ଧିଆ କି ?

ପ୍ରିୟ ପାଠକେ ! ଆଜି ଆପଣମାନଙ୍କୁ ମହାପ୍ରାଜ୍ଞ ଚାଣକ୍ୟ ପଣ୍ଡିତଙ୍କର ବିଦୂଷକୀ ଶ୍ଳୋକ ଶୁଣାଇବି। ମହାବୁଦ୍ଧି ଚାଣକ୍ୟ ଥିଲେ ଜଣେ ବିଶିଷ୍ଟ ରାଜନୀତିଜ୍ଞ ଓ ବିଖ୍ୟାତ କୂଟନୀତିଜ୍ଞ। ତାଙ୍କର ରାଜନୀତି ଓ କୂଟବୁଦ୍ଧିବଳରେ ସେ ରାଜା ମହାରାଜାମାନଙ୍କୁ ତାଙ୍କ ପାଖେ ଅବନତ କରି ରଖିଥିଲେ। ସେହି କୂଟବୁଦ୍ଧି ଚାଣକ୍ୟଙ୍କ ଭିତରେ ଯେ ଜଣେ ବିଦୂଷକ ଥିଲେ ଓ ଜଣେ ରସବନ୍ତ ମଣିଷ ଥିଲେ, ତାହା ଆମେ ଏହି ଶ୍ଳୋକଟିରୁ ବୁଝିପାରିବା ଶ୍ଳୋକଟି ହେଲା :

**ଗନ୍ଧଃ ସୁବର୍ଣ୍ଣେ ଫଳମିକ୍ଷୁଦଣ୍ଡେ**
**ନାଽକାରି ପୁଷ୍ପଂ ଖଳୁ ଚନ୍ଦନସ୍ୟ।**
**ବିଦ୍ୱାନ୍ ଧନାଢ୍ୟଶ୍ଚ ନୃପଶ୍ଚିରାୟୁଃ**
**ଧାତୁଃ ପୁରା କୋଽପି ନ ବୁଦ୍ଧିଦୋଽଭୂତ୍ ॥ (୯/୩)**

ଏହାର ଅର୍ଥ ହେଲା, ସୁବର୍ଣ୍ଣରେ ସୁବାସ ନାହିଁ। ଆଖୁଗଛରେ ଫଳ ଫଳେ ନାହିଁ। ଚନ୍ଦନ ଗଛରେ ଫୁଲ ଫୁଟେ ନାହିଁ। ବିଦ୍ୱାନ୍‌ମାନଙ୍କ ପାଖରେ ଧନ ନ ଥାଏ। ଏବଂ ଭଲ ରାଜା ବା ଶାସକମାନଙ୍କ ଆୟୁଷ ସବୁଦିନପାଇଁ ନ ଥାଏ। ଏଥିରୁ ଜଣା ପଡୁଛି - ସୃଷ୍ଟିକର୍ତ୍ତା ଭଗବାନ୍‌ଙ୍କ ପାଖରେ କେହି ବୁଦ୍ଧିମାନ୍ ପରାମର୍ଶଦାତା ନ ଥିଲେ।

ପାଠକେ ! ଯେଉଁମାନେ ମହାବୁଦ୍ଧି ମହାକୂଟଜ୍ଞ, ମହାଧୂର୍ତ୍ତ ଚାଣକ୍ୟଙ୍କୁ ସବୁବେଳେ ଗମ୍ଭୀର ଓ ନୀରସ ଲୋକ ବୋଲି ଭାବିଥିବେ ସେମାନେ ଏହି ଶ୍ଳୋକଟିରୁ ତାଙ୍କର ଇଚ୍ଛାକୃତ ଲଘୁମନ୍ୟତା ଓ ହାସ୍ୟରସିକତା କେତେଥିଲା, ତାହା ଦେଖି ନିଶ୍ଚୟ ଆଶ୍ଚର୍ଯ୍ୟ ହେବେ। ଶାସ୍ତ୍ର କହନ୍ତି, ହୃଦୟବାନ୍ ଲୋକର ହୃଦୟ ସବୁବେଳେ କାରୁଣ୍ୟ ବିଗଳିତ

ଓ ଆଖି ସର୍ବଦା ଲୁହ ଛଳ ଛଳ ଏବଂ ବୁଦ୍ଧିମାନ୍ ଲୋକର ମାନ ସର୍ବଦା ଚିନ୍ତାଭାରାନ୍ୱିତ ଓ ଆଖି ଦୁଇଟି ସର୍ବଦା ସତର୍କ ଓ ସ୍ଥିର।

ମାତ୍ର ଏଇ ଶ୍ଳୋକଟିରୁ ଆମେ ଜାଣିଲେ ଯେ, ସବୁବେଳେ, ସବୁଲୋକ ସମାନ ବ୍ୟବହାର ଦେଖାନ୍ତି ନାହିଁ। ଆମର ମହାମେଧାବନ୍ତ ଚାଣକ୍ୟ ପଣ୍ଡିତେ ଯେପରି କୂଟବୁଦ୍ଧିସଂପନ୍ନ, ସେହିପରି ମଧ୍ୟ ରସିକତାରେ ସେ ସ୍ୱୟଂ ଭଗବାନ୍‌ଙ୍କୁ ମଧ୍ୟ ହାସ୍ୟପରିହାସ କରିବାକୁ ପଛାନ୍ତି ନାହିଁ। ଆମ ଓଡ଼ିଆ ଭାଷାର ଭକ୍ତକବି କବିସୂର୍ଯ୍ୟ ବଳଦେବ ରଥ ଦାରୁବ୍ରହ୍ମ ମହାବାହୁ ପରମେଶ୍ୱର ଜଗନ୍ନାଥ ମହାପ୍ରଭୁଙ୍କୁ ଗୋଟିଏ ବଂଶନାଶକ ସର୍ପ ସଙ୍ଗେ ତୁଳନା କରି; ଏବଂ ତାହା ସାବ୍ୟସ୍ତ କରି ଚମତ୍କାର ସ୍ତବଟିଏ ଲେଖିଛନ୍ତି। ପରମଭକ୍ତ ନ ହେଲେ ଭଗବାନଙ୍କ ଦୋଷ ଦେଖାଇ ତାଙ୍କୁ ପରିହାସ କରିବା ସମ୍ଭବ ନୁହେଁ - ଉଚିତ ମଧ୍ୟ ନୁହଁ।

ଆମର ଚାଣକ୍ୟ ପଣ୍ଡିତେ ମଧ୍ୟ ହୃଦୟରେ ଭଗବାନ୍‌ଙ୍କ ପ୍ରତି ପ୍ରେମଭକ୍ତିରେ ବିଗଳିତ ଥିଲେ। ସେଥିପାଇଁ ଏହି ଶ୍ଳୋକଟିରେ ସେ ତାଙ୍କର ପ୍ରିୟ ଭଗବାନ୍‌ଙ୍କ ସଂଗେ ରସିକତା କରି ପରିହାସ କରୁଛନ୍ତି। ଏହି ଶ୍ଳୋକଟିରେ ଚାଣକ୍ୟ କହୁଛନ୍ତି, ସୁବର୍ଣ୍ଣ ସବୁ ଧାତୁଙ୍କ ଭିତରେ ଉଜ୍ଜ୍ୱଳ ଏବଂ ମୂଲ୍ୟବାନ୍। ସେଥିପାଇଁ ଧନାଢ଼୍ୟ ବ୍ୟକ୍ତିମାନେ ସୁବର୍ଣ୍ଣର ଅଳଙ୍କାର ଭୂଷଣ ପିନ୍ଧି ନିଜର ସୌନ୍ଦର୍ଯ୍ୟ ବଢ଼ାଇଥାନ୍ତି। ବିଶେଷତଃ ନାରୀମାନଙ୍କର ସୁବର୍ଣ୍ଣ ଖୁବ୍ ପ୍ରିୟ। ତେବେ ସୁବର୍ଣ୍ଣଭଳି ସୁନ୍ଦର ଉଜ୍ଜ୍ୱଳ ଧାତୁକୁ ସୃଷ୍ଟିକର୍ତ୍ତା ଭଗବାନ୍ ସୁବାସିତ କଲେ ନାହିଁ କାହିଁକି ? ତା'ହେଲେ ସୁବର୍ଣ୍ଣ ଉଭୟ ରୂପ ଓ ଗୁଣର ଅଧିକାରୀ ହୋଇଥାନ୍ତା ଏବଂ ସ୍ୱର୍ଣ୍ଣାଳଙ୍କାର ପ୍ରିୟ ବ୍ୟକ୍ତିମାନେ ସୁବର୍ଣ୍ଣର ମଧୁସୌରଭ ମଧ୍ୟ ଆଘ୍ରାଣ କରୁଥାନ୍ତେ ଓ ଅନ୍ୟମାନଙ୍କୁ ବି ତାହା ଆନନ୍ଦ ପ୍ରଦାନ କରୁଥାନ୍ତା। ଏଥିରୁ ଜଣାପଡୁଛି -ଭଗବାନ୍‌ଙ୍କର କାଣ୍ଡଜ୍ଞାନ ନ ଥିଲା; ଏବଂ ସେ ମଧ୍ୟ ତାଙ୍କ ପାଖେ ବୁଦ୍ଧିମାନ୍ ପରାମର୍ଶଦାତାଟିଏ ରଖି ନ ଥିଲେ।

ଦ୍ୱିତୀୟ ପ୍ରମାଦଟି ହେଉଛି, ଭଗବାନ୍ ଆଖୁଗଛ ତିଆରି କଲେ। ଆଖୁ କାଣ୍ଡ ଭିତରେ ଏତେ ମଧୁର ରସ ଭର୍ତ୍ତି କଲେ। କିନ୍ତୁ ଆଖୁ ଗଛରେ ଫଳ ଫଳାଇଲେ ନାହିଁ କାହିଁକି ? ଆଖୁଗଛରେ ଯଦି ଫଳ ହୋଇଥାନ୍ତା ତେବେ ଆମେ ସେହି ମଧୁର ଫଳକୁ ଆମ୍ବ, ପଣସ ଫଳଭଳି ଖାଇ ତା'ର ମଧୁର ରସକୁ କେଡ଼େ ସହଜରେ ଆସ୍ୱାଦନ କରୁଥାନ୍ତୁ ! ଆମକୁ ଆଉ ମଧୁର ରସ ଖାଇବାପାଇଁ ଗୋଟିଏ କର୍କଶ ଗଛକୁ ଗୋରୁଙ୍କ ଭଳି ଦାନ୍ତରେ ଚୋବାଇବାରେ କଷ୍ଟ କରିବାକୁ ପଡୁ ନ ଥାନ୍ତା। ଏଥିରୁ ଜଣାପଡୁଛି ସୃଷ୍ଟିକର୍ତ୍ତା ଭଗବାନ୍‌ଙ୍କଠାରେ କିଞ୍ଚିତ୍ ବୁଦ୍ଧି ମାନ୍ଦା ଥିଲା। ତେବେ ସେ ନିଜ ପାଖେ ଜଣେ ବୁଦ୍ଧିମାନ୍ ପରାମର୍ଶଦାତା ରଖିଲେନି କାହିଁକି ?

ସେମିତି ଚନ୍ଦନ ଗଛ କଥା ଭାବନ୍ତୁ। ଚନ୍ଦନ ଗଛର କାଠ କେଡ଼େ ସୁବାସିତ ? ସେ ସୌରଭ କେତେ ପବିତ୍ର ! କିନ୍ତୁ ସ୍ରଷ୍ଟା ଭଗବାନ୍ ସେଥିରେ ଯଦି ଫୁଲ ଫୁଟାଇଥାନ୍ତେ ତେବେ ସେ ଫୁଲ କେଡ଼େ ସୁବାସିତ ହୋଇଥାନ୍ତା ! ଆମେ ଅନ୍ୟ ଗଛରୁ ଫୁଲ ତୋଳିଲା ଭଳି ଚନ୍ଦନଗଛରୁ ଫୁଲ ତୋଳି ମାଳା କରି ନିଜେ ପିନ୍ଧନ୍ତୁ ବା ଠାକୁରଙ୍କୁ ପିନ୍ଧାନ୍ତୁ। ମାତ୍ର ଭଗବାନ୍ଙ୍କ କ୍ଷୁଦ୍ରବୁଦ୍ଧିକୁ ଏ କଥା ଜୁଟିଲା ନାହିଁ। ତେବେ ସେ ତ ଅନ୍ତତଃ ଜଣେ ବୁଦ୍ଧିମାନ୍ ପରାମର୍ଶଦାତା ରଖି ତାଙ୍କ ପରାମର୍ଶାନୁଯାୟୀ କାର୍ଯ୍ୟ କରିଥାନ୍ତେ !

ଆଚ୍ଛା ! ଆଉ ଗୋଟିଏ କଥା ଦେଖନ୍ତୁ। ଏ ସଂସାର ବିଦ୍ୟାରେ ଚଳୁଛି। ବିଦ୍ୟା ମାନେ ସବୁ ପ୍ରକାର ବିଦ୍ୟା ବା ଜ୍ଞାନ। କଳା, ସାହିତ୍ୟ, ଦର୍ଶନ, ବିଜ୍ଞାନ ସବୁହେଲା ବିଦ୍ୟା। ବିଦ୍ୱାନ୍‌ମାନେ ହିଁ ଏ ଜଗତକୁ ଚଳାଉଛନ୍ତି। ବିଦ୍ୱାନ୍ ନ ଥିଲେ ଆମେ ବଂଚିବାର ରାହା ପାଇ ନ ଥାନ୍ତୁ। କିନ୍ତୁ ଯାହା ଦେଖାଯାଏ - ବିଦ୍ୱାନ୍‌ମାନେ ପ୍ରାୟତଃ ଦରିଦ୍ର, ଧନହୀନ। ଭଗବାନ୍ ଯଦି ପ୍ରକୃତରେ ପ୍ରଜ୍ଞାବାନ୍ ହୋଇଥାନ୍ତେ ତେବେ ଏପରି ଅସଙ୍ଗତ କଥା କରି ନ ଥାନ୍ତେ। ତେବେ ସେ ନିଜ ପାଖେ ସୃଷ୍ଟି କଲାବେଳେ ଜଣେ ବୁଦ୍ଧିମାନ୍ ପରାମର୍ଶଦାତା ରଖିଲେନି କାହିଁକି ?

ଶେଷ କଥାଟି ହେଲା ଯେଉଁ ରାଜା ବା ଶାସକ ଉତ୍ତମ ସ୍ୱଭାବ, ପ୍ରଜାପାଳକ, ଗୁଣୀ ଓ ବିଦ୍ୱାନ୍‌ମାନଙ୍କୁ ବହୁ ମାନ୍ୟତା ଦେଖାନ୍ତି ଓ ସାହାଯ୍ୟ କରନ୍ତି, ରାଜ୍ୟକୁ ବାହ୍ୟ ଶତ୍ରୁମାନଙ୍କ କବଳରୁ ରକ୍ଷା କରୁଥାନ୍ତି, ସେପରି ରାଜା ବା ଶାସକ ବହୁକାଳ ବଂଚନ୍ତି ନାହିଁ କାହିଁକି ? କାହିଁକି ସେମାନଙ୍କୁ ଭଗବାନ୍ ବେଶି ଆୟୁ ନ ଦେଇ ଅଳ୍ପାୟୁଃ କରିଥାନ୍ତି। ଏଥିରୁ ଜଣାପଡୁଛି - ସୃଷ୍ଟିକର୍ତ୍ତା ଭଗବାନ୍ଙ୍କର ହିତାହିତ ଜ୍ଞାନ ନ ଥାଏ। ଉଚିତ ଅନୁଚିତ ବୋଧ ନ ଥାଏ। ତେବେ ସେ ତାଙ୍କ ପାଖେ ଜଣେ ବିଜ୍ଞ, ବୁଦ୍ଧିମାନ୍ ଓ ଶୁଭଦର୍ଶୀ ପରାମର୍ଶଦାତା ରଖି ନାହାନ୍ତି କାହିଁକି ?

ପାଠକେ ! ଏବେ ଚାଣକ୍ୟଙ୍କର ରସିକତା ବୁଝିଲେ ତ ?



## ୭. କୋଉ ପରିସ୍ଥିତିରେ କୋଉ କର୍ତ୍ତବ୍ୟ ?

ପ୍ରିୟ ପାଠକେ ! ବର୍ତ୍ତମାନ ମହାମତି ଚାଣକ୍ୟଙ୍କ କୃତ ଦୁଇଟି ଶ୍ଳୋକର ମର୍ମାର୍ଥ ଆଲୋଚନା କରିବା। ଶୁଣିବା ହେଉନ୍ତୁ !

**ଯସ୍ମିନ୍ ରୁଷ୍ଟେ ଭୟଂ ନାସ୍ତି ତୁଷ୍ଟେ ନୈବ ଧନାଽଽଗମଃ।**
**ନିଗ୍ରହୋଽନୁଗ୍ରହୋ ନାସ୍ତି ସ ରୁଷ୍ଟଃ କିଂ କରିଷ୍ୟତି ॥ (୯/୯)**

ଏହାର ଅର୍ଥ ହେଲା, ଯେଉଁ ଲୋକ ତୁମ ଉପରେ ରାଗିଲେ ବି ତୁମର କିଛି ଭୟ କରିବାର ନାହିଁ, ଯେହେତୁ ସେ ଲୋକ ଏତେ ଦୁର୍ବଳ ଯେ, ତୁମର କ୍ଷତି କରିବାର ଶକ୍ତି ତା'ର ନାହିଁ, ତେବେ ସେଥିରେ ତୁମର କି ଯାଏ ଆସେ? ଏବଂ ସେହି ଲୋକ ବା ଅନ୍ୟଜଣେ ଲୋକ ମଧ୍ୟ ଯଦି ତୁମଉପରେ ଖୁବ୍ ଖୁସୀ ବା ତୁଷ୍ଟଭାବ ପ୍ରକାଶ କରେ ବା ତୁମ ଉପରେ ଖୁବ୍ ସନ୍ତୁଷ୍ଟ ହୋଇଯାଏ, ତେବେ ସେ ଯଦି ସେଥିଯୋଗୁଁ ତୁମକୁ କିଛି ଧନ, କି ମାନ ନ ଦିଏ, ତେବେ ତା'ର ସେଇ ସନ୍ତୋଷର ବା କି ମୂଲ୍ୟ ଅଛି? ତା'ଅର୍ଥ ଏଭଳି ଶକ୍ତିହୀନ, କୃପଣମନା ବ୍ୟକ୍ତିର କ୍ରୋଧ ବା ତୁଷ୍ଟିର କି ମୂଲ୍ୟ ଅଛି? ଏଭଳି ମଣିଷର କ୍ରୋଧରେ ଅଗ୍ନି ନାହିଁ, କି ସନ୍ତୋଷରେ ଜଳ ନାହିଁ। କିନ୍ତୁ ଯେଉଁଲୋକ ବ୍ୟକ୍ତିତ୍ୱବାନ୍, ଶକ୍ତିଶାଳୀ, ହୃଦୟବାନ୍ ଓ ଐଶ୍ୱର୍ଯ୍ୟବାନ୍ ତାଙ୍କର କ୍ରୋଧ ଓ ହର୍ଷ ଅନ୍ୟପାଇଁ କୁଫଳଦାୟୀ ବା ସୁଫଳଦାୟୀ ହୋଇଥାଏ। ମହାଜ୍ଞାନୀ ଚାଣକ୍ୟ ଏହି ଶ୍ଳୋକଟିରେ ଗୋଟିଏ ବ୍ୟାବହାରିକ ଉପଦେଶ ଦେଇଛନ୍ତି। ଆମେ ଆମର ସାମାଜିକ ଜୀବନରେ କୋଉ ଲୋକକୁ କିପରି ବୁଝିବା ଓ କେତେ ମୂଲ୍ୟ ଦେବା ତାହାହିଁ ଏହି ଶ୍ଳୋକଟିର ମର୍ମକଥା।

ପାଠକେ! ସେହିପରି ଆଉ ଗୋଟିଏ ଶ୍ଳୋକ ମଧ୍ୟ ପଢ଼ିବା ହୁଅନ୍ତୁ।

**ନିର୍ବିଷେଣାଽପି ସର୍ପେଣ କର୍ତ୍ତବ୍ୟା ମହତୀ ଫଣା।**
**ବିଷମସ୍ତୁ ନ ଚାପ୍ୟସ୍ତୁ ଘଟାଟୋପୋ ଭୟଙ୍କରଃ ॥** (୯/୧୦)

ଏହାର ଅର୍ଥ ହେଲା, ଯେଉଁ ସାପର ବିଷନାହିଁ ସେ ବିପଦ ବେଳେ ତା'ର ଫଣା ଉତ୍ତୋଳନ କରିବା ଉଚିତ। କାରଣ ବିଷ ଥାଉ ବା ନ ଥାଉ ଆଡ଼ମ୍ବରଟି ଅନ୍ୟ ମନରେ ଭୟ ବା ସମ୍ଭ୍ରମ ସୃଷ୍ଟି କରିଥାଏ।

ଏହି ଶ୍ଳୋକଟିରେ ମଧ୍ୟ ବାସ୍ତବ ବୁଦ୍ଧିସଂପନ୍ନ ଏକ ଉପଦେଶ ଆମକୁ ଦେଇଛନ୍ତି ଚାଣକ୍ୟ ମହୋଦୟ। ଏହି ଉଦାହରଣଟି ମଧ୍ୟ ରାମକୃଷ୍ଣ ପରମହଂସ ଭିନ୍ନ ପ୍ରକାରେ ଦର୍ଶାଇଛନ୍ତି। ଥରେ ଜଣେ ସାଧୁ ଗୋଟିଏ ବଣୁଆ ରାସ୍ତାରେ ଯାଉଥିଲେ। କିଛି ବାଟ ଗଲା ପରେ ହଠାତ୍ ତାଙ୍କର ନଜର ପଡ଼ିଗଲା ଗୋଟିଏ ଭୟଙ୍କର ବିଷଧର ନାଗସାପ ଫଣାଟେକି ତାଙ୍କ ଆଡ଼କୁ ସାଇଁକିନା ଆସି ତାଙ୍କ ଗୋଡ଼କୁ କାମୁଡ଼ିଦେଲା। ସାଧୁଙ୍କ ସାରା ଦେହରେ ବିଷ ଚରିଗଲା ତତ୍କ୍ଷଣାତ୍। ମାତ୍ର ସାଧୁ ମନ୍ତ୍ରବଳରେ ନିଜକୁ ସଙ୍ଗେ ସଙ୍ଗେ ବିଷମୁକ୍ତ କରିଦେଲେ ଓ ସେ ନାଗସାପକୁ କହିଲେ, "ଆରେ ସର୍ପ! ତୁ ମୋ ଭଳି ନିରୀହ ଲୋକଙ୍କୁ ଦଂଶନକରି ଖୁବ୍ ପାପକରୁଛୁ। ଏହା ଫଳରେ ତୁ ଖୁବ୍ ଦୁର୍ଦ୍ଦଶା ଭୋଗିବୁ। ଶୁଣ୍! ମୋ କଥା ମାନି ଆଜିଠାରୁ ଆଉ କାହାକୁ ଦଂଶିବୁ ନାହିଁ କି ଏ ପାପଭାରା ବଢ଼ାଇବୁ ନାହିଁ।"

ନାଗସାପଟି ଏହା ଶୁଣି ସାଧୁଙ୍କ ପାଦତଳେ ପ୍ରଣାମ କରି କହିଲା, "ହେ ମହାତ୍ମା ! ମୁଁ ଆଜିଠାରୁ ପ୍ରତିଜ୍ଞା କରୁଛି, ମୁଁ ଆଉ କାହାକୁ ଦଂଶନ କରିବି ନାହିଁ।"

ଏହା ଶୁଣି ସାଧୁ ସେ ସାପର ଫଣାକୁ ଆଉଁଶିଦେଇ ତାକୁ ଆଶୀର୍ବାଦ କରି ନିଜ ବାଟରେ ଗଲେ।

ଏହି ଘଟଣାର କିଛିଦିନ ପରେ, ସେହିଦିନଠାରୁ ସେ ସାପ କାହାକୁ ନ କାମୁଡ଼ିବାରୁ ଓ କାହାକୁ ଫଣାଟେକି ଭୟ ନ ଦେଖାଇବାରୁ ଗାଈଜଗୁଆଳ ପିଲାମାନେ ଓ ଅନ୍ୟମାନେ ସେ ସାପ ଶୋଇଥିଲାବେଳେ ତାକୁ ଟେକାମାରି ଓ ଠେଙ୍ଗାରେ ପିଟି ତା' ମେରୁଦଣ୍ଡ ଭାଙ୍ଗିଦେଲେ ଓ ତା' ଦେହକୁ ଖଣ୍ଡିଆଖାବରା କରିଦେଲେ। ପିଲାମାନେ ସୁଦ୍ଧା ସେ ସାପକୁ ଟେକାମାରି ଖେଳିଲେ। ଫଳରେ ସାପଟି ଅଧାମରା ହୋଇ ରାସ୍ତାକଡ଼ରେ ପଡ଼ିଥାଏ ଓ ନିତି ଟେକାମାଡ଼ଖାଇ କଷ୍ଟ ପାଉଥାଏ। ଏଇ ସମୟରେ ସେଇ ପୂର୍ବ ସାଧୁ ଦିନେ ସେ ବାଟଦେଇ ଯାଉଥିଲାବେଳେ ଦେଖିଲେ, ସେ ସାପଟି ରକ୍ତାକ୍ତ ଦେହରେ ଅଧାମରା ହୋଇ ପଡ଼ିଛି। ସାଧୁ ତାକୁ ଦେଖି ଦୟାରେ ବିଗଳିତ ହୋଇ ତାକୁ ପଚାରିଲେ, "ଆରେ ସର୍ପ ! ତୋ'ର ଏ ଦଶା କିପରି ହେଲା ?" ସର୍ପଟି କରୁଣ ସ୍ୱରରେ କହିଲା - "ହେ ମହାତ୍ମା ! ଆପଣଙ୍କ ଉପଦେଶ ମାନି ମୋର ଏଇଦଶା ହୋଇଛି।"

ସାଧୁ ଏହା ଶୁଣି ମନ୍ତ୍ରପାଣି ସାପ ଉପରେ ଛିଞ୍ଚି ଦେବାରୁ ସେ ତତ୍‌କ୍ଷଣାତ୍ ସୁସ୍ଥ ହୋଇ ଉଠିଲା। ସାଧୁ ତାକୁ ଆଉଁଶି ଦେଇ କହିଲେ, "ଆରେ ସର୍ପ ! ମୁଁ ତୋତେ କାହାକୁ କାମୁଡ଼ିବାକୁ ମନା କରିଥିଲି। ମାତ୍ର ଫଣା ଟେକିବାକୁ ମନା କରିଥିଲି କି ? ତୁ ଯଦି ଫଣା ଟେକି ସୁ ସୁ ଗର୍ଜନ କରିଥାନ୍ତୁ ତେବେ ସେମାନେ ଡରିକରି ପଳାଇ ଯାଇଥାନ୍ତେ। କାରଣ ସେମାନେ ଏ ସବୁ ଦେଖି ଭୟ କରିଥାନ୍ତେ।" ଆମେ କାହାକୁ ଆଘାତ କରିବା ଉଚିତ୍ ନୁହଁ। କିନ୍ତୁ ନିଜର ଆତ୍ମରକ୍ଷା ପାଇଁ ଆମେ ସାହସ ଧରି ଆକ୍ରମଣକାରୀମାନଙ୍କୁ ଡରାଇବା ନାହିଁ କାହିଁକି ?

ସତକଥା ! ଗୋଟିଏ ନୀତିବାକ୍ୟରେ ଅଛି, ତୁମକୁ ବିଧା ମାରିବାକୁ ଚିହିଁକି ଆସୁଥିବା ଲୋକକୁ ତୁମେ ମଧ ବିଧା ଉଂଚାଅ। ତୁମେ ବିଧା ମାରିବ ନାହିଁ। ମାତ୍ର ତୁମର ବିଧା ମାରିବା ଭଙ୍ଗୀ ଦେଖି ସେ ଡରିଯିବ ଓ ତୁମକୁ ଆଉ ବିଧା ମାରିବାକୁ ସାହସ କରିବ ନାହିଁ।



# ୮. ...କାଳୋ ଗଚ୍ଛତି ଧୀମତାମ୍

ପାଠକେ ! ବିଚକ୍ଷଣ ରାଜନୀତିଜ୍ଞ, କୂଟନୀତିଜ୍ଞ ଓ ବିଖ୍ୟାତ ପ୍ରାଜ୍ଞପୁରୁଷ ଚାଣକ୍ୟ ଯେ ଜଣେ କେବଳ ସୂକ୍ଷ୍ମ ନୀତିବାଦୀ ଥିଲେ, ତା' ନୁହେଁ; ସେ ମଧ୍ୟ ଥିଲେ ଜଣେ ରସଜ୍ଞ ଓ ବିଦଗ୍ଧ ପୁରୁଷ। ଅତି ନିଗୂଢ଼ ବିଷୟକୁ ମଧ୍ୟ ସେ ଖୁବ୍ ରସିକତା କରି ଚମତ୍କାର ଭାବେ ପ୍ରକାଶ କରିପାରୁଥିଲେ। ନିମ୍ନୋକ୍ତ ଶ୍ଳୋକଟି ପାଠକରି ତା'ର ମର୍ମ ବୁଝିଲେ ଆପଣ ମୋ କଥାର ଯଥାର୍ଥତା ବୁଝିପାରିବେ। ଶ୍ଳୋକଟି ହେଲା :

**ପ୍ରାତର୍ଦ୍ୟୂତପ୍ରସଙ୍ଗେନ ମଧ୍ୟାହ୍ନେ ସ୍ତ୍ରୀପ୍ରସଙ୍ଗତଃ।**
**ରାତ୍ରୌ ଚୌରପ୍ରସଙ୍ଗେନ କାଳୋ ଗଚ୍ଛତ୍ୟଧୀମତାମ୍ ॥ (୯/୧୧)**

ଅର୍ଥାତ୍, ବୁଦ୍ଧିମାନ୍ ଲୋକେ ସକାଳବେଳା, ଜୁଆଡ଼ିମାନେ ଜୁଆଖେଳାଳୀଙ୍କ ବିଷୟରେ ଚର୍ଚ୍ଚା କରିବେ। ମଧ୍ୟାହ୍ନରେ ସ୍ତ୍ରୀ ପ୍ରସଙ୍ଗ ଚର୍ଚ୍ଚା କରିବେ। ରାତିରେ ଚୋର ଓ ଚୋରି ପ୍ରସଙ୍ଗରେ ଆଲୋଚନା କରିବେ।

ପାଠକେ ! ଏହି ଶ୍ଳୋକଟିର ଅର୍ଥ ଜାଣିଲା ପରେ ଆମେ ପ୍ରଥମେ ହସିବା ନାହିଁ କି ? କେହି କେହି ଚାଣକ୍ୟଙ୍କୁ ଜଣେ ବିକୃତବୁଦ୍ଧି ମଣିଷ ବୋଲି ବୁଝିବେ ନାହିଁ କି ? ଆଉ କେହି ମଧ୍ୟ ଏହି ବିଚିତ୍ର ଶ୍ଳୋକଟିର ଲେଖକ ଚାଣକ୍ୟ ନ ହୋଇ ଜଣେ ଭାଣ୍ଡ ବା ବିଭାଣ୍ଡକ ଲୋକ ବୋଲି ମଧ୍ୟ ଭାବିପାରନ୍ତି। ମାତ୍ର କଥାଟିକୁ ଆମେ ଏପରି ଉପରଠାଉରିଆ ଅର୍ଥରେ ନେବା ନାହିଁ। କଥାଟିର ମର୍ମ ବୁଝି ଓ ତା'ର ବ୍ୟଂଜନା ବା ତାତ୍ପର୍ଯ୍ୟ ବୁଝିଲା ପରେ ଯାଇ ଆମେ ଆମର ମତାମତ ପ୍ରକାଶ କରିବା।

ଆଗ ବୁଝନ୍ତୁ, ସକାଳେ ଜୁଆଡ଼ିଙ୍କ ଚର୍ଚ୍ଚାର ଭିତିରି କଥା କ'ଣ ? ଆମର ଚିରନମସ୍ୟ କବି ଭଗବାନ୍ ବ୍ୟାସଙ୍କ ଲିଖିତ "ମହାଭାରତ" ମହାକାବ୍ୟର ମୂଳ କଥାଟି କ'ଣ ? କୂଟବୁଦ୍ଧି ଶକୁନିଙ୍କ ଦ୍ୱାରା ଆୟୋଜିତ ଦୁର୍ଯ୍ୟୋଧନ ଓ ଯୁଧିଷ୍ଠିରଙ୍କ ମଧ୍ୟରେ କପଟ ପଶାଖେଳ ନୁହେଁ କି ? ଧର୍ମରାଜ ଯୁଧିଷ୍ଠିରଙ୍କର ପଶାଖେଳ ଏକମାତ୍ର ବ୍ୟସନ ଥିଲା ଏବଂ ଏହି ପଶାଖେଳର ନିଶାରେ ସେ ଭାଇମାନଙ୍କୁ ଓ ପତ୍ନୀ ଦ୍ରୌପଦୀଙ୍କୁ ମଧ୍ୟ ବାଜିରଖି ଖେଳିଥିଲେ। ତା'ଫଳରେ ଅଠରଖଣ୍ଡ ମହାଭାରତର ଘଟଣା ଓ ଦୁର୍ଘଟଣାଗୁଡ଼ିକ ସୃଷ୍ଟି ହୋଇ ନ ଥିଲା କି ? ଚାଣକ୍ୟ ଏହି କଥାଟି ଉଲ୍ଲେଖ କରି ଆମକୁ ସକାଳେ ମହାଭାରତ ପାଠକରି ଏ ସମ୍ବନ୍ଧେ ସତର୍କ ହେବାକୁ କହୁଛନ୍ତି।

ସେହିପରି ମଧ୍ୟାହ୍ନରେ ଖିଆ ପିଆ ସାରି ଆମର ସ୍ତ୍ରୀପ୍ରସଙ୍ଗ ଆଲୋଚନା କରିବା ଅର୍ଥ ହେଲା - ଆମର ରାମାୟଣ ପାଠ କରିବା କାରଣ - ମହାକବି ବାଲ୍ମୀକିଙ୍କ କୃତ

ରାମାୟଣର ମୂଳ ବିଷୟବସ୍ତୁ ହେଲା ସ୍ତ୍ରୀ ପ୍ରସଙ୍ଗ । ମହାରାଜା ଦଶରଥ ତାଙ୍କର ଦ୍ୱିତୀୟା ସ୍ତ୍ରୀ କୈକେୟୀଙ୍କ ପ୍ରେମରେ ଅତିଶୟ ବିଭ୍ରାନ୍ତ ହୋଇ ରାମଙ୍କ ପରି ପୁଅକୁ ବନବାସୀ କରାଇଲେ ଏବଂ କୁଳବଧୂଙ୍କୁ ମଧ ଗୃହତ୍ୟାଗୀ କରାଇଲେ ଏବଂ ଲକ୍ଷ୍ମଣଙ୍କ ଭଳି ପୁଅକୁ ମଧ ବନବାସୀ କରାଇ ସେଇ ଦୁଃଖରେ ମଲେ । ଏଣେ ବନବାସ କାଳରେ ରାମଙ୍କର ପତିବ୍ରତା ସ୍ତ୍ରୀ ସୀତାଙ୍କୁ ଲଙ୍କାର ରାଜା ରାବଣ ଚୋରାଇ ନେଲା ଓ ସେହି ପାପରୁ ନିଜର ବଂଶ ନାଶ କରାଇଲା ଓ ନିଜେ ମଧ ପ୍ରାଣ ହରାଇଲା । ତେଣୁ ରାମାୟଣ ଏହି ସ୍ତ୍ରୀ ପ୍ରସଙ୍ଗରେ ଲେଖା ହୋଇଛି ।

ତା'ପରେ ଚାଣକ୍ୟ କହୁଛନ୍ତି, ରାତିରେ ଚୋର ଓ ଚୋରି ପ୍ରସଙ୍ଗ ଆଲୋଚନା କରିବ । ତା'ର ଭିତିରି ଅର୍ଥ ହେଲା, ରାତିରେ ଭାଗବତ ପଢ଼ିବ । କାରଣ ଭାଗବତରେ କେବଳ ଚୋରିପ୍ରସଙ୍ଗ ରହିଛି । ଅର୍ଥାତ୍ ଭଗବାନ୍ ଶ୍ରୀକୃଷ୍ଣ ବାଲ୍ୟକାଳରେ ଗୋପୀମାନଙ୍କ ଘରେ ପଶି ସର, ଲବଣି ଚୋରି କରି ଖାଉଥିଲେ ଏବଂ ତତ୍ ସଂଗେ ସଂଗେ ଦିବ୍ୟଲୀଳା ପ୍ରଦର୍ଶନ କରି ଗୋପୀମାନଙ୍କର ମନ ଓ ହୃଦୟକୁ ଚୋରି କରି ସେମାନଙ୍କ ସହ ଚୋରା ପୀରତିର ଲୀଳା କରୁଥିଲେ । ଏପରିକି ସେହି ପ୍ରୀତିଲୀଳାରେ ଗୋପୀଙ୍କ ବସ୍ତ୍ର ମଧ ଚୋରି କରିଥିଲେ ଏବଂ ଶେଷ ପର୍ଯ୍ୟନ୍ତ ଭଗବାନ୍ ଶ୍ରୀକୃଷ୍ଣଙ୍କ ଜୀବନରେ ଏହି ଚୌରଲୀଳା ହିଁ ଚାଲିଥିଲା । ଦ୍ୱାରକାରେ ସ୍ୟମନ୍ତକମଣି ଚୋରିର ଅପବାଦ ମଧ ଶ୍ରୀକୃଷ୍ଣଙ୍କୁ ଭୋଗିବାକୁ ପଡ଼ିଥିଲା; ଏବଂ ତାଙ୍କର ବଂଶଧର ଯଦୁବଂଶୀମାନେ ମଧ ନାନାବିଧ ଚୋରି କର୍ମରେ ଲିପ୍ତହୋଇ ନଷ୍ଟ ହେଲେ । ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣଙ୍କ ଜୀବନସାରା ହରଣ, ମାରଣ, ତାରଣରେ ଅତିବାହିତ ହୋଇଥିଲା । ତେଣୁ ଭାଗବତ ପଢ଼ିବା ଅର୍ଥ ଏହି ଦିବ୍ୟଚୌର ଚୂଡ଼ାମଣି ଶ୍ରୀକୃଷ୍ଣଙ୍କ ଚରିତ ଆଲୋଚନା କରିବା ।

ପାଠକେ ! ଏବେ ଦେଖିଲେ ତ ! ତୀକ୍ଷ୍ଣବୁଦ୍ଧି ଓ ରସବନ୍ତ ଚାଣକ୍ୟ କିପରି ହାସ୍ୟରସ ପ୍ରୟୋଗ କରି ଏଡ଼େ ବଡ଼ ଦିବ୍ୟ ଉପଦେଶ ଆମକୁ ଶୁଣାଇଛନ୍ତି ! ଚୋରି, ନାରୀ ଓ ଜୁଆଡ଼ି ପ୍ରସଙ୍ଗର ମର୍ମାର୍ଥ କେଡ଼େ ଉପଭୋଗ୍ୟ ହୋଇପାରେ ଦେଖିଲେ ତ ! ପୁଣି ସେହି ବ୍ୟଞ୍ଜନାର୍ଥରୁ କେଡ଼େ ଦିବ୍ୟ ଉପଦେଶ ଆମେ ପାଇଥାଉଁ - ତାହା ମଧ ବୁଝିଲେ ତ ! ଶେଷକଥା ହେଲା, ଚାଣକ୍ୟ ପଣ୍ଡିତେ ଆମକୁ ପ୍ରତିଦିନ ବିଭିନ୍ନ ସମୟରେ ରାମାୟଣ, ମହାଭାରତ ଓ ଭାଗବତ ପଢ଼ିବାକୁ ଉପଦେଶ ଦେଇଛନ୍ତି । କାରଣ ଏହି ତିନୋଟି ପୁରାଣ ବା ମହାକାବ୍ୟ ଆମ ଜୀବନକୁ ଆଲୋକିତ ପଥରେ ଗତି କରିବାରେ ସାହାଯ୍ୟ କରିବେ ।



# ୯. ଏମାନେ ଭଲା କ'ଣ ନ କରନ୍ତି ?

ପାଠକେ ! ମହାମତି ଚାଣକ୍ୟ ତାଙ୍କର ନୀତିବାକ୍ୟଗୁଡ଼ିକୁ ନାନାବିଧ ଶୈଳୀରେ ପ୍ରକାଶ କରିଛନ୍ତି । ତାଙ୍କର ଭାଷାଶୈଳୀ ମଧ୍ୟ ସର୍ବଦା ଗୁରୁଗମ୍ଭୀର ନୁହଁ । ତାଙ୍କର ବାକ୍ୟଗୁଡ଼ିକ କେତେବେଳେ ହାସ୍ୟୋଦ୍ଦୀପକ ତ କେତେବେଳେ ପୁଣି ଗୁରୁଗମ୍ଭୀର, କେତେବେଳେ ପୁଣି ନାନାବିଧ ବ୍ୟଂଜନାରେ ବିଚିତ୍ର, କେତେବେଳେ ପୁଣି କବିତ୍ୱପୂର୍ଣ୍ଣ ଆଳଙ୍କାରିତାରେ ସୁନ୍ଦର ଓ ଚମତ୍କାର । ଏବେ ନିମ୍ନୋକ୍ତ ଶ୍ଳୋକଟିକୁ ଅନୁଧ୍ୟାନ କରନ୍ତୁ ।

**କବୟଃ କିଂ ନ ପଶ୍ୟନ୍ତି କିଂ ନ କୁର୍ବନ୍ତି ଯୋଷିତଃ ।**
**ମଦ୍ୟପାଃ କିଂ ନ ଜଳ୍ପନ୍ତି କିଂ ନ ଭକ୍ଷନ୍ତି ବାୟସାଃ ? (୧୦/୪)**

ଏ ଶ୍ଳୋକଟିର ଅର୍ଥ ହେଲା, କବିମାନେ ଭଲା କ'ଣ ନ ଦେଖନ୍ତି ? ନାରୀମାନେ ଭଲା କ'ଣ କରି ନ ପାରନ୍ତି ? ମଦ୍ୟପମାନେ ଭଲା କ'ଣ ସବୁ ଜଳ୍ପନା ନ କରନ୍ତି ? ଆଉ ଶେଷରେ କୁଆମାନେ ଭଲା କ'ଣ ନ ଖାଆନ୍ତି ?

ବାକ୍ୟଗୁଡ଼ିକ ଯେମିତି ସତ୍ୟ, ସେମିତି ମଧ୍ୟ ମଉଜିଆ । ଏବେ କବିମାନଙ୍କ କଥା ଦେଖନ୍ତୁ । "କବି ମାନେ ନବ ନବ ଉନ୍ମେଷଶାଳିନୀ" ପ୍ରଜ୍ଞାର ଅଧିକାରୀ । ବୈଦିକ ସାହିତ୍ୟରେ କବିଙ୍କୁ ସତ୍ୟଦ୍ରଷ୍ଟା ବୋଲି କୁହାଯାଇଛି । ସେମାନଙ୍କର କଳ୍ପନା ଶକ୍ତି ଅସାଧାରଣ ଏବଂ ସେମାନଙ୍କ କଳ୍ପନା ମଧ୍ୟ ସାଧାରଣ କଳ୍ପନା ନୁହେଁ । ଏହା ଏକ ସୃଜନାତ୍ମକ କଳ୍ପନା । ଏହି ଅସାଧାରଣ କଳ୍ପନା ବଳରେ ସେମାନେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ୍‌ର ଘଟଣାଗୁଡ଼ିକୁ ମଧ୍ୟ କଳନା କରିପାରନ୍ତି । ତାଙ୍କର ଅନ୍ତର୍ଦୃଷ୍ଟିରେ ସେ ଏହି ସୃଷ୍ଟିର ସବୁ ଗୋପନୀୟ ଅଦୃଶ୍ୟ ଘଟଣାଗୁଡ଼ିକୁ ମଧ୍ୟ ପ୍ରତ୍ୟକ୍ଷ କରିପାରନ୍ତି । କବିଙ୍କୁ ମଧ୍ୟ ଦ୍ୱିତୀୟ ପ୍ରଜାପତି ବା ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ସଙ୍ଗେ ତୁଳନା କରାଯାଇଛି । କବି ଦୃଷ୍ଟିରେ ଅସୁନ୍ଦର ମଧ୍ୟ ସୁନ୍ଦର ଦେଖାଯାଏ । ଅସମ୍ଭବ ମଧ୍ୟ ସମ୍ଭବ ହୋଇଯାଏ । କବିମାନେ ଅସତ୍ୟ ଭିତରୁ ସତ୍ୟକୁ ଆବିଷ୍କାର କରିପାରନ୍ତି । ଅମଙ୍ଗଳ ଭିତରୁ ମଙ୍ଗଳକୁ ଆବାହନ କରିପାରନ୍ତି ଓ ଅସୁନ୍ଦରକୁ ମଧ୍ୟ ସୁନ୍ଦର କରିଦେଇପାରନ୍ତି । ମୋଟ୍ ଉପରେ ଆମ ନ ଦେଖିଲା କଥାକୁ କବି ଦେଖିପାରନ୍ତି । ଆମ ନ ଶୁଣିଲା କଥାକୁ କବି ଶୁଣିପାରନ୍ତି ଓ ଆମ ନ କରିପାରିବା କଥାକୁ କବି କରିପାରନ୍ତି । କବିଙ୍କ ସୌନ୍ଦର୍ଯ୍ୟଗ୍ରାହିକା ଶକ୍ତି କିପରି ଶୁଣିବେ ? ସେ ନାରୀର ଶରୀରକୁ ପୁଷ୍ପିତା ଲତା ରୂପେ ଦେଖିପାରନ୍ତି । ଆକାଶରେ ସ୍ୱର୍ଗର ନନ୍ଦନକାନନକୁ ଦେଖି ତା'ର ଚମତ୍କାର ବର୍ଣ୍ଣନା କରିପାରନ୍ତି । ଏପରିକି ସ୍ୱୟଂ ପରମେଶ୍ୱର ତାଙ୍କ ଧ୍ୟାନ ଦୃଷ୍ଟିରେ ଦେଖାଯାନ୍ତି; ଏବଂ ସେ ମଧ୍ୟ ସେ ଉପଲବ୍ଧିକୁ ଚମତ୍କାର ବର୍ଣ୍ଣନା କରିପାରନ୍ତି ।

ଚାଣକ୍ୟଙ୍କର ଦ୍ୱିତୀୟ ବାକ୍ୟଟି ହେଲା - ନାରୀମାନେ ସବୁକିଛି କରିପାରନ୍ତି। ତା'ମାନେ ଚାଣକ୍ୟ ପଣ୍ଡିତେ ନାରୀମାନଙ୍କୁ ବିଚକ୍ଷଣା ବୋଲି ଭାବିଛନ୍ତି ଓ ସର୍ବକର୍ମତତ୍ପରା ରୂପେ ବୁଝିଛନ୍ତି। ଏ କଥା ସର୍ବସମ୍ମତ ନ ହୋଇପାରେ। ସର୍ବକର୍ମ ନିପୁଣ ପୁରୁଷ କ'ଣ ନାହାନ୍ତି ? ନିଶ୍ଚୟ ଅଛନ୍ତି। କିନ୍ତୁ ଚାଣକ୍ୟ ଯେଉଁ ନାରୀମାନଙ୍କ କଥା କହୁଛନ୍ତି - ସେମାନେ ନିଶ୍ଚୟ ଅସାଧାରଣ। ହୁଏତ ସେମାନେ ନାନା ଛଇଛଟକ ଦେଖାଇ ସବୁ କାମ ତୁଲାଇନିଅନ୍ତି। କିଂବା ସେମାନଙ୍କର ସ୍ୱଭାବସୁଲଭ ବୋଧଶକ୍ତି (intuition) ବଳରେ ମଧ୍ୟ ଅସାଧ୍ୟ ସାଧନ କରିପାରନ୍ତି। ଏ କଥା ସତ୍ୟ ଯେ, ଆମ ଦେଶରେ ଗୋଟିଏ ଅନ୍ଧକାରାଚ୍ଛନ୍ନ ଯୁଗରେ ନାରୀକୁ ଅବଳା ଦୁର୍ବଳା, ହୀନବୁଦ୍ଧି ବୋଲି ନାମିତ କରାଯାଇଥିଲା। କିନ୍ତୁ ପୁରାଣ ଓ ଇତିହାସରୁ ଆମେ ବହୁ ବିଚିତ୍ରକର୍ମା ନାରୀଙ୍କ ଚରିତ ବିଷୟରେ ଜାଣୁ। ଉତ୍ତମ ଶାସକ, ପ୍ରଶାସକ, କୂଟନୀତିଜ୍ଞା ଇତ୍ୟାଦି ବିଷୟରେ ବହୁନାରୀ ନିଜର ବିଚକ୍ଷଣତା ଦେଖାଇଛନ୍ତି ଓ ବର୍ତ୍ତମାନ ମଧ୍ୟ ଦେଖାଉଛନ୍ତି। ସାହିତ୍ୟ, ସଙ୍ଗୀତ, ନାଟକ, ନୃତ୍ୟ ଓ କଳା କ୍ଷେତ୍ରରେ ନାରୀ ବହୁ କ୍ଷେତ୍ରରେ ପୁରୁଷଙ୍କୁ ମଧ୍ୟ ଟପିଯାଇଛନ୍ତି। ଏକଥା ସତ ଯେ, ନାରୀ ହେଲା ଶକ୍ତିରୂପିଣୀ। ସେ ମଧ୍ୟ ପ୍ରକୃତିମାତାଙ୍କର ପ୍ରତୀକ। ତେଣୁ ଯେକୌଣସି କର୍ମନିପୁଣତାରେ ସୁଯୋଗ ପାଇଲେ ନାରୀ ମଧ୍ୟ ପୁରୁଷଙ୍କୁ ଟପି ଯାଇପାରେ ଓ ସେ ଉଦାହରଣ ମଧ୍ୟ କମ୍ ନାହିଁ।

ଅନ୍ୟପକ୍ଷରେ ନାରୀର କର୍ମକ୍ଷମତା ଯେପରି ଚମତ୍କାର - ସେହିପରି ଅଦ୍‌ଭୁତ ମଧ୍ୟ। ସେ ନରକ ଭିତରେ ସ୍ୱର୍ଗଟିଏ ନିର୍ମାଣ କରିଦେଇପାରେ; ଏବଂ ସେ ମଧ୍ୟ ସ୍ୱର୍ଗକୁ ଗୋଟାସୁଦ୍ଧା ନରକରେ ପରିଣତ କରିଦେଇପାରେ। ନିଜର ସତୀତ୍ୱ ଓ ପତିପରାୟଣତା ପ୍ରଦର୍ଶନ କରିବାକୁ ଯାଇ ମୃତ ସ୍ୱାମୀର ଚିତାଗ୍ନି ଭିତରକୁ ଡେଇଁ ପଡ଼ି ସହମରଣ କରିପାରେ। ସେହି ନାରୀଙ୍କ ଭିତରେ ପୁଣି ଏପରି ନାରୀ ଅଛନ୍ତି, ଯେଉଁମାନେ ପରପୁରୁଷସହ ପ୍ରୀତି କରି ନିଜ ସ୍ୱାମୀର ତଣ୍ଟିକାଟି ହତ୍ୟା କରିପାରେ ଏବଂ ସବୁଠାରୁ ବଡ଼ କଥା ହେଲା - ମାଆ ଓ ପ୍ରେମିକା ହିସାବରେ ନାରୀର ଚରିତ ଅତୁଳନୀୟ।

ଏବେ ଦେଖିବା ମଦୁଆମାନେ ମଦ ନିଶାରେ ଟଳମଳ ହେଲା ବେଳେ, କ'ଣ ସବୁ ଭଲା ନ କହନ୍ତି ? କ'ଣ ସବୁ ଭଲା କଳ୍ପନା ନ କରନ୍ତି ? ମଦ୍ୟପମାନଙ୍କ ପାଦ ଭୂଇଁ ଉପରେ ସ୍ଥିର ନ ଥାଏ। ଆଉ ସେମାନଙ୍କ ମନ ମଧ୍ୟ ଆକାଶର ଶୂନ୍ୟତା ଭିତରେ ଘୂରି ବୁଲୁଥାଏ। ମଦମତ୍ତ ମଣିଷମାନେ ଏ ଧରାକୁ ସରା ମନେକରନ୍ତି ଓ ମନେ ମନେ ନିଜକୁ ପ୍ରଚଣ୍ଡ ପରାକ୍ରମୀ ରାଜା ଭାବି ପ୍ରଳାପ କରୁଥାନ୍ତି।

ଶେଷ କଥାଟି ହେଲା - ପ୍ରାଣୀମାନଙ୍କ ଭିତରେ ବା ପକ୍ଷୀମାନଙ୍କ ଭିତରେ କୁଆ ଭଲା କଣ ନ ଖାଏ ? ସେ ପାଚିଲା ଅମୃତଭଣ୍ଡା ଯୋଉ ଆଗ୍ରହରେ ଖାଏ, ପୋକଯୋକ ଓ ମନ୍ଦକୁ ମଧ୍ୟ ସେହି ଆଗ୍ରହରେ ଖାଏ ।



## ୧୦. କିଏ କାହାର ଶୋଭା ବଢ଼ାଏ ?

ଏ ଜଗତରେ ସବୁ ସୁନ୍ଦର । କାରଣ ଏହାର ସ୍ରଷ୍ଟା ଭଗବାନ୍ ହେଉଛନ୍ତି - ପରମ ସତ୍ୟ, ପରମ ମଙ୍ଗଳ ଓ ପରମ ସୁନ୍ଦର; କିନ୍ତୁ ଏହି ସୌନ୍ଦର୍ଯ୍ୟକୁ ଦେଖି ଆନନ୍ଦିତ ହେବା ଲାଗି ଦରକାର ଦର୍ଶକର ସୌନ୍ଦର୍ଯ୍ୟଗ୍ରାହୀ ଦୃଷ୍ଟି ଓ ସୌନ୍ଦର୍ଯ୍ୟଗ୍ରାହୀ ମନ । ଆପାତ ଦୃଷ୍ଟିରେ ଯାହା ଅସୁନ୍ଦର - ଜଣେ କଳାକାର ଆଖିରେ ସେ ଅସୁନ୍ଦର ଭିତରେ ଲୁକ୍କାୟିତ ସୌନ୍ଦର୍ଯ୍ୟ ଫୁଟି ଦିଶେ । କବିମାନେ, ଭକ୍ତ ଓ ଭାବୁକମାନେ ଆପାତକୁତ୍ସିତ ବସ୍ତୁରେ ମଧ୍ୟ ସୌନ୍ଦର୍ଯ୍ୟ ଆବିଷ୍କାର କରିପାରନ୍ତି ।

ଆମେ କିନ୍ତୁ ବର୍ତ୍ତମାନ ମହାପ୍ରାଜ୍ଞ ଚାଣକ୍ୟଙ୍କର ସେହି ସଂପର୍କୀୟ ଶ୍ଲୋକଟିକୁ ପଢ଼ିବା ଓ ତା'ର ମର୍ମ ବୁଝିବା । ସେ ଶ୍ଲୋକରେ ସେ କହୁଛନ୍ତି - ଗୋଟିଏ ସାଧାରଣ ସୌନ୍ଦର୍ଯ୍ୟହୀନ ବସ୍ତୁ ମଧ୍ୟ ଆଉ ଗୋଟିଏ ଶୋଭନୀୟ ବସ୍ତୁ ସଂସର୍ଗରେ ଆସି ସୁନ୍ଦର ହୋଇଉଠେ । ଶ୍ଲୋକଟି ପଢ଼ନ୍ତୁ -

**ଦରିଦ୍ରତା ଧୀରତୟା ବିରାଜତେ କୁବସ୍ତ୍ରତା ଶୁଭ୍ରତୟା ବିରାଜତେ ।**
**କଦନ୍ନତା ଚୋଷ୍ଣତୟା ବିରାଜତେ କୁରୂପତା ଶୀଳତୟା ବିରାଜତେ ॥ (୯/୧୪)**

ଅର୍ଥାତ୍, ଦରିଦ୍ର ଲୋକଟିଏ ତା'ର ଧୈର୍ଯ୍ୟଶୀଳତା, ନମ୍ରତା ଗୁଣ ଦ୍ୱାରା ସୁନ୍ଦର ଦିଶେ । ଏପରିକି ତା'ର ମଳିନ ଛିନ୍ନ ପୋଷାକ ଓ କ୍ଳାନ୍ତ ଶ୍ରାନ୍ତ ଶରୀର ତଥା ମୁଖମଣ୍ଡଳ ମଧ୍ୟ ଏହି ଧୀର, ନମ୍ର ସ୍ୱଭାବ ଓ ଆଚରଣ ଦ୍ୱାରା ସୁନ୍ଦର ଓ ନୟନପ୍ରୀତିକର ହୋଇଥାଏ ।

ସେହିପରି ଜଣେ ଯଦି ଅତି ସାଧାରଣ ବସ୍ତ୍ରପୋଷାକ ପିନ୍ଧିଥାଏ - କିନ୍ତୁ ତାହା ଯଦି ସଫା ଥାଏ ଓ ଯଦି ସେହି ପୋଷାକ ଠିକ୍‌ଭାବେ ନିର୍ମିତ ହୋଇଥାଏ ତେବେ ପାଟ ପୀତାମ୍ବରୀ ବା ସିଲ୍କ, ମଠାବସ୍ତ୍ର ନ ହେଲେ ବି ସେହି ପରିଷ୍କାର ପରିଚ୍ଛନ୍ନତା ସେ ବସ୍ତ୍ରପୋଷାକକୁ ସୁନ୍ଦର କରିଥାଏ ।

ସେହିପରି କୌଣସି ଖାଦ୍ୟଦ୍ରବ୍ୟ ଯଦି ଶୀତଳ ହୋଇଯାଇ ନ ଥାଏ - ଯଦି ତାହା ଗରମ ଥାଏ, ତେବେ ସେ ଖାଦ୍ୟ ଅତି ସାଧାରଣ ହୋଇଥିଲେ ମଧ୍ୟ ସୁସ୍ୱାଦୁ ହୋଇଥାଏ। ସାମାନ୍ୟ ଶାଗ ବା କୋଳଥ ଡାଲି ବା ବଗଡ଼ା ଅନ୍ନ ମଧ୍ୟ ଗରମ ଥିଲେ ତାର ସ୍ୱାଦ ରହିଥାଏ।

ଚାଣକ୍ୟ ପଣ୍ଡିତେ ଆଉ ଗୋଟିଏ ଉଦାହରଣ ଦେଇ କହୁଛନ୍ତି - ଜଣକର ଶରୀର ଓ ମୁଖମଣ୍ଡଳ ସୁନ୍ଦର ହୋଇ ନ ଥିଲେ ବି ସେ ବ୍ୟକ୍ତିର ଆଚରଣ ବା ବ୍ୟବହାର ଯଦି ଶୋଭନୀୟ ହୋଇଥାଏ, ଭଦ୍ର ଓ ବିନୀତ ହୋଇଥାଏ, ତେବେ ସେ ଲୋକର ଉପସ୍ଥିତି ଅନ୍ୟ ଲୋକମାନଙ୍କର ନୟନପ୍ରୀତିପ୍ରଦ ହୋଇଥାଏ।

ଏହି ସବୁ ଉଦାହରଣଗୁଡ଼ିକ ଦେଖାଇ ଚାଣକ୍ୟ ଆମକୁ ପ୍ରକୃତ ସୌନ୍ଦର୍ଯ୍ୟ କାହାକୁ କହନ୍ତି, ପ୍ରକୃତ ସ୍ୱାଦ କୋଉଠି ଥାଏ, ଆମର ସାଧାରଣ ଜୀବନରେ ଆମର ଆଚାର ବ୍ୟବହାର, କଥାବାର୍ତ୍ତା ଇତ୍ୟାଦି କିପରି ହେବା ଉଚିତ, ତାହା ଦର୍ଶାଇଛନ୍ତି।

ପାଠକେ ! ଆମେ ବର୍ତ୍ତମାନ ଚାଣକ୍ୟଙ୍କର ଆଉ ଗୋଟିଏ ଶ୍ଳୋକ ପଢ଼ିବା ଓ ତା'ର ଅର୍ଥ ବ୍ୟଂଜନାଦି ବୁଝିବା। ସେ ଶ୍ଳୋକଟି ହେଉଛି :

**ରଙ୍କ କରୋତି ରାଜାନଂ ରାଜାନଂ ରଙ୍କମେବ ଚ।**
**ଧନିନଂ ନିର୍ଦ୍ଧନଂ ଚୈବ ନିର୍ଦ୍ଧନଂ ଧନିନଂ ବିଧିଃ ॥ (୧୦/୫)**

ଏ ଶ୍ଳୋକଟିର ଅର୍ଥ ହେଲା, ଏ ସଂସାରରେ ବା ଆମର ଏ ଜୀବନରେ ଯାହା ସବୁ ଘଟୁଛି, ସେଥିପାଇଁ ଆମେ କିଛି ପରିମାଣରେ ଦାୟୀ ହୋଇପାରୁ ବା ନ ପାରୁ। କିନ୍ତୁ ଏ କଥା ନିଧାର୍ଯ୍ୟ ସତ୍ୟ ଯେ, ଆମ ଉପରେ ଜଣେ ବିଧାତା ଅଛନ୍ତି। ଆମେ ତାଙ୍କୁ ନିୟତି ବୋଲି କହିପାରୁ। ଭଗବାନ୍ ବୋଲି ମଧ୍ୟ କହିପାରୁ। ସେ ହିଁ ଜଗତରେ ଓ ଆମ ଜୀବନରେ ସବୁ କଥା ଘଟାଉଛନ୍ତି। ସେ ରଙ୍କ ବା ଦରିଦ୍ରକୁ ରାଜା କରିଦେଉଛନ୍ତି। ପୁଣି ରାଜାଙ୍କୁ ମଧ୍ୟ ଦରିଦ୍ର ଫକୀର କରିଦେଉଛନ୍ତି। ନିର୍ଦ୍ଧନକୁ ଧନୀ କରୁଛନ୍ତି ସେଇ ବିଧାତା। ସାଧାରଣ ଲୋକଟିକୁ ଅସାଧାରଣ ମଧ୍ୟ ସେଇ କରୁଛନ୍ତି। ସୃଷ୍ଟି, ସ୍ଥିତି, ପ୍ରଳୟର କର୍ତ୍ତା ସେହି ମାତ୍ର ଜଣେ।

ପାଠକେ ! ଆମେ ଏ ଶ୍ଳୋକରୁ ବୁଝିବା ଯେ ଚାଣକ୍ୟ ଜଣେ ଭାଗ୍ୟବାଦୀ ଥିଲେ। ସେ ପୁରୁଷକାର ଉପରେ ବିଶ୍ୱାସ କରୁ ନ ଥିଲେ। ବିଶେଷତଃ ମନୁଷ୍ୟ ଗୋଟିଏ ବୁଦ୍ଧିମାନ୍ ପ୍ରାଣୀ। ତା'ର ମଧ୍ୟ ସୃଜନଶକ୍ତି ଅଛି। ଜ୍ଞାନ-ବିଜ୍ଞାନ ବଳରେ ସେ ଅସାଧ୍ୟ ସାଧନ କରିପାରେ। ନାସ୍ତିକୁ ଅସ୍ତି କରିଦେଇପାରେ। ଅସ୍ତିକୁ ମଧ୍ୟ ନାସ୍ତି କରିଦେଇପାରେ। ତେଣୁ ସବୁ କଥାରେ ଆମେ ଭାଗ୍ୟ, ନିୟତି ବା ବିଧାତାକୁ ଦାୟୀ କରିପାରିବା କି ?

ପାଠକେ ! ଏହା ଏକ ଜଟିଳ ସମସ୍ୟା । କେତେକ ଜ୍ଞାନୀ ପଣ୍ଡିତ ମତଦିଅନ୍ତି ଯେ, ମଣିଷ ଭିତରେ ଆତ୍ମାରୂପରେ ଭଗବାନ୍ ଅଛନ୍ତି । ମଣିଷ ଯଦି ନିଜର ଅନ୍ତରାତ୍ମା ଭଗବାନ୍‌ଙ୍କୁ ଜାଣିପାରେ ଓ ତାଙ୍କ ନିର୍ଦ୍ଦେଶରେ ତା'ର ଜୀବନକୁ ଅତିବାହିତ କରିପାରେ, ତେବେ ସେ ଆଦୌ ଭାଗ୍ୟ, ନିୟତି ବା ବିଧାତା ହାତରେ କ୍ରୀଡ଼ନକ ହେବ ନାହିଁ ।

ଏ କଥା ନିଶ୍ଚୟ ସତ୍ୟ । ମାତ୍ର ଚାଣକ୍ୟ ପଣ୍ଡିତେ ଏହି ଶ୍ଳୋକରେ ସାଧାରଣ ମଣିଷର କଥା କହିଛନ୍ତି । ସେ ଅସାଧାରଣ ପ୍ରଜ୍ଞାବାନ୍, ଯୋଗୀ ଓ ଭକ୍ତମାନଙ୍କ କଥା କହି ନାହାନ୍ତି । ସାଧାରଣ ମଣିଷ ଏକ ଅଦୃଷ୍ଟ ଭାଗ୍ୟଦ୍ୱାରା ପରିଚାଳିତ ହୋଇଥାଏ । ଯେପର୍ଯ୍ୟନ୍ତ ମଣିଷ ନିଜର ଅନ୍ତରାତ୍ମାକୁ ସାକ୍ଷାତ୍ ନ କରିଛି - ଯେପର୍ଯ୍ୟନ୍ତ ମନୁଷ୍ୟ ସମଗ୍ର ବିଶ୍ୱରେ ଭଗବାନ୍‌ଙ୍କୁ ଉପଲବ୍ଧି ନ କରିପାରିଛି, ସେପର୍ଯ୍ୟନ୍ତ ମଣିଷ ଜୀବନ ନିୟତି ହାତରେ ଏକ କ୍ରୀଡ଼ନକ ମାତ୍ର ।



# ୧୧. କିଏ କାହାର ଶତ୍ରୁ ?

ପାଠକେ ! ଆମର ପାରିବାରିକ, ସାମାଜିକ ଓ ଜାତୀୟ ଜୀବନରେ ଆମକୁ ଅନେକ ନରନାରୀଙ୍କ ସହିତ ମିଶିବାକୁ ହୁଏ, କାମ କରିବାକୁ ହୁଏ, ଭାବସଂପର୍କ ଥାପି ବନ୍ଧୁ-ସଖା ହେବାକୁ ହୁଏ । ଆମର ପରିବାର ଓ ସମାଜ ମଧ୍ୟ ନାନା ଜାତିର ନାନା ପ୍ରକୃତିର ନରନାରୀଙ୍କ ଦ୍ୱାରା ପରିଚାଳିତ । ଆମ ଭିତରେ ଯେଉଁମାନେ ଆଧ୍ୟାତ୍ମିକ ପ୍ରକୃତିର ମଣିଷ ବା ଯେଉଁମାନେ ଈଶ୍ୱରଭକ୍ତ, ସାଧୁସନ୍ଥ, ପ୍ରେମୀ ମଣିଷ ସେମାନଙ୍କର ସବୁମଣିଷ ମିତ୍ର ବା ବଂଧୁ । ସେମାନଙ୍କର କେହି ଶତ୍ରୁ ନ ଥାନ୍ତି । ସେମାନେ ନିଜର ଅନିଷ୍ଟ କରୁଥିବା ଲୋକଙ୍କୁ ମଧ୍ୟ ମିତ୍ର ବୋଲି ଭାବନ୍ତି । ସେମାନେ ଏ ଜଗତକୁ ଭାବନ୍ତି ସଚ୍ଚିଦାନନ୍ଦ ଭଗବାନ୍‌ଙ୍କର ଏକ ଲୀଳାଭୂମି - ଏକ ଚମତ୍କାର ନାଟ୍ୟଶାଳା । ଏଠି କେହି କାହାର ପ୍ରକୃତ ଶତ୍ରୁ ନୁହନ୍ତି କି ମିତ୍ର ନୁହନ୍ତି । ରାତିରେ ରଂଗମଂଚରେ ରାମ ଓ ରାବଣଙ୍କ ଭୂମିକାରେ ଅଭିନୟ କରୁଥିବା ଦୁଇଜଣ ମଣିଷ ରାତି ପାହିଲେ ଆଉ ରାମ ରାବଣ ନ ଥାନ୍ତି । ସେମାନେ ହୁଏତ ନିଆଳୀମାଧବ ଗ୍ରାମରେ ବାସ କରୁଥିବା ଦାମ ରାଉତ ଓ ତା'ର ମାଉସୀପୁଅ ଭାଇ ଅଲେଖ ସ୍ୱାଇଁ । ତେଣୁ ଆଧ୍ୟାତ୍ମିକ ମଣିଷମାନେ ପୃଥିବୀକୁ ସେମାନଙ୍କ ନିଜ ପରିବାର ବୋଲି ଭାବନ୍ତି । ଏପରିକି ଜୀବଜନ୍ତୁ ଓ ବୃକ୍ଷଲତା ପର୍ଯ୍ୟନ୍ତ ସମସ୍ତଙ୍କ ପ୍ରତି ପ୍ରେମଭାବ ପୋଷଣ କରନ୍ତି ।

ଏ ସବୁ ସତ୍ତ୍ୱେ ଏ ସଂସାରରେ ଜୀବନ ବଂଚୁଥିବା ସଂସାରୀ ଲୋକମାନେ ତାଙ୍କ ଚେତନାରେ ଏତେ ନିର୍ବିକାର ହୋଇପାରନ୍ତି ନାହିଁ। ସେମାନଙ୍କର ଯେ ଉପକାର କରେ ତାକୁ ସେମାନେ ବଂଧୁ ଭାବନ୍ତି ଓ ଯେ ଅପକାର କରେ ତାକୁ ଭାବନ୍ତି ଶତ୍ରୁ। ଏପରିକି କିଛି ଅପକାର କରି ନ ଥିବା କିନ୍ତୁ ଅପକାର କରିବାର ଆଶଙ୍କା ଥିବା ମଣିଷ ବା ପ୍ରାଣୀକୁ ମଧ୍ୟ ସେମାନେ ଶତ୍ରୁ ବୋଲି ଭାବନ୍ତି। ଚୋର, ଡକାଏତ, ସାପ, ବାଘ, ଭାଲୁଠାରୁ ଆରମ୍ଭ କରି ମଶାମାଛିଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ଆମେ ସାମାଜିକ ମଣିଷମାନେ ଭୟ କରୁ। ତେଣୁ ସେମାନଙ୍କୁ ଶତ୍ରୁ ବୋଲି ଭାବୁ। ମାତ୍ର ମହାମତି ଚାଣକ୍ୟ ଆମକୁ କେତୋଟି ଦୃଷ୍ଟାନ୍ତ ଦେଇ ଦେଖାଇ ଦେଇଛନ୍ତି, କାହାର କିଏ ପ୍ରକୃତରେ ଶତ୍ରୁ ! ଏବେ ଏହି ଶ୍ଳୋକଟି ଶୁଣନ୍ତୁ :

**ଲୁବ୍‌ଧାନାଂ ଯାଚକଃ ଶତ୍ରୁର୍ମୂର୍ଖାଣାଂ ବୋଧକଃ ରିପୁଃ।**
**ଜାରସ୍ତ୍ରୀଣାଂ ପତିଃ ଶତ୍ରୁଃ ଶୌରାଣାଂ ଚନ୍ଦ୍ରମା ରିପୁଃ ॥ (୧୦/୬)**

ଅର୍ଥାତ୍, ଏ ସଂସାରରେ ଯେଉଁମାନେ ଧନଲୋଭୀ କୃପଣ - ସେମାନଙ୍କର ଶତ୍ରୁ ହେଲେ ସେଇମାନେ, ଯେଉଁମାନେ କୌଣସି ଆଳରେ ତାଙ୍କଠାରୁ ଅର୍ଥ ଭିକ୍ଷାକରିବାକୁ ଆସନ୍ତି। ମୂର୍ଖମାନଙ୍କର ଶତ୍ରୁ ହେଲେ ଜ୍ଞାନୀ ଓ ପଣ୍ଡିତ ଲୋକମାନେ। ଯେଉଁ ବିବାହିତା ରମଣୀମାନେ ଅସତୀ, ଅର୍ଥାତ୍ ଯେଉଁ ସ୍ତ୍ରୀ ଲୋକମାନଙ୍କର ବିବାହିତ ପତି ଥିଲେ ବି ସେମାନେ କାମବିହ୍ୱଳା ହୋଇ ଅନ୍ୟ ପୁରୁଷଙ୍କ ସହିତ ଗୋପନରେ ଯୌନ ବ୍ୟଭିଚାର କରନ୍ତି, ସେମାନଙ୍କର ଶତ୍ରୁ ହେଲେ ସେମାନଙ୍କ ବିବାହିତ ସ୍ୱାମୀ। ଯେଉଁ ଚନ୍ଦ୍ର ଶୁକ୍ଳପକ୍ଷ ରାତିରେ ପୃଥିବୀକୁ ତା'ର ସ୍ନିଗ୍ଧ ଶୀତଳ କିରଣରେ ଆଲୋକିତ କରେ, ତାକୁ ଚୋରମାନେ ଶତ୍ରୁ ବୋଲି ଭାବିଥାନ୍ତି। ଚୋରମାନେ ବିଶେଷତଃ ଅନ୍ଧାର ରାତିରେ ଅଦୃଶ୍ୟ ରହି ଅନ୍ୟ ଘରୁ ଚୋରି କରନ୍ତି। ମାତ୍ର ଜହ୍ନ ଆଲୁଅରେ ସେମାନଙ୍କର ଧରାପଡ଼ିବାର ଆଶଙ୍କା ଥାଏ। ତେଣୁ ସାରା ପୃଥିବୀର ଲୋକମାନେ ଯେଉଁ ଚନ୍ଦ୍ରକୁ ଶ୍ରଦ୍ଧାରେ ଆନନ୍ଦରେ କୃତଜ୍ଞତାରେ ମାମୁ ବୋଲି ସ୍ନେହ କରନ୍ତି ଓ ମାନ୍ୟ କରନ୍ତି - ସେ ଚନ୍ଦ୍ର ଚୋରମାନଙ୍କପାଇଁ ଶତ୍ରୁ ବୋଲି ବିବେଚିତ ହୋଇଥାନ୍ତି।

ପାଠକେ ! ଚାଣକ୍ୟ ପଣ୍ଡିତଙ୍କର ଏହି ଦୃଷ୍ଟାନ୍ତଗୁଡ଼ିକ ଖୁବ୍ ଚମତ୍କାର ନୁହେଁ କି ? କିନ୍ତୁ ଏଗୁଡ଼ିକ ଆପାତତଃ ସରଳ ହେଲେ ବି ଏହାର ଅନ୍ତର୍ନିହିତ ସତ୍ୟ ବେଶ୍ ଗଭୀର ଅଟେ। ଅର୍ଥାଭାବରେ ପଡ଼ି ଜଣେ ଦରିଦ୍ର ଲୋକ ଧନବାନ୍ ଲୋକପାଖରୁ କିଛି ଅର୍ଥ ମାଗିବାରୁ ସେ ତା'ର ଶତ୍ରୁ କାହିଁକି ହେବ ? ଆମ ସମାଜରେ ଅନେକ

ସଦାଶୟ, ଦାନଶୀଳ ଧନୀ ଅଛନ୍ତି - ଯେଉଁମାନେ ଦାତବ୍ୟ ଅନୁଷ୍ଠାନମାନଙ୍କୁ ମୁକ୍ତ ହୃଦୟରେ ଦାନ କରନ୍ତି ଏବଂ ଦରିଦ୍ର ଲୋକଙ୍କୁ ଓ ଦୁର୍ଗତ ଲୋକଙ୍କୁ ମଧ୍ୟ ମୁକ୍ତ ମୁଷ୍ଟି ହୋଇ ଦାନ କରନ୍ତି। ଏଇ ସଦାଶୟ ଧନୀମାନେ ଦୁର୍ଗତ ବା ମହତ କାର୍ଯ୍ୟପାଇଁ ଅର୍ଥ ଆଶା କରୁଥିବା ଯାଚକମାନଙ୍କୁ ଶତ୍ରୁ ବୋଲି ଜ୍ଞାନ କରନ୍ତି ନାହିଁ। ସେହିପରି ଆମ ଭିତରେ ଅନେକ ମୂର୍ଖ ଅଛନ୍ତି, ଯେଉଁମାନେ ନାନା କାରଣରୁ ଜ୍ଞାନାର୍ଜନ କରିପାରିନାହାନ୍ତି। ମାତ୍ର ସେମାନଙ୍କ ଭିତରେ ଜ୍ଞାନ-ତୃଷା ପ୍ରବଳ ରହିଛି, ସେମାନେ କେବେବି ଜ୍ଞାନୀ ଲୋକଙ୍କୁ ଶତ୍ରୁ ବୋଲି ଭାବନ୍ତି ନାହିଁ। ସଦାଶୟ ଜ୍ଞାନୀବ୍ୟକ୍ତିମାନେ ମଧ୍ୟ ଏହି ଜ୍ଞାନ-ପିପାସୁମାନଙ୍କୁ ବିନା ପ୍ରତିଦାନରେ ଜ୍ଞାନଦାନ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ।

ସେହିପରି ଅନେକ ପ୍ରେମମୟୀ, ଭାବବତୀ ନାରୀ ଅଛନ୍ତି ଯେଉଁମାନେ ଅନ୍ୟ ପୁରୁଷମାନଙ୍କର ବିଶେଷ ଗୁଣ ପ୍ରତି ଆକୃଷ୍ଟ ହୁଅନ୍ତି। ଏହି ଗୁଣମୁଗ୍ଧା ରମଣୀମାନେ କେବଳ ପୁରୁଷ ନୁହଁ, ତାଙ୍କ ସାଥିର ଅନ୍ୟ ଜ୍ଞାନୀ ଗୁଣୀ ନାରୀଙ୍କ ପ୍ରତି ମଧ୍ୟ ଆକୃଷ୍ଟା ହୁଅନ୍ତି ଓ ସେମାନଙ୍କୁ ନିବିଡ଼ ଭାବେ ଭଲ ପା'ନ୍ତି। ଏହି ଶ୍ରେଣୀର ନାରୀମାନେ କିନ୍ତୁ ସେମାନଙ୍କ ବିବାହିତ ପତି ବା ସ୍ୱାମୀଙ୍କ ପ୍ରତି ପ୍ରଗାଢ଼ ଅନୁରକ୍ତି ରଖିଥାନ୍ତି। ସେମାନେ କେବେ ବି ତାଙ୍କ ବିବାହିତ ସ୍ୱାମୀଙ୍କୁ ଶତ୍ରୁ ବୋଲି ଭାବନ୍ତି ନାହିଁ। କାରଣ କାହାର ଗୁଣମୁଗ୍ଧ ହୋଇ କାହାକୁ ଭଲ ପାଇବା ପାପକାର୍ଯ୍ୟ ନୁହଁ।

ସେହିପରି ଅନେକ ଉଦାର ପ୍ରେମିକ ସ୍ୱାମୀ ଅଛନ୍ତି, ଯେଉଁମାନେ ସେମାନଙ୍କର ଏଇ ଭାବବତୀ ଓ ଅନ୍ୟ ଗୁଣାନୁରକ୍ତା ପତ୍ନୀମାନଙ୍କର ଅନ୍ୟ ଗୁଣବାନ ପୁରୁଷଙ୍କ ସହିତ ଭାବସଂପର୍କକୁ ପାପ ଦୃଷ୍ଟିରେ ଦେଖନ୍ତି ନାହିଁ, କି ପତ୍ନୀଙ୍କ ଚରିତ୍ର ଉପରେ ସନ୍ଦେହ ରଖନ୍ତି ନାହିଁ।

ପାଠକେ ! ମହାମତି ଚାଣକ୍ୟଙ୍କର ଏହି ଦୃଷ୍ଟାନ୍ତର ସତ୍ୟକୁ ଅମେ କାଟିଦେଉ ନାହୁଁ। କିନ୍ତୁ ଏହାର ଅନ୍ୟ ସବୁ ବିକଳ୍ପ ଅଛି। ତାହା ଆମେ ବିନୀତଭାବେ ଆମ ପାଠକପାଠିକାଙ୍କୁ ଦଣାଉଛୁ। ଏତିକି ମାତ୍ର ଆମର ଦୁଃସାହସକୁ ଆପଣମାନେ କ୍ଷମା କରିବେ।



# ୧୨. ଦର୍ପଣଃ କିଂ କରିଷ୍ୟତି ?

**ଯସ୍ୟନାସ୍ତି ସ୍ୱୟଂ ପ୍ରଜ୍ଞା ଶାସ୍ତ୍ରଂ ତସ୍ୟ କରୋତି କିମ୍।**
**ଲୋଚନାଭ୍ୟାଂ ବିହୀନସ୍ୟ ଦର୍ପଣଃ କିଂ କରିଷ୍ୟତି ॥ (୧୦/୯)**

ପାଠକେ! ମହାପ୍ରାଜ୍ଞ ଚାଣକ୍ୟଙ୍କ କଥିତ ଉପରଲିଖିତ ଶ୍ଳୋକଟି ପଢ଼ିଲେ ତ? ଶ୍ଳୋକଟି ଖୁବ୍ ସରଳ ଏବଂ ଏହାକୁ ବୁଝିବାପାଇଁ ବି.ଏ., ଏମ୍.ଏ. ପାସ୍ କରିବାର ଦରକାର ନାହିଁ। କିନ୍ତୁ ଆମେ ବିଷୟଟିର ଆହୁରି ଗଭୀରକୁ ଯିବା। ବର୍ତ୍ତମାନ ବୁଝନ୍ତୁ 'ପ୍ରଜ୍ଞା' ଶବ୍ଦଟିର ଅର୍ଥ କ'ଣ? ଯେଉଁମାନେ କୌଣସି ଜଟିଳ ବିଷୟକୁ ଅନୁଧ୍ୟାନ କରି, ଆଲୋଚନା କରି ତାହାର ଅନ୍ତରସ୍ଥ ଗଭୀର ତଥ୍ୟ ଓ ତତ୍ତ୍ୱକୁ ବୁଝିଥାନ୍ତି ଓ ନିଜ ଜୀବନରେ ମଧ୍ୟ ତାକୁ ପ୍ରୟୋଗ କରିଥାନ୍ତି - ସେମାନଙ୍କୁ ପ୍ରଜ୍ଞାବାନ୍ କୁହାଯାଏ। ଚାଣକ୍ୟ ଏହି ପ୍ରଜ୍ଞାର ଅଧିକାରୀ ଥିଲେ।

ମାତ୍ର ଯେଉଁମାନେ କୌଣସି ବିଷୟରେ କେବଳ ତଥ୍ୟ ସଂଗ୍ରହ କରିଥାନ୍ତି, ମାତ୍ର ତା'ର ତତ୍ତ୍ୱ ସମ୍ବନ୍ଧେ ଅବଗତ ଥିଲେ ବି, ନିଜ ଜୀବନର ଅଭିଜ୍ଞତାରେ ମିଶାଇ ନ ଥାନ୍ତି, ସେମାନଙ୍କୁ କେବଳ ଜ୍ଞାନୀ କୁହାଯାଏ। ତେବେ, ପ୍ରଜ୍ଞାବାନ୍ ହେବା ବଡ଼ କଷ୍ଟ। ଏ ସଂସାରରେ ଜ୍ଞାନୀ ମଣିଷ ବହୁତ ଅଛନ୍ତି, ମାତ୍ର ପ୍ରାଜ୍ଞ ବ୍ୟକ୍ତିଙ୍କ ସଂଖ୍ୟା ଖୁବ୍ କମ୍।

ତେବେ ଜ୍ଞାନୀ ହେବା ବା ପ୍ରାଜ୍ଞ ହେବା ଏତେ ସହଜ ନୁହେଁ। କାରଣ, ଯେଉଁ ବ୍ୟକ୍ତିର ସ୍ୱୟଂପ୍ରଜ୍ଞା ନାହିଁ, ସେ ଗୁଡ଼ାଏ ଶାସ୍ତ୍ର ପଢ଼ିଲେ କ'ଣ ହେବ? ହୁଏତ ସେ କେତେକ କଥା ଜାଣିପାରେ। ମାତ୍ର ତାକୁ ନିଜ ଜୀବନରେ ଯଦି ପ୍ରୟୋଗ କରି ନ ପାରିଲା, ତେବେ ଲାଭ କ'ଣ? ଆଉ ଗୋଟିଏ କଥା ହେଲା, ମଣିଷର ଗ୍ରହଣ କରିବାର ଶକ୍ତି, ଗ୍ରହୀତାପଣ। ଅର୍ଥାତ୍, ତା'ର ଅନ୍ତରର ଗଭୀର ଆଗ୍ରହ - ତା'ର ବୋଧଶକ୍ତି ଏବଂ ତା'ର ଶ୍ରଦ୍ଧାଭାବ। ଏତେକ ନ ଥିଲେ ସେ ମଣିଷ ଲକ୍ଷ ଲକ୍ଷ ପୁସ୍ତକ ପଢ଼ିଲେ ବି, ପ୍ରଜ୍ଞାବାନ୍ ହୋଇପାରିବ ନାହିଁ। ଏ କ୍ଷେତ୍ରରେ ଆମେ ଜ୍ଞାନ ଓ ପ୍ରଜ୍ଞା ଭିତରେ ପାର୍ଥକ୍ୟଟି ନିଶ୍ଚୟ ବୁଝିପାରିବା।

ଚାଣକ୍ୟଙ୍କର ଦ୍ୱିତୀୟ ଦୃଷ୍ଟାନ୍ତଟି ହେଲା, ଯାହାର ଚକ୍ଷୁ ନାହିଁ, ସେ ଅନ୍ଧ ବା ଦୃଷ୍ଟିଶକ୍ତିହୀନ, ସେ ଗୋଟିଏ ଦର୍ପଣ ନେଇ କ'ଣ କରିବ? ଅର୍ଥାତ୍, ସେ ନିଜ ମୁହଁ ତ ଦେଖିପାରିବ ନାହିଁ। ତା'ପାଖେ ଦର୍ପଣର କି ଆବଶ୍ୟକତା ଅଛି? ପାଠକେ! ଚାଣକ୍ୟ ଏଠାରେ ଦର୍ପଣ ଶବ୍ଦଟିକୁ ଗୋଟିଏ ବସ୍ତୁ ଭାବେ ପ୍ରୟୋଗ କରିଛନ୍ତି। କିନ୍ତୁ

ଆମର କବିବର ରାଧାନାଥ ରାୟ 'ଦର୍ପଣ' ଶବ୍ଦଟିକୁ ଏକ ରୂପକ ବା ବ୍ୟଂଜନାର୍ଥରେ ବ୍ୟବହାର କରିଛନ୍ତି ତାଙ୍କର 'ଦରବାର' କାବ୍ୟରେ। ବ୍ରିଟିଶ ସରକାରଙ୍କ ଅମଳରେ ଲାଟ୍‌ସାହେବଙ୍କ ଉଦ୍ୟାନରେ ଦରବାର ବସୁଥିଲା ଏବଂ ସେ ଦରବାରକୁ ରାଜ୍ୟର ବିଶିଷ୍ଟ ବ୍ୟକ୍ତିମାନଙ୍କୁ, ଗୁଣୀ ବ୍ୟକ୍ତିମାନଙ୍କୁ, ରାଜା ଜମିଦାରମାନଙ୍କୁ ଏବଂ ବିଶିଷ୍ଟ ପ୍ରଶାସକମାନଙ୍କୁ ନିମନ୍ତ୍ରଣ କରାଯାଉଥିଲା। ସେହି ଦରବାର ସଭାରେ ଲାଟସାହେବ ବିଶିଷ୍ଟ ଗୁଣୀ ଲୋକଙ୍କୁ ନାନାଦି ଉପାଧି ମଧ୍ୟ ବିତରଣ କରୁଥିଲେ। ଆଧୁନିକ ଯୁଗର 'ପଦ୍ମଶ୍ରୀ', 'ପଦ୍ମବିଭୂଷଣ', 'ଉତ୍କଳରତ୍ନ' ଓ 'ଭାରତରତ୍ନ' ପ୍ରଭୃତି ଉପାଧି ଭଳି ସେତେବେଳେ ମଧ୍ୟ 'ରାୟବାହାଦୁର', 'ରାୟସାହେବ' ଓ 'ଖାଁ ସାହେବ' ପ୍ରଭୃତି ଉପାଧି ଲାଟସାହେବ ବିତରଣ କରୁଥିଲେ। ଏହି ସବୁ ଉପାଧି ପାଇବାପାଇଁ ଉପାଧି-ଲୋଭୀମାନେ ନାନାଦି ଯୋଗାଡ଼ଯତ୍ନ ମଧ୍ୟ କରୁଥିଲେ। ଅନେକ ସମୟରେ ସରକାରଙ୍କ ପାଦଚଟାମାନେ କିଛି ଗୁଣ ନ ଥାଇ ମଧ୍ୟ ବଡ଼ ବଡ଼ ଉପାଧି ପାଉଥିଲେ। କବିବର ରାଧାନାଥ ତାଙ୍କ 'ଦରବାର' କାବ୍ୟରେ ଏହିଭଳି ଲୋକଙ୍କର ନାନାଦି ଦୁର୍ଗୁଣ ଦେଖାଇ ବ୍ୟଙ୍ଗବିଦ୍ରୂପ କରିଛନ୍ତି। ସାମାନ୍ୟ ଲୋକମାନେ ମଧ୍ୟ ନିଜର ଗୁଣ ଓ ବଡ଼ିମା ଦେଖାଇ ଏହି ଉପାଧି ପାଇବାକୁ କିପରି ଲାଳାୟିତ ହେଉଛନ୍ତି ତାହା ମଧ୍ୟ କବି ଖୁବ୍ ବ୍ୟଙ୍ଗାତ୍ମକ ଭାଷାରେ ଦର୍ଶାଇଛନ୍ତି। ସେହିସବୁ ଲୋକମାନଙ୍କର ନାନାଦି ଅବିଗୁଣ ଓ ଆତ୍ମବଡ଼ିମା ଦର୍ଶାଇ କବିବର ଶେଷକୁ ଖୁବ୍ ବିନୀତ ସ୍ୱରରେ କହୁଛନ୍ତି, ହେ ମୋର ପ୍ରିୟ ପାଠକ ପାଠିକାମାନେ ! ଆପଣମାନେ ଭାବନ୍ତୁ ନାହିଁ ଯେ, ମୁଁ ଯେଉଁମାନଙ୍କ ଚରିତ୍ରର ଦୋଷ ସବୁ ବର୍ଣ୍ଣନା କଲି, ସେ ସବୁ ଦୋଷ ମୋ ଭିତରେ ନାହିଁ ବୋଲି। ମୂଲ୍ୟବୋଧର ମାନଦଣ୍ଡରେ ନିଜକୁ ମାପି ମୁଁ ମଧ୍ୟ ମୋର ବ୍ୟକ୍ତିତ୍ୱର ଉଚ୍ଚତା କଳନା କରି ସାରିଛି। ମୋର ବାମନତ୍ୱ ସମ୍ବନ୍ଧେ ସଚେତନ ହୋଇଛି। ଆଉ ମଧ୍ୟ :

ଥୋଇ ଏ ମୁକୁର ନିଜ ଆଗେ ଥୋଇ
ନିଜ ମୁଖ ମୁଁ କି ନିଜେ ଦେଖୁ ନାହିଁ ?

ଅର୍ଥାତ୍, ଉଚ୍ଚମାନଦଣ୍ଡରେ ନିଜକୁ ମାପି ମୁଁ ମଧ୍ୟ ମୋର ଉଚ୍ଚତା କଳି ସାରିଛି। ସେହି ମାନଦଣ୍ଡର ମୁକୁର ବା ଦର୍ପଣକୁ ମୋ ଆଗରେ ଥୋଇ ମୁଁ ମଧ୍ୟ ମୋର ଚରିତ୍ରର ଦୀନତା ଓ ହୀନତା ଦେଖିପାରିଛି। ଏଠାରେ ଦର୍ପଣରେ ନିଜକୁ ଦେଖିବା ମାନେ ହେଲା ନିଜର ପ୍ରକୃତି ଓ ଚରିତ୍ରକୁ ନିରପେକ୍ଷ ଭାବେ ଦେଖିବା।



# ୧୩. କୋଉ ମଣିଷ ଅନ୍ତଃସାର ଶୂନ୍ୟ ?

ପାଠକେ ! ଆପଣମାନେ ସମସ୍ତେ ଜାଣନ୍ତି ଯେ, ବସନ୍ତ ଋତୁରେ ଦକ୍ଷିଣ ଦିଗରୁ ମଳୟ ପବନ ବହେ ଏବଂ ସେହି ପବନ ଯୋଉ ନିମ୍ବଗଛରେ ବାଜିବ ସେ ନିମ୍ବଗଛଟି ଚନ୍ଦନ ବୃକ୍ଷରେ ରୂପାନ୍ତରିତ ହୋଇଯିବ। ଏହାର ନିଶ୍ଚୟ କିଛି ବୈଜ୍ଞାନିକ କାରଣ ଅଛି। ଉଦ୍‌ଭିଦ ବିଜ୍ଞାନୀମାନେ ସେ ତତ୍ତ୍ୱ କହିବେ। କିନ୍ତୁ ଗୋଟିଏ କଥା ସତ୍ୟ ଯେ, ନିମ୍ବଗଛ ଭିତରେ ଏପରି ଏକ ଗୁଣ ଅଛି ଯାହାକି ମଳୟ ପବନର ସ୍ପର୍ଶରେ ପୁଲକିତ ହୋଇଯାଏ, ଏବଂ ତା'ର ଶରୀରର ଗନ୍ଧ ବଦଳିଯାଇ ଚନ୍ଦନର ସୁବାସରେ ଚଉଦିଗକୁ ଚହଟାଇଦିଏ। ନିମ୍ବଗଛର କାଠ ଚନ୍ଦନକାଠରେ ରୂପାନ୍ତରିତ ହୋଇ ପବିତ୍ର ହୋଇଯାଏ। ସତେକି ନିମ୍ବଗଛ ଭିତରେ ଗୋଟାଏ ଆକୁତି ଥିଲା, ଗୋଟାଏ ଆସ୍ପୃହା ଥିଲା ! ସେ କିପରି ଚନ୍ଦନକାଠରେ ରୂପାନ୍ତରିତ ହୋଇଯିବ।

ମାତ୍ର ସବୁ ଗଛରେ ମଳୟ ପବନ ଲାଗିଲେ ସେ ଗଛ କ'ଣ ଚନ୍ଦନ ହୋଇଯାଏ ? ନା-ନା। ମହାପ୍ରାଜ୍ଞ ଚାଣକ୍ୟ ତାଙ୍କର ଗୋଟିଏ ଶ୍ଳୋକରେ କ'ଣ କହୁଛନ୍ତି- ପଢ଼ନ୍ତୁ –

ଅନ୍ତଃସାରବିହୀନାନାମୁପଦେଶୋ ନ ଜାୟତେ।
ମଳୟାଚଳସଂସର୍ଗାନ୍ ନ ବେଣୁଶ୍ଚନ୍ଦନାୟତେ ॥ (୧୦/୮)

ଅର୍ଥାତ୍, ଯେଉଁ ଲୋକ ଅନ୍ତଃସାରଶୂନ୍ୟ ତା'ଉପରେ ସଦୁପଦେଶ କିଛି କାର୍ଯ୍ୟ କରେ ନାହିଁ। ମଳୟପବନର ସଂସ୍ପର୍ଶରେ ଆସିଲେ ନିମ୍ବଗଛର ନିଦାକାଠ ସିନା ଚନ୍ଦନ ହୋଇଯିବ, ଆଉ କ'ଣ ଭିତର ଫମ୍ପା ବାଉଁଶ ଗଛ ଦେହରେ ମଳୟ ପବନ ବାଜିଲେ ବାଉଁଶଗଛଟା ଚନ୍ଦନଗଛ ହୋଇଯିବ ?

ମହାମତି ଚାଣକ୍ୟଙ୍କ ଶ୍ଳୋକର ଅନ୍ତର୍ନିହିତ ଅର୍ଥଟି ହେଲା - ଭଗବାନ୍ ସବୁ ମଣିଷକୁ ସମାନ ଭାବରେ ଗଢ଼ିନାହାନ୍ତି। କିଏ ବୁଦ୍ଧିମାନ୍ ତ କିଏ ବୁଦ୍ଧିହୀନ। କିଏ ଦୁଷ୍ଟ ତି କିଏ ଶିଷ୍ଟ। କିଏ ସ୍ୱାସ୍ଥ୍ୟବାନ୍ ତ କିଏ ଚିରରୋଗୀ। କିଏ ବଳବାନ୍ ତ କିଏ ଦୁର୍ବଳ। କିଏ ଗରିବ ଘରେ ଜନ୍ମହୋଇଛି ତ କିଏ ଧନୀ ଘରେ ଜନ୍ମ ହୋଇଛି। କିଏ ଜ୍ଞାନବନ୍ତ ତ କିଏ ମୂର୍ଖ, କିଏ ସାଧୁ ତ କିଏ ବଦ୍‌ମାସ। କିନ୍ତୁ ମଣିଷ ଅନ୍ୟାନ୍ୟ ପଶୁ ବା ପ୍ରାଣୀଙ୍କ ଭଳି ନୁହଁ। ମନୁଷ୍ୟ ଗୋଟିଏ କ୍ରମବିକାଶଶୀଳ ପ୍ରାଣୀ। ତା'ଭିତରେ ଏକ ଅନ୍ତର୍ନିହିତ ଶକ୍ତି ଅଛି, ତା'ମନ ଓ ହୃଦୟରେ ଭଗବାନ୍ ମଧ୍ୟ ଗୋଟିଏ ଏଷଣା ଦେଇଛନ୍ତି ନିଜକୁ ପରିବର୍ତ୍ତନ କରିବାପାଇଁ, ଅଧିକତର ଉନ୍ନତ କରିବାପାଇଁ, ଆଗକୁ

ଅଗ୍ରସର ହେବାପାଇଁ ଓ ନିଜକୁ ଉନ୍ନତ କରିବାପାଇଁ ତା'ଭିତରେ ଗୋଟିଏ ଅସ୍ପୃହା ରଖିଦେଇଛନ୍ତି । ତା'ମନରେ ଏକ ସଂକଳ୍ପଶକ୍ତି ଓ ଗ୍ରହିତାପଣ ମଧ୍ୟ ରଖି ଦେଇଛନ୍ତି । ମାତ୍ର ତା'ସହିତ ମଣିଷକୁ ମଧ୍ୟ ଗୋଟିଏ ପ୍ରକାର ସ୍ୱାଧୀନତା ଦେଇଛନ୍ତି । ବିବେକ ଦେଇଛନ୍ତି । ତା' ମନ, ହୃଦୟ ଓ ଶରୀରର ସଗୁଣାତ୍ମକ ବିକାଶ ସେ ଇଚ୍ଛା କଲେ କରିପାରେ । ତା'ର ସଂକଳ୍ପ, ଆସ୍ପୃହା, ପରିଶ୍ରମ, ଇଶ୍ୱରଭକ୍ତି ବା ବିଭୁପରାୟଣତା ତା'ର ଅଧେ ମଣିଷ ଅଧେ ପଶୁର ମିଶ୍ରିତ ପ୍ରକୃତିକୁ ସେ ଦିବ୍ୟପ୍ରକୃତିରେ ରୂପାନ୍ତରିତ କରିଦେଇପାରେ ।

କିନ୍ତୁ ଯେଉଁ ମଣିଷମାନେ ଅନ୍ତଃସାରଶୂନ୍ୟ ଅର୍ଥାତ୍, ଯେଉଁ ମଣିଷମାନଙ୍କ ଭିତରେ ଏକ ମହତ୍ତର ଜୀବନ ବଂଚିବାପାଇଁ ଇଚ୍ଛା ନାହିଁ - ଆଗ୍ରହ ନାହିଁ - ସଂକଳ୍ପ ନାହିଁ - ଉଦ୍ୟମ ନାହିଁ - ବ୍ୟାକୁଳତା ନାହିଁ - ସେମାନଙ୍କର ପରିବର୍ତ୍ତନ ଅସମ୍ଭବ । ସେମାନଙ୍କୁ ମଧ୍ୟ କେହି ପରିବର୍ତ୍ତନ କରିପାରିବେ ନାହିଁ । ରାଶି ରାଶି ଗ୍ରନ୍ଥ ପଢ଼ିଲେ ବି ସେମାନେ ଜ୍ଞାନବନ୍ତ ହୋଇପାରିବେ ନାହିଁ । ବହୁ ସାଧୁ, ସନ୍ଥ, ବିଦ୍ୱାନ୍‌ଙ୍କ ସଂସ୍ପର୍ଶରେ ଆସିଲେ ବା ସେମାନଙ୍କ ତୁଣ୍ଡରୁ ସଦୁପଦେଶ ବା ଜ୍ଞାନଗର୍ଭକ ଭାବପୂର୍ଣ୍ଣ ବଚନ ଶୁଣିଲେ ବି ସେମାନଙ୍କ ଉପରେ ତା'ର କିଛି ପ୍ରଭାବ ପଡ଼େ ନାହିଁ । କାରଣ ସେମାନଙ୍କ ହୃଦୟ ମନ ଅନ୍ତଃସାରହୀନ । ଏହି 'ଅନ୍ତଃସାର' ବିଷୟଟି କ'ଣ ? ଅନ୍ତଃସାର ହେଲା- ମଣିଷର ଅନ୍ତର ପ୍ରକୃତିର ସଂପଦ । ଯେଉଁ ମଣିଷର କୌଣସି ଭଲ କଥା ଜାଣିବାପାଇଁ ଆଗ୍ରହ ନାହିଁ - କି କୌଣସି ଭଲ କାମ କରିବାକୁ ସଂକଳ୍ପ ନାହିଁ । ଯେ ନିଜକୁ ଅଗ୍ରସର କରିବା ଲାଗି ନିଜ ଭିତରେ କୌଣସି ପ୍ରେରଣା ଅନୁଭବ କରୁ ନାହିଁ । ତା' ଭିତରଟା ମାନେ ତା'ର ମନ ଓ ହୃଦୟ ଅନ୍ତଃସାରଶୂନ୍ୟ । ଠିକ୍ ବାଉଁଶଗଛ ଭଳି । ବାହାରଟା ଡଉଲ ଡାଉଲ କିନ୍ତୁ ଭିତରଟା ଫମ୍ପା । ଏଭଳି ମଣିଷକୁ କେହି କିଛି ଉପଦେଶ ଦେଇ ସମୟ ନଷ୍ଟ କରିବା ଉଚିତ ନୁହଁ ।

ତେବେ ଏ ଉଦାହରଣଟିର ଅନ୍ୟପଟଟି ମଧ୍ୟ ଅଛି, ତା'ହେଲା - ଯାହାର ମନ ଓ ହୃଦୟର ସବୁଟି କୋଠରି ଏଣୁ ତେଣୁ ବାଜେ ଆଳିମାଳିକାରେ ଭର୍ତ୍ତି ହୋଇଛି, ତାକୁ ଯଦି ଗୋଟିଏ ମୂଲ୍ୟବାନ୍ ଦ୍ରବ୍ୟ ଦିଆଯାଏ, ତାକୁ ସେ କେଉଁଠି ରଖିବ ? ସେଥିପାଇଁ ଯୁଗାବତାର ରାମକୃଷ୍ଣ ପରମହଂସ କହିଛନ୍ତି, "ଆଗ ନିଜର ଗରା ଓ ମାଠିଆରେ ଥିବା ମଇଳା ପାଣିଗୁଡ଼ାକ ଫୋପାଡ଼ିଦେଇ ପାତ୍ର ଖାଲି କରିଦିଅ । ତା'ପରେ ସେଇ ଫମ୍ପା ଗରା ଓ ମାଠିଆକୁ ଗଙ୍ଗାରେ ବୁଡ଼ାଅ ଓ ପାତ୍ରଟିକୁ ପବିତ୍ର ନିର୍ମଳ ଗଙ୍ଗାଜଳରେ ପୂର୍ଣ୍ଣ କରି ଘରକୁ ନେଇଆସ ଓ ପାନ କର ।"

ମାତ୍ର ଚାଣକ୍ୟ ପଣ୍ଡିତେ ଅନ୍ତଃସାରଶୂନ୍ୟତାକୁ ଏ ଅର୍ଥରେ ବ୍ୟବହାର କରି ନାହାନ୍ତି । ସେ କହନ୍ତି, ଅନାଗ୍ରହୀ ଓ ନିସ୍ପୃହ ମଣିଷକୁ ଯାହା କିଛି ଦେଲେ ବି ତା'ର କିଛି ଉପକାର ହୁଏ ନାହିଁ । ରାମକୃଷ୍ଣ ପରମହଂସଙ୍କ କଥାର ମର୍ମ ଆଧ୍ୟାତ୍ମିକ । ମାତ୍ର ଚାଣକ୍ୟଙ୍କ ଶ୍ଳୋକଟି ନୈତିକ । ଏହା ଏକ ନୀତିବାକ୍ୟ । ନୈତିକ ସତ୍ୟ ଓ ଆଧ୍ୟାତ୍ମିକ ସତ୍ୟ ଏକ କଥା ନୁହଁ । ତେବେ ଆମକୁ ପ୍ରଥମେ ନୈତିକ ସତ୍ୟରେ ପ୍ରତିଷ୍ଠିତ ହେବାକୁ ହେବ । ତା'ହେଲେ ଯାଇ ଆମେ ଆଧ୍ୟାତ୍ମିକ ସତ୍ୟକୁ ବୁଝିପାରିବା ଓ ଗ୍ରହଣ କରିପାରିବା ।

ଧରନ୍ତୁ, ଜଣେ କେବଳ ଭଗବାନ୍‌ଙ୍କୁ ନେଇ ଅଛି । ସେ ଭଗବାନ୍‌ଙ୍କ ବ୍ୟତୀତ ଆଉ କିଛି ଚାହେଁ ନାହିଁ । ସେ ଧନ, ଜନ, ଗୋପ, ଲକ୍ଷ୍ମୀ, ଯଶ, କ୍ଷମତା କିଛି ଚାହେଁ ନାହିଁ । ତା'ର ଆଗ୍ରହ ଓ ଅଭୀପ୍ସା କେବଳ ଭଗବାନ୍‌ଙ୍କୁ ଉପଲବ୍ଧି କରିବାପାଇଁ । ଏପିରିକି ତା'ର ଏଣୁତେଣୁ ଜ୍ଞାନ ଓ ଭାବ ମଧ୍ୟ ଆକୃଷ୍ଟ କରେ ନାହିଁ । ସେ କେବଳ ଭଗବତ୍ ବିଷୟକ ଜ୍ଞାନ ଚାହେଁ ଓ ସେହି ଭାବରେ କେବଳ ମଗ୍ନ ହେବାକୁ ଚାହେଁ । ଏଭଳି ଲୋକଙ୍କୁ କ'ଣ ଆମେ ଅନ୍ତଃସାରଶୂନ୍ୟ ବୋଲି କହିବା ? ନା', ଏଭଳି ଲୋକର ମନ ଓ ହୃଦୟ ସର୍ବଦା ଭଗବାନ୍‌ଙ୍କ ଭାବରେ ପୂର୍ଣ୍ଣ । ଭଗବାନ୍ ହିଁ ତା' ଅନ୍ତରର ସାରବସ୍ତୁ । ଆଉ ସବୁ ତୁଚ୍ଛ ।



## ୧୪. ବନ୍ଧୁ ମେଳରେ ନିର୍ଦ୍ଧନ ବ୍ୟକ୍ତି

ବରଂ ବନଂ ବ୍ୟାଘ୍ରଗଜେନ୍ଦ୍ରସେବିତଂ
ଦ୍ରୁମାଳୟଂ ପତ୍ରଫଳାମ୍ବୁସେବନମ୍ ।
ତୃଣେଷୁ ଶଯ୍ୟା, ଶତଜୀର୍ଣ୍ଣବଲ୍‌କଲଂ
ନ ବନ୍ଧୁମଧ୍ୟେ ଧନହୀନଜୀବନମ୍ ॥ (୧୦/୧୨)

ପାଠକେ ! ଉପରୋକ୍ତ ଶ୍ଳୋକଟିରେ ମହାଜ୍ଞାନୀ ଚାଣକ୍ୟ କହୁଛନ୍ତି, ବନ୍ଧୁବାନ୍ଧବଙ୍କ ମଧ୍ୟରେ ନିର୍ଦ୍ଧନ, ଦୀନଦରିଦ୍ର ହୋଇ ରହିବା ଅପେକ୍ଷା ବା ଅପେକ୍ଷାକୃତ ଧନୀ ଭାଇ ବିରାଦର ସାଙ୍ଗମାନଙ୍କ ସହିତ ଏକତ୍ର ରହିବା ଅପେକ୍ଷା ବ୍ୟାଘ୍ର, ସିଂହ ଅଧ୍ୟୁଷିତ ଅରଣ୍ୟରେ, କୌଣସି ବୃକ୍ଷମୂଳେ ବାସକରିବା କୋଟି ଗୁଣେ ଭଲ ଓ ସହଣୀୟ । ବଣରେ ବୃକ୍ଷମୂଳେ ବା ବୃକ୍ଷ ଡାଳରେ ମଂଚା ବାନ୍ଧି ରହିବ । ବଣରେ ଉପୁଜାତ ହେଉଥିବା ଫଳମୂଳ ଶାକାଦି ଭକ୍ଷଣକରି ପେଟର ଜ୍ୱାଳା ନିବାରଣ କରିବ । ଘାସ

ଉପରେ ବା ପତ୍ରବିଛାଇ ତା' ଉପରେ ଶୟନ କରିବ; ଏବଂ ଭଲ ପୋଷାକପତ୍ର ବଦଳରେ ଗଛର ବଲ୍‌କଲ ପିନ୍ଧି ବୁଲିବ। ଶତଛିନ୍ନ ପତ୍ର ବା ବକଳ ପିନ୍ଧିଲେ ସେଠାରେ କାହାକୁ ଲଜ୍ଜା କରିବାର ନ ଥିବ। କିନ୍ତୁ ନିଜ ଗ୍ରାମରେ ବା ସହରରେ ନିର୍ଦ୍ଧନ ବା ଦରିଦ୍ରଟିଏ ହୋଇ ବନ୍ଧୁବାନ୍ଧବ ସମବୟସ୍କ ସଖା କି ସହୋଦରଙ୍କ ସହିତ ଆଦୌ ରହିବ ନାହିଁ। କାରଣ, ତା'ଠାରୁ ବଳି ଲଜ୍ଜାକର ଓ ମାନହାନି ବିଷୟ ଆଉ ନାହିଁ। ଧନୀ ବନ୍ଧୁମାନେ ତୁମକୁ ହେୟଜ୍ଞାନ କରି ନିଜଠାରୁ ଦୂରରେ ବସାଉଥିବେ, ବସିବାକୁ ଆସନ ଦେଉ ନ ଥିବେ। ତୁମସହ କଥା କହୁ ନଥିବେ କି ତୁମକୁ କଥା କୁହାଇ ଦେଉ ନଥିବେ। ଧନୀ ବନ୍ଧୁବାନ୍ଧବଙ୍କ ଗହଣରେ ତୁମକୁ ମଧ୍ୟ ବଡ଼ ହୀନିମାନ ଲାଗୁଥିବେ। ଏହା ତୁମପାଇଁ ବଡ଼ ଅପମାନକର ବୋଧ ହେବ। ସେପରିସ୍ଥଳେ, ସେହି ସବୁ ଧନୀବ୍ୟକ୍ତିଙ୍କ ସମାବେଶସ୍ଥଳିକୁ ତୁମର ଯିବା ଉଚିତ୍ ନୁହଁ କି ସେମାନଙ୍କ ସହିତ ଏକସ୍ଥାନରେ ବସବାସ କରିବା ଉଚିତ୍ ନୁହେଁ। ତା' ଅପେକ୍ଷା ବରଂ ବଣ୍ୟଜନ୍ତୁ ସେବିତ ଅରଣ୍ୟରେ ବାସକରିବା ଖୁବ୍ ଶ୍ରେୟସ୍କର।

ପାଠକେ ! ଆପଣ ଶ୍ଳୋକଟି ପଢ଼ିଲେ ଓ ତା'ର ଆକ୍ଷରିକ ଅର୍ଥ ମଧ୍ୟ ବୁଝିଲେ। ବ୍ୟାବହାରିକ ଦୃଷ୍ଟିରୁ ସାଧାରଣ ମଣିଷଙ୍କର ସାଧାରଣ ଜୀବନରେ ଏଇ ଶ୍ଳୋକଟିର ନିଶ୍ଚୟ କିଛି ତାତ୍ପର୍ଯ୍ୟ ଅଛି। ମାତ୍ର ଅସାଧାରଣ ଲୋକଙ୍କ ପାଇଁ ଏପରି ଉପଦେଶର କୌଣସି ମୂଲ୍ୟ ନାହିଁ। କାରଣ -

'ଗରିବ' ବା 'ଦରିଦ୍ର' ବା 'ନିର୍ଦ୍ଧନ' ଶବ୍ଦଗୁଡ଼ିକର ବ୍ୟାପକ ଅର୍ଥ ଅଛି। ଗରିବ ମାନେ ଯାହାର ପେଟ-ପୋଷଣ ଲାଗି ଅନ୍ନ ନାହିଁ। ଲଜ୍ଜାନିବାରଣ ଲାଗି ବସ୍ତ୍ର ନାହିଁ, ରହିବା ଲାଗି ଥରାଏ ଜାଗା ନାହିଁ, କି ଖଣ୍ଡିଏ କୁଡ଼ିଆ ମଧ୍ୟ ନାହିଁ। ସମାଜରେ ଏପରି ଲୋକଙ୍କ ସଂଖ୍ୟା ଖୁବ୍ କମ୍। କିନ୍ତୁ ଯେଉଁ ସମାଜରେ ଏମାନଙ୍କ ସଂଖ୍ୟା ଖୁବ୍ ବେଶି - ସେ ସମାଜ ଓ ସେ ସରକାର ସ୍ୱୟଂ ଗରିବ। ଆମର ଏ ବସୁନ୍ଧରା ଗୋଟାଏ ମରୁଭୂମି ନୁହଁ। ଏହାକୁ ଖୋଳିଲେ ବହୁ ମୂଲ୍ୟବାନ୍ ଧାତୁ ମିଳିବ। ଏ ବସୁନ୍ଧରାର ଉପରିଭାଗକୁ ଚାଷ କଲେ ବହୁ ଶସ୍ୟ ମିଳିବ। ଉଦ୍‌ଯୋଗୀ ଓ ପରିଶ୍ରମୀ ଲୋକଙ୍କୁ ସମାଜ ସରକାରମାନେ କିଛି ସାହାଯ୍ୟ ସହାୟତା କଲେ ଖାଦ୍ୟ, ବସ୍ତ୍ର ଓ ଗୃହର ଅଭାବ ଲୋକଙ୍କର ରହନ୍ତା ନାହିଁ। ଦେଶରେ ଗରିବଙ୍କ ସଂଖ୍ୟା କ୍ରମଶଃ କମି କମି ଶୂନ୍ ହୋଇଯାନ୍ତା। 'ଗରିବ' କେବଳ ଅଭିଧାନରେ ରହିଥାନ୍ତେ।

ସେହିପରି ନିର୍ଦ୍ଧନ ମଧ୍ୟ ଗୋଟିଏ ଆପେକ୍ଷିକ ଶବ୍ଦ। ନିର୍ଦ୍ଧନ ଅର୍ଥ ଧନହୀନ ଏବଂ ଧନ ମଧ୍ୟ କେବଳ ଟଙ୍କା ସୁନା ବା ଖାଦ୍ୟଦ୍ରବ୍ୟ ସମେତ ଅନ୍ୟାନ୍ୟ ମୂଲ୍ୟବାନ୍ ଦ୍ରବ୍ୟକୁ ବୁଝାଏ ନାହିଁ। ଦ୍ରବ୍ୟ ଧନ ସହିତ ମଧ୍ୟ ରହିଛି - ବିଦ୍ୟାଧନ, ଜ୍ଞାନଧନ,

ବୁଦ୍ଧିଧନ, ଉଦ୍‌ଯୋଗ ଧନ ଏବଂ ଧର୍ମଧନ। ଏଥିରୁ ଯେକୌଣସି ଧନ ଅର୍ଜନ କରୁଥିବା ଲୋକକୁ ଆମେ ନିଶ୍ଚୟ ଧନୀକ ବୋଲି କହିବା। ସତକୁସତ ଏଇ ଧନୀମାନେ ନିଜ ନିଜର ଗୁଣ-ଧନ ବଳରେ ଖୁବ୍ ପ୍ରଭାବଶାଳୀ ହୋଇନ୍ତି। ଏମାନଙ୍କୁ ଟଙ୍କା, ସୁନା ବା କ୍ଷମତା ଅଧିକାରୀ ଧନୀମାନେ ହେୟଜ୍ଞାନ କରିପାରନ୍ତି ନାହିଁ। ଦ୍ରବ୍ୟଧନୀମାନେ ଗୁଣୀ ବ୍ୟକ୍ତିମାନଙ୍କୁ ସମାଦର କରି ନିଜେ ସମାଦୃତ ହୋଇଥାନ୍ତି। ଉଦ୍‌ଯୋଗୀ ଓ ପରିଶ୍ରମୀ ଲୋକଙ୍କୁ ସାହାଯ୍ୟ କରି ଓ ସେମାନଙ୍କୁ ବିଭିନ୍ନ କର୍ମରେ ନିଯୁକ୍ତ କରି ନିଜେ ଅଧିକତର ଧନୀ ହୋଇଥାନ୍ତି ଓ ସମାଜରେ ସେମାନଙ୍କର ସମ୍ମାନ ବଢ଼ିଯାଏ।

ଏମାନଙ୍କ ଛଡ଼ା - ସମାଜରେ ଆଉ କେତେକ ବ୍ୟକ୍ତି ଅଛନ୍ତି - ଯେଉଁମାନେ ସାଧୁ, ସନ୍ନ୍ୟାସୀ, ବୈରାଗୀ, ଯୋଗୀ, ବୈଷ୍ଣବ। ସେମାନେ ସେମାନଙ୍କ ଜୀବନକୁ ଆଧ୍ୟାତ୍ମିକ ମାର୍ଗରେ ପରିଚାଳନା କରନ୍ତି ଏବଂ ସମାଜର ଗୃହସ୍ଥ ନରନାରୀଙ୍କୁ ଧର୍ମଶିକ୍ଷା ଦିଅନ୍ତି, ଧର୍ମଦୀକ୍ଷା ଦିଅନ୍ତି ଓ ଧର୍ମାନୁପ୍ରାଣିତ କରନ୍ତି। ଏମାନେ ଭିକ୍ଷା ଓ ମାଧୁକରୀ କରି ପେଟ ପୋଷନ୍ତି। ଏମାନଙ୍କୁ କେହି ଅବଜ୍ଞା ବା ହତାଦର କରନ୍ତି ନାହିଁ। ବରଂ ଏମାନେ କି ଦରିଦ୍ର କି ଧନୀ, ସମସ୍ତଙ୍କଠାରୁ ମାନ୍ୟତା ପାଇଥାନ୍ତି ଓ ଆର୍ଥିକ ସାହାଯ୍ୟ ପାଇଥାନ୍ତି।

ଏମାନଙ୍କ ବ୍ୟତୀତ ସମାଜରେ ବହୁ ଗୁଣୀ ବ୍ୟକ୍ତି ଅଛନ୍ତି - କବି, ବୈଜ୍ଞାନିକ, ସଂଗୀତଜ୍ଞ, ନାଟକାର ଓ କଳାକାରମାନେ ଏହି ପ୍ରତିଭାବାନ୍ ବ୍ୟକ୍ତିମାନେ ନିଜର ପ୍ରତିଭା ବିକାଶରେ ସାରାଜୀବନ ବ୍ୟୟ କରି ସାଧନା କରୁଥାନ୍ତି। ଫଳରେ ନାନା ଧନ୍ଦା କରି ଧନୀ ହୋଇପାରନ୍ତି ନାହିଁ। ତା' ନ ହେଲେ ବି ଏମାନେ ମଧ୍ୟ ରାଜତନ୍ତ୍ର ଓ ଗଣତନ୍ତ୍ର ଯୁଗରେ ସମାଜଠାରୁ ବହୁ ସମ୍ମାନ ଓ ସମାଦର ପାଇଥାନ୍ତି। ଆର୍ଥିକ ସାହାଯ୍ୟ ଭତ୍ତା ଓ ପୁରସ୍କାର ପାଇଥାନ୍ତି। ଏମାନଙ୍କୁ ଅବଜ୍ଞା କରିବା ତ ଦୂରର କଥା ବରଂ ଏମାନଙ୍କୁ ପାଇ ଦେଶ ଓ ସମାଜ ଗର୍ବ ଅନୁଭବ କରେ। କିନ୍ତୁ ଏମାନଙ୍କ ବ୍ୟତୀତ ଯେଉଁ କର୍ମକୋଢ଼ି, ଅଳସୁଆ, ଶ୍ରମକାତର ଏବଂ ଉଦ୍ୟମ ଉଦ୍‌ଯୋଗ ହୀନ ବ୍ୟକ୍ତି ସମାଜରେ ଅଛନ୍ତି, ସେମାନେ ଗରିବ ହେବାକୁ ବାଧ୍ୟ ଏବଂ ଏଥିପାଇଁ ସେମାନେ ଧନୀଲୋକଙ୍କ ପାଖେ ହୀନମ୍ମନ୍ୟ ହେବାକୁ ବାଧ୍ୟ। ସାଧୁ, ସରଳ, ସଚ୍ଚୋଟ, ପରିଶ୍ରମୀ ଏବଂ ଗୁଣବାନ୍ ମଣିଷଟିଏ ଗରିବ ହେଲେ ବି ସମାଜରେ ସମସ୍ତଙ୍କ ଦ୍ୱାରା ଆଦୃତ ହୋଇଥାଏ।

ପାଠକେ! ପୁରାଣ ଯୁଗ କଥା ଭାବନ୍ତୁ। ମହାଜ୍ଞାନୀ, ମହାଭକ୍ତ ଓ ମହାପ୍ରେମୀ ସୁଦାମା ବ୍ରାହ୍ମଣ କେଡ଼େ ଗରିବ ଥିଲେ। କିନ୍ତୁ ସେ ତାଙ୍କର ବାଲ୍ୟବନ୍ଧୁ ଦ୍ୱାରକାଧୀଶ,

ପୁରୁଷୋତ୍ତମ, ଶ୍ରୀକୃଷ୍ଣଙ୍କଠାରୁ କି ପ୍ରକାର ମାନସମ୍ମାନ ଓ ପ୍ରେମ ଲାଭକରିଥିଲେ ! ସେହିପରି ମହାଭାରତର ବିବେକୀ ଶିରୋମଣି, ମହାଜ୍ଞାନୀ, ଶୁଦ୍ଧଚରିତ ଦରିଦ୍ର ବିଦୁରଙ୍କ କଥା ମନେପକାନ୍ତୁ। ସେ ମଧ ଦ୍ୱାରକାଧୀଶ ପୁରୁଷୋତ୍ତମଙ୍କର ଆତି ଆଦରଣୀୟ ବନ୍ଧୁ। ଶ୍ରୀକୃଷ୍ଣ ତାଙ୍କୁ ସମ୍ମାନ କରୁଥିଲେ। ରଘୁକୁଳଚନ୍ଦ୍ରମା ପୁରୁଷୋତ୍ତମ ଅଯୋଧାରାଜ ଶ୍ରୀରାମଚନ୍ଦ୍ରଙ୍କର ବନ୍ଧୁ ଥିଲେ ଆଦିବାସୀ ଓ ହରିଜନମାନେ।

ତେଣୁ ପାଠକେ ! ଚାଣକ୍ୟ ପଣ୍ଡିତଙ୍କର ଏହି ଶ୍ଳୋକଟିକୁ ନୈତିକ ଓ ଆଧାତ୍ମିକ ଦୃଷ୍ଟିରୁ ମଧ ଆମେ ବିଚାର କରିବା ଉଚିତ।



## ୧୫. ...ସ୍ୱଦେଶଃ ଭୁବନଂ ତ୍ରୟଂ

**ମାତା ଚ କମଳାଦେବୀ ପିତା ଦେବୋ ଜନାର୍ଦ୍ଦନଃ।**
**ବାନ୍ଧବା ବିଷ୍ଣୁଭକ୍ତାଶ୍ଚ ସ୍ୱଦେଶୋ ଭୁବନତ୍ରୟମ୍ ।। (୧୦/୧୪)**

ପ୍ରିୟ ପାଠିକା-ପାଠକ ବୃନ୍ଦ ! ଉପରୋକ୍ତ ଶ୍ଳୋକଟି ମହାମତି ଚାଣକ୍ୟଙ୍କର ଏକ ସାଧାରଣ ବ୍ୟାବହାରିକ ନୀତିବାକ୍ୟ ନୁହେଁ, ଏହା ଏକ ଆଧାତ୍ମିକ ବାଣୀ। ଏ ଶ୍ଳୋକଟିର ଅର୍ଥ ଆମ ମନ ଓ ହୃଦୟରେ ଯଦି ଆମେ ସର୍ବଦା ଧାରଣ କରୁ - ତେବେ ଆମର ଏ ହୀନ ଐହିକ ପାର୍ଥିବ ଜୀବନରେ ଆଉ କୌଣସି ପ୍ରକାର ଦୁଃଖ ବା ଅଶାନ୍ତି ବା ଆଶଙ୍କା ରହିବ ନାହିଁ। ଏବେ ଶ୍ଳୋକଟିର ଅର୍ଥ ଶୁଣନ୍ତୁ।

ଚାଣକ୍ୟ କହୁଛନ୍ତି, ହେ ତ୍ରିତାପଗ୍ରସ୍ତ ନରନାରୀମାନେ ! ତୁମେ ଯଦି ମହାଲକ୍ଷ୍ମୀଙ୍କୁ ତୁମର ଯଥାର୍ଥ ମାତା ବୋଲି ଭାବିପାରିବ ଓ ସର୍ବଦା ଅନୁଭବ କରିପାରିବ ଏବଂ ଜନାର୍ଦ୍ଦନଙ୍କୁ ଅର୍ଥାତ୍ ଭଗବାନ୍‌ଙ୍କୁ ତୁମର ଯଥାର୍ଥ ପିତା ବୋଲି ଭାବିପାରିବ ଓ ସର୍ବଦା ଅନୁଭବ କରିପାରିବ; ଏବଂ ବିଷ୍ଣୁଭକ୍ତମାନଙ୍କୁ ତୁମର ପାରିବାରିକ ଯଥାର୍ଥ ଭାଇଭଉଣୀ ବୋଲି ମନେକରିପାରିବ ଓ ସର୍ବଦା ହୃଦୟରେ ଅନୁଭବ କରିପାରିବ - ତେବେ ତୁମର ଆଉ ପରବାୟ କ'ଣ ?

ଏପରି ଅନୁଭବ ଯାହାର ମନ ଓ ହୃଦୟରେ ସ୍ଥାୟୀ ହୋଇ ରହିଥାଏ - ତା'ପାଇଁ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଏହି ତିନି ଭୁବନ ତା'ର ସ୍ୱଦେଶ ହୋଇଯାଏ।

ସତ କଥା। ଆମେ ଆମ ଜୀବନକୁ ଏକ ସଂକୀର୍ଣ୍ଣ ମନ ଓ ହୃଦୟ ନେଇ ବଂଚୁଛୁ। ଆମର ଅହଂକାର, ଆମର ସ୍ୱାର୍ଥପରତା ଓ ଆମର ଅନୁଦାରତା ଆମ ଜୀବନର

ପରିଧିକୁ ସଂକୀର୍ଣ୍ଣ ଓ ସୀମିତ କରିଦେଇଛି । ଆମ ଭିତରେ ଅନ୍ୟପ୍ରତି ସ୍ନେହ ନାହିଁ, ସହାନୁଭୂତି ନାହିଁ, ସମ୍ମାନବୋଧ ନାହିଁ, ଆମେ କେବଳ ଆମକୁ ନେଇ ବଂଚିଛୁ ଓ ସେଇ ସଂକୀର୍ଣ୍ଣ ସ୍ୱାର୍ଥପର ଜୀବନକୁ ନେଇ ବଂଚୁଛୁ ଓ ମରୁଛୁ । ଆମ ପାଇଁ ଜୀବନ ହୋଇଉଠିଛି ତ୍ରିତାପଗ୍ରସ୍ତା । ଆମେ ସର୍ବଦା ଅଭାବଗ୍ରସ୍ତ ବୋଧ କରୁଛୁ, ସର୍ବଦା ଆମ ମନ ନାନାଦି ବିପଦ ଆପଦ ଆଶଙ୍କାରେ ତ୍ରସ୍ତ ଓ ବିଚଳିତ ରହୁଛି । ଏପରିକି ଆମେ ଆମର ପିତା, ମାତା, କନ୍ୟା, ପୁତ୍ର, ଭାଇ, ଭଗ୍ନୀଙ୍କଠାରୁ ମଧ ବିଚ୍ଛିନ୍ନ ହୋଇଯାଉଛୁ ।

ଏପରିକି ଆମର ପୃଥିବୀମାତା ମଧ ଆମଠାରୁ ଦୂରେଇଯାଉଛି । ଆମକୁ ସମସ୍ତେ ଅଚିହ୍ନା ଓ ପର ବୋଲି ମନେହେଉଛନ୍ତି । ଆମର କାହା ପ୍ରତି ଆସ୍ଥା ନାହିଁ - ବିଶ୍ୱାସ ନାହିଁ । ଆମେ କାହା ଉପରେ ନିର୍ଭର କରିପାରୁ ନାହୁଁ । ଆମ ଉପରେ ବି କେହି ନିର୍ଭର କରିପାରୁ ନାହିଁ । ଆମେ ସମସ୍ତଙ୍କୁ ପର ବୋଲି ଭାବି ଅବିଶ୍ୱାସ କରୁଛୁ ଓ ଆମକୁ ମଧ ସମସ୍ତେ ପର ବୋଲି ଭାବି ଅବିଶ୍ୱାସ କରୁଛନ୍ତି । ସତ କଥା । ଏ ପୃଥିବୀର ଜୀବଜନ୍ତୁମାନେ ମଧ ଆମକୁ ବିଶ୍ୱାସ କରୁ ନାହାନ୍ତି । ପାହାଡ଼ପର୍ବତ ନଦୀହ୍ରଦାଦି ମଧ ଆମକୁ ବିଶ୍ୱାସ କରୁ ନାହାନ୍ତି । କାରଣ ଆମର ମଧ କାହାପ୍ରତି ବିଶ୍ୱାସ ନାହିଁ । ତେଣୁ ଏ ପୃଥିବୀ ହୋଇଉଠିଛି ଆମ ପାଇଁ ଏକ ଭିନ୍ନ ସ୍ଥାନ - ଅଜଣା ସ୍ଥାନ - ଆଶଙ୍କାପ୍ରଦ ସ୍ଥାନ ଏବଂ ଆମେ ଏହା ଉପରେ ପ୍ରବାସୀ ବା ବିଦେଶୀ ଭଳି ବଂଚିଛୁ ।

ଏହି ଦୁଃସହ ଜୀବନ ଓ ପରିସ୍ଥିତିର କିପରି ପରିବର୍ତ୍ତନ ହେବ ? ମହାମତି ଚାଣକ୍ୟ ଏକ ଆଧାତ୍ମିକ ବାଟ ଆମକୁ ଦର୍ଶାଇଛନ୍ତି । ସେ କହିଛନ୍ତି –

"ହେ ତ୍ରିତାପଗ୍ରସ୍ତ ଦୁଃଖୀ ମଣିଷମାନେ ! ତୁମ୍ଭେମାନେ ମା' କମଳା ବା ମହାଲକ୍ଷ୍ମୀଙ୍କୁ ନିଜର ଜନ୍ମିତ ଓ ପାଳୟିତ୍ରୀ ମାତା ବୋଲି ଭାବ । ଅନୁଭବ କର । ମହାଲକ୍ଷ୍ମୀ ହେଉଛନ୍ତି ସ୍ନେହ, ପ୍ରେମ, କରୁଣା, ଧନ ଓ ଐଶ୍ୱର୍ଯ୍ୟର ଦେବୀ । ସେ ସ୍ୱୟଂ ଭଗବତୀ । ତାଙ୍କର ସ୍ନେହ ଅତୁଳନୀୟା । ସେ ପୁଣି ତ୍ରିପୁରର ଅଧିଶ୍ୱରୀ ଏବଂ ସ୍ୱୟଂ ମହାବିଷ୍ଣୁ ବା ଭାଗବାନ୍‌ଙ୍କୁ ତୁମର ପିତା ବୋଲି ଭାବ । ସେ ହେଉଛନ୍ତି ଜନାର୍ଦ୍ଦନ । ସବୁ ମଣିଷଙ୍କ ଆର୍ତ୍ତ ଓ ଦୁଃଖରୁ ତ୍ରାଣ କରନ୍ତି ବୋଲି ସେ ଜନାର୍ଦ୍ଦନ । ସେ ମଧ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳର ଅଧୀଶ୍ୱର । ସେ ଓ ମାତା ମହାଲକ୍ଷ୍ମୀ ସର୍ବଦା ସବୁଠାରେ ବିଦ୍ୟମାନ । ଏବଂ ସେ ତୁମ ପାଖେ ପାଖେ ମଧ ସର୍ବଦା ରହିଛନ୍ତି । ଏଣୁ କିଛି ଚିନ୍ତା କର ନାହିଁ । କେବଳ ଏହି ପୃଥିବୀ ନୁହଁ - ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଏହି ତିନିପୁର ମଧ ତୁମକୁ ଲାଗିବ ନିଜ ଦେଶ ବୋଲି ଓ ସମସ୍ତେ ତୁମକୁ ଲାଗିବେ

ନିଜର ବୋଲି ଏପରି ଭାବି ପାରିଲେ ତୁମର ଆଉ ଅଭାବବୋଧ ରହିବ ନାହିଁ। ଆଶଙ୍କାଭାବ ରହିବ ନାହିଁ। ବିଚ୍ଛିନ୍ନ ଭାବ ରହିବ ନାହିଁ।"

ଶେଷକୁ ଚାଣକ୍ୟ କହିଛନ୍ତି, ହେ ମନୁଷ୍ୟମାନେ ! ତୁମ୍ଭେମାନେ ବିଷ୍ଣୁଭକ୍ତମାନଙ୍କୁ ନିଜର ଭାଇବନ୍ଧୁ ଜ୍ଞାନରେ ଭଲ ପାଅ। ସେମାନଙ୍କ ପ୍ରତି ସମ୍ମାନ ଦେଖାଅ। ସେମାନେ ଭଗବାନ୍‌ଙ୍କର ଭକ୍ତ ଓ ପ୍ରେମୀ। ସେମାନଙ୍କ ସହିତ ମିଶ ଓ ସେମାନଙ୍କର ସେବା ମଧ୍ୟ କର । ତା'ହେଲେ ତୁମକୁ ଆଉ ଏକୁଟିଆ ଲାଗିବ ନାହିଁ। ବିଚ୍ଛିନ୍ନତାବୋଧ ଦୂର ହୋଇଯିବ ଓ ତ୍ରିପୁର ତୁମକୁ ନିଜ ଦେଶ ବୋଲି ଲାଗିବ।



## ୧୬. କା ତତ୍ର ପରିବେଦନା ?

ପାଠକେ ! ନିମ୍ନୋକ୍ତ ଶ୍ଳୋକରେ ମହାମତି ଚାଣକ୍ୟ ଗୋଟିଏ ଦାର୍ଶନିକ ସତ୍ୟ କହୁଛନ୍ତି। ଏହି ଶ୍ଳୋକଟି ଆମ ଭଳି ମାୟାସକ୍ତ ସଂସାରୀ ଲୋକଙ୍କ ପ୍ରତି ଏକ ଉପଦେଶାତ୍ମକ ଚେତାବନୀ। ଶ୍ଳୋକଟି ଏବେ ପଢ଼ନ୍ତୁ।

**ଏକବୃକ୍ଷସମାରୂଢ଼ା ନାନା ବର୍ଣ୍ଣା ବିହଙ୍ଗମାଃ।**
**ପ୍ରଭାତେ ଦଶସୁ ଦିକ୍ଷୁ କା ତତ୍ର ପରିବେଦନା ॥ (୧୦/୧୫)**

ଏହାର ଅର୍ଥ ହେଲା ସୂର୍ଯ୍ୟାସ୍ତ ପରେ ସନ୍ଧ୍ୟା ବେଳେ ନାନା ଜାତିର ପକ୍ଷୀ ସେମାନଙ୍କ ଆଶ୍ରୟସ୍ଥଳୀ ଗୋଟିଏ ଗହନ ଡାଳପତ୍ର ଥିବା ବଡ଼ ଗଛ ଉପରକୁ ଉଡ଼ିଯାନ୍ତି। ସେଇ ଗଛ ଉପରେ ସେମାନେ ରାତିଟିଜାକ ବିଶ୍ରାମ ନିଅନ୍ତି ଓ ବେଳେବେଳେ ସେମାନେ ନିଜ ଭିତରେ କିଚିରିମିଚିରି ହୋଇ ପରସ୍ପର ସହ ଆଳାପ କରୁଥାନ୍ତି। ତା'ପରେ ସକାଳ ହେବା ପର୍ଯ୍ୟନ୍ତ ଶୋଇପଡ଼ନ୍ତି। ଚାରିଆଡ଼େ ଫର୍ଚ୍ଚା ହେଲା ପରେ ସେମାନେ ପରସ୍ପରକୁ ଛାଡ଼ି ସେହି ଗଛରୁ ଯେଯୁଆଡ଼େ ଉଡ଼ିଯାନ୍ତି।

ଏହି ଦୃଷ୍ଟାନ୍ତଟି ଦେଇ ମହାମତି ଚାଣକ୍ୟ ଆମକୁ ଏକ ଗଭୀର ଆଶ୍ୱାସନା ଦେଇ କହୁଛନ୍ତି - ହେ ମନୁଷ୍ୟମାନେ ! ପକ୍ଷୀମାନଙ୍କ ଉଦାହରଣରୁ କିଛି ବୁଝିଲ ତ ? ରାତିକ ପାଇଁ ଗୋଟିଏ ଗଛରେ ଆଶ୍ରା ନେଇଥିବା ଓ ସକାଳୁ ଯେଝା ମାର୍ଗରେ ଯେ ପରସ୍ପରକୁ ଛାଡ଼ି ଉଡ଼ିଯାଉଥିବା ପକ୍ଷୀମାନେ କ'ଣ ସେ ଗଛ ପାଇଁ ଦୁଃଖ ବିଳାପ କରୁଥାନ୍ତି, ନା' ଅନ୍ୟ ସାଙ୍ଗ ପକ୍ଷୀଙ୍କ ପାଇଁ ବିଳାପ କରୁଥାନ୍ତି। ସେହିପରି ଆମେ ମଣିଷମାନେ କୌଣସି ଏକମୁହୂର୍ତ୍ତରେ ଏଇ ଧରାଧାମରେ ଜନ୍ମ ହୋଇପଡ଼ିଲୁ। ତା'ପରେ

ଆମେ ଏକାଠିହୋଇ ପରିବାର ଗଢ଼ିଲୁ - ଗାଁ ଗଢ଼ିଲୁ - ସମାଜ ଗଢ଼ିଲୁ ଏବଂ ଦେଶ ଗଢ଼ିଲୁ ଏବଂ ଯେତେ ଦିନ ଏଠି ଏକାଠି ରହିଲୁ - ସେତେଦିନ ଆମେ ପରସ୍ପରକୁ ସ୍ନେହ କଲୁ ଓ ଏକ ମାୟାବନ୍ଧନରେ ବାନ୍ଧି ହୋଇଗଲୁ। ତା'ପରେ ଆମ ଭିତରେ କିଏ କେତେବେଳେ ଆମକୁ ଛାଡ଼ି ଚାଲିଗଲା ଅଥବା କେଉଁ ଏକ ଅଦୃଶ୍ୟ ଶକ୍ତି ତା'ର ଆତ୍ମାକୁ ନେଇଗଲା, ସେ ସବୁ କଥାରେ ଆଉ ଦୁଃଖ କରିବାର କ'ଣ ଅଛି ? କାହିଁକି ବା ଦୁଃଖ କରିବ ! ଆମର ଏଠି ସବୁକିଛି କ୍ଷଣସ୍ଥାୟୀ। ଆମର ସାରାଜୀବନ ଗୋଟିଏ ରାତି ଭଳି। ସତେ କି ଆଉ କୋଉ ଦେଶର ପକ୍ଷୀ ! ଏ ପୃଥିବୀ ଉପରକୁ ଉଡ଼ି ଆସିଥିଲୁ କିଛି ସମୟ ବିଶ୍ରାମ ନେବାପାଇଁ ବା କିଛି ଲୀଳାଖେଳା କରିବାପାଇଁ, ସେତିକି କଥା ସରିଗଲେ ଆମେ ଏଠୁ ଆମର ନିଜ ଜାଗାକୁ ଚାଲିଯିବା। ଏଠାକାର ସବୁ ମାୟାବନ୍ଧନ କାଟି କରି କୁଆଡ଼େ ଉଡ଼ିଯିବୁ। ଏଥିରେ ଆଉ ଦୁଃଖ କରିବାର କ'ଣ ଅଛି ? କାହିଁକି ବା ବୃଥାରେ ଦୁଃଖ କରିବା ? ଏ ଜୀବନ ଅସ୍ଥାୟୀ। ଆମର ପରସ୍ପର ସହିତ ପ୍ରେମ, ପ୍ରୀତି, ସ୍ନେହର ସଂପର୍କ ମଧ୍ୟ ଚିରସ୍ଥାୟୀ ନୁହଁ। ଆଜିର ପ୍ରିୟତମ ବନ୍ଧୁ ଆସନ୍ତାକାଲି ହଠାତ୍ ଆମର ଘୋର ଶତ୍ରୁ ହୋଇଯାଇପାରେ। ଆଜିର ଶତ୍ରୁ ମଧ୍ୟ ଆସନ୍ତାକାଲି ମିତ୍ର ହୋଇ ଯାଇପାରେ।

ପିତା, ମାତା, ଭ୍ରାତା, ଭଗ୍ନୀ, ପୁତ୍ର, କନ୍ୟା, ନାତି, ନାତୁଣୀ - ଏଇସବୁ ପାରିବାରିକ ସଂପର୍କମାନ ମଧ୍ୟ ସ୍ଥାୟୀ ନୁହେଁ ଏବଂ ଆମର ସାଂସାରିକ ସଂପର୍କଗୁଡ଼ିକ ପଛରେ ମଧ୍ୟ ପ୍ରଚ୍ଛନ୍ନ ସ୍ୱାର୍ଥ ରହିଛି। ତେଣୁ ଏ ସଂସାରର କୌଣସି ସଂପର୍କକୁ ବିଶ୍ୱାସ କରିହେବ ନାହିଁ। ତେଣୁ ପୂଜ୍ୟପାଦ ଶଙ୍କର ଏହାକୁ ମାୟା ବୋଲି କହିଛନ୍ତି। ଆମର ସାଂସାରିକ ମାୟା, ମୋହ, ଆସକ୍ତି ଆମକୁ ଘୋର ଦୁଃଖ ଦେଇଥାଏ। ତେଣୁ ଆମକୁ ଏଠାରେ ମୋହ ବା ଆସକ୍ତିବର୍ଜିତ ହୋଇ ବଂଚିବାକୁ ହେବ। ଆସକ୍ତି ଓ ମୋହ ତ୍ୟାଗକଲେ ଆମକୁ ଦୁଃଖବେଦନା ଗ୍ରାସ କରିପାରିବ ନାହିଁ। ମୋହମୁକ୍ତ ଜୀବନ ହିଁ ଦିବ୍ୟଜୀବନ।

ଆମେ କେବଳ ସେହି ଶାଶ୍ୱତ ପରମେଶ୍ୱରଙ୍କ ସହିତ ସଂପର୍କରଖି ବଞ୍ଚିବା। କାରଣ ସେ କେବେ ବି ଆମକୁ ଛାଡ଼ି ଚାଲିଯିବେ ନାହିଁ। ପରମେଶ୍ୱର ଆମ ଅନ୍ତରରେ ଅନ୍ତରାତ୍ମା ରୂପେ ସର୍ବଦା ରହିଛନ୍ତି; ଏବଂ ଏ ବିଶ୍ୱସାରା ବ୍ୟାପି ରହିଛନ୍ତି। ଆମର ଦୈହିକ ମୃତ୍ୟୁ ପରେ ମଧ୍ୟ ସେ ବିଦ୍ୟମାନ ଥାନ୍ତି ଓ ଅନ୍ୟ ଏକ ଦେହ ବା କଳେବର ଧାରଣ କରି ପୁଣି କିଛି ଦିନ ଏ ପୃଥିବୀରେ ପାର୍ଥିବ ଲୀଳା କରନ୍ତି।

ପାଠକେ ! ମହାମତି ଚାଣକ୍ୟ କେବଳ ସାଂସାରିକ ନୀତିବାକ୍ୟଗୁଡ଼ିଏ ଆମକୁ ଶୁଣାଇ ନାହାନ୍ତି। ସେ କେତେକ ଆଧ୍ୟାତ୍ମିକ ସତ୍ୟ ମଧ୍ୟ ଆମ ଆଗରେ ପ୍ରକାଶ

କରିଛନ୍ତି। ଗୀତା ଓ ଭାଗବତରେ ଯେଉଁ ଆଧ୍ୟାତ୍ମିକ ଶାଶ୍ୱତ ସତ୍ୟସବୁ ମହାକବି ବ୍ୟାସ ପ୍ରକାଶ କରିଛନ୍ତି - ସେହିସବୁ ସତ୍ୟକୁ ଚାଣକ୍ୟ କେତେ ସୁନ୍ଦର ଦୃଷ୍ଟାନ୍ତ ଦେଇ ଆମକୁ ବୁଝାଇଛନ୍ତି।

ଜୀବନରେ ସୁଖ ଅଛି, ଦୁଃଖ ବି ଅଛି। ଆନନ୍ଦ ଅଛି ବେଦନା ମଧ୍ୟ ଅଛି। କିନ୍ତୁ ଆମର ମନ ଓ ହୃଦୟ ଯଦି ଐଶ୍ୱରିକ ଭାବ ଓ ଚେତନାରେ ଜାଗରିତ ଥାଏ - ତେବେ ଏଇ ସବୁ ପାର୍ଥିବ ବା ସାଂସାରିକ ଦୁଃଖ ବେଦନା ଆମକୁ ଆକ୍ରାନ୍ତ କରିପାରିବ ନାହିଁ।

ପାଠକେ! ଚାଣକ୍ୟ ପଣ୍ଡିତେ କେବଳ ଜଣେ କୂଟନୀତି ବିଶାରଦ ନୁହନ୍ତି। ସେ ମଧ୍ୟ ଜଣେ ଆଧ୍ୟାତ୍ମିକ ଦାର୍ଶନିକ।



## ୧୭. ବୁଦ୍ଧିର୍ଯସ୍ୟ ବଳଂ ତସ୍ୟ...

**ବୁଦ୍ଧିର୍ଯସ୍ୟ ବଳଂ ତସ୍ୟ ନିର୍ବୁଦ୍ଧେସ୍ତୁ କୁତୋ ବଳମ୍।**
**ବନେ ସିଂହୋ ମଦୋନ୍ମତ୍ତଃ ଶଶକେନ ନିପାତିତଃ ॥ (୧୦/୧୬)**

ପାଠକେ! ତୀକ୍ଷ୍ଣବୁଦ୍ଧି ଚାଣକ୍ୟଙ୍କର ଉପରିଲିଖିତ ଶ୍ଳୋକଟି ପଢ଼ିଲେ ତ? ଶ୍ଳୋକଟିର ଅର୍ଥ ହେଉଛି, ବୁଦ୍ଧି ଯା'ର ବଳ ତା'ର। ଯେ ବୁଦ୍ଧିହୀନ ତା'ର ବଳ କୁଆଡୁ ଆସିବ? ବଣରେ ମଦୋନ୍ମତ୍ତ ସିଂହକୁ ଗୋଟିଏ ବୁଦ୍ଧିମାନ ଠେକୁଆ କିପରି ଶିକାରୀଙ୍କ ଦ୍ୱାରା ମରାଇଲା ସେ କଥା ନିଶ୍ଚୟ ଆପଣଙ୍କୁ ଜଣାଥିବ।

କେବଳ ଠେକୁଆ କଥା କାହିଁକି ପଡ଼ିଛି? ଚତୁର ବିଲୁଆଟିଏ କିପରି ଗୋଟିଏ ନିରୀହ ବ୍ରାହ୍ମଣକୁ ବାଘ ମୁହଁରୁ ବଂଚାଇଲା ଓ ଏଡ଼େ ହିଂସ୍ର ବଳବାନ୍ ବାଘକୁ ଯନ୍ତା ଭିତରେ ପୂରାଇ ଦେଲା ସେ କଥା ଶୁଣିବେ? ଶୁଣନ୍ତୁ,

ଦିନେ ଜଣେ ନିରୀହ ଅଥଚ ଶୁଦ୍ଧଚିତ୍ତ ବୃଦ୍ଧ ବ୍ରାହ୍ମଣ ତାଙ୍କ ଝିଅ ଘରକୁ ଯାଉଥିଲେ। ତାଙ୍କ ହାତରେ ଛୋଟ ବାଡ଼ିଟିଏ ଥିଲା ଓ ତାଙ୍କ କାନ୍ଧରେ ଦୁଇଟି ପିଠା ବୁଜୁଳି ଓହଳିଥିଲା। ବାଟରେ ଯାଉ ଯାଉ ଗୋଟିଏ ଅରଣ୍ୟ ପଡ଼ିଲା। ବୃଦ୍ଧବ୍ରାହ୍ମଣ ସେହି ବଣରେ ଯିବାବେଳେ ଇଷ୍ଟମନ୍ତ୍ର ଜପ କରି କରି ଯାଉଥିଲେ। ଏହି ସମୟରେ ସେ ଦେଖିଲେ ଯେ, ବାଟ କଡ଼ରେ ଗୋଟାଏ ବଡ଼ ଯନ୍ତା ଥୁଆ ହୋଇଛି ଓ ସେହି ଯନ୍ତା ଭିତରେ ଗୋଟାଏ ମହାବଳ ବାଘ ବନ୍ଦୀ ହୋଇ କେବଳ ହେଣ୍ଟାଳ ଛାଡୁଛି।

ସେହି ଯନ୍ତା ପାଖହେଲାରୁ ବାଘଟି ଅନୁନୟ କରି କହିଲା, "ହେ ଦ୍ୱିଜବର! ମୁଁ କାଲିଠାରୁ ଶିକାରୀମାନଙ୍କ ଏଇ ଯନ୍ତାରେ ବନ୍ଦୀ ହୋଇ ରହିଛି। ମୋତେ ବହୁତ ଭୋକ ହେଲାଣି। ତୁମେ ବଡ଼ ଧାର୍ମିକ ବ୍ରାହ୍ମଣ ବୋଲି ମୋର ମନେହେଉଛି। ଦୟାକରି ମୋତେ ଏଇ ଯନ୍ତାରୁ ମୁକ୍ତକର। ଶୀଘ୍ର ମୁକ୍ତ କର। ନୋଚେତ୍ ଶିକାରୀମାନେ ଆସି ମୋତେ ମାରିଦେବେ; ଏବଂ ମୋ ଦେହରୁ ଚମଡ଼ା ଉତାରିନେବେ ଓ ମୋର ନଖଦାନ୍ତ କାଟି ନେଇ ବହୁ ମୂଲ୍ୟରେ ବଜାରରେ ବିକିବେ। ହେ ଦ୍ୱିଜବର! ମୋତେ ତୁରନ୍ତ ଏ ଯନ୍ତାରୁ ମୁକ୍ତକର ଓ ଧର୍ମ ଅର୍ଜନକର।

ବୃଦ୍ଧବ୍ରାହ୍ମଣ ବନ୍ଦୀ ବାଘଟିର କାତର ପ୍ରାର୍ଥନା ଶୁଣି ତାଙ୍କ ମନରେ ବାଘଟି ପ୍ରତି ଦୟା ଦେଲା। ସେ ଧର୍ମଦେବତାଙ୍କୁ ଡାକି ଯନ୍ତାର ଦ୍ୱାର ଖୋଲିଦେଲେ। ବାଘଟି ଯନ୍ତାରୁ ମୁକୁଳିଲା ମାତ୍ରେ ବୃଦ୍ଧବ୍ରାହ୍ମଣଙ୍କ ଆଗରେ ଠିଆ ହୋଇ କହିଲା, "ଆରେ ବୁଢ଼ା! ଭୋକରେ ମୋ ପେଟ ଜଳୁଛି। କାଲିଠାରୁ କିଛି ଖାଇନାହିଁ। ଆ! ମୁଁ ତୋତେ ଖାଇବି। ତା'ହେଲେ ପେଟଜ୍ୱାଳା ଶାନ୍ତହେବ।"

ବୃଦ୍ଧବ୍ରାହ୍ମଣଟି ବାଘ ମୁହଁରୁ ଏକଥା ଶୁଣି ଆଶ୍ଚର୍ଯ୍ୟ ହେଲା ଓ ଭୟଭୀତ ହେଲା ତଥାପି ସାହସ ବାନ୍ଧି କହିଲା, "ଆରେ ଧର୍ମଛଡ଼ା ବାଘ! ମୁଁ ତୋତେ ବିଶ୍ୱାସ କରି ଯନ୍ତାରୁ ମୁକ୍ତ କଲି। ନ ହେଲେ ତୁ ଶିକାରୀଙ୍କ ହାତରେ ଶିକାର ହୋଇଥାନ୍ତୁ। ତୋ'ର କ'ଣ ଧର୍ମଜ୍ଞାନ ନାହିଁ? ନ୍ୟାୟ ଅନ୍ୟାୟ କ'ଣ ବୁଝିନାହୁଁ? ଆରେ ଅଧର୍ମୀ ବ୍ୟାଘ୍ର! ମୋତେ ଛାଡ଼ିଦେ। ମୁଁ ମୋ ଝିଅ ଘରକୁ ଯାଉଛି। ତୋତେ ଯଦି ଭୋକ ହେଉଛି ତା' ହେଲେ ନେ! ଏ ପିଠାତକ ଖାଇ ତୋ'ର କ୍ଷୁଧା ଶାନ୍ତ କର। ମୋତେ ଖାଇବାକୁ ଲୋଭ କରନା।"

ଏହା ଶୁଣି ବାଘଟି ଗୋଟାଏ ଭୀଷଣ ହେଣ୍ଟାଳ ଛାଡ଼ି କହିଲା - "ଆରେ ମୂର୍ଖ ବ୍ରାହ୍ମଣ! ତୁ କ'ଣ ଜାଣିନୁ ଯେ, ଆମେ ଆମର କ୍ଷୁଧା ଶାନ୍ତ କରିବାକୁ ପ୍ରାଣୀମାନଙ୍କୁ ଆହାର କରୁ? ମଣିଷମାଂସ ଆମର ଅତି ପ୍ରିୟ। ତୁ କ'ଣ ସଂସ୍କୃତ ଶ୍ଳୋକରେ ପଢ଼ି ନାହୁଁ? ବ୍ୟାଘ୍ରଃ ମାନୁଷଂ ଖାଦତି - ଇତ୍ୟାଦିଷ୍ଟ ଈଶ୍ୱରେନ?" ଅର୍ଥାତ୍, ସୃଷ୍ଟିକର୍ତ୍ତା ପରମେଶ୍ୱରଙ୍କ ଆଦେଶ ହେଉଛି - ବ୍ୟାଘ୍ରମାନେ ନିଶ୍ଚୟ ମନୁଷ୍ୟକୁ ଖାଇବେ।

ଏହା ଶୁଣି ବୃଦ୍ଧବ୍ରାହ୍ମଣଟି ଭୟରେ ଥରିବାକୁ ଲାଗିଲା। ସେହି ସମୟରେ ଗୋଟିଏ ବିଲୁଆ ବୁଦାକଡ଼ରେ ଲୁଚି ସବୁ ଶୁଣୁଥିଲା। ସେ ପଦାକୁ ଆସି ବାଘକୁ ନମସ୍କାର କରି କହିଲା, "ବାଘ ମାମୁ! ତୁମକୁ ମୋ ଭଳି ଦୁର୍ବଳ ଭଣଜାଟିର ଶହେ ଦଣ୍ଡବତ। ମୋତେ କ'ଣ ଘଟିଛି କଥାଟି କହିଲେ।" ବାଘ କହିଲା, 'ତେବେ ଶୁଣ!

ମୁଁ ଯନ୍ତା ଭିତରେ ଥିଲି। ବୁଢ଼ା ବ୍ରାହ୍ମଣ ଆସି ମୋତେ ଯନ୍ତାରୁ ଖୋଲିଦେଲା। ମୁଁ ତାକୁ ଏବେ ଖାଇବି ବୋଲି କହିଲାରୁ ସେ ମୋତେ ଧର୍ମଭୟ ଦେଖାଉଛି।'

ଚତୁର ବିଲୁଆଟି କଛି ନ ବୁଝିଲା ପରି କହିଲା, 'ବୁଝିଗଲି ମାମୁ ବୁଝିଗଲି। ଯନ୍ତାଟା ଆପଣଙ୍କ ଭିତରେ ଥିଲା। ବୁଢ଼ା ବ୍ରାହ୍ମଣ ଗଛରେ ଚଢ଼ିଥିଲେ...।' ଏହା ଶୁଣି ବାଘ ରାଗିଯାଇ କହିଲା, 'ଆରେ ନା। ମୁଁ ଯନ୍ତା ଭିତରେ ଥିଲି। ବୁଢ଼ାବ୍ରାହ୍ମଣ ମୋତେ ଯଂତାରୁ ଖୋଲିଦେଲା।'

ଏହା ଶୁଣି ଚତୁର ବିଲୁଆ କହିଲା, "ବୁଝିଗଲି ମାମୁ। ମୁଁ ଏ ଯନ୍ତାଭିତରେ ଥିଲି। ତୁମେ ଆସି ଯନ୍ତା ଖୋଲିଦେଲ। ମୁଁ ଯନ୍ତାରୁ ବାହାରି କହୁଛି - ବାଘ ମାମୁ! ମୋତେ ଭୋକ କରୁଛି - ମୁଁ ତୁମକୁ ଖାଇବି।"

ଏହା ଶୁଣି ବାଘ ଭାରି ରାଗିଯାଇ କହିଲା, "ଆବେ ଓଲୁଙ୍କ ବୋକ୍‌ଚାବୁଲା ବିଲୁଆ। ତୋ' ମୁଣ୍ଡରେ ଗୁହ। ତୁ କିଛି ବୁଝି ପାରୁନୁ!"

ଚତୁର ବିଲୁଆ ହାତଯୋଡ଼ି କହିଲା, "ମାମୁ! ସତ କହୁଛ ମୋର ମୁଣ୍ଡରେ କେବଳ ଗୁହ। ମୁଁ କିଛି ବୁଝି ପାରୁନି, ମୋତେ ଟିକେ ଦୟାକରି କ'ଣ କିପରି ଘଟିଲା ଦେଖାଇ ଦିଅ।"

ଏହା ଶୁଣି ବାଘ ରାଗି ଯାଇ କହିଲା, "ଆବେ ଗଧା। ଏବେ ଦେଖ୍। ମୁଁ ଯନ୍ତା ଭିତରକୁ ଯାଉଛି।"

ବାଘ ଯନ୍ତା ଭିତରେ ପଶି କହିଲା, "ମୁଁ ଏହିପରି ଯନ୍ତା ଭିତରେ ଥିଲି। ଏ ବୁଢ଼ା ବ୍ରାହ୍ମଣ ଏ ବାଟେ ଯାଉଥିଲା। ମୁଁ ତାକୁ ଦୟାକରି ଯନ୍ତାଟି ଖୋଲିଦେବାକୁ କହିଲି, ସେ ଯନ୍ତାମୁହଁ ଖୋଲିଦେଲା।"

ବାଘ ଏତିକି କହିଛି - ଚତୁର ବିଲୁଆ ବୁଢ଼ା ବ୍ରାହ୍ମଣଙ୍କୁ କହିଲା, "ନନା! ଏବେ ବାଘ ଯନ୍ତାଭିତରେ ଅଛି। ତୁମେ ଚଂଚଳ ଯନ୍ତାମୁହଁ ବନ୍ଦକରି ଝିଅ ଘରକୁ ବାଟେ ବାଟେ ଯାଅ। ମୁଁ ମୋ ବାଟରେ ଯାଉଛି।"

ବୁଢ଼ା ବ୍ରାହ୍ମଣ ସଂଗେ ସଂଗେ ଯନ୍ତା ମୁହଁଟି ବନ୍ଦ କରିଦେଲା। ବିଲୁଆ କହିଲା, "ନନା! ଧର୍ମକୁ ସାକ୍ଷୀ ରଖି ଏଭଳି ବୋକାମି କରିବ ନାହିଁ। ମୁଁ ଥିଲି ବୋଲି ତୁମ ଜୀବନ ରକ୍ଷାହେଲା। ନ ହେଲେ ଏ ଦୁଷ୍ଟ ବାଘ ତୁମକୁ ଖାଇଥାନ୍ତା, ଅବଶ୍ୟ ମୋ ଭାଗରେ ବି ଖଣ୍ଡେ ଦିଖଣ୍ଡ ହାଡ଼ ପଡ଼ିଥାନ୍ତା। ଯାଅ ଯାଅ ଚଂଚଳ ଏଠୁ ପଳାଅ।"

ବୃଦ୍ଧ ଧାର୍ମିକ ବ୍ରାହ୍ମଣ ହସି ହସି କହିଲେ - "ବତ୍ସ ଶୃଗାଳ ଶିରୋମଣି! ମୁଁ ଧର୍ମକୁ ସାକ୍ଷୀରଖି ବାଘକୁ ଯନ୍ତାରୁ ମୁକୁଳାଇ ଧର୍ମକାର୍ଯ୍ୟଟିଏ କରିଥିଲି ବୋଲି ମୋତେ

ଧର୍ମଦେବତାଙ୍କ କୃପା ହେଲା। ସେ ମୋତେ ଏ ଘାଟିବେଳାରେ ତୁମ ଭଳି ଚତୁର ଓ ପରୋପକାରୀ ଶୃଗାଳକୁ ଜୁଟାଇ ଦେଲେ। ବତ୍ସ ! ତୁମର ମଙ୍ଗଳ ହେଉ।"

ଏତିକି କହି ବୃଦ୍ଧବ୍ରାହ୍ମଣ ଶୃଗାଳକୁ ଆଶୀର୍ବାଦ କରି ବାଟେ ବାଟେ ଝିଅଘରକୁ ଚାଲିଲେ।

ପାଠକେ ! ଏବେ ବୁଦ୍ଧିର କରାମତି ଦେଖିଲେ ତ ! କିନ୍ତୁ ତା' ସଙ୍ଗେ ସଙ୍ଗେ "ଧର୍ମଭାବ" ନ ରହିଲେ ବୁଦ୍ଧି ନିଶ୍ଚୟ ଦୁର୍ବୁଦ୍ଧି ହୋଇଯିବ; ଏବଂ ଅନ୍ୟର ଅପକାର କରିବ। ଧର୍ମହୀନ ବୁଦ୍ଧି ସୃଷ୍ଟିକୁ ନାଶ କରେ।



## ୧୮. କା ଚିନ୍ତା ମମ ଜୀବନେ ?

କା ଚିନ୍ତା, ମମ ଜୀବନେ,
ଯଦି ହରି ବିଶ୍ୱମ୍ଭରେ ଗୀୟତେ
ନୋ ଚେଦର୍ଭକ ଜୀବନାୟ
ଜନନିସ୍ତନ୍ୟଂ କଥଂ ନିର୍ମୟେତ୍।
ଇତ୍ୟାଲୋଚ୍ୟ ମୁହୁର୍ମୁହୁଃଯଦୁପତେ
ଲକ୍ଷ୍ମୀପତେ କେବଳଂ
ତ୍ୱତ୍ପାଦାମ୍ବୁଜସେବନେନ ସତତଂ
କାଲୋ ମୟା ନୀୟତେ ॥ (୧୦/୧୭)

ଅର୍ଥାତ୍, ଯଦି ସ୍ୱୟଂ ହରି ଭଗବାନ୍ ଏହି ବିଶ୍ୱର ସ୍ରଷ୍ଟା ଓ ପାଳନ କର୍ତ୍ତା - ତା'ହେଲେ ଜୀବିକା ନିର୍ବାହରେ ମୋ'ର ବା ଚିନ୍ତାଦକ କାହିଁକି ରହିବ ? ଯଦି ଭଗବାନ୍ ଏ ବିଶ୍ୱର ପାଳନକର୍ତ୍ତା ହୋଇ ନ ଥାନ୍ତେ ତା'ହେଲେ ଜୀବନ ଧାରଣପାଇଁ ମାତୃସ୍ତନରେ ଦୁଗ୍ଧର ସଂଚାର କିଏ କରିଛି ? ମୁଁ ବାରମ୍ବାର ଏହି କଥାକୁ ମନେପକାଇ ହେ ଭଗବାନ୍ ଯଦୁପତି କୃଷ୍ଣ ! ହେ ବୈକୁଣ୍ଠବାସୀ ଲକ୍ଷ୍ମୀପତି ବିଷ୍ଣୁ ! ମୁଁ ସାରା ଜୀବନ କେବଳ ଆପଣଙ୍କ ସେବା ଭକ୍ତିରେ ଜୀବନ ଅତିବାହିତ କରୁଛି।

ସୁଜନବୃନ୍ଦ ! ଭଗବତ୍-ପରାୟଣ ଚାଣକ୍ୟ ମହାଶୟ ଏହି ଶ୍ଳୋକରେ ଆମକୁ ଗୋଟିଏ ନୀତିବାକ୍ୟ ଶୁଣାଇ ସେ ଏକ ଆଧ୍ୟାତ୍ମିକ ଭାବପୂର୍ଣ୍ଣ ଶ୍ଳୋକ ଶୁଣାଉଛନ୍ତି। ଏହି ଶ୍ଳୋକଟି ଭିତରେ ଜଣେ ଭଗବତ୍ପ୍ରାଣ ଭକ୍ତର ଉଜ୍ଜ୍ୱଳ ଉଦାହରଣ ରହିଛି।

ଜଣେ ପରମଭକ୍ତ ଭଗବାନ ହରିଙ୍କୁ ହାତଯୋଡ଼ି ଗଭୀର କୃତଜ୍ଞତାର ସହିତ ଜଣାଣ କରି ଗଦ୍‌ଗଦ୍ ସ୍ୱରରେ କହୁଛନ୍ତି- "ହେ ସବୁ ପ୍ରାଣୀଙ୍କ ଦୁଃଖ ଓ ଆର୍ତ୍ତିହରଣକାରୀ ହରି ! ହେ ପରମ ଐଶ୍ୱର୍ଯ୍ୟର ଅଧିକାରୀ ଓ ପ୍ରେମୀଭକ୍ତର ହୃଦୟରେ ସର୍ବଦା ଅବସ୍ଥାନ କରି ତା'ର ଜୀବନକୁ ପବିତ୍ର ଆନନ୍ଦରେ ପୂର୍ଣ୍ଣକରି ରଖୁଥିବା ଅନ୍ତରାତ୍ମା ! ହେ ପ୍ରେମ ଐଶର୍ଯ୍ୟ ଓ ସୌନ୍ଦର୍ଯ୍ୟଦାତ୍ରୀ ମହାଲକ୍ଷ୍ମୀଙ୍କ ପତି ବୈକୁଣ୍ଠନିବାସୀ ବିଷ୍ଣୁ ! ଆପଣ ଯଦି ଏଇ ବିଶ୍ୱକୁ ସୃଷ୍ଟି କରିଛନ୍ତି ଓ ଏ ପୃଥିବୀ ବଂଚିବା ପାଇଁ ଏହା ଭିତରେ ସବୁକିଛି ସଂପଦ ସାଇତି ରଖିଛନ୍ତି - ତା'ହେଲେ ବୃଥାଟାରେ ମୂର୍ଖଙ୍କ ଭଳି ମୁଁ କିପରି ବଂଚିବି ବୋଲି ଦିନରାତି ଭାଳିହେବି କାହିଁକି ?

ଏକଥା ନିଶ୍ଚିତ ଯେ ଭଗବାନ୍ ହରି ଏହି ସୃଷ୍ଟିର ପାଳନ କର୍ତ୍ତା। ତା'ନ ହେଲେ ଶିଶୁଟିଏ ଜନ୍ମହେବା ଆଗରୁ ତା'ର ମାଆ ସ୍ତନରେ ତା'ପାଇଁ ଦୁଗ୍ଧ ରଖିଛି କିଏ ? ଜନ୍ମହେବା ପରେ ପରେ ଶିଶୁଟି ମାତୃସ୍ତନରେ ମୁହଁ ଦେବାମାତ୍ରେ ସେଥିରୁ ସ୍ୱତଃ ଦୁଗ୍ଧଧାରା ଝରୁଛି କିପରି ?

ଏବେ ଏଇ ଅବବୋଧକୁ ହୃଦୟରେ ଧାରଣ କରି ଭକ୍ତ ହାତଯୋଡ଼ି ଭଗବାନ୍‌ଙ୍କୁ ଜଣାଣ କରୁଛନ୍ତି - "ହେ ପରାତ୍ପର ପରମେଶ୍ୱର ! ହେ ଯଦୁପତି ଭଗବାନ୍ ଶ୍ରୀକୃଷ୍ଣ। ହେ ବୈକୁଣ୍ଠବାସୀ ସର୍ବବ୍ୟାପୀ ବିଷ୍ଣୁ। ମୁଁ ଏବେ ମୋ ପାଇଁ କିଛି ଚିନ୍ତା କରୁ ନାହିଁ। ଏପରିକି ମୁଁ ଖାଇବା, ରହିବା ସମ୍ବନ୍ଧେ ମଧ ଆଉ ମୁଣ୍ଡ ଖେଳାଉ ନାହଁ। ମୁଁ କେବଳ ନିରନ୍ତର ଆପଣଙ୍କୁ ଚିନ୍ତା କରୁଛି। ଆପଣଙ୍କ ନାମକୀର୍ତ୍ତନ କରୁଛି, ଗୁଣକୀର୍ତ୍ତନ କରୁଛି ଆପଣଙ୍କୁ ହିଁ ନୀରବରେ ବସି ମୋର ହୃଦୟରେ ଅନ୍ତର୍ଦୃଷ୍ଟି ନିବଦ୍ଧ କରି ଧ୍ୟାନ କରୁଛି। ଆପଣଙ୍କ ନାମ ଜପକରୁଛି; ଏବଂ ସର୍ବୋପରି ମୁଁ ଆପଣଙ୍କୁ ସର୍ବତ୍ର ଅନୁଭବ କରୁଛି। ମୋର ଅନ୍ତରରେ ଆପଣ ଅଛନ୍ତି। ମୋର ବାହାରେ ବି ଆପଣ ଅଛନ୍ତି। ଆପଣ ଏଇ ରାସ୍ତାରେ ଧୂଳିହୋଇ ବାଲିଗରଡ଼ା ଗୋଡ଼ିହୋଇ ନିଶ୍ଚେତନ ଭାବେ ପଡ଼ିଛନ୍ତି। ଆପଣ ମଧ ଏହି ସବୁ ବୃକ୍ଷ ଲତା, ବଣ, ପାହାଡ଼, ହ୍ରଦ, ନଦନଦୀ, ସମୁଦ୍ର, ଆକାଶ ସର୍ବତ୍ର ବିଦ୍ୟମାନ ବୋଲି ମୁଁ ଅନବରତ ଅନୁଭବ କରୁଛି। ଆପଣ ଫୁଲହୋଇ ଉଦ୍ୟାନରେ ଫୁଟିଛନ୍ତି। ପୁଣି ତାରାହୋଇ ଆକାଶରେ ଜୁଳୁଜୁଳୁ ହୋଇ ଜଳୁଛନ୍ତି।

ହେ ଜଗଦୀଶ ! ପ୍ରତି ମୁହୂର୍ତ୍ତରେ ମୁଁ ଅନୁଭବ କରୁଛି ଯେ ଆପଣ ଅଣୁଠାରୁ ଅଣୁତର ଏବଂ ଗୁରୁଠାରୁ ମଧ ଗୁରୁତର। କେତେବେଳେ ଆପଣ ହିଂସ୍ର ବ୍ୟାଘ୍ରଟି ଭିତରେ ରହି ଭୟଙ୍କର ହେଣ୍ଟାଳ ଛାଡୁଛନ୍ତି। ପୁଣି କେତେବେଳେ ଆପଣ କୋଇଲି, ହଳଦୀବସନ୍ତ ଓ ଚୂଳିଆଦି ପକ୍ଷୀମାନଙ୍କ ଭିତରେ ରହି ମଧୁର କୂଜନ କରୁଛନ୍ତି।

ହେ ତ୍ରିଲୋକେଶ ! ଆପଣ ଦୁଷ୍ଟମାନଙ୍କୁ ବିନାଶ କରିବାପାଇଁ ଓ ସାଧୁମାନଙ୍କୁ ରକ୍ଷା କରିବାପାଇଁ; ଏବଂ ଧର୍ମର ଗତିରୁଦ୍ଧ ହୋଇଗଲେ, ତା' ଭିତରେ ଯୁଗଧର୍ମଚେତନା ରୂପେ ପ୍ରବେଶକରି ସନାତନ ଧର୍ମକୁ ସ୍ଥାପନ କରିବାପାଇଁ ମୋଟଉପରେ ଏହି ପୃଥିବୀର ମଙ୍ଗଳପାଇଁ ଆପଣ ବାରଂବାର ବିଭିନ୍ନ ଅବତାରରୂପେ ପୃଥିବୀରେ ଜନ୍ମ ଗ୍ରହଣ କରୁଛନ୍ତି ।

ହେ ଦୀନବନ୍ଧୁ ! ଏଇ ସବୁର ଉପଲବ୍ଧି କରିବା ଯୋଗୁଁ ଏ ପୃଥିବୀରେ ମୁଁ ମୋର ବିହିତ କର୍ମମାନ କରି ନିଶ୍ଚିତ ଭାବେ ଓ ନିଶ୍ଚିନ୍ତ ଭାବେ ବିନା ଭୟ ଆଶଙ୍କାରେ ଜୀବନ ଯାପନ କରୁଅଛି । ମୋର ସମଗ୍ର ଚେତନା ଆପଣଙ୍କ ଭାବରେ ଅଭିଭୂତ ହୋଇଥିବା ଯୋଗୁଁ ସଂସାରୀ ଲୋକମାନେ ଯେପରି ସଂସାରଚିନ୍ତାରେ ଭାରାକ୍ରାନ୍ତ ହୋଇ ଶ୍ରାନ୍ତ କ୍ଳାନ୍ତ ଜୀବନ ବଂଚୁଛନ୍ତି - ମୁଁ ସେପରି ବଂଚୁ ନାହିଁ, ମୋର ମଧ ଏହି ଭାବ ଆସୁଛି ଯେ ମୁଁ ଆପଣଙ୍କର । ସଂପୂର୍ଣ୍ଣଭାବେ ଆପଣଙ୍କ ନିକଟରେ ସମର୍ପିତ । ମୋର ଜୀବନ ଆପଣଙ୍କ ଶ୍ରୀପଦରେ ନିବେଦିତ ।

ପ୍ରଭୁ ! ମୋର ଆଉ କିଛି ଆବଶ୍ୟକ ନ ଥିଲା ଭଳି ମୋତେ ଲାଗୁଛି । ମତେ ଲାଗୁଛି ଆପଣଙ୍କ ଭାବରେ ନିମଗ୍ନ ରହିବା ଫଳରେ ମୋର ସବୁ ଶୂନ୍ୟସ୍ଥାନ ପୂର୍ଣ୍ଣ ହୋଇ ଯାଇଛି । ମୋର ଉତ୍ତପ୍ତପ୍ରାଣ ଶୀତଳ ହୋଇ ଯାଇଛି । ମୁଁ ମୋର ଅନ୍ତରାତ୍ମାରେ ଆପଣଙ୍କ ନିତ୍ୟ ଉପସ୍ଥିତି ବୋଧ କରୁଛି ।

ପାଠକେ ! ଏବେ ବୁଝିଲେ ତ ! ମହା କୂଟନୀତିଜ୍ଞ, ରାଜନୀତିଜ୍ଞ, ସମାଜିକ ରୀତିନୀତିର ଅବଧାରକ ମହାମନା ଚାଣକ୍ୟ କିପରି ତାଙ୍କ ଜୀବନରେ ଏହି ଗଭୀର ଆଧ୍ୟାତ୍ମିକ ଉପଲବ୍ଧିର ଅଧିକାରୀ ଥିଲେ ?



## ୧୯. କିଏ କାହାକୁ ରକ୍ଷା କରେ ?

ଏ ଜଗତରେ ସବୁ କିଛି କାଳାଧୀନ । କାଳକ୍ରମେ ସବୁକିଛି ନଷ୍ଟ ହୋଇଯାଏ । ଜୀବଜଗତ ବାର୍ଦ୍ଧକ୍ୟ ଯୋଗୁଁ ନଷ୍ଟ ହୁଏ । ରୋଗ ଦ୍ୱାରା ନଷ୍ଟ ହୁଏ । ଅନ୍ୟ ବଳଶାଳୀ ଜୀବ ଦ୍ୱାରା ଆକ୍ରାନ୍ତ ହୋଇ ନଷ୍ଟ ହୁଏ । କିନ୍ତୁ ଚାଣକ୍ୟ ପଣ୍ଡିତେ ନିମ୍ନୋକ୍ତ ଶ୍ଳୋକଟିରେ ଅନ୍ୟ ପ୍ରକାର ନଷ୍ଟର କଥା କହୁଛନ୍ତି ।

**ଦାରିଦ୍ର୍ୟନାଶନଂ ଦାନଂ ଶୀଳଂ ଦୁର୍ଗତିନାଶନମ୍ ।**
**ଅଜ୍ଞାନନାଶିନୀ ପ୍ରଜ୍ଞା ଭାବନା ଭୟନାଶିନୀ ॥ (୫/୧୧)**

ଅର୍ଥାତ୍, ଯେଉଁ ରାଜ୍ୟରେ ଦାନଶୀଳ ଧନୀ ଲୋକମାନେ ଯଥାସମୟରେ ଦରିଦ୍ର ପ୍ରଜାମାନଙ୍କୁ ବିପୁଳଭାବେ ମୁକ୍ତହସ୍ତରେ ଧନଦାନ କରିଥାନ୍ତି, ସେ ରାଜ୍ୟରେ ଦରିଦ୍ରମାନଙ୍କର ଦାରିଦ୍ର୍ୟ ନଷ୍ଟହୋଇଯାଏ।

ଅକାଳ ପଡ଼ିଲେ ବନ୍ୟା, ବାତ୍ୟା, ମରୁଡ଼ି ଓ ଭୂମିକମ୍ପାଦି ଦୈବୀଦୁର୍ବିପାକ ଯୋଗୁଁ ପ୍ରଜାମାନଙ୍କର ଧନଧାନ୍ୟ ନଷ୍ଟ ହୋଇଯାଏ। ସେମାନେ ଦରିଦ୍ର ହୋଇଯାନ୍ତି। ମାତ୍ର ସେ ରାଜ୍ୟର ରାଜା, ସରକାର ଓ ଧନବାନ୍ ଲୋକେ ଯଦି ମୁକ୍ତହସ୍ତରେ ଦୁର୍ଗତ ପ୍ରଜାଙ୍କୁ ଧନଦାନ କରନ୍ତି ତେବେ ଲୋକଙ୍କର ଅକାଳ ଦାରିଦ୍ର୍ୟ ଆଉ ରହେନାହିଁ। କିନ୍ତୁ ଏଠି ମନେରଖିବାର ଅଛି ଯେ ପ୍ରାକୃତିକ ଦୁର୍ଯୋଗରେ ଦରିଦ୍ର ହୋଇଯାଇଥିବା ଲୋକଙ୍କୁ ଦାନ ଦେଲେ, ସେମାନଙ୍କ ଦାରିଦ୍ର୍ୟ ଦୂରୀଭୂତ ହୁଏ ସିନା ମାତ୍ର ଅଳସୁଆ, କର୍ମକୁଣ୍ଠ ଲୋକଙ୍କୁ ଯେତେ ଧନଧାନ୍ୟ ଦେଲେ ବି ସେମାନଙ୍କର ଦାରିଦ୍ର୍ୟ କେବେ ଘୁଞ୍ଚେ ନାହିଁ। ବରଂ ସେମାନଙ୍କ କ୍ଷେତ୍ରରେ ଏହି ଦାନଯୋଗୁଁ ସେମାନେ ବେଶି କର୍ମକୁଣ୍ଠହୋଇ ବସି ବସି ଖାଇବାକୁ ବେଶି ଉତ୍ସାହିତ ହୋଇପଡ଼ନ୍ତି। ଅକର୍ମା, କୋଢ଼ିଆ ଲୋକଙ୍କୁ ଧନଦାନ କଲେ ସେମାନେ ଆହୁରି କୋଢ଼ିଆ ହୋଇଯାନ୍ତି; ଏବଂ ଦେଶର ଦାରିଦ୍ର୍ୟ ବୃଦ୍ଧିକରିଚାଲନ୍ତି।

ଚାଣକ୍ୟଙ୍କର ଅନ୍ୟ କଥାଟି ଖୁବ୍ ସୁନ୍ଦର। ଯେଉଁ ମଣିଷ ଭଦ୍ର, ଭବ୍ୟ ଓ ଶୀଳବାନ୍ ସେ କେବେ ଦୁର୍ଗତି କବଳିତ ହୁଏ ନାହିଁ। ଯେ ଭଲଭାବେ ଜୀବନଯାପନ କରେ - ଯେ ସତ୍ୟ ଓ ଧର୍ମ ପଥରେ ଚାଲେ, ଯେ ସମସ୍ତଙ୍କର ମଙ୍ଗଳ କାମନା କରେ, ଯେ ଦୁର୍ଗତ ଲୋକଙ୍କୁ ଓ ଅସହାୟ ପ୍ରାଣୀମାନଙ୍କ ପ୍ରତି ଦୟାଶୀଳ ହୁଏ - ଯେ ସେବା ପରାୟଣ, ଶାନ୍ତ ଓ ଉଦାର ସ୍ୱଭାବର ହୋଇଥାଏ ସେ କୌଣସି ଦୁର୍ଭାଗ୍ୟ ବା ଦୁର୍ଗତି କବଳରେ ପଡ଼ି କଷ୍ଟ ପାଏନାହିଁ। କାରଣ ଉତ୍ତମ ଆଚରଣ ସବୁପ୍ରକାର ଦୁର୍ଗତିକୁ ନଷ୍ଟ କରିଥାଏ। ତେଣୁ ଶୀଳବାନ୍ ଲୋକ ଦୁର୍ଗତି ହାତରୁ ସହଜରେ ରକ୍ଷା ପାଏ।

ଯେଉଁ ବ୍ୟକ୍ତି ଜ୍ଞାନ ଅର୍ଜନ କରିଥାଏ; ଏବଂ ସାରା ଜୀବନ ଜ୍ଞାନାର୍ଜନରୁ ବିରତ ହୁଏନାହିଁ, ଯେ ଜୀବନର ରହସ୍ୟ ବୁଝିବାକୁ ସାଧନା କରୁଥାଏ, ଯେ ସତ୍ୟ, ନ୍ୟାୟ, ଧର୍ମ ସମ୍ବନ୍ଧେ ଜ୍ଞାନ ଅର୍ଜନ କରୁଥାଏ, ଯେ ଜୀବନ ଧାରଣର ଉପାୟଗୁଡ଼ିକ ଜାଣିବାକୁ ସର୍ବଦା ଚେଷ୍ଟାକରୁଥାଏ, ଯେ ଅଜ୍ଞାନ ହାତରୁ ରକ୍ଷାପାଇଥାଏ; ସେ ଅଜ୍ଞାନ ଅନ୍ଧକାର ଭିତରେ ପଥବଣା ହୁଏ ନାହିଁ। ଜ୍ଞାନାଲୋକରେ ତା'ର ସାରାଟି ଜୀବନ ଆଲୋକିତ ହୋଇଥାଏ।

ଶେଷ କଥାଟି ହେଲା; ମଣିଷ କିପରି କାହା ଦ୍ୱାରା ଭୟ, ଆଶଙ୍କା, ଆତଙ୍କ ପ୍ରଭୃତି କବଳରୁ ରକ୍ଷା ପାଏ ? ଜୀବନର ପଥ ସର୍ବଦା ସର୍ବତ୍ର ନାନାଦି ଆପଦବିପଦରେ ସଂକୁଳ ହୋଇଥାଏ। ତେଣୁ ଜୀବମାତ୍ରେ ଇ ଭୟାଳୁ। ମାତ୍ର ମନୁଷ୍ୟ କେବଳ ଭୟାଳୁ ନୁହେଁ, ସେ ଖୁବ୍ ବୁଦ୍ଧିମାନ୍ ହୋଇଥିବାରୁ ତା' ମନରେ ନାନାଦି ଆପଦବିପଦର କାଳ୍ପନିକ ଆଶଙ୍କା ମଧ୍ୟ ତାକୁ ଭୟଭୀତ କରି ରଖିଥାଏ। ଅକଳ୍ପନୀୟ ଆକସ୍ମିକ ଆପଦବିପଦ ପ୍ରତି ସେ ମଧ୍ୟ ଆତଙ୍କଗ୍ରସ୍ତ ହୋଇପଡ଼େ।

ମହାମତି ଚାଣକ୍ୟ କହୁଛନ୍ତି, ଏଇ ଭୟ, ଆଶଙ୍କା ଓ ଆତଙ୍କରୁ ରକ୍ଷା କରେ କେବଳ ଈଶ୍ୱରଙ୍କ ପ୍ରତି ଭକ୍ତିଭାବ। ଜଣେ ଯଦି ତା'ର ଇଷ୍ଟଦେବତା, ଗୁରୁ ବା ପରମେଶ୍ୱରଙ୍କୁ ଭଲପାଏ, ତାଙ୍କର ଶରଣାପନ୍ନ ହୁଏ, ତାଙ୍କ ପ୍ରଦର୍ଶିତ ଧର୍ମମାର୍ଗରେ ଜୀବନ ବଞ୍ଚେ, ତାଙ୍କ ନିକଟରେ ନିଜକୁ ଓ ନିଜର ସବୁକିଛିକୁ ସମର୍ପଣ କରିଦିଏ, ସର୍ବଦା ସର୍ବକର୍ମରେ ତାଙ୍କରି ଭଜନ କୀର୍ତ୍ତନ କରୁଥାଏ ଏବଂ ତାଙ୍କରି ଭାବେ କୃତଜ୍ଞ ଓ ବଶମ୍ବଦ ହୋଇ ରହିଥାଏ - ତେବେ ତା'ର ଆଉ କୌଣସି ଭୟ, ଆଶଙ୍କା ରହେ ନାହିଁ। ତା' ହୃଦୟରେ ଭକ୍ତିଭାବ ପୂର୍ଣ୍ଣଥିବାରୁ ତା' ମନରୁ ସବୁପ୍ରକାର ଭୟ ଆଶଙ୍କା, ଆତଙ୍କ ଲୋପପାଏ। କାରଣ ଈଶ୍ୱର କେବଳ ବିପଦ କବଳରୁ ରକ୍ଷା କରନ୍ତି ନାହିଁ, ବିପଦର କାରଣଗୁଡ଼ିକ ମଧ୍ୟ ନଷ୍ଟ କରିଦେଇଥାନ୍ତି।



## ୨୦. ଗ୍ରହଣ ଓ ବର୍ଜନ ରହସ୍ୟ

ପାଠକେ! ଏବେ ଆପଣମାନଙ୍କୁ ମହାମତି ଚାଣକ୍ୟ ପଣ୍ଡିତଙ୍କର ନିମ୍ନୋକ୍ତ ଶ୍ଲୋକଟିରୁ "କ'ଣ ଓ କାହାକୁ ଛାଡ଼ିବା ଉଚିତ" - ସେ ସମ୍ବନ୍ଧେ ଆଲୋଚନାଟିଏ ଶୁଣାଉଛି। ଶ୍ଲୋକଟି ହେଲା -

**ତ୍ୟଜେଦ୍ଧର୍ମଂ ଦୟାହୀନଂ ବିଦ୍ୟାହୀନଂ ଗୁରୁଂ ତ୍ୟଜେତ୍ ।**
**ତ୍ୟଜେତ୍କ୍ରୋଧମୁଖୀଂ ଭାର୍ଯ୍ୟାଂ ନିଃସ୍ନେହାନ୍ ବାନ୍ଧବାନ୍ତ୍ୟଜେତ୍ ॥ (୪/୧୬)**

ଏହି ଶ୍ଲୋକଟିର ଅର୍ଥ ହେଲା - ତୁମେ ଯେଉଁ ଧର୍ମରେ ଦୀକ୍ଷିତ ହୋଇଛ, ସେ ଧର୍ମରେ ଯଦି ଜୀବପ୍ରତି ଦୟାଭାବ ଓ ଦୁଃଖୀ ପ୍ରତି କରୁଣାଭାବର କଥା ନାହିଁ, ତେବେ ସେପରି ଧର୍ମ ତ୍ୟାଗକରିବା ଉଚିତ। ସେହିପରି, ତୁମେ ଯାହାଙ୍କଠୁ ବିଦ୍ୟା ଶିକ୍ଷା କରିବ ବୋଲି ଗୁରୁରୂପେ ବରଣ କରିଛ - ଯଦି ତୁମେ ବୁଝିଲ ଯେ, ସେ

ଗୁରୁଙ୍କୁ କିଛି ବିଦ୍ୟା ଜଣାନାହିଁ ବା ଯେତିକି ବିଦ୍ୟା ଥିଲେ ଜଣେ ଗୁରୁପଦବାଚ୍ୟ ହେବେ - ଯଦି, ସେତିକି ବିଦ୍ୟାର ସେ ଅଧିକାରୀ ନୁହନ୍ତି - ତେବେ ସେପରି ଗୁରୁଙ୍କୁ ଶୀଘ୍ର ତ୍ୟାଗକରି ଅନ୍ୟ ବିଦ୍ୱାନ୍ ଗୁରୁ ବରଣକରିବା ଉଚିତ। ଭାର୍ଯ୍ୟା ଯଦି ସର୍ବଦା କ୍ରୋଧମୁଖୀ ହୁଅନ୍ତି; ଏବଂ ତାଙ୍କର ଏଇ ଅହେତୁକୀ କ୍ରୋଧୋନ୍ମାଦ ଯଦି ତୁମର ଓ ପରିବାରର ସୁଖଶାନ୍ତି ନଷ୍ଟ କରୁଥାଏ - ତେବେ ସେପରି ଭାର୍ଯ୍ୟାଙ୍କୁ ଖୁବ୍ ଶୀଘ୍ର ତ୍ୟାଗ କରିବା ଉଚିତ ଓ ମଙ୍ଗଳପ୍ରଦ।

ପାଠକେ ! ଚାଣକ୍ୟଙ୍କ ମତରେ - ପତ୍ନୀ ଯଦି ଅହେତୁକୀ କ୍ରୋଧିନୀ ହୋଇଥାନ୍ତି - ତେବେ ତାଙ୍କୁ ଶୀଘ୍ର ତ୍ୟାଗକରିବା ଉଚିତ। କିନ୍ତୁ ପତି ବା ସ୍ୱାମୀ ଯଦି ସେହିପରି ସର୍ବଦା ଅହେତୁକ ଭାବେ କ୍ରୋଧୀ ହୁଅନ୍ତି ଓ ପରିବାରର ଏବଂ ନିଜର ସୁଖ ଶାନ୍ତି ନଷ୍ଟ କରନ୍ତି, ତେବେ ତାଙ୍କୁ ମଧ୍ୟ ତାଙ୍କ ପତ୍ନୀ ଶୀଘ୍ର ଛାଡ଼ପତ୍ର ଦେବା ଉଚିତ। ଏ କଥା ଚାଣକ୍ୟ ପଣ୍ଡିତେ କାହିଁକି କହି ନାହାନ୍ତି ? ଆମ ମତରେ ଏହା ଏକ ଏକପାଖିଆ ବିଚାର ଓ ନାରୀମାନଙ୍କୁ ମର୍ଯ୍ୟାଦା ଦିଆ ନ ଯିବାର ମନୋବୃତ୍ତିରୁ ଏ ବିଚାର ଜନ୍ମ ହୋଇଛି। ଚାଣକ୍ୟ ପଣ୍ଡିତେଙ୍କ ପରି ସେକାଳେ କେବଳ ପୁରୁଷ ଉପରେ ପ୍ରାଧାନ୍ୟ ଦିଆଯାଉଥିଲା ଓ ନାରୀଙ୍କୁ ଏତେ ଗୁରୁତ୍ୱ ଦିଆଯାଉ ନ ଥିଲା। ବର୍ତ୍ତମାନ କିନ୍ତୁ ଆମେ ଚାଣକ୍ୟଙ୍କ ଉକ୍ତିକୁ କିଂଚିତ୍ ପରିବର୍ତ୍ତନ ସହ ଗ୍ରହଣ କରିବା ଉଚିତ।

ଏହାପରେ ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଯଦି ତୁମର ବନ୍ଧୁବାନ୍ଧବମାନେ ତୁମ ପ୍ରତି ଯଥାର୍ଥ ସ୍ନେହ ନ ଦେଖାନ୍ତି, ତେବେ ସେମାନଙ୍କୁ ମଧ୍ୟ ଅଚିରେ ତ୍ୟାଗ କରିବ।

ପାଠକେ ! ମଣିଷର ଜୀବନ ହେଲା ଗ୍ରହଣ ଓ ବର୍ଜନର ଏକ ବିରାଟ କ୍ଷେତ୍ର। ଆମେ ଜଣେ ମଣିଷ ଭାବେ ବଞ୍ଚିବାକୁ ହେଲେ କ'ଣ ଅର୍ଜନ କରିବା ଉଚିତ ଓ କ'ଣ ବର୍ଜନ କରିବା ଉଚିତ, ସେ କଥା ଭଲଭାବେ ଜାଣିବା ଉଚିତ। ଅନ୍ୟ ଭାଷାରେ ଆମେ ଯଦି ବ୍ୟକ୍ତିତ୍ୱବାନ୍ ମଣିଷ ହେବାକୁ ଚାହୁଁ, ତେବେ ଆମକୁ ଯଥାସ୍ଥାନରେ ଯଥାକାଳରେ ଓ ଯଥା ପାତ୍ରରେ ହଁ କହିବା କି ନା କହିବା ସେ କଥା ଜାଣିବା ଉଚିତ। ଏଇ ହଁ କହିବା କି ନା କହିବା କଥାଟି ଜାଣି ନ ଥିବାରୁ ଆମେ ଜୀବନରେ ବହୁତ ପ୍ରମାଦକରିବସୁ ଓ ସେଥିଯୋଗୁଁ କଷ୍ଟ ପାଉ।

କେତେବେଳେ, କୋଉଠି କାହାକୁ ଗ୍ରହଣ କରିବ ବା ବର୍ଜନ କରିବ - ସେ କଥା ଆମର ଭଲ ରୂପେ ଜାଣିବା ଉଚିତ। ଅନ୍ୟ ପ୍ରାଣୀମାନଙ୍କର ପ୍ରକୃତିଦତ୍ତ ଗୁଣ ଅଛି - ସେମାନେ ଠିକ୍ ସମୟରେ ବର୍ଜନ ବା ଗ୍ରହଣ କରିପାରନ୍ତି। ମଣିଷକୁ ଭଗବାନ୍ ବିଚାର ଶକ୍ତି ଓ ବିବେକ ଦେଇଛନ୍ତି ଓ କିଛି ସ୍ୱାଧୀନତା ମଧ୍ୟ ଦେଇଛନ୍ତି। ସେ ସ୍ୱାଧୀନଭାବେ ବିଚାର କରି କ'ଣ, କାହାକୁ, କେତେବେଳେ ଗ୍ରହଣ କରିବ ବା

ବର୍ଜନ କରିବ ସେ କଥା ସ୍ଥିର କରିପାରିବ। ମାତ୍ର ସବୁ ମଣିଷ ତାହା କରନ୍ତି ନାହିଁ। ତେଣୁ ଜୀବନରେ ଖୁବ୍ ହଇରାଣ ହୁଅନ୍ତି। ଏହି ଛାଡ଼ିବା ଓ ଧରିବା ବା ଗ୍ରହଣ ଓ ବର୍ଜନ ସମ୍ପର୍କରେ ମହାମତି ବ୍ୟାସଦେବ ତାଙ୍କ ମହାଭାରତରେ କ'ଣ କହିଛନ୍ତି - ଶୁଣନ୍ତୁ। ମହାଭାରତ ଯୁଦ୍ଧ ଆରମ୍ଭ ପୂର୍ବରୁ ଧର୍ମାତ୍ମା ଓ ବିବେକୀ ବିଦୁର ମହାରାଜ ଧୃତରାଷ୍ଟ୍ରଙ୍କୁ କହିଲେ - 'ହେ ରାଜା! ଆପଣଙ୍କର ପୁତ୍ର ଦୁର୍ଯୋଧନ ଅତ୍ୟନ୍ତ ଦୁଷ୍ଟ, ଈର୍ଷାଳୁ, ମନ୍ଦବୁଦ୍ଧି ଓ କୁଳନାଶକ। ତା'ର ଅନୁଗତ ଆପଣଙ୍କର ଅନ୍ୟ ଅନେଶତ ପୁତ୍ର ମଧ୍ୟ ବଡ଼ଭାଇଙ୍କୁ ଅନୁସରଣ କରି ଏଭଳି ବିଖ୍ୟାତ ବଂଶକୁ ଧ୍ୱଂସ ଆଡ଼କୁ ଟାଣି ନେଉଛନ୍ତି। ତେଣୁ ହେ ରାଜନ୍! ଯଦି ଧର୍ମ ପ୍ରତି ଆପଣଙ୍କର ସମ୍ମାନ ଥାଏ - ଯଦି ବଂଶମର୍ଯ୍ୟାଦା ପ୍ରତି ଆପଣଙ୍କର ଅନୁରକ୍ତି ଥାଏ ଓ ଯଦି କୁଳନାଶର ଆଶଙ୍କା ଆପଣଙ୍କୁ ଯଥାର୍ଥରେ ଘାରୁଥାଏ - ତେବେ ଦୟାକରି ଏଇ ମୁହୂର୍ତ୍ତରେ ଦୁଷ୍ଟ ପୁତ୍ର ଦୁର୍ଯ୍ୟୋଧନଙ୍କୁ ତ୍ୟାଗ କରନ୍ତୁ ଓ ଧର୍ମାତ୍ମା ଯୁଧିଷ୍ଠିରଙ୍କ ସମେତ ପାଣ୍ଡବ ପାଞ୍ଚଭାଇଙ୍କୁ ଗ୍ରହଣ କରନ୍ତୁ।"

ଧୃତରାଷ୍ଟ୍ର ଏ କଥା ଶୁଣି ନ ଶୁଣିଲା ପରି ରହିବାରୁ ଧର୍ମାତ୍ମା ବିଦୁର ପୁନଶ୍ଚ କହିଲେ, ହେ ରାଜା! ଧର୍ମଶାସ୍ତ୍ରମାନଙ୍କରେ ଖୁବ୍ ଗୁରୁତ୍ୱପୂର୍ଣ୍ଣ ସ୍ୱରରେ କୁହାଯାଇଛି, "କୁଳ ବା ପରିବାରର ମଙ୍ଗଳପାଇଁ ପରିବାରର ଅମଙ୍ଗଳକାରୀଙ୍କୁ ତ୍ୟାଗ କରିବାକୁ ହେବ। ଗ୍ରାମର ମଙ୍ଗଳପାଇଁ ପରିବାରକୁ ତ୍ୟାଗ କରିବାକୁ ହେବ। ରାଜ୍ୟର ମଙ୍ଗଳପାଇଁ ଗ୍ରାମକୁ ତ୍ୟାଗ କରିବାକୁ ହେବ; ଏବଂ ନିଜର ଅନ୍ତରାତ୍ମାର ମଙ୍ଗଳପାଇଁ ଦରକାର ହେଲେ ଏ ପୃଥିବୀକୁ ମଧ୍ୟ ତ୍ୟାଗ କରିବାକୁ ପଡ଼ିବ।"



## ୨୧. ବରଂ ସର୍ପୋ ନ ଦୁର୍ଜନଃ...

ପାଠକେ! ଆଜି ଆମେ ଅତୀତର ମହାପ୍ରଜ୍ଞାପୁରୁଷ ଚାଣକ୍ୟ ପଣ୍ଡିତଙ୍କର ଗୋଟିଏ ପରିଚିତ ଶ୍ଳୋକ ବିଶ୍ଳେଷଣ କରିବା। ଶ୍ଳୋକଟି ହେଲା -

**ଦୁର୍ଜନସ୍ୟ ଚ ସର୍ପସ୍ୟ ବରଂ ସର୍ପୋ ନ ଦୁର୍ଜନଃ।**
**ସର୍ପୋ ଦଂଶତି କାଳେନ ଦୁର୍ଜନସ୍ତୁ ପଦେ ପଦେ।।** (୪/୩)

ଏହି ଶ୍ଳୋକର ଆକ୍ଷରିକ ଅର୍ଥ ହେଲା, ଦୁର୍ଜ୍ଜନ ବା ଦୁଷ୍ଟଲୋକ ଏବଂ ବିଷଧର ସର୍ପ ଭିତରେ ବରଂ ସର୍ପକୁ ଆମେ ଉତ୍ତମ ବୋଲି କହିପାରିବା। ମାତ୍ର ଦୁଷ୍ଟଲୋକକୁ

କେବେବି ଭଲ କହିବାନାହିଁ। କାରଣ ଜଣକର ମୃତ୍ୟୁକାଳ ଉପସ୍ଥିତ ହେଲେ ଯମଙ୍କର ଦୂତରୂପେ ବିଷଧର ସର୍ପ ତାକୁ ଦଂଶନ କରେ ଓ ସେ ମୃତ୍ୟୁବରଣ କରେ। କିମ୍ବା ସର୍ପ ବିଷଧର ହେଲେ ବି ସେ କେବେ କେବେ କାମୁଡ଼ିଥାଏ। କିନ୍ତୁ ଦୁର୍ଜ୍ଜନ ଓ ଦୁଷ୍ଟଲୋକ ତୁମର ସର୍ବଦା କ୍ଷତିସାଧନ କରୁଥାଏ। ଚାଣକ୍ୟଙ୍କର ଏଇ ଉକ୍ତିଟି ଏକ ସାର୍ବକାଳୀନ ସତ୍ୟ। ପ୍ରଥମ କଥା ହେଲା, ଇତର ପ୍ରାଣୀମାନଙ୍କଠାରୁ ମଣିଷ ଅଧିକ ବୁଦ୍ଧିମାନ୍। କିନ୍ତୁ ମଣିଷ ପାଇଁ ତା'ର ଏଇ ବୁଦ୍ଧି ସ୍ୱର୍ଗକୁ ନିଶୁଣି ବାନ୍ଧିପାରେ; ଏବଂ ସେଇ ଶିଡ଼ିରେ ସ୍ୱର୍ଗକୁ ନ ଯାଇ ସେ ନରକରେ ଓହ୍ଲାଇ ପଡ଼ିପାରେ। ବୁଦ୍ଧି ବଳରେ ମଣିଷ ଆଜି ବିଜ୍ଞାନ କ୍ଷେତ୍ରରେ କେତେ ଉନ୍ନତି କରିଛି। କିନ୍ତୁ ସେଇ ମଣିଷ ପୁଣି ତା'ର ବୁଦ୍ଧି-ପ୍ରସୂତ ବିଜ୍ଞାନ ଦ୍ୱାରା ପୃଥିବୀକୁ ଧ୍ୱଂସ କରିବାକୁ ବସିଲାଣି। ଏକଥା ମଧ୍ୟ ବର୍ତ୍ତମାନ ସମ୍ପୂର୍ଣ୍ଣଭାବେ ପ୍ରମାଣିତ ହୋଇଗଲାଣି ଯେ, ମଣିଷ ହିଁ ସବୁଠାରୁ ହିଂସ୍ର, ଲୋଭୀ ଓ ସ୍ୱାର୍ଥପର ପ୍ରାଣୀ। ମଣିଷର ବୁଦ୍ଧି ପୁଣି ହିଂସା, କପଟତା, ଲୋଭ ଓ ଈର୍ଷା ଅସୂୟାଦିରେ ଆଚ୍ଛନ୍ନ ହେଲେ ମଣିଷ ହୋଇଉଠେ ଦୁର୍ଦ୍ଦାନ୍ତ ଏକ ଅସୁର ବା ପିଶାଚ।

ମାତ୍ର ଇତର ପ୍ରାଣୀମାନଙ୍କଠାରେ ଏହି ମିଥ୍ୟାଚାର କପଟତା, ଈର୍ଷା, ଅସୂୟା ଓ ଲୋଭ ଦେଖାଯାଏ ନାହିଁ। ପଶୁପକ୍ଷୀମାନେ ସ୍ୱଭାବରେ କ୍ରିୟା-ପ୍ରତିକ୍ରିୟାରେ ଖୁବ୍ ସତ ଓ ସରଳ। ସେମାନଙ୍କଠାରେ ପ୍ରକୃତିର ବିକୃତି ଦେଖାଯାଏ ନାହିଁ। ବିନା କାରଣରେ ସେମାନେ କାହାର ଅନିଷ୍ଟ କରନ୍ତି ନାହିଁ। ଏପରିକି ବିଷଧର ସର୍ପଟିଏ କାହାଠାରୁ ଭୟ ନ ପାଇଲେ ବା ଆଘାତ ନ ପାଇଲେ ତାକୁ ଦଂଶନ କରେ ନାହିଁ। ବ୍ୟାଘ୍ର, ସିଂହାଦି ପ୍ରାଣୀମାନେ କ୍ଷୁଧାର୍ତ୍ତ ନ ହେଲେ ଅନ୍ୟ ପ୍ରାଣୀ ବଧକରନ୍ତି ନାହିଁ। କିନ୍ତୁ ମଣିଷର କଥା ଅଲଗା। ଆମ ମଣିଷଙ୍କ ଭିତରେ ଦୁଇବିଧ ମଣିଷ ଅଛନ୍ତି। ଯେଉଁମାନେ ଶିଷ୍ଟ ମଣିଷ, ସାଧୁ ଓ ସନ୍ଥ ମଣିଷ, ଯେଉଁମାନେ ମହତ୍ମା ସେମାନଙ୍କ ଚରିତ ଦେବତାଙ୍କଠାରୁ ମଧ୍ୟ ମହୀୟାନ୍। କିନ୍ତୁ ଯେଉଁମାନେ ଦୁଷ୍ଟ, ଦୁର୍ଜନ ସେମାନେ ଘୋର ଅହଂକାରୀ, ସ୍ୱାର୍ଥପର, ନିଷ୍ଠୁର, ମିଥ୍ୟାଚାରୀ, ସ୍ୱେଚ୍ଛାଚାରୀ ଓ ବିକୃତମନା। ଏଇ ଧରଣର ମଣିଷମାନେ ପଶୁଙ୍କଠାରୁ ହୀନ ଏବଂ ଅସୁର ପିଶାଚଠାରୁ ମଧ୍ୟ ହୀନତର। ଆମ ସମାଜରେ ଶିଷ୍ଟ ଓ ଦୁଷ୍ଟ - ଏଇ ଉଭୟ ପ୍ରକାରର ମଣିଷ ଅଛନ୍ତି। ମହାମତି ଚାଣକ୍ୟ କହୁଛନ୍ତି, ଏଇସବୁ ଦୁଷ୍ଟ ପ୍ରକୃତିର ମଣିଷମାନେ ବିଷଧର ସର୍ପଠାରୁ ମଧ୍ୟ ଭୟଙ୍କର। କାରଣ ବିନାକାରଣରେ ସେମାନେ କାହାକୁ ଦଂଶନ କରନ୍ତି ନାହିଁ। ମାତ୍ର ଏଇସବୁ ଦୁଷ୍ଟ, ଦୁର୍ଜ୍ଜନ ଲୋକମାନେ ବିନା କାରଣରେ ଅନ୍ୟର ଅନିଷ୍ଟ କରନ୍ତି। ଅନ୍ୟର ଅନିଷ୍ଟ କରି ସେଇ ଦୁଷ୍ଟମାନେ ଏକ ପୈଶାଚିକ ଆନନ୍ଦ ଉପଭୋଗ କରନ୍ତି।

ଅନ୍ୟର ଦୁଃଖକଷ୍ଟ ଓ ଯନ୍ତ୍ରଣା ଦେଖିଲେ ଏଇ ଦୁଷ୍ଟ, ଦୁର୍ଜନ ଲୋକମାନେ ସହାନୁଭୂତି ନ ଦେଖାଇ ବରଂ ଖୁସି ହୁଅନ୍ତି। ଦୁଷ୍ଟ ଓ ଦୁର୍ଜନ ଲୋକମାନେ ଏକ ବିକୃତ ମାନସିକତାର କବଳରେ ପଡ଼ିଥାନ୍ତି। ଅନ୍ୟକୁ ଅକାରଣରେ ପୀଡ଼ା ଦେଲେ ସେମାନଙ୍କୁ ଏକ ବୀଭତ୍ସ ସୁଖ ମିଳେ। ଗୋଟିଏ ଅଭିଜ୍ଞତା ଆମ ସମସ୍ତଙ୍କର ନିଶ୍ଚୟ ହୋଇଥିବ। ଗୋଟିଏ କୁକୁର ତୁମର ସ୍ନେହ, ସୋହାଗରେ ତୁମ ପାଖେ ପୋଷା ମାନି ରହିଥିବ। ସେ ତୁମ ଦତ୍ତଖାଦ୍ୟ ଖାଇବ ଓ ତୁମର ଘର ଜଗିବ। ତୁମେ ଶୋଇଥିଲାବେଳେ ସେ ତୁମର ଅନିଷ୍ଟକାମୀ କୌଣସି ଲୋକକୁ ତୁମ ଘରେ ପଶିବାକୁ ଦେବ ନାହିଁ। ସେ କୁକୁର ଦେଶୀ ହେଉ ବା ବିଲାତୀ ହେଉ। କେବଳ କୁକୁର ନୁହଁ, ନେଉଳଠାରୁ ଆରମ୍ଭ କରି ବ୍ୟାଘ୍ର, ଭଲ୍ଲୁକ ପର୍ଯ୍ୟନ୍ତ ପ୍ରାଣୀମାନେ ମଧ୍ୟ ଏହି ବିଶ୍ୱସ୍ତତା ଦେଖାଇଥାନ୍ତି। ମାତ୍ର ମଣିଷକ୍ଷେତ୍ରରେ ଏଥିରେ ଓଲମବିଲମ ରହିଛି। ଶିଷ୍ଟ ଓ ସତ୍‌ପ୍ରକୃତିର ମଣିଷମାନେ ଅବଶ୍ୟ ଅମଣିଷପଣିଆ ଦେଖାନ୍ତି ନାହିଁ। କିନ୍ତୁ ଯେଉଁ ମଣିଷମାନେ ଦୁଷ୍ଟ, ସ୍ୱାର୍ଥପର, ପରପୀଡ଼କ ଏବଂ ହିଂସ୍ର, କପଟାଚାରୀ ସେଇସବୁ ଦୁର୍ଜନ ଲୋକଙ୍କୁ କେବେ ବିଶ୍ୱାସ କରିହେବ ନାହିଁ। ଚାଣକ୍ୟ ପଣ୍ଡିତେ କହୁଛନ୍ତି, "ବରଂ ବିଷଧର ସର୍ପକୁ ବିଶ୍ୱାସ ଅଛି; ମାତ୍ର ଏଇ ଦୁଷ୍ଟବୁଦ୍ଧି ଦୁର୍ଜନ ମଣିଷଙ୍କୁ ବିଶ୍ୱାସ ନାହିଁ।"



## ୨୨. କାହାଠୁଁ କେତେ ଛାଡ଼ିବ ?

ପାଠକେ ! ଆମେ ଗତଥରଠାରୁ ମହାମତି ଚାଣକ୍ୟଙ୍କର ବ୍ୟବହାର - ନୀତି ଉପରେ ଆଲୋଚନା କରୁଥାଉଁ। ଏଥର ଆଉ ଗୋଟିଏ ଶ୍ଳୋକ ଦେଖନ୍ତୁ।

**ଶକଟଂ ପଞ୍ଚହସ୍ତେନ ଦଶହସ୍ତେନ ବାଜିନମ୍।**
**ହସ୍ତୀ ଶତହସ୍ତେନ ଦେଶତ୍ୟାଗେନ ଦୁର୍ଜନମ୍ ॥ (୭/୭)**

ଜୀବନ ଦ୍ରଷ୍ଟା ଚାଣକ୍ୟ ପଣ୍ଡିତେ କହୁଛନ୍ତି, "ହେ ସଂସାରୀ ଲୋକମାନେ ! ଜୀବନ ବଡ଼ ଦୁର୍ଲଭ ବିଷୟ ଏବଂ ମଣିଷକୁ କେବଳ ମଣିଷଙ୍କ ସଙ୍ଗେ ରହିବାକୁ ପଡୁ ନାହିଁ। ମଣିଷ ଗ୍ରାମ, ସହରରେ ରହେ। କିନ୍ତୁ ତଥାପି ମଧ ତାକୁ ଅନେକ ସମୟରେ ଅରଣ୍ୟ, ନଦୀ, ସମୁଦ୍ର, ପାହାଡ଼, ପର୍ବତ ଓ ମରୁଭୂମିରେ ରହିବାକୁ ଏବଂ ବହୁ ଜୀବଜନ୍ତୁଙ୍କ ସହିତ ମଧ ମିଶିକରି ରହିବାକୁ ପଡ଼େ। କିନ୍ତୁ ମଣିଷ ଜାଣିବା ଉଚିତ ସେ ଜୀବନପଥରେ କାହାଠାରୁ କେତେ ଦୂରରେ ବା କେତେ ନିକଟରେ ରହିବା ଉଚିତ।"

ଚାଣକ୍ୟ କହୁଛନ୍ତି - ଶଗଡ଼, ରଥ ବା ଯେକୌଣସି ଯାନବାହନଠାରୁ ପାଞ୍ଚହାତ ଦୂରରେ ରହିବ । ମାନେ ଏଗୁଡ଼ିକଠାରୁ ଛଅଫୁଟ ଦୂରତାରେ ରହିବ ବା ଚଳପ୍ରଚଳ ହେବ । ତା' ନ ହେଲେ ଦୁର୍ଘଟଣାର ସମ୍ମୁଖୀନ ହୋଇପାର । ସେହିପରି ଘୋଡ଼ା ବା ଘୋଡ଼ାଗାଡ଼ିଠାରୁ ଦଶ ହାତ ବା ତେର ଚଉଦ ଫୁଟ ଦୂରରେ ରହିବ କିମ୍ବା ଚଳପ୍ରଚଳ ହେବ । ହାତୀଠାରୁ ସହସ୍ର ହାତ ବା ପ୍ରାୟ ଦେଢ଼ହଜାର ଫୁଟ ଦୂରରେ ରହିବ ବା ଚଳପ୍ରଚଳ ହେବ । ପାଗଳାହାତୀ ବା ଦନ୍ତାହାତୀଠାରୁ ବହୁଦୂରରେ ରହିବ ଏବଂ ସେମାନେ ଥିବା ଜାଗାରେ ଖୁବ୍ ସାବଧାନତାରେ ଚଳପ୍ରଚଳ ହେବ ।

କିନ୍ତୁ ମହାବୁଦ୍ଧି ଚାଣକ୍ୟ ଶେଷ ଉଦାହରଣଟି ଦେଇ କହୁଛନ୍ତି "ହେ ପଲ୍ଲିବାସୀ ଓ ନଗରବାସୀ ମନୁଷ୍ୟମାନେ ! ତୁମ୍ଭେମାନେ ଭଲକରି ଜାଣିରଖ - ଯେଉଁ ସ୍ଥାନରେ ଦୁର୍ଜନ ବା ଦୁଷ୍ଟଲୋକମାନେ ଥିବେ, ସେ ସ୍ଥାନରେ ଆଦୌ ରହିବ ନାହିଁ । କିଛି ଅନ୍ୟଥା ନ ଭାବି ସେ ସ୍ଥାନ ତାହା ତୁମର ପରିବାର ହେଉ ବା ଗ୍ରାମ ହେଉ ବା ଦେଶ ହେଉ ତାକୁ ସମ୍ପୂର୍ଣ୍ଣ ତ୍ୟାଗକରି ଅନ୍ୟ ସ୍ଥାନକୁ ଚାଲିଯିବ ।"

ପାଠକେ ! ମହାମତି ଚାଣକ୍ୟଙ୍କ ଉପଦେଶ ଆମର ନିଶ୍ଚୟ ପାଳନକରିବା ଉଚିତ । କିନ୍ତୁ ମନରେ ଗୋଟିଏ ପ୍ରଶ୍ନ ଜାଗେ - 'ଦୁର୍ଜନ' ବ୍ୟକ୍ତି କାହାକୁ କହିବା । 'ଦୁର୍ଜନ' ଶବ୍ଦର ଅର୍ଥ ହେଲା ଦୁଷ୍ଟଲୋକ । ଦୁଷ୍ଟଲୋକ କାହାକୁ କହିବା ? ଯେଉଁ ଲୋକଠାରେ ନାନାଦି ଅମାନବୀୟ ଦୋଷ ରହିଛି ଓ ଯେ ନିଜକୁ ତ ଦୋଷଦୁଷ୍ଟ କରିଛି - ସମାଜକୁ ମଧ୍ୟ ତା'ର ଦୁଷ୍ଟାମିରେ ପୀଡ଼ା ଦେଉଛି ।

ମଣିଷ ଭିତରେ ଦ୍ୱିବିଧ ପ୍ରକୃତି ରହିଛି । ଗୋଟିଏ ହେଲା ଦିବ୍ୟ ପ୍ରକୃତି । ଅନ୍ୟଟି ହେଲା ଅଦିବ୍ୟ ପ୍ରକୃତି । ଦିବ୍ୟପ୍ରକୃତିର ମଣିଷ ଭିତରେ ଥାଏ ମାନବୀୟ ସଦ୍‌ଗୁଣ ସବୁ ଦୟା, କ୍ଷମା, ପ୍ରେମ, ସ୍ନେହ, କରୁଣା, ସହାନୁଭୂତି, ପରାର୍ଥପରତା ଓ ଈଶ୍ୱରପରାୟଣତା । ଦିବ୍ୟ ପ୍ରକୃତିରେ ଥିବା ଏଇସବୁ ଦିବ୍ୟଗୁଣଗୁଡ଼ିକ ମଣିଷକୁ ଯଥାର୍ଥ ମଣିଷଟିଏ କରି ଗଢ଼େ ଏବଂ ସେ କ୍ରମେ ଦେବତ୍ୱ ଆଡ଼କୁ ଅଗ୍ରସର ହୁଏ ।

ଅଦିବ୍ୟ ପ୍ରକୃତିର ମଣିଷ ସର୍ବଦା ହିଂସା, ଦ୍ୱେଷ, କ୍ରୋଧ, ନିଷ୍ଠୁରତା, ଅହଂକାର, ମିଥ୍ୟାଚାର ଓ ନାନାଦି ଅସୂୟାପୂର୍ଣ୍ଣ ତାମସିକତାରେ ବୁଡ଼ିକରି ଥାଏ । ସେ ତା'ର କୁତ୍ସିତ ଗୁଣ ଓ କ୍ରିୟାଦ୍ୱାରା ମଣିଷ ଓ ଇତର ପ୍ରାଣୀମାନଙ୍କୁ କଷ୍ଟ ଦେଉଥାଏ, ପୀଡ଼ା ଦେଉଥାଏ । ଏଭଳି ଦୁଷ୍ଟଲୋକଙ୍କ ଅତ୍ୟାଚାରରେ ସମସ୍ତେ ଅତିଷ୍ଠ ହୋଇପଡ଼ନ୍ତି । ପୃଥିବୀରେ ବା ଦେଶରେ ଏଭଳି ଦୁଷ୍ଟଲୋକଙ୍କ ସଂଖ୍ୟା ବଢ଼ିଗଲେ, ପୃଥିବୀବାସୀ ସରଳ ଓ ଭଲ ମଣିଷମାନେ, ଏପରିକି ଇତର ପ୍ରାଣୀମାନେ ଓ ବୃକ୍ଷଲତା ସମେତ

ପ୍ରକୃତିମାତା ବଡ଼ କଷ୍ଟ ପାଆନ୍ତି ଏବଂ ପୃଥିବୀର ନାଭିକମଳରୁ ଭଗବାନ୍‌ଙ୍କ ଉଦ୍ଦେଶ୍ୟରେ କାତର ପ୍ରାର୍ଥନା ସ୍ଫୁରିତ ହୁଏ - ପ୍ରଭୁ ! ରକ୍ଷାକର। ଏହି କାତର ଡାକରେ ଭଗବାନ୍ ମନୁଷ୍ୟରୂପରେ ବିଭୂତି ବା ଅବତାର ହୋଇ ପୃଥିବୀରେ ଜନ୍ମନ୍ତି ଓ ଦୁଷ୍ଟମାନଙ୍କୁ ସଂହାର କରି ଶିଷ୍ଟମାନଙ୍କୁ ରକ୍ଷାକରନ୍ତି।

ପାଠକେ ! ମହାମତି ଚାଣକ୍ୟ ଆମକୁ ସାବଧାନ ବାଣୀ ଶୁଣାଇଛନ୍ତି। ଏଭଳି ଦୁଷ୍ଟଲୋକ ଯୋଉଠି ଥାଆନ୍ତୁ, ତାହା ପରିବାର, ଗ୍ରାମ ବା ଦେଶ ଯୋଉଠି ଥା'ନ୍ତୁ - ସେ ସ୍ଥାନ ତୁରନ୍ତ ତ୍ୟାଗ କରିବା ଉଚିତ୍। କିନ୍ତୁ ଆମ ମନରେ ପ୍ରଶ୍ନ ଉଠେ ଆମ ଭିତରେ କ'ଣ ସେହି ଦୁଷ୍ଟଗୁଣରୁ କିଛି ଅଂଶ ନାହିଁ ? ହଁ ଅଛି। ମାତ୍ର ଆମ ଭିତରୁ ଅନେକ ସତ୍ ଶୁଭେଚ୍ଛାପରାୟଣ ମଣିଷ ନିଜର ଦୋଷ ବୁଝିବାକୁ ଚେଷ୍ଟା କରନ୍ତି ଓ ସର୍ବଦା ଦୋଷମୁକ୍ତ ହେବାକୁ ପ୍ରୟାସ କରନ୍ତି। ମାତ୍ର ଚାଣକ୍ୟ ଯେଉଁ ଦୁର୍ଜନ ଦୁଷ୍ଟଙ୍କ କଥା କହୁଛନ୍ତି - ସେମାନେ ପରିବର୍ତ୍ତିତ ହେବାକୁ ଚାହାନ୍ତି ନାହିଁ।



## ୨୩. ମରଣଂ ତସ୍ୟ କେବଳମ୍

ଏ ପୃଥିବୀରେ ଜନ୍ମହେଲେ ମରଣ ସୁନିଶ୍ଚିତ। କୀଟପତଙ୍ଗଠାରୁ ମଣିଷ ଯାଏ - ସମସ୍ତେ ଜନ୍ମ ହୁଅନ୍ତି, କିଛି ସମୟ ବଞ୍ଚନ୍ତି, ତା'ପରେ ମରନ୍ତି। ଏପରି କି ସୂକ୍ଷ୍ମ ଜଗତରେ ଥାଇ ଆମ ଜଗତକୁ ନିୟନ୍ତ୍ରଣ କରୁଥିବା ଦେବଦେବୀମାନେ ମଧ୍ୟ ଦିନେ ବିଲୟ ହୁଅନ୍ତି ବୋଲି ଶାସ୍ତ୍ର କହନ୍ତି। ତେଣୁ ମୃତ୍ୟୁ ଏକ ସାର୍ବଜନୀନ ସତ୍ୟ। ମାତ୍ର ମଣିଷ ଯେହେତୁ ପ୍ରାଣୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଏବଂ ମନୁଷ୍ୟ ହିଁ ଏକମାତ୍ର ଆତ୍ମସଚେତନ ପ୍ରାଣୀ - ସେ ହେତୁ ମଣିଷର ଜନ୍ମପଛରେ ପ୍ରକୃତିମାତା ଏକ ମହାନ୍ ଉଦ୍ଦେଶ୍ୟ ରଖିଛନ୍ତି। ଇତର ପ୍ରାଣୀମାନେ ଜନ୍ମହୁଅନ୍ତି - ତା'ପରେ ଖାଇପିଇ କିଛିକାଳ ବଞ୍ଚିବା ପରେ ମରନ୍ତି। ମାତ୍ର ମଣିଷର ଜନ୍ମ ପଛରେ ପ୍ରକୃତିମାତାଙ୍କର ଉଦ୍ଦେଶ୍ୟ ହେଲା - ମନୁଷ୍ୟ ଯେପରି ନିଜକୁ ଜାଣିବ, ଏ ଜଗତକୁ ଜାଣିବ, ଏ ସୃଷ୍ଟିର ଉଦ୍ଦେଶ୍ୟ କ'ଣ ତାହା ମଧ୍ୟ ବୁଝିବ ଏବଂ ଶେଷରେ ଏ ବିଶ୍ୱର ସ୍ରଷ୍ଟା ପାଳକ ଓ ବିନାଶକର୍ତ୍ତା ସଚ୍ଚିଦାନନ୍ଦ ପରମେଶ୍ୱରଙ୍କୁ ମଧ୍ୟ ବୁଝିବ, ଉପଲବ୍ଧି କରିବ ଓ ପ୍ରକୃତିମାତାଙ୍କ କ୍ରମବିକାଶ କାର୍ଯ୍ୟକ୍ରମକୁ ଚଳମାନ କରି ରଖିବ। ସେଥିପାଇଁ ମନୁଷ୍ୟଭିତରେ ପ୍ରକୃତିମାତା ଧର୍ମଭାବ ଖଞ୍ଜି ଦେଇଛନ୍ତି। ମନୁଷ୍ୟ ଜୀବନରେ ଚାରୋଟି ବିଷୟରେ ସାଧନା କରିବାକୁ ପଡ଼େ। ଚାଣକ୍ୟ ପଣ୍ଡିତ କହୁଛନ୍ତି :

**ଧର୍ମାର୍ଥକାମମୋକ୍ଷାଣାଂ ଯସ୍ୟୈକୋଽପି ନ ବିଦ୍ୟତେ ।**
**ଜନ୍ମ-ଜନ୍ମନି ମର୍ତ୍ତ୍ୟେଷୁ ମରଣଂ ତସ୍ୟ କେବଳମ୍ ॥ (୩/୨୦)**

ଅର୍ଥାତ୍, ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚାରୋଟି ହେଲା ମଣିଷର ମାନସୀ ଧର୍ମ ବା କର୍ତ୍ତବ୍ୟ। ଯଦି କୌଣସି ମଣିଷ ଏହି ଚାରେଟିରୁ ଗୋଟିଏ ବି ଅର୍ଜ୍ଜନ ନ କରି କେବଳ ପଶୁ ପରି ବଞ୍ଚୁଥାଏ ତେବେ ତା' ଜୀବନ ବୃଥା। ସେ କେବଳ ଏ ପୃଥିବୀରେ ବାରମ୍ବାର ଜନ୍ମ ହେଉଥାଏ ଓ ବାରମ୍ବାର ମରୁଥାଏ। ତା'ମାନେ ଏଭଳି ମଣିଷ ଜୀବନ ବ୍ୟର୍ଥ ଅଟେ।

ଆମ ସନାତନ ହିନ୍ଦୁଧର୍ମରେ ପ୍ରତି ମଣିଷକୁ ଜୀବନରେ ଚାରୋଟି ବିଷୟ ସାଧିବାକୁ କୁହାଯାଇଛି। ଏଇ ଚାରୋଟିକୁ 'ଚଉବର୍ଗ ସାଧନା' ବା ଚାରିପୁରୁଷାର୍ଥ ସାଧନା ବୋଲି କୁହାଯାଏ। ଏହି ଚାରୋଟି ସାଧ ବିଷୟର ପ୍ରଥମଟି ହେଉଛି 'ଧର୍ମ' ସାଧନା। ଏହାର ଅର୍ଥ, ମଣିଷ ତା' ଜୀବନର ସ୍ରଷ୍ଟା ଭଗବାନ୍‌ଙ୍କୁ ନିଜ ଭିତରେ ଓ ବିଶ୍ୱ ଭିତରେ ଖୋଜିବ ଏବଂ ତାଙ୍କୁ ଉପଲବ୍ଧି କରିବ। ଭଗବାନ୍‌ଙ୍କୁ ଉପଲବ୍ଧି କରିବାକୁ ହେଲେ ମଣିଷକୁ କେତେକ ଦିବ୍ୟନୀତି ମାନି ବଞ୍ଚିବାକୁ ପଡ଼ିବ। ପ୍ରେମ, ସତ୍ୟ, ଦୟା, କ୍ଷମା, ସେବା ଓ ଈଶ୍ୱରଙ୍କ ନିକଟରେ ଆତ୍ମସମର୍ପଣ ହେଲା ମନୁଷ୍ୟର ଧର୍ମ ସାଧନାର ବିଷୟ। ମନୁଷ୍ୟ ଜୀବନରେ ଏହି ଈଶ୍ୱର-ଉପଲବ୍ଧି ଓ ସତ୍ୟଲାଭ ହିଁ ଅସଲ ଧର୍ମ ଏବଂ ଏହି ଧର୍ମଭାବକୁ ମୂଳକରି ତା'ର ଜୀବନ ବଞ୍ଚିବ। ଏହି ଧର୍ମଭାବ ବା ସାଧନ ଉପରେ ଭିତ୍ତିକରି ମନୁଷ୍ୟକୁ ତା'ର କାମନା ବାସନା ପୂରଣରେ ବ୍ରତୀ ହେବାକୁ ପଡ଼ିବ। ମଣିଷ ଏପରି କିଛି କାମନା କରିବ ନାହିଁ ଯାହା ଧର୍ମ ବିରୋଧୀ ବା ଈଶ୍ୱର ବିରୋଧୀ ହେବ, ତା'ହେଲେ ସେହି କାମନା ହୋଇଯିବ ପାପ ବାସନା।

ସେହିପରି ମନୁଷ୍ୟକୁ ଅର୍ଥ ଅର୍ଜ୍ଜନ କରିବାକୁ ପଡ଼ିବ ବଞ୍ଚିବା ପାଇଁ। କାରଣ ଅର୍ଥ ଉପାର୍ଜ୍ଜନ ନ କଲେ ଖାଇବ କ'ଣ ? ରହିବ କେଉଁଠି ? ଇତ୍ୟାଦି ଇତ୍ୟାଦି। ମାତ୍ର ଏହି ଅର୍ଥ ଉପାର୍ଜ୍ଜନର ମୂଳରେ ମଧ ଧର୍ମଭାବ ଓ ଈଶ୍ୱରଭାବ ରହିବା ଉଚିତ। ଧର୍ମ ଓ ନ୍ୟାୟ ବାଟରେ ଧନ ଅର୍ଜିବାକୁ ହେବ। ଆଳସ୍ୟପରାୟଣ ହୋଇ, ଉଦ୍ୟମ ନ କରି ଦରିଦ୍ର ହେବା ଉଚିତ ନୁହେଁ। ମାତ୍ର ଧର୍ମବିରୋଧୀ ଧନଅର୍ଜ୍ଜନ କଲେ ପାପଭାଗୀ ହେବାକୁ ହୁଏ।

ସବା ଶେଷରେ ରହିଲା 'ମୋକ୍ଷ'। ମୋକ୍ଷ ଅର୍ଥ ମୁକ୍ତି। ମଣିଷ ଏକ ପରିପୂର୍ଣ୍ଣ ଜୀବନ ବଞ୍ଚିଲା ପରେ ଜୀବନ କ୍ଷେତ୍ରରୁ ବିଦାୟ ନେବାକୁ ଚାହେଁ। ଆଉ ମଧ ଜୀବନ ପ୍ରତି ଓ ଜୀବନର ପ୍ରଲୋଭନୀୟ ବିଷୟଗୁଡ଼ିକ ପ୍ରତି ଆସକ୍ତି ରହିବା ଉଚିତ ନୁହଁ।

ପୂର୍ବେ ସତୁରିବର୍ଷ ପରେ ନରନାରୀ ଆଉ କୌଣସି ସାଂସାରିକ କାର୍ଯ୍ୟରେ ଲିପ୍ତ ରହୁ ନ ଥିଲେ ବା ଦାୟିତ୍ୱ ବି ନେଉ ନ ଥିଲେ। ଏହି ଶେଷ ଜୀବନରେ କର୍ମକୁ ବାନପ୍ରସ୍ଥ ସାଧନା ବା ସନ୍ନ୍ୟାସୀ ସାଧନା କୁହାଯାଏ।

ବାନପ୍ରସ୍ଥ ସାଧନା ଅର୍ଥ ବଣକୁ ଯାଇ ଭଗବାନ୍‌ଙ୍କୁ ଉପଲବ୍ଧି କରିବାକୁ ସାଧନା ବିଷୟକୁ ବୁଝାଏ ନାହିଁ। ଜଣେ ସଂସାର ପରିବାର ତ୍ୟାଗକରି କୌଣସି ମଠ ବା ଆଶ୍ରମରେ ଶେଷ ଜୀବନକୁ ମୁକ୍ତ ଭାବରେ କଟାଇପାରେ; ଅଥବା ଏଇ ସଂସାର ପରିବାର ସମାଜ ଭିତରେ ରହି ମଧ୍ୟ ଏକ ନିର୍ଲିପ୍ତ, ନିରାସକ୍ତ ଓ ସେବାମୂଳକ ଜୀବନ ବଞ୍ଚିପାରେ; ଏବଂ ପ୍ରତିଟି ମୁହୂର୍ତ୍ତ କେବଳ ଈଶ୍ୱରଙ୍କ ଭାବନାରେ କଟାଇପାରେ।

ପାଠକେ ! ଚାଣକ୍ୟ ପଣ୍ଡିତଙ୍କ ଶ୍ଲୋକଟିରୁ ଆମେ ଆମ ମାନୁଷୀଜୀବନର ଅସଲ ଉଦ୍ଦେଶ୍ୟ କ'ଣ ତାହା ନିଶ୍ଚୟ ବୁଝିପାରିଲେ।



## ୨୪. ବୃଦ୍ଧସ୍ୟ ତରୁଣୀ ବିଷମ୍

ପାଠକେ ! ଆମେ ଆମ କଥାବାର୍ତ୍ତାରେ 'ବିଷ' ଓ 'ଅମୃତ' ଏହି ଦୁଇଟି ଶବ୍ଦ ବହୁବେଳେ ବ୍ୟବହାର କରିଥାଉ। ମାତ୍ର ପ୍ରକୃତରେ ବିଷ କ'ଣ ଓ ଅମୃତ କ'ଣ ତାହା ଆମକୁ ଜଣା ନ ଥାଏ। ଜାଣିବା ମଧ୍ୟ ଅସମ୍ଭବ। ଆମେ କେବଳ ଏତିକି ଜାଣୁ ଯେ, ବିଷ ମୃତ୍ୟୁର କାରଣ ହୋଇଥାଏ ଏବଂ ଅମୃତ ଜୀବନର କାରଣ ହୋଇଥାଏ। କିନ୍ତୁ ଜ୍ଞାନୀ ଓ ସୁଜାଣ ବ୍ୟକ୍ତିମାନେ ଜାଣନ୍ତି ଯେ, ପ୍ରକୃତରେ ସମ୍ପୂର୍ଣ୍ଣ ବିଷ ବୋଲି କିଛି ନାହିଁ, କି ସମ୍ପୂର୍ଣ୍ଣ ଅମୃତ ବୋଲି ମଧ୍ୟ କିଛି ନାହିଁ।

କାରଣ କାଳ ଓ ସ୍ଥଳବିଶେଷରେ ଏବଂ ବ୍ୟବହାର ବିଶେଷରେ ବିଷ ମଧ୍ୟ ଅମୃତ ଭଳି କାର୍ଯ୍ୟ କରେ ଓ ଅମୃତ ମଧ୍ୟ ବିଷ ପାଲଟିଯାଏ। ନାଗସାପର ଦନ୍ତନିଃସୃତ ତରଳ ପଦାର୍ଥ ଉତ୍କଟ ବିଷ ବୋଲି ଆମେ ଜାଣୁ। କାରଣ ନାଗସାପ ଯାହାକୁ କାମୁଡ଼ିବ - ତା'ର ମରଣ ସୁନିଶ୍ଚିତ। ମାତ୍ର ସେହି ନାଗସାପର ବିଷକୁ ନେଇ କବିରାଜମାନେ ଏପରି ଔଷଧ ତିଆରି କରନ୍ତି, ଯାହାକି ଅମୃତତୁଲ୍ୟ ଅସାଧ୍ୟ ମରଣାନ୍ତକ ରୋଗରୁ ମଣିଷକୁ ରକ୍ଷା କରେ। ତେଣୁ ସତକୁ ସତ ବିଷ ବୋଲି ଓ ଅମୃତ ବୋଲି କିଛି ନାହିଁ। ଦୁଗ୍ଧପାନ କଲେ ସ୍ୱାସ୍ଥ୍ୟ ଭଲ ରହେ ଓ ମଣିଷ ବହୁଦିନ ବଞ୍ଚେ। ମାତ୍ର ସେହି ଦୁଗ୍ଧକୁ ମାତ୍ରାଧିକ ପାନକଲେ - ତାହା ନାନାଦି ରୋଗ ସୃଷ୍ଟି କରି ମଣିଷକୁ ମାରେ। ତେଣୁ କୋଉ କଥାକୁ ଆମେ ସମ୍ପୂର୍ଣ୍ଣ ବିଷ ବା ସମ୍ପୂର୍ଣ୍ଣ ଅମୃତ କହିପାରିବା ନାହିଁ।

ସେଥିପାଇଁ କବିମାନେ ଏଇ ବିଷ ଓ ଅମୃତକୁ ଭାବାର୍ଥରେ ବ୍ୟବହାର କରିଥାନ୍ତି। ତଦନୁଯାୟୀ ଶବ୍ଦ ସବୁ ମଧ୍ୟ ତିଆରି ହୋଇଛି। ବିଷ ଦୃଷ୍ଟି ଓ ଅମୃତ ଦୃଷ୍ଟି, ବିଷାକ୍ତ ବଚନ ଓ ଅମୃତ ବଚନ, ବିଷ ହସ୍ତା ଓ ଅମୃତ ହସ୍ତା, ବିଷାକ୍ତ ଭୋଜନ ଓ ଅମୃତ ଭୋଜନ।

ଏଭଳି ଶବ୍ଦ ପ୍ରୟୋଗକରି ଆମ୍ଭେମାନେ ସାଧାରଣତଃ ଭଲ ଓ ମନ୍ଦ କ'ଣ ତାହା ବୁଝାଇଥାଉ। କେତେକ ପଣ୍ଡିତ କହନ୍ତି, ସ୍ୱର୍ଗରେ ରହିଛି କେବଳ ଅମୃତ। ସେଠାରେ ବିଷ ନାହିଁ। ପାତାଳରେ ରହିଛି କେବଳ ବିଷ। ସେଠାରେ ଅମୃତ ନାହିଁ। ମାତ୍ର ଆମର ଏଇ ମର୍ତ୍ତ୍ୟଲୋକରେ ବିଷ ଓ ଅମୃତ ଉଭୟ ରହିଛି ଏବଂ ତାହା ସ୍ଥଳ, କାଳ ଓ ବ୍ୟବହାର ବିଶେଷରେ ପ୍ରକାଶ ପାଇଥାଏ।

ଚାଣକ୍ୟ ପଣ୍ଡିତେ ମଧ୍ୟ ସେହିପରି କେତୋଟି ଉଦାହରଣ ଦେଇ ଆମକୁ ବିଷ କ'ଣ ଓ କୋଉଠି ଅଛି, ତାହା ବୁଝାଇଛନ୍ତି। ତାଙ୍କର ସେହି ଶ୍ଳୋକଟି ହେଲା,

**ଅନଭ୍ୟାସେ ବିଷଂ ଶାସ୍ତ୍ରମ୍‌ଅଜୀର୍ଣ୍ଣେ ଭୋଜନଂ ବିଷମ୍।**
**ଦରିଦ୍ରସ୍ୟ ବିଷଂ ଗୋଷ୍ଠୀ ବୃଦ୍ଧସ୍ୟ ତରୁଣୀ ବିଷମ୍॥ (୪/୧୫)**

ଅର୍ଥାତ୍, ଯଦି ଜଣେ ଶାସ୍ତ୍ରପଢ଼ିବାକୁ ଅଭ୍ୟାସ ନ କରେ, ଯଦି ସେ ଭଲ ଗ୍ରନ୍ଥଟିଏ ପରିଶ୍ରମ କରି ଶ୍ରଦ୍ଧାରେ ବାରମ୍ବାର ନ ପଢ଼େ - ତେବେ ସେ ଶାସ୍ତ୍ରରେ ଯେତେ ଜ୍ଞାନ ଥାଉ ନା କାହିଁକି, ସେଥିରେ ଯେତେ ଅମୃତମୟ କାବ୍ୟିକ ବାକ୍ୟ ଥାଉ ନା କାହିଁକି - ସେ ଲୋକ ପାଇଁ ସେ ଶାସ୍ତ୍ରଟି ବିଷତୁଲ୍ୟ ବୋଧହୁଏ।

ଯେଉଁ ଲୋକକୁ ଅଜୀର୍ଣ୍ଣ ରୋଗ ହୋଇଛି - ତା'ର ଯକୃତ ଖରାପ ହୋଇଯାଇଛି। ସେ ଯଦି ସେ ଅବସ୍ଥାରେ ପୁନଶ୍ଚ ଭୋଜନ କରେ - ତେବେ ତା'ର ଅଜୀର୍ଣ୍ଣ ବଢ଼ିଯାଏ ଏବଂ ତାକୁ ଯେତେ ସୁସ୍ୱାଦୁ ଭୋଜନ ବି ବିଷତୁଲ୍ୟ ମନେହୁଏ। କାମଳ ରୋଗରେ ରୋଗୀର ଖାଦ୍ୟରୁଚି ଚାଲିଯାଏ; ଏବଂ ତାକୁ ସବୁ ଖାଦ୍ୟ ବିଷ ଭଳି ମନେହୁଏ।

ଦରିଦ୍ର ଲୋକପାଇଁ ମଧ୍ୟ ସଭାସମିତି ଓ ଗୋଷ୍ଠୀ ବିଷତୁଲ୍ୟ। କାରଣ ସେଠାରେ ଧନୀ ଓ ବିଳାସୀ ଲୋକମାନେ ଥା'ନ୍ତି - ଦରିଦ୍ର ଲୋକଟି ସେ ଗୋଷ୍ଠୀରେ ମିଶିପାରେ ନାହିଁ। ଶେଷକଥାଟି ହେଲା - ବୃଦ୍ଧଲୋକ ପକ୍ଷରେ ତରୁଣୀ ସ୍ତ୍ରୀଲୋକଟି ମଧ୍ୟ ବିଷତୁଲ୍ୟ। କାରଣ ବୃଦ୍ଧ ଲୋକଟି ସେଇ ତରୁଣୀକୁ କୌଣସି ସୁଖ ଦେଇପାରେ ନାହିଁ। ସେଇ ବୃଦ୍ଧ ମଧ୍ୟ ତରୁଣୀଠାରୁ କୌଣସି ସୁଖ ପାଇପାରେ ନାହିଁ।



## ୨୫. ଯଥା ଚନ୍ଦ୍ରେଣ ଶର୍ବରୀ

ପାଠକେ ! ଚାଣକ୍ୟ ପଣ୍ଡିତେ ପୂର୍ବ ସୂତ୍ର ଧରି ବର୍ତ୍ତମାନ ସେଇ ଗୋଟିକର ପ୍ରାଧାନ୍ୟକୁ ପ୍ରମାଣିତ କରିବାପାଇଁ ଏବଂ ବହୁ ମୂର୍ଖ ଦୁଷ୍ଟ ଦୁଶ୍ଚରିତ୍ର ସନ୍ତାନସନ୍ତତି ଅପେକ୍ଷା ଏକମାତ୍ର ସୁଯୋଗ୍ୟ ସନ୍ତାନର ଗୁରୁତ୍ୱ ସମ୍ବନ୍ଧେ ଆଉ ଏକ ଶ୍ଳୋକ ଗାଇଛନ୍ତି ।

**ଏକେନାଽପି ସୁପୁତ୍ରେଣ ବିଦ୍ୟାଯୁକ୍ତେନ ସାଧୁନା ।**
**ଆହ୍ଲାଦିତଂ କୁଳଂ ସର୍ବଂ ଯଥା ଚନ୍ଦ୍ରେଣ ଶର୍ବରୀ ।। (୩/୧୬)**

ଏ ଶ୍ଳୋକଟିର ଅର୍ଥ ହେଲା, "ବରଂ ଗୋଟିଏ ସୁପୁତ୍ର ଲାଭ କରିବା ବହୁଗୁଣରେ ଶ୍ରେୟସ୍କର । ଅବଶ୍ୟ ସେହି ସୁପୁତ୍ର ବା ସୁପୁତ୍ରୀଟି ଯଦି ବିଭିନ୍ନ ବିଦ୍ୟାରେ ନିପୁଣ ହୋଇଥାଏ - ଜ୍ଞାନବନ୍ତ ବା ଜ୍ଞାନବତୀ ହୋଇଥାଏ ଏବଂ ତା'ର ଚରିତ୍ର ଯଦି ଉତ୍ତମ ହୋଇଥାଏ - ସେ ଯଦି ସାଧୁ ପ୍ରକୃତିର ହୋଇଥାଏ - ତେବେ ସେହି ଏକମାତ୍ର ଗୁଣୀପୁତ୍ର ବା ପୁତ୍ରୀଦ୍ୱାରା ସେ ବଂଶର ସମସ୍ତେ ଆନନ୍ଦ ଆହ୍ଲାଦ ଲାଭକରନ୍ତି ।

ପାଠକେ ! ଚାଣକ୍ୟ ଏଠାରେ ବିଶ୍ୱ ପ୍ରକୃତିର ଏକ ଉଦାହରଣ ଦେଇ ନିଜ ବାକ୍ୟକୁ ସମର୍ଥିତ କରୁଛନ୍ତି । ସେ କହୁଛନ୍ତି, ଯେପରି ରାତ୍ରିର ସୂର୍ଯ୍ୟହୀନ ଆକାଶରେ ଚନ୍ଦ୍ର ଉଦିତ ହୋଇ ଅନ୍ଧକାରମୟ ପୃଥିବୀକୁ ତା'ର ମୃଦୁ ମଧୁର ଶୀତଳ ଆଲୋକରେ ଆଲୋକିତ ଓ ଆହ୍ଲାଦିତ କରିଥାଏ - ସେହିପରି ବିଦ୍ୟାବନ୍ତ ବା ବିଦ୍ୟାବତୀ ଏକମାତ୍ର ପୁତ୍ର ଓ କନ୍ୟା ମଧ ସେମାନଙ୍କର ସାଧୁ ସ୍ୱଭାବ ଓ କର୍ମ ଦ୍ୱାରା ସମସ୍ତ ବଂଶ ଓ ପରିବାରକୁ ଅସମୟରେ ଆଲୋକତ ଦେଖାଇଥାନ୍ତି; ଏବଂ ସମସ୍ତଙ୍କୁ ଆନନ୍ଦ ଆହ୍ଲାଦ ଦେଇଥାନ୍ତି । ସେହିପରି ଅନ୍ୟ ପକ୍ଷରେ ମଧ ଚାଣକ୍ୟ ପଣ୍ଡିତେ କହୁଛନ୍ତି -

**କିଂ ଜାତୈର୍ବହୁଭିଃ ପୁତ୍ରୈଃ ଶୋକସନ୍ତାପକାରକୈଃ ।**
**ବରଂମେକଃ କୁଳାଽଽଲମ୍ବୀ ଯତ୍ର ବିଶ୍ରାମ୍ୟତେ କୁଳମ୍ ।। (୩/୧୭)**

ଅର୍ଥାତ୍, ଶୋକସନ୍ତାପର କାରଣ ହେଉଥିବା ବହୁ ପୁତ୍ରପୁତ୍ରୀଙ୍କ ଜନ୍ମ ଦ୍ୱାରା କ'ଣ ଲାଭ ? ବରଂ କୁଳକୁ ଅବଲମ୍ବନ ସ୍ୱରୂପ ବା କୁଳକୁ ରକ୍ଷାକରୁଥିବା ବା କୁଳର ଗୌରବ ବଢ଼ାଉଥିବା ଗୋଟିଏ ମାତ୍ର ପୁତ୍ର ବା କନ୍ୟା ହିଁ ବଂଶ ଓ ପରିବାର ପକ୍ଷରେ ଶୁଭଦାୟକ ବା କଲ୍ୟାଣକର ହୋଇଥାଏ । ଧୃତରାଷ୍ଟ୍ରଙ୍କର ଏକଶତ ପୁତ୍ର ଥିଲେ । ସେମାନେ ମଧ ସମସ୍ତେ ବୀରପୁରୁଷ ଥିଲେ । କିନ୍ତୁ ସେମାନେ କ'ଣ କଲେ ? ନିଜର କୁସ୍ୱଭାବ ଯୋଗୁଁ ଏବଂ ଧର୍ମଭାବର ଅଭାବ ହେତୁ ସେମାନେ ଧର୍ମାଚାରୀ ପାଣ୍ଡବମାନଙ୍କ ସହିତ କଳହ ଓ ଯୁଦ୍ଧ କଲେ । ଫଳରେ କୌରବକୁଳ ସମୂଳେ ନଷ୍ଟ ହୋଇଗଲା

ଏବଂ ଅକାରଣ ଗୃହଯୁଦ୍ଧରେ ବହୁ ବୀରପୁରୁଷ ମୃତ୍ୟୁବରଣ କଲେ ଓ ସହସ୍ର ସହସ୍ର ପରିବାରରେ ଦୁଃଖ ସନ୍ତାପର ଅଗ୍ନି ଜଳିଉଠିଲା।

ଏକମାତ୍ର ସନ୍ତାନ - ସେ ପୁତ୍ର ହେଉ ବା କନ୍ୟା ହେଉ - ସେ ଯଦି ସତ୍ୟ, ଧର୍ମ, ନ୍ୟାୟ, ପ୍ରେମ, ତ୍ୟାଗ, ଉଦ୍ୟମ, ସଦିଚ୍ଛାପରାୟଣ ହୋଇଥାଏ, ତେବେ ସେ କୁଳକୁ କେବଳ ରକ୍ଷାକରେ ନାହିଁ, କୁଳର ସମ୍ମାନ ମଧ ବଢ଼ାଏ।

କେବଳ ପରିବାର ବା କୁଳ କଥା କାହିଁକି ପଡ଼ିଛି? ଗୋଟିଏ ଦେଶରେ ଯଦି ଅଯଥାରେ ଲୋକସଂଖ୍ୟା ବଢ଼ି ବଢ଼ି ଚାଲେ; ଏବଂ ସେହି ଲୋକମାନେ ଯଦି ଉଦ୍ୟମହୀନ ଆଳସ୍ୟପରାୟଣ, ଅକର୍ମା, ବ୍ୟଭିଚାରୀ, ଚୋର, ଡକାୟତ ଓ ଠକ ହୋଇଥାନ୍ତି; ଏବଂ ସେମାନେ ପୁଣି ଯଦି ନିତାନ୍ତ ଅଶିକ୍ଷିତ, ଅମାର୍ଜିତ, ଅଜ୍ଞାନ ଓ ଅଧର୍ମାଚାରୀ ହୋଇଥାନ୍ତି ତେବେ ସେ ଦେଶର ଭବିଷ୍ୟତ୍ କ'ଣ ହେବ? ପୁରାଣ ଓ ଇତିହାସରେ ଏ ସବୁର ବହୁ ଉଦାହରଣ ରହିଛି। ପୃଥିବୀର କେତେ କେତେ ସଭ୍ୟ, ସମୃଦ୍ଧ ଓ ସଂସ୍କୃତିବନ୍ତ ଜାତିଙ୍କର ଅବକ୍ଷୟ ଘଟିଛି କ'ଣ ପାଇଁ? ବଂଶ ହେଉ, ପରିବାର ହେଉ ବା ଦେଶ ହେଉ - ଯଦି ଅମଣିଷଙ୍କ ସଂଖ୍ୟା ବଢ଼ି ବଢ଼ି ଚାଲେ - ତେବେ ସେ ବଂଶ, ସେ ପରିବାର ଓ ସେ ଦେଶ ଆଉ ରହିବ ନାହିଁ। ଅତୀତରେ ମଧ ରହି ନାହିଁ।

ତେଣୁ ଚାଣକ୍ୟ ପଣ୍ଡିତଙ୍କ ମତରେ ବରଂ ଜନସଂଖ୍ୟା କମ୍ ହେଉ, କିନ୍ତୁ ସେମାନେ ସଦାଚାରୀ ହୁଅନ୍ତୁ। ଦୁଷ୍ଟ ଲୋକଙ୍କ ସଂଖ୍ୟା ବୃଦ୍ଧି ହେଲେ ବଂଶ ନାଶ, ଜାତି ନାଶ ଓ ଦେଶ ନାଶ ହୁଏ।



## ୨୬. 'ଲୋକାଃ କ୍ଲିଶ୍ୟନ୍ତି ଚାନ୍ୟଥା'

ସମାଜରେ ଏପରି କେତେକ ବ୍ୟକ୍ତି ଅଛନ୍ତି ଏବଂ ସେମାନେ ସବୁବେଳେ ମଧ ରହି ଆସିଛନ୍ତି - ଯେଉଁମାନେ ସବୁ ବିଷୟରେ ଅନର୍ଥ ସୃଷ୍ଟି କରନ୍ତି - ଠିକ୍ କଥାକୁ ଭୁଲ୍ ବୋଲି ପ୍ରମାଣିତ କରୁଥାନ୍ତି। ପ୍ରଶଂସନୀୟ ବିଷୟକୁ ନିନ୍ଦା କରୁଥାନ୍ତି। ଚାଣକ୍ୟ ପଣ୍ଡିତେ କହୁଛନ୍ତି, "ଏଇ ଅନର୍ଥ ସୃଷ୍ଟିକାରୀ ମନୁଷ୍ୟମାନେ ଆଉ କାହାର କ୍ଷତି କରିପାରନ୍ତି ନାହିଁ। ନିଜର ହିଁ କ୍ଷତି କରିଥାନ୍ତି।" ଶ୍ଳୋକଟି ହେଲା -

**ଅନ୍ୟଥା ବେଦ ପାଣ୍ଡିତ୍ୟଂ ଶାସ୍ତ୍ରମାଚାରମନ୍ୟଥା।**
**ଅନ୍ୟଥା କୁବଚଃ ଶାନ୍ତଂ ଲୋକାଃ କ୍ଲିଶ୍ୟନ୍ତି ଚାନ୍ୟଥା ॥ (୫/୧୦)**

ଅର୍ଥାତ୍, ଯେଉଁ ଦୁଷ୍ଟଲୋକମାନେ 'ବେଦ'ର ଯଥାର୍ଥ ଅର୍ଥକୁ ନ ବୁଝି ବା ବେଦସ୍ଥ ଶ୍ଳୋକଗୁଡ଼ିକର ଯଥାର୍ଥ ମର୍ମ ନ ବୁଝି, ସେଗୁଡ଼ିକର କଦର୍ଥ କରି ପ୍ରଚାର କରନ୍ତି - ସେମାନେ ବେଦର ମହିମାକୁ କଦାପି କ୍ଷୁଣ୍ଣ କରିପାରନ୍ତି ନାହିଁ। ବରଂ ସେଇମାନେ ହିଁ ମନେ ମନେ କଷ୍ଟ ପାଉଥାନ୍ତି ଓ ଅନ୍ୟମାନଙ୍କ ଦ୍ୱାରା ନିନ୍ଦିତ ହେଉଥାନ୍ତି।

ସତକଥା 'ବେଦ' ପରମ ରହସ୍ୟମୟ ଆଧ୍ୟାତ୍ମିକ ଗ୍ରନ୍ଥ। ବେଦ ଶ୍ଳୋକଗୁଡ଼ିକୁ କେହି ସାଧାରଣ ମଣିଷ ରଚନା କରି ନାହାନ୍ତି। ଏହାକୁ 'ଅପୌରୁଷେୟ' ବୋଲି କୁହାଯାଏ। ବଶିଷ୍ଠ, ବିଶ୍ୱାମିତ୍ର, ଦେବକ, ବାମଦେବ, ପୌଲସ୍ତ୍ୟ ପ୍ରମୁଖ ମହର୍ଷିମାନଙ୍କ ଧ୍ୟାନସ୍ଥ ଅବସ୍ଥାରେ ଏହି ଶ୍ଳୋକଗୁଡ଼ିକ ସ୍ୱତଃ ସେମାନଙ୍କ ମୁଖରୁ ଉଚ୍ଚାରିତ ହୋଇଛି। 'ବେଦ' ହିନ୍ଦୁମାନଙ୍କର ମୂଳ ଓ ପ୍ରଧାନ ଶାସ୍ତ୍ର। ପାଶ୍ଚାତ୍ୟବାସୀ ମହାପଣ୍ଡିତ ମାକ୍ସମୁଲାରଙ୍କଠାରୁ ଆରମ୍ଭ କରି ସ୍ୱାମୀ ଦୟାନନ୍ଦ, ସ୍ୱାମୀ ବିବେକାନନ୍ଦ ଓ ମହାଯୋଗୀ ଶ୍ରୀଅରବିନ୍ଦ ପ୍ରମୁଖ ମହା ମହା ଯୋଗୀ ଓ ଜ୍ଞାନୀମାନେ ସେଗୁଡ଼ିକର ସୁବ୍ୟାଖ୍ୟା କରିଛନ୍ତି। ସେସବୁ ପ୍ରତି ଧ୍ୟାନ ନ ଦେଇ ଯେଉଁ ଅନ୍ଧ ବୁଦ୍ଧି ଅନର୍ଥ ସୃଷ୍ଟିକାରୀ ମୂର୍ଖ ସେ ଶ୍ଳୋକଗୁଡ଼ିକର ନିନ୍ଦନୀୟ ଭୁଲ ବ୍ୟାଖ୍ୟା କରେ - ତଦ୍ୱାରା ବେଦର ମହତ୍ତ୍ୱ ନଷ୍ଟ ହୁଏ ନାହିଁ। ବରଂ ସେହି ବାଚାଳ ମୂର୍ଖ ଲୋକଟି ହିଁ ମନେ ମନେ ସନ୍ତପ୍ତ ହେଉଥାଏ। ଆଉ କେତେକ ଦୁଷ୍ଟବୁଦ୍ଧି ଲୋକ ଅଛନ୍ତି, ଯେଉଁମାନେ ଯେକୌଣସି ଶାସ୍ତ୍ର ବା ସଦ୍‌ଗ୍ରନ୍ଥର ଭୁଲ ବ୍ୟାଖ୍ୟା କରି ପ୍ରଚାର କରନ୍ତି। ଏପରିକି ପୂର୍ବାପର ସଙ୍ଗତି ନିର୍ଦ୍ଦେଶ ନ କରି ଶାସ୍ତ୍ରଲିଖିତ କୌଣସି ଏକ ବିଷୟକୁ ନେଇ ତା'ର ଠିକ୍ ବିପରୀତ ଅର୍ଥ ପ୍ରତିପାଦନ କରିଥା'ନ୍ତି। ଚାଣକ୍ୟ କହୁଛନ୍ତି, "ଏପରି ନିନ୍ଦାକାରୀ ଦୁଷ୍ଟବୁଦ୍ଧି ମଣିଷମାନେ ଶାସ୍ତ୍ରର ଗୌରବ ନଷ୍ଟ କରିପାରନ୍ତି ନାହିଁ। ସେମାନେ କେବଳ ନିଜର ଗୌରବ ନଷ୍ଟ କରନ୍ତି ଓ ସେଥିଯୋଗୁଁ କ୍ଳେଶ ଭୋଗ କରନ୍ତି।"

ଏକଥା ସତ ଯେ, ଆଜି ବି ଏପରି ସବୁ ଦୁଷ୍ଟବୁଦ୍ଧି ଲୋକ ଅଛନ୍ତି, ଯେଉଁମାନେ ରାମାୟଣ, ମହାଭାରତ, ଭାଗବତ, କୋରାନ, ବାଇବେଲ ସଦୃଶ ମହାନ୍ ଗ୍ରନ୍ଥମାନଙ୍କରେ ଲିଖିତ ବିଷୟଗୁଡ଼ିକର କଦର୍ଥ କରିଥାନ୍ତି। ସେଥିରେ ବର୍ଣ୍ଣିତ ଚରିତ୍ର ଓ ବିଷୟଗୁଡ଼ିକୁ ଅତ୍ୟନ୍ତ ହୀନ ଦୃଷ୍ଟିରେ ଦେଖିଥାନ୍ତି ଓ ସେଗୁଡ଼ିକର ହୀନତା ପ୍ରତିପାଦନ କରି ବାହାଦୁରି ନେବାକୁ ଚାହାନ୍ତି। କିନ୍ତୁ ପ୍ରକୃତରେ ସେମାନେ ସେମାନଙ୍କର ଅନର୍ଥକ ବ୍ୟାଖ୍ୟା ଦ୍ୱାରା ବେଶି ଲୋକଙ୍କୁ ପ୍ରଭାବିତ କରିପାରନ୍ତି ନାହିଁ। ବରଂ ସେମାନେ ଏହା କରିବା ପରେ ନିଜେ ନିଜେ ମନସ୍ତାପ ଭୋଗୁଥାନ୍ତି ଓ ସମାଜରେ ନିନ୍ଦିତ ହୋଇଥାନ୍ତି।

ଶେଷକଥାଟି ହେଲା, ସମାଜରେ ଏପରି ଦୁଷ୍ଟ ନିନ୍ଦାକାରୀ ବ୍ୟକ୍ତି ଅଛନ୍ତି, ଯେଉଁମାନେ ଶାନ୍ତଶିଷ୍ଟ ଭଲ ମଣିମାନଙ୍କର ବଦ୍‌ନାମ କରିବା ପାଇଁ ନିଜ ମନରୁ ଗଢ଼ି ସେମାନଙ୍କ ବିରୋଧରେ ନାନାଦି ହୀନକଥା ପ୍ରଚାର କରିଥାନ୍ତି। ସେମାନେ କାହାର ଭଲଗୁଣ ଦେଖିପାରନ୍ତି ନାହିଁ। ଦେଖିଲେ ବି ସହ୍ୟ କରିପାରନ୍ତି ନାହିଁ। ସେମାନେ ନିଜେ ହୀନପ୍ରକୃତିର ମଣିଷ। କିନ୍ତୁ ନିଜର ହୀନତାକୁ ସେମାନେ ଦେଖିପାରନ୍ତି ନାହିଁ। ଅନ୍ୟପକ୍ଷରେ ମାଛି ଭଳି ସେମାନେ ଦୂଷିତ ପଦାର୍ଥ ଖୋଜୁଥାନ୍ତି। ଭଲମଣିଷଙ୍କ ଜୀବନରୁ ଖରାପ କିଛି ନ ପାଇଲେ ନିଜ ମନରୁ ଗଢ଼ି ସେମାନଙ୍କ ବିରୋଧରେ ପ୍ରଚାର କରୁଥାନ୍ତି।

ମାତ୍ର ଚାଣକ୍ୟ ପଣ୍ଡିତେ କହୁଛନ୍ତି - "ଏହି ହୀନବ୍ୟକ୍ତିମାନଙ୍କର ପ୍ରଚାର ଦ୍ୱାରା ଭଲ ମଣିଷମାନଙ୍କର କିଛି କ୍ଷତି ହୁଏ ନାହିଁ। ସେମାନଙ୍କ ଗୌରବ ନଷ୍ଟ ହୁଏ ନାହିଁ। ବରଂ ସେହି ଦୁଷ୍ଟ ବ୍ୟକ୍ତିମାନେ ହିଁ କ୍ଲେଶ ଭୋଗ କରିଥାନ୍ତି।"



## ୨୭. ରକ୍ଷଣାବେକ୍ଷଣର ସୂତ୍ର

**ବିତେନ ରକ୍ଷ୍ୟତେ ଧର୍ମୋ ବିଦ୍ୟା ଯୋଗେନ ରକ୍ଷତେ।**
**ମୃଦୁନା ରକ୍ଷ୍ୟତେ ଭୂପଃ ସତ୍‌ସ୍ତ୍ରୀୟା ରକ୍ଷ୍ୟତେ ଗୃହମ୍‌॥ (୫/୯)**

ମହାମତି ଚାଣକ୍ୟଙ୍କର ଉପରୋକ୍ତ ଶ୍ଳୋକଟିର ଅର୍ଥ ହେଲା - ଧନ ଦ୍ୱାରା ଧର୍ମକୁ ରକ୍ଷା କରିବ। ଯୋଗ ଦ୍ୱାରା ବିଦ୍ୟାକୁ ରକ୍ଷା କରିବ। ମୃଦୁତା ଦ୍ୱାରା ଅର୍ଥାତ୍‌ ମୃଦୁ, କୋମଳ, କ୍ଷମାଶୀଳ, ଆସ୍ଥାବାଚକ ବ୍ୟବହାର ଦ୍ୱାରା ରାଜପଣ ରକ୍ଷା କରିବ। ଶେଷରେ ସତ୍‌ଚରିତ୍ରା, ସୁଶୀଳା ନାରୀମାନଙ୍କ ଦ୍ୱାରା ଗୃହକୁ ରକ୍ଷା କରିବ।

ଆମ ଧର୍ମଦର୍ଶନରେ ଚାରୋଟି ପୁରୁଷାର୍ଥ ରହିଛି - ମାନେ ବଞ୍ଚିବା ପାଇଁ ଚାରୋଟି ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି। ସେଗୁଡ଼ିକ ହେଲେ, ଧର୍ମ-ଅର୍ଥ-କାମ ଓ ମୋକ୍ଷ। ଏହାକୁ ଜୀବନର ଚଉବର୍ଗ ମଧ୍ୟ କୁହାଯାଏ। ଏହି ଚାରୋଟି ଲକ୍ଷ୍ୟକୁ ସାଧନ କରି ସିଦ୍ଧି ଅର୍ଜନ କଲେ ମଣିଷ ଜୀବନ ସାର୍ଥକ ହୁଏ। ପ୍ରଥମଟି ହେଲା ଧର୍ମ। ମଣିଷ ଜୀବନରେ ଧର୍ମ ଅର୍ଜନ ହିଁ ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ। ମନୁଷ୍ୟପାଇଁ ଧର୍ମର ଅର୍ଥ ହେଲା, ଏକ ଉଚ୍ଚତର ଜୀବନ ବଞ୍ଚିବା - ଏକ ଉଚ୍ଚତର ଆଦର୍ଶକୁ ଆଗରେ ରଖି ବଞ୍ଚିବା। ଏ ଜଗତର ସ୍ରଷ୍ଟା ଭଗବାନ୍‌ଙ୍କୁ ନିଜ ଭିତରେ ଅନୁଭବ କରିବା ଓ ସମଗ୍ର ବିଶ୍ୱରେ ଅନୁଭବ କରିବା। ସବୁ ପ୍ରାଣୀଙ୍କ ଭିତରେ ଭଗବାନ୍‌କୁ ଉପଲବ୍ଧି କରିବା। ସତ୍ୟ,

ଦୟା, ଅହିଂସା, କ୍ଷମା, ଦିବ୍ୟପ୍ରେମ ଓ ବିଶ୍ୱପ୍ରେମରେ ଉଦ୍‌ବୁଦ୍ଧ ହୋଇ ଭଗବାନଙ୍କ ନିକଟରେ ନିଜର ଜୀବନକୁ ସମର୍ପଣ କରିବା ହେଲା ମଣିଷର ଯଥାର୍ଥ ଧର୍ମ।

କିନ୍ତୁ ଧନ ଅର୍ଜନ ନ କଲେ ଜଣେ ସଂସାରରେ ବଞ୍ଚିପାରିବ ନାହିଁ। ତେବେ ଆମେ ଧନ ଅର୍ଜନ କରିବାର ଉଦ୍ଦେଶ୍ୟ କେବଳ ସୁଖ ଓ ଭୋଗବିଳାସ ଭିତରେ ସୀମିତ ରହିବା ଉଚିତ ନୁହେଁ। ଆମର ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ ଧର୍ମକୁ ରକ୍ଷା କରିବା ପାଇଁ ଆମେ ଧନକୁ ନିୟୋଜିତ କରିବା ଉଚିତ। ତା' ଅର୍ଥ ସତ୍‌କର୍ମରେ ଓ ସତ୍ ଉଦ୍ଦେଶ୍ୟ ସାଧନ ଦିଗରେ ଆମର ଅର୍ଜିତ ଧନ ବ୍ୟୟହେବା ଉଚିତ।

ଆମର ଦ୍ୱିତୀୟ କର୍ତ୍ତବ୍ୟଟି ହେଲ ଆମେ ଯେଉଁ ଜ୍ଞାନ ବା ବିଦ୍ୟା ଅର୍ଜନ କରିଥାଉ, ତାକୁ ଆମ ଭିତରେ ରକ୍ଷା କରିବାକୁ ହେଲେ ବା ସେହି ଜ୍ଞାନ ଓ ବିଦ୍ୟାକୁ ଜୀବନର ବାସ୍ତବ କ୍ଷେତ୍ରରେ ନିୟୋଜିତ କରିବାକୁ ହେଲେ ଆମକୁ ଯୋଗଯୁକ୍ତ ହେବାକୁ ହେବ। ଏଠାରେ ଚାଣକ୍ୟ ପଣ୍ଡିତେ ଯୋଗ ଶବ୍ଦକୁ ସଂପୃକ୍ତ ହୋଇ ଜ୍ଞାନକୁ କର୍ମରେ ରୂପାୟିତ କରିବା ଅର୍ଥରେ ବ୍ୟବହାର କରିଛନ୍ତି। କୃଷିବିଜ୍ଞାନରେ କେବଳ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ ହେବ ନାହିଁ। ସେହି ବିଦ୍ୟାକୁ କୃଷିକ୍ଷେତ୍ରରେ ପ୍ରୟୋଗ କରି ଫଳବତୀ କରିବାକୁ ହେବ। ସାହିତ୍ୟ, ଦର୍ଶନ, ଧର୍ମ, ବିଜ୍ଞାନ ସର୍ବବିଧ ଜ୍ଞାନ ବା ବିଦ୍ୟାକୁ ପ୍ରୟୋଗାତ୍ମକ ନ କରିପାରିଲେ ସେ ଜ୍ଞାନ ବା ବିଦ୍ୟା ମୂଲ୍ୟହୀନ ହୋଇଯାଏ।

ଆଉ ଗୋଟିଏ କଥା ହେଲା - ଭୂପ ଅର୍ଥାତ୍ ରାଜା ତାଙ୍କର ଆଚରଣ ଓ ବ୍ୟବହାରରେ ମୃଦୁତା ପ୍ରଦର୍ଶନ କରିପାରିଲେ ତାଙ୍କର ରାଜପଣ ସବୁଦିନେ ଅତୁଟ ରହିଥାଏ। ଏହାର ଅର୍ଥ ହେଲା ରାଜତନ୍ତ୍ରର ରାଜା ହୁଅନ୍ତୁ ବା ଗଣତନ୍ତ୍ରରେ ମନ୍ତ୍ରୀ ବା ପ୍ରଶାସକ ହୁଅନ୍ତୁ, ସେ ଯେପରି କର୍କଶ ସ୍ୱଭାବ ଓ ନୃଶଂସ ଆଚରଣ ନ ଦେଖାନ୍ତି। ସତକଥା - ଦଣ୍ଡିବା ଶକ୍ତି ଯା'ର ଥାଇ - ସେ ସିନା କ୍ଷମା ଆଚରଇ। ତା'ମାନେ ରାଜା, ମନ୍ତ୍ରୀ ଓ ଶାସକ ପ୍ରଶାସକମାନେ ରାଜଦଣ୍ଡର ଅଧିକାରୀ, ସେମାନଙ୍କର ଦଣ୍ଡିବା କ୍ଷମତା ଅଛି। କିନ୍ତୁ ସେ ଯଦି ସେହି କ୍ଷମତାକୁ ନିଷ୍ଠୁର ଓ ସ୍ୱେଚ୍ଛାଚାରୀ ଭାବେ ପ୍ରୟୋଗ କରନ୍ତି ତେବେ ତାଙ୍କର ରାଜପଣ ଓ ଶାସକପଣ ଅବିଳମ୍ବେ ନଷ୍ଟ ହୋଇଯାଏ।

ଶେଷ କଥାଟି ହେଲା - ସୁଚରିତ୍ରା, ସୁଶୀଳା, ସହୃଦୟା, କର୍ମନିପୁଣା, ସତର୍କା ନାରୀ ବା ଗୃହିଣୀମାନଙ୍କ ହାତରେ ଗୃହ ସୁରକ୍ଷିତ ଥାଏ। ସତ କଥା। କଥାରେ ଅଛି ଗୃହିଣୀ ଗୃହମୁଚ୍ୟତେ। ଅର୍ଥାତ୍ ଯଥାର୍ଥ ଗୃହିଣୀଙ୍କୁ ହିଁ ଘର ବୋଲି କହିବାକୁ ହେବ। ଏପରି ଗୃହିଣୀଙ୍କୁ ସଙ୍ଗରେ ଧରି ଅରଣ୍ୟରେ ବାସ କଲେ ବି ତାହା ଏକ ସ୍ୱର୍ଗୀୟ ନିକେତନରୂପେ ମନେହେବ। ସୁଶୀଳା ନାରୀମାନେ ହିଁ ଗୃହର ଅଳଙ୍କାରସଦୃଶ।

ଗୃହର ସୁଖ, ଶାନ୍ତି, ଶୃଙ୍ଖଳା, ସଙ୍ଗତି, ଆନନ୍ଦ ଓ ସମୃଦ୍ଧି ପୁରୁଷମାନଙ୍କ ଅପେକ୍ଷା ସୁଶୀଳା ନାରୀମାନଙ୍କ ଉପରେ ହିଁ ଅଧିକ ନିର୍ଭର କରେ। କିନ୍ତୁ ଏ କଥା ମଧ ସତ ଯେ, ସଦ୍ ଓ ସୁଶୀଳ ପୁରୁଷମାନଙ୍କ ସହଯୋଗ ନ ଥିଲେ ଗୃହର ସୁଖସମୃଦ୍ଧି ନଷ୍ଟ ହୋଇଥାଏ।



## ୨୮. ଏକୁଟିଆ ମଣିଷ ଓ ତା'ର ଭାଗ୍ୟ

ପାଠକେ! ଆମେ ସ୍କୁଲ କଲେଜରେ ପଢ଼ିଆସିଲୁ ମଣିଷ ଏକ ସାମାଜିକ ପ୍ରାଣୀ। ମୂଳରୁ ସେ ଗୋଟିଏ ପରିବାରରେ ଜନ୍ମ ନିଏ, ବଢ଼େ ଓ ତା'ର ପାରିବାରିକ ଜୀବନ କ୍ରମେ କ୍ରମେ ଗ୍ରାମ ବା ନଗର, ରାଜ୍ୟ, ଦେଶ ଓ ସମଗ୍ର ପୃଥିବୀଆଡ଼କୁ ବିସ୍ତାରିତ ହୁଏ। ତା'ର ବିଭିନ୍ନ ପ୍ରକାର ସମ୍ପର୍କ ଓ ସମ୍ବନ୍ଧ ସୃଷ୍ଟି ହୁଏ। ପରିବାରର ପିତା, ମାତା, ଭ୍ରାତା, ଭଗିନୀଙ୍କଠାରୁ ଆରମ୍ଭ କରି ବଡ଼ବାପା, ବଡ଼ମାଆ, କକା, ଖୁଡ଼ୀ ଏବଂ ଏହା ବାହାରେ ମାମୁ, ମାଈଁ, ପିଉସା, ପିଉସୀ, ମଉସା, ମାଉସୀ ଓ ସେମାନଙ୍କ ପରିବାର ସହିତ ମଧ ଆମେ ସମ୍ପର୍କିତ ହୋଇଥାଉ। ଆମର ସେମାନଙ୍କ ସହିତ ସ୍ନେହପ୍ରୀତି ଥାଏ ଓ ସେମାନଙ୍କ ପ୍ରତି ମଧ ଦାୟିତ୍ୱ ଥାଏ। ଆମ୍ଭେମାନେ ପରସ୍ପରର ସୁଖଦୁଃଖରେ ଭାଗୀ ହେଉ। ସେହିପରି ମଧ ଆମର ଗ୍ରାମବାସୀଙ୍କ ସହିତ ସମ୍ପର୍କ ସୃଷ୍ଟି ହୋଇଥାଏ ଓ ଗ୍ରାମ ପ୍ରତି ଆମର ଦାୟିତ୍ୱ ଥାଏ। ସେହିପରି ଆମର ଜାତି ଓ ଦେଶ ସଙ୍ଗେ ମଧ ସମ୍ପର୍କ ସମ୍ବନ୍ଧ ସ୍ଥାପିତ ହୁଏ ଓ ଆମେ ଜାତି ଓ ଦେଶର ଦାୟିତ୍ୱ ମଧ ବହନ କରୁ। ଶେଷରେ ଏହି ବିଶ୍ୱ ବା ପୃଥିବୀ ବା ମାନବସମାଜ ସହିତ ଆମର ନିବିଡ଼ ସମ୍ପର୍କ ଥାଏ ବା ଦାୟିତ୍ୱ ମଧ ଥାଏ।

ଏସବୁ ବାହାରେ ମଧ ଆମର ଭାବବନ୍ଧୁ ଓ ପ୍ରୀତିବନ୍ଧୁ ମଧ ଥାଆନ୍ତି। ସେମାନଙ୍କ ସହିତ ଆମର ସମ୍ପର୍କ ଖୁବ୍ ଘନିଷ୍ଠ ହୋଇଥାଏ। ଗଭୀର ହୋଇଥାଏ ଏବଂ ସେମାନଙ୍କ ପାଇଁ ଖୁବ୍ ବେଶି ଦାୟିତ୍ୱ ମଧ ଆମେ ବରଣ କରୁ।

ମାତ୍ର ପାଠକେ! ମହାମତି ଚାଣକ୍ୟ ପଣ୍ଡିତେ ମଣିଷ ସମ୍ବନ୍ଧେ ଆଉ ଗୋଟିଏ ସତ୍ୟ ପ୍ରକାଶ କରୁଛନ୍ତି। ମନୁଷ୍ୟ ଗୋଟିଏ ସାମାଜିକ ପ୍ରାଣୀ ହୋଇପାରେ – ମାତ୍ର କେତେକ କ୍ଷେତ୍ରରେ ସେ ବିଚରା ଖୁବ୍ ଏକୁଟିଆ। ଚାଣକ୍ୟ ପଣ୍ଡିତଙ୍କ ଭାଷାରେ –

**ଜନ୍ମମୃତ୍ୟୁ ହି ଯାତ୍ୟେକୋ ଭୁନକ୍ତ୍ୟେକଃ ଶୁଭାଽଶୁଭମ୍।**
**ନରକେଷୁ ପତତ୍ୟେକ ଏକୋ ଯାତି ପରାଂ ଗତିମ୍ ॥ (୫/୧୩)**

ଅର୍ଥାତ୍, ମନୁଷ୍ୟ ଏକାକୀ ଜନ୍ମ ହୁଏ, ଏକାକୀ ମୃତ୍ୟୁ କବଳିତ ହୁଏ, ତା' ନିଜ କୃତ ଶୁଭ ବା ଅଶୁଭ କର୍ମର ଶୁଭାଶୁଭ ଫଳ ସେ ଏକୁଟିଆ ହିଁ ଭୋଗ କରେ। ସେ ମଧ୍ୟ ଏକାକୀ ସ୍ୱର୍ଗ ବା ନରକକୁ ଯାଏ; କିମ୍ୱା ଏକାକୀ ପରମଗତି ବା ମୋକ୍ଷ ଲାଭ କରେ।

ଚାଣକ୍ୟଙ୍କର ଏହି ଶ୍ଳୋକଟି ନିଶ୍ଚୟ ଏକ ସାର୍ବଜନୀନ ସତ୍ୟ ପ୍ରକାଶ କରୁଛି। ମାତ୍ର ଏ ଶ୍ଳୋକଟିର ସବୁ କଥାକୁ ଆମେ ସାର୍ବଜନୀନ ସତ୍ୟ ବୋଲି କହିପାରିବା ନାହିଁ। ଉଦାହରଣସ୍ୱରୂପ, ମନୁଷ୍ୟ ଏକା ଏକା ଜନ୍ମ ହୁଏ ଓ ଏକା ଏକା ମରେ - ଏହା ଏକ ଚିରନ୍ତନ ସତ୍ୟ। ମାତ୍ର ମଣିଷ କ'ଣ ଏକା ଏକା ବଞ୍ଚେ ? ସେ ଏକା ଏକା ଏ ପୃଥିବୀରେ ବଞ୍ଚିପାରିବ କି ? ସେହିପରି ମଣିଷ ଯୋଉସବୁ କର୍ମ କରେ - ସବୁ କର୍ମରେ ସେ ଏକୁଟିଆ କର୍ତ୍ତା ନୁହେଁ। ବହୁଲୋକ ମିଶି ଦେଉଳଟିଏ ତିଆରି କରନ୍ତି - ସେତୁଟିଏ ବାନ୍ଧନ୍ତି - ଆସନ୍ନ ବିପଦର ସମ୍ମୁଖୀନ ହୁଅନ୍ତି। ବହୁ ଲୋକ ଏକାଠି ମିଶି ଦେଶଟିଏ ତିଆରି କରନ୍ତି, ରାଷ୍ଟ୍ରଟିଏ ନିର୍ମାଣ କରନ୍ତି। ଏପରିକି ବହୁ ଲୋକ ଏକାଠି ମିଶି ଆନନ୍ଦ ମହୋତ୍ସବ କରନ୍ତି।

ଏସବୁ ସତ। କିନ୍ତୁ ଚାଣକ୍ୟ ପଣ୍ଡିତେ କହୁଛନ୍ତି ମଣିଷ ମୂଳତଃ ଏକୁଟିଆ। ଜନ୍ମ ହେଲାବେଳେ ସେ ଏକୁଟିଆ ଜନ୍ମେ - ମଲାବେଳେ ବି ଏକୁଟିଆ ମରେ। ଜନ୍ମମୃତ୍ୟୁ ମଧ୍ୟ ତା' ହାତରେ ନାହିଁ। ତା'ର ଅନୁମତି ନେଇ କେହି ତାକୁ ଜନ୍ମ ଦେଇ ନାହିଁ - କି ତା'ର ଅନୁମତି ନେଇ କେହି ତା'ର ଜୀବନଲୀଳା ଶେଷକରିବ ନାହିଁ।

ଚାଣକ୍ୟ ପୁନଶ୍ଚ କହୁଛନ୍ତି - ମଣିଷ ଏକୁଟିଆ କାମଟିଏ କରୁ ବା ଅନ୍ୟ ସହ ମିଳିମିଶି କାମ କରୁ - କର୍ମଫଳ ସେ ଏକୁଟିଆ ଭୋଗିବ। ଭଲ କର୍ମରେ ଭଲ ଫଳ ଭୋଗିବ ମନ୍ଦ କର୍ମରେ ମନ୍ଦ ଫଳ ଭୋଗିବ। ଯେକୌଣସି କର୍ମର ଲାଭକ୍ଷତି ତାକୁ ଏକୁଟିଆ ସହିବାକୁ ପଡ଼ିବ। ସେହିପରି ସେ ଯଦି ପୁଣ୍ୟକର୍ମ କରିଥାଏ ତେବେ ସେ ଏକୁଟିଆ ସ୍ୱର୍ଗକୁ ଯିବ ଓ ଯଦି ମନ୍ଦକର୍ମ କରିଥାଏ ତେବେ ଏକୁଟିଆ ନରକକୁ ଯିବ। ମଣିଷ ଯଦି ଭଗବାନ୍‌ଙ୍କୁ ଉପଲବ୍ଧି କରିବାକୁ ଚାହେଁ ତେବେ ତାକୁ ଏକୁଟିଆ ଯୋଗ ବା ତପସ୍ୟା କରିବାକୁ ହେବ ଏବଂ ଏକୁଟିଆ ହିଁ ଭଗାବାନ୍‌ଙ୍କୁ ଉପଲବ୍ଧି କରିବାକୁ ହେବ।

ତେବେ ଏ କଥା ସତ ଯେ, ଆମେ ଏକାଠି ମିଳିମିଶି ପ୍ରେମଭକ୍ତିରେ ବିଭୋଳିତ ହୋଇ ଭଗବାନ୍‌ଙ୍କର ସ୍ତୁତି, ସ୍ତବ ବା କୀର୍ତ୍ତନ ଭଜନାଦି କଲେ, ସମସ୍ତେ ମିଳିମିଶି

ଭଗବତ୍ ରସ ଆସ୍ୱାଦନ କରିପାରିବା। ସମସ୍ତେ ମିଳିମିଶି ଶୁଭକର୍ମ କଲେ ଶୁଭକର୍ମର ଫଳାଫଳ ସମସ୍ତେ ମିଳିମିଶି ଭୋଗ କରିବା। ସମସ୍ତେ ମିଳିମିଶି ଭଲ ଫଳ ଉଦ୍ୟାନଟିଏ କଲେ - ତା'ର ସୁସ୍ୱାଦୁ ଫଳ ଆମେ ସମସ୍ତେ ଏକାଠି ଖାଇ ଏକାଠି ଖୁସି ହେବା ନାହିଁ କି ? ବହୁ ଲୋକ ଏକାଠି ମିଶି ଅରଣ୍ୟମାନଙ୍କରୁ ଗଛବୃଛ କାଟି ନେଲେ - ତା'ର କୁଫଳ ଆମେ ସମସ୍ତେ ଏକାଠି ଭୋଗିବା ନାହିଁକି ? ଏ କଥା ସତ ଯେ, ଆମେ ସମସ୍ତେ ଏକାଠି ଏକମନ ହୋଇ ଓ ଏକ ଶୁଭ ବିଶ୍ୱାସ ଉପରେ ନିର୍ଭର କରି ଏ ପୃଥିବୀକୁ ଆହୁରି ସୁଖମୟ ଏକସ୍ୱର୍ଗ ଭୂମିରେ ପରିଣତ କରିପାରିବା।

ଅନ୍ୟପକ୍ଷରେ ଆମେ ବହୁ ଲୋକ ଏକାଠି ହୋଇ ଏକ ଅମଙ୍ଗଳକର ଇଚ୍ଛା ଓ ପ୍ରବେଗର ବଶବର୍ତ୍ତୀ ହୋଇ ଏକ ମିଳିତ କୁକର୍ମ ଦ୍ୱାରା ଏ ପୃଥିବୀକୁ ଏକ ଦୁଃସହ ନରକରେ ପରିଣତ କରିଦେଇପାରିବା ଓ ଉଭୟର ଫଳାଫଳ ମିଳିମିଶି ସମସ୍ତେ ଭୋଗ କରିବା ।

କିନ୍ତୁ ଚାଣକ୍ୟ ପଣ୍ଡିତେ ମଣିଷର ସାମୂହିକ ନିୟତିର କଥା କହୁ ନାହାନ୍ତି - ସେ ଏହି ଶ୍ଳୋକଟିରେ ମନୁଷ୍ୟର ବ୍ୟକ୍ତିଗତ ଜୀବନର କଥା କହୁଛନ୍ତି। ବ୍ୟକ୍ତିଗତ ଭାବେ ମଣିଷ କିପରି ତା'ର ସୁକର୍ମ ଓ ଅଭୀପ୍ସା ଫଳରେ ସୁଗତି ପ୍ରାପ୍ତ ହୁଏ ଏବଂ ତା'ର କୁକର୍ମ ଓ ମନ୍ଦାଭିଳାଷ ଫଳରେ ଦୁର୍ଗତି ପ୍ରାପ୍ତ ହୁଏ - ସେହି କଥା କହୁଛନ୍ତି। ମଣିଷର ବ୍ୟକ୍ତିଗତ ଜୀବନର ଗତିବିଧି ଉପରେ ମନ୍ତବ୍ୟ ପ୍ରକାଶ କରିଛନ୍ତି।



## ୨୯. ନାସ୍ତି ଜ୍ଞାନାତ୍ ପରଂ ସୁଖମ୍

**ନାଽସ୍ତି କାମସମୋ ବ୍ୟାଧିଃ ନାସ୍ତି ମୋହସମୋ ରିପୁଃ।**
**ନାଽସ୍ତି କୋପସମୋ ବହ୍ନିଃ ନାସ୍ତି ଜ୍ଞାନାତ୍ ପରଂ ସୁଖମ୍ ।। (୫/୧୨)**

ଚାଣକ୍ୟ ପଣ୍ଡିତଙ୍କର ଉପରୋକ୍ତ ଶ୍ଳୋକଟି ଆପାତତଃ ଏକ ନାସ୍ତିବାଚକ ଶ୍ଳୋକ ବୋଲି ମନେହେଲେ ହେଁ ଏହାର ମର୍ମ କିନ୍ତୁ ଅସ୍ତିବାଚକ। ଏହି ଶ୍ଳୋକରେ ପ୍ରକୃତ ସୁଖ କେଉଁଠି ନିହିତ ଅଛି ତାହା ସ୍ପଷ୍ଟଭାବେ କୁହାଯାଇଛି ଏବଂ ସେହି ସିଦ୍ଧାନ୍ତକୁ ଆହୁରି ପ୍ରାମାଣିକ କରିବାପାଇଁ ମହାବୁଦ୍ଧି ଚାଣକ୍ୟ କେତେକ ଉଦାହରଣ ମଧ୍ୟ ଦେଉଛନ୍ତି।

ଏହି ଶ୍ଳୋକଟିର ଆପାତତଃ ଅର୍ଥ ହେଲା - 'କାମ' ଭଳି ଆଉ କୌଣସି ବ୍ୟାଧି ଏତେ ମାରାତ୍ମକ ନୁହେଁ। 'ମୋହ' ଭଳି ଏଡ଼େ ମାରାତ୍ମକ ଶତ୍ରୁ ଆଉ କେଉଁଠି

ନାହାନ୍ତି। 'କୋପ' ବା କ୍ରୋଧ ଭଳି ଏତେ ପ୍ରଜ୍ୱଳିତ ଅଗ୍ନି ଆଉ ନାହିଁ; ଏବଂ ଶେଷରେ 'ଜ୍ଞାନ' ଭଳି ସୁଖଦାୟକ କଥା ଆଉ ନାହିଁ।

ପାଠକେ ! ଚାଣକ୍ୟ ପଣ୍ଡିତେ ଯଥାର୍ଥରେ ଏଇ ଉଦାହରଣଗୁଡ଼ିକ ଦେଇଛନ୍ତି। କାମ ଶବ୍ଦର ଅର୍ଥ ହେଲା - କାମନା ଓ ଯୌନସୁଖ ଭୋଗଲାଳସା। ପ୍ରତ୍ୟେକ ମଣିଷ ଭିତରେ କିଛି କିଛି କାମନା ରହିବା ଭଲ। କାରଣ ଏଇ କାମନା ହିଁ ମନୁଷ୍ୟକୁ କର୍ମତତ୍ପର କରେ ଓ ନାନାଦି କର୍ମ ଭିତରେ ମନୁଷ୍ୟର ବୌଦ୍ଧିକ ବିକାଶ ହୁଏ ଓ ଦୈହିକ ସ୍ୱାସ୍ଥ୍ୟ ମଧ ଅକ୍ଷୁଣ୍ଣ ରହେ। ଏହି କାମନା ମଧ କ୍ରମଶଃ ମନୁଷ୍ୟର ମନରେ ଉଚ୍ଚକାଂକ୍ଷା ଜାଗ୍ରତ କରେ; ଏବଂ ଈଶ୍ୱରଙ୍କୁ ଜାଣିବା ଲାଗି ଓ ପାଇବା ଲାଗି ଅଭୀପ୍ସା ଜାଗ୍ରତ କରେ। କିନ୍ତୁ କାମନା ଯେତେବେଳେ ସ୍ୱାର୍ଥକୈନ୍ଦ୍ରିକ ହୁଏ; ଏବଂ ଖୁବ୍ ଉଗ୍ର ହୋଇଉଠେ ତାହା ଏକ ମାନସିକ ରୋଗରେ ପରିଣତ ହୁଏ। କ୍ରମଶଃ ଏହା ଦୈହିକ ବ୍ୟାଧିରେ ପରିଣତ ହୋଇ ମଣିଷକୁ ଘୋର ଦୁଃଖାକ୍ରାନ୍ତ କରି ମୃତ୍ୟୁ ଆଡ଼କୁ ଠେଲିଦିଏ।

ସେହିପରି ମୋହ ଆମର ଏକ ମାରାତ୍ମକ ଶତ୍ରୁ। କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ - ଏଇ ଛଅଟି କୁପ୍ରବୃତ୍ତିକୁ ଧର୍ମଶାସ୍ତ୍ରରେ ଷଡ଼ରିପୁ କୁହାଯାଇଛି। ଜୀବନପଥରେ ଚାଲିବା ବେଳେ ଏହି ଶତ୍ରୁମାନେ ଆମ ପ୍ରକୃତିର ଅବଚେତନ ଭିତରୁ ବାହାରି ଆମକୁ ଘୋର ଦୁଃଖ ବିପଦରେ ପକାଇଥାନ୍ତି। ଏଇ ଷଡ଼ରିପୁଙ୍କ ଭିତରୁ ମୋହ ଅତି ମାରାତ୍ମକ। ଏହି କାରଣରୁ ଯେ, ମନୁଷ୍ୟ ମୋହଗ୍ରସ୍ତ ହେଲେ ତା'ର ଆଉ ଭଲମନ୍ଦ, ନ୍ୟାୟଅନ୍ୟାୟ, ଉଚିତଅନୁଚିତ, ଧର୍ମାଧର୍ମ ବିଚାରବୋଧ ରହେ ନାହିଁ। ମୋହଗ୍ରସ୍ତ ମଣିଷ ଯାହା ଇଚ୍ଛା ତାହା କରିପାରେ। ଆମ ସମସ୍ତଙ୍କର ଜୀବନ ପ୍ରତି ମାୟା ଅଛି - ଆମ ନିଜଲୋକଙ୍କ ପାଇଁ ମାୟା ଅଛି - ଅନ୍ୟ ଲୋକ ପ୍ରତି ଦୟା ଅଛି। କିନ୍ତୁ ଏହି ମାୟା ଯେତେବେଳେ ମଣିଷକୁ ଅନ୍ଧ କରିଦିଏ, ତାକୁ ଘୋର ଆସକ୍ତ କରିଦିଏ - ସେ ତା'ର ବିଚାରବୁଦ୍ଧି ଓ ବିବେକ ହରାଏ, ସେତେବେଳେ ତାକୁ ମୋହ ଘୋଟିଯାଏ ଏବଂ ମୋହଗ୍ରସ୍ତ ଲୋକ ଧ୍ୱଂସ ଆଡ଼କୁ ଗତି କରେ। ମହାମତି ଚାଣକ୍ୟ ପୁଣି କହୁଛନ୍ତି, ଏ ପୃଥିବୀରେ ଅଗ୍ନି ପ୍ରଜ୍ୱଳିତ ହେଲେ ନିର୍ବିଚାରରେ ସବୁକୁ ପୋଡ଼ି ଭସ୍ମ କରିଦିଏ। ଅଗ୍ନିମୁଖରେ ପଡ଼ିଲେ ସବୁ କିଛି ଭସ୍ମ ପାଲଟି ଯାଏ। କିନ୍ତୁ ମଣିଷର କ୍ରୋଧ ପ୍ରଜ୍ୱଳନ୍ତ ଅଗ୍ନିଠାରୁ ବି ଭୟଙ୍କର ଓ ମାରାତ୍ମକ। ମନୁଷ୍ୟ କ୍ରୋଧାନ୍ୱିତ ହେଲେ ତା'ର ବୁଦ୍ଧି ହଜିଯାଏ। ତା'ର ସ୍ମୃତି ମଧ ଲୋପପାଏ। ସେ ପରଆପଣା, ଭଲମନ୍ଦ ଜାଣିପାରେନା। ତା' କ୍ରୋଧାଗ୍ନିରେ ସେ ତା'ର ଚତୁଃପାର୍ଶ୍ୱକୁ ଜାଳିଦିଏ ଏବଂ ନିଜେ ମଧ ସେହି ଅଗ୍ନିରେ ପୋଡ଼ି ଭସ୍ମ ହୋଇଯାଏ।

କିନ୍ତୁ ଶେଷ କଥାଟିରେ ଚାଣକ୍ୟ ପଣ୍ଡିତେ କହୁଛନ୍ତି - ଜ୍ଞାନଠାରୁ ବଳି ସୁଖ ନାହିଁ। ଖୁବ୍ ସତକଥା ବୁଦ୍ଧ କହନ୍ତି, 'ଅବିଦ୍ୟା ବା ମୂର୍ଖତା ହିଁ ଦୁଃଖର କାରଣ।' ଶଙ୍କରାଚାର୍ଯ୍ୟ କହନ୍ତି, 'ଅଜ୍ଞାନ ହିଁ ଦୁଃଖର କାରଣ' ଏବଂ ଉଭୟ ମହାତ୍ମା ଜ୍ଞାନକୁ ସୁଖର କାରଣ ବୋଲି ସମସ୍ୱରରେ କହିଛନ୍ତି। ଜ୍ଞାନ ଆମକୁ ଭଲ କ'ଣ ମନ୍ଦ କ'ଣ ବୁଝାଇଦିଏ। ଆମର ବିବେକବୁଦ୍ଧିକୁ ବଢ଼ାଇ ଦିଏ। କ'ଣ ଉଚିତ ଓ କ'ଣ ଅନୁଚିତ ତାହା ଜଣାଇଦିଏ। ସର୍ବୋପରି ଜ୍ଞାନ ହିଁ ଯେ କୌଣସି ଦୁଃଖର କାରଣ ଖୋଜି ବାହାର କରେ ଏବଂ ସେହି କାରଣକୁ ବିନଷ୍ଟ କଲା ପରେ ଦୁଃଖ ସ୍ୱତଃ ବିନଷ୍ଟ ହୋଇଯାଏ। ଏବଂ ଜୀବନରେ ସୁଖ ଆନନ୍ଦର ସୂର୍ଯ୍ୟ ଉଦିତ ହୁଅନ୍ତି। ଅଜ୍ଞାନ ଅନ୍ଧକାର ଦୂର ହେବା ସହିତ ଦୁଃଖର ଅନ୍ଧକାର ମଧ୍ୟ ଦୂରୀଭୂତ ହୋଇଯାଏ।



## ୩୦. ...ସ୍ଫୁଟବକ୍ତା ନ ବଞ୍ଚକଃ

**ନିଃସ୍ପୃହୋ ନାଽଧିକାରୀ ସ୍ୟାନ୍ନାକାମୀ ମଣ୍ଡନପ୍ରିୟଃ।**
**ନାଽବିଦଗ୍ଧଃ ପ୍ରିୟଂ ବ୍ରୂୟାତ୍ ସ୍ଫୁଟବକ୍ତା ନ ବଞ୍ଚକଃ ॥ (୫/୫)**

ଏହି ଶ୍ଳୋକରେ ମହାମତି ଚାଣକ୍ୟ କହୁଛନ୍ତି - ଯେଉଁ ବ୍ୟକ୍ତି ଏକ ଦାୟିତ୍ୱଶୀଳ ପଦବୀରେ ଅଧିରୂଢ଼ ହୋଇଛନ୍ତି ସେ କେବେବି ସ୍ପୃହାହୀନ ବା ଅନାସକ୍ତ ହୋଇ ରହିପାରେନା। ଅର୍ଥାତ୍, ସେ କେବେ ବି ସଂସାର ପ୍ରତି ନିରାସକ୍ତ ସନ୍ନ୍ୟାସୀମାନଙ୍କ ଭଳି ନିଜକୁ ସାଂସାରିକ ବା ପାର୍ଥିବ ସମସ୍ୟାଠାରୁ ଦୂରେଇ ରଖିପାରେନା। ଗୃହୀ ଲୋକଟିଏ ତା' ପରିବାରର ସୁଖଦୁଃଖ ପ୍ରତି ଉଦାସୀନ ହୋଇ ରହିପାରେନା। ଶାସକ ବା ପ୍ରଶାସକମାନେ ରାଜ୍ୟର ସମସ୍ୟାଗୁଡ଼ିକ ପ୍ରତି ଆଖିବୁଜି ଦେଇପାରିବେ ନାହିଁ। ସୈନିକମାନେ ଶତ୍ରୁଭୟରେ ବିଚଳିତ ହୋଇ ଘାଟିସ୍ଥଳରୁ ପଳାଇଯାଇ ପାରିବେ ନାହିଁ। କାରଣ ଦେଶର ସୀମାସ୍ଥିତ ଘାଟିଗୁଡ଼ିକୁ ଜଗିରହିବା ସେମାନଙ୍କର କର୍ତ୍ତବ୍ୟ।

ସେହିପରି ଯେଉଁ ନର ବା ନାରୀ ସର୍ବଦା ନିଜକୁ ନାନାଦି ସୁନ୍ଦର ବସ୍ତ୍ର ଓ ଅଳଙ୍କାର ଦ୍ୱାରା ସଜାଇବାରେ ବ୍ୟସ୍ତ ରହୁଥାଏ ସେ ନିଶ୍ଚୟ କାମୁକ ବା କାମୁକା ହୋଇଥିବ। କାରଣ ଅନ୍ୟ ପକ୍ଷକୁ ନିଜ ଆଡ଼କୁ ଆକର୍ଷଣ କରିବା ହିଁ ତା'ର ଏଇ ସର୍ବଦା ନିଜକୁ ସୁସଜ୍ଜିତ ରଖିବାର ମୂଳ ଉଦ୍ଦେଶ୍ୟ ହୋଇଥାଏ।

ସେହିପରି ଯେଉଁ ବ୍ୟକ୍ତିମାନେ ବିଦଗ୍ଧ ସ୍ୱଭାବର ନୁହନ୍ତି ଅର୍ଥାତ୍, ଯେଉଁମାନଙ୍କର ମନ ଓ ହୃଦୟ ସାହିତ୍ୟ, ସଙ୍ଗୀତ, କଳା ଓ ନାଟକାଦି ପଠନ, ଶ୍ରବଣ ଓ ଦର୍ଶନ

ଦ୍ୱାରା ପରିଶୀଳିତ ହୋଇ ନ ଥାଏ - ଉଚ୍ଚସ୍ତରୀୟ ଭାବାବେଗ, ଭାବାଦର୍ଶ ଓ ଚିନ୍ତନ ମନନ ଦ୍ୱାରା ମାର୍ଜିତ ଓ ସମୃଦ୍ଧ ହୋଇ ନ ଥାଏ - ସେମାନେ ଆଦୌ ପ୍ରିୟବାଦୀ ହୋଇପାରନ୍ତି ନାହିଁ। ଅର୍ଥାତ୍, ସେମାନେ ଅମୃତ ବିନୟ ବଚନ କହି ପ୍ରାଣୀମାନଙ୍କ ମନକୁ ତୁଷ୍ଟ କରିପାରନ୍ତି ନାହିଁ। ସେମାନଙ୍କ କଥାବାର୍ତ୍ତା ସର୍ବଦା ରୁକ୍ଷ, ରୂଢ଼, କର୍କଶ ଓ ଅଶ୍ଳୀଳ ହୋଇଥାଏ। ଉଚ୍ଚାଙ୍ଗ ସାହିତ୍ୟ ଅଧ୍ୟୟନ କଲେ - ଉଚ୍ଚାଙ୍ଗ କଳା, ସଙ୍ଗୀତ ଓ ନାଟକାଦିର ଅନୁଶୀଳନ କଲେ ବ୍ୟକ୍ତି ବିଦଗ୍ଧ ହୋଇଥାଏ। ସଭ୍ୟ, ମାର୍ଜିତ, ବିନୀତ, ଭାବୁକ, ପଣ୍ଡିତ ଓ ରସଗ୍ରାହୀ ବ୍ୟକ୍ତିମାନଙ୍କୁ ବିଦଗ୍ଧ କୁହାଯାଏ।

ଶେଷରେ ଚାଣକ୍ୟ ପଣ୍ଡିତ କହୁଛନ୍ତି - ଯେଉଁ ବ୍ୟକ୍ତି ସ୍ପଷ୍ଟ କଥା କହେ - ସହଜ ଓ ସରଳ ଭାବେ କଥାବାର୍ତ୍ତା କରେ - ଯାହାର କଥା ଭିତରେ ଛଳନା ନ ଥାଏ - ସେ କେବେବି କାହା ପ୍ରତି ପ୍ରବଞ୍ଚନା କରେ ନାହିଁ। ସେହି ବ୍ୟକ୍ତି କାହା ସହିତ ପ୍ରତାରଣା କରେ ନାହିଁ, କାହାକୁ ଠକେ ନାହିଁ ଓ କାହା ସଙ୍ଗେ ମିଥ୍ୟା ବ୍ୟବହାର କରେ ନାହିଁ। କାରଣ ତା'ର ମୁଖନିଃସୃତ କଥା ଓ ତା'ର ମନ ଓ ହୃଦୟରେ ଥିବା ଭାବ ଓ ଚିନ୍ତା ଭିତରେ କୌଣସି ପ୍ରଭେଦ ନ ଥାଏ।

ପାଠକେ ! ମହାପ୍ରାଜ୍ଞ ଚାଣକ୍ୟଙ୍କର ଏହି ଉକ୍ତିଗୁଡ଼ିକ ନିଶ୍ଚୟ ସତ୍ୟ ଓ ବାସ୍ତବ। କିନ୍ତୁ ଆମେ ଏଇ ବାକ୍ୟଗୁଡ଼ିକୁ ଆଉ ଟିକିଏ ଗଭୀର ଭାବେ ବିଶ୍ଳେଷଣ କରିବା। ପ୍ରଥମ ଉଦାହରଣରେ ଚାଣକ୍ୟ କହୁଛନ୍ତି, କୌଣସି ଦାୟିତ୍ୱଶୀଳ ଅଧିକାରୀ ତା'ର କର୍ମ କର୍ତ୍ତବ୍ୟରେ ନିଃସ୍ପୃହ ରହିପାରେନା। ସନ୍ନ୍ୟାସୀଙ୍କ ପରି ଅନାସକ୍ତ ରହିପାରେନା। ଏକଥା ଅବଶ୍ୟ ଠିକ୍। କିନ୍ତୁ ନିଃସ୍ପୃହତା ଓ ଅନାସକ୍ତି ଏକା କଥା ନୁହେଁ। ସଂସାରୀ ବ୍ୟକ୍ତି ସଂସାର ପ୍ରତି ମୂଢ଼ଭାବରେ ନିଃସ୍ପୃହ ହେବା ଠିକ୍ ନୁହେଁ। କିନ୍ତୁ କିଞ୍ଚିତ୍ ଅନାସକ୍ତ ରହିଲେ ସେ ତା'ର କର୍ତ୍ତବ୍ୟ ଠିକ୍‌ଭାବେ ପାଳନ କରିପାରିବ। ନିଃସ୍ପୃହତା ଏକ ନାସ୍ତିବାଚକ ମନୋଭାବ। କିନ୍ତୁ ଅନାସକ୍ତି ଏକ ଅସ୍ତିବାଚକ ଆଧ୍ୟାତ୍ମିକ ମନୋଭାବ। କୌଣସି ବିଷୟପ୍ରତି ନିଜର ଅହଂକାର ଓ ସ୍ୱାର୍ଥପର ମନୋଭାବ ନ ରଖି ନିଜର ଅଧିକାରୀ ମନୋଭାବ ନ ରଖି ସେହି ବିଷୟଟିକୁ କାର୍ଯ୍ୟକାରୀ କରିବା ହିଁ ଯଥାର୍ଥ ମନୋଭାବ।

ସେହିପରି ନିଜକୁ ସୁସଜ୍ଜିତ କରି ରଖିବା, ସୁନ୍ଦର କରି ରଖିବା ପ୍ରତ୍ୟେକ ସଭ୍ୟ ମଣିଷର କର୍ତ୍ତବ୍ୟ ନିଶ୍ଚୟ। ନିଜର ରୂପକୁ ଅନ୍ୟର ନୟନ ପ୍ରୀତିକର କରି ରଖିବା, ନିଜର ବାକ୍ୟକୁ ଅନ୍ୟର ଶ୍ରବଣ ପ୍ରୀତିକର କରି ଉଚ୍ଚାରଣ କରିବା କେବେବି ଦୋଷାବହ ନୁହେଁ । ବରଂ ଏହା ଏକ ସୁଗୁଣ। କିନ୍ତୁ ନିଜର କାମ-ଲାଳସା ଚରିତାର୍ଥ

କରିବାପାଇଁ ବା ନିଜର ଏକ ମନ୍ଦ ଉଦ୍ଦେଶ୍ୟକୁ ଚରିତାର୍ଥ କରିବାପାଇଁ ନିଜକୁ ଆକର୍ଷଣୀୟ କରିବାର ଉଦ୍ୟମ ନିଶ୍ଚୟ ଏକ ମନ୍ଦ ପ୍ରବୃତ୍ତି। ଶେଷରେ 'ସ୍ପଷ୍ଟ ବକ୍ତା'ର ଅର୍ଥକୁ ଅନର୍ଥ କରି ବୁଝିବା ଅନୁଚିତ। 'ସ୍ପଷ୍ଟ ବକ୍ତା' ତା'ର ବକ୍ତବ୍ୟକୁ ସ୍ପଷ୍ଟ ଭାବରେ ଅବଶ୍ୟ କହିବ। ମାତ୍ର ତା'ବୋଲି ସେ କେବେ ରୁକ୍ଷ, ରୂଢ଼ ଓ ଅଶ୍ଳୀଳ ଭାବେ କଥା କହିବ ନାହିଁ।



## ୩୧. ...ସର୍ବତ୍ର ସମଦର୍ଶିନାମ୍

ଆରାଧ୍ୟ ଦେବତାଙ୍କୁ ବା ଈଶ୍ୱରଙ୍କୁ କିଏ କିପରି କୋଉଠି ପୂଜା ଆରାଧନା କରିଥାଏ ? ମଣିଷର ମନ, ବୁଦ୍ଧି ଓ ହୃଦୟର ଉତ୍କର୍ଷ ଅନୁସାରେ ଏବଂ ତା'ର ଅଭୀପ୍ସା ଅନୁସାରେ ସେ ତା'ର ଇଷ୍ଟଦେବତାଙ୍କୁ ବାଛିଥାଏ ଏବଂ ତାଙ୍କୁ ପୂଜା ଆରାଧନା କରିଥାଏ। ଏହି କଥାକୁ ବୁଝାଇବା ପାଇଁ ମହାପ୍ରାଜ୍ଞ ଚାଣକ୍ୟ ଗୋଟିଏ ଶ୍ଳୋକରେ କହୁଛନ୍ତି -

ଅଗ୍ନିର୍ଦେବୋ ଦ୍ୱିଜାତୀନାଂ ମୁନୀନାଂ ହୃଦି ଦୈବତମ୍।
ପ୍ରତିମା ସ୍ୱଳ୍ପବୁଦ୍ଧୀନାଂ ସର୍ବତ୍ର ସମଦର୍ଶିନଃ ।। (୪/୨୧)

ଅର୍ଥାତ୍, ସମାଜରେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନେ ସେମାନଙ୍କର ଇଷ୍ଟଦେବଙ୍କୁ ଅଗ୍ନିଙ୍କ ମଧରେ ଦେଖିଥାନ୍ତି ଏବଂ ସେହି ଅଗ୍ନିଙ୍କ ମାଧ୍ୟମରେ ପରମାତ୍ମା ବା ଭଗବାନ୍‌ଙ୍କୁ ପୂଜା ଉପାସନା କରିଥାନ୍ତି। ଅଗ୍ନି ହେଲେ ଉତ୍ତାପ, ଆଲୋକ ଓ ପ୍ରଜ୍ୱଳନର ଉର୍ଦ୍ଧ୍ୱଗତି ଦେବତା। ସେହି ଅଗ୍ନି ଜୀବନକୁ ରକ୍ଷା କରନ୍ତି ଓ ଜୀବନକୁ ଧ୍ୱଂସ କରନ୍ତି। ଅଗ୍ନି ହେଲେ ସର୍ବଦର୍ଶୀ ଓ ସର୍ବଭକ୍ଷୀ। ସେ ମଧ୍ୟ ସବୁ ବିଷୟ ଓ ଘଟଣାର ସାକ୍ଷୀ। ତାଙ୍କୁ ଆହୁତି ପ୍ରଦାନ କରି ପ୍ରଜ୍ୱଳନ କଲେ ସେ ଉର୍ଦ୍ଧ୍ୱଶିଖ ହୋଇ ଜଳନ୍ତି ଏବଂ ସେତିକିବେଳେ ଭକ୍ତ ଅଗ୍ନିଙ୍କୁ ସ୍ତୁତି କରି, ସ୍ୱାହା କରି, ନିଜର ଅଭିଳାଷ ଓ ଅଭୀପ୍ସାକୁ ଉର୍ଦ୍ଧ୍ୱକୁ ଚତୁର୍ଦ୍ଦିଗକୁ ପ୍ରେରଣ କରିଥାନ୍ତି।

ଏହି ଅଗ୍ନି ମଧ୍ୟ ପ୍ରତ୍ୟେକ ଜୀବ ଓ ମନୁଷ୍ୟ ଭିତରେ ରହି ତାକୁ ଜୀବନ୍ତ ରଖିଛନ୍ତି। ଆମର ଉଦର ଭିତରେ ରହି ଆମର ପରିପାକ କ୍ରିୟାକୁ ସକ୍ରିୟ ରଖିଛନ୍ତି। ଆମର ରକ୍ତ ପ୍ରବାହରେ ରହି ତାକୁ ସଚଳ ଓ ଜୀବନ୍ତ ରଖିଛନ୍ତି; ଏବଂ ଆମର ହୃଦୟ ବା ଅନ୍ତରାତ୍ମାରେ ରହି ଆମ ମନରେ ଅନନ୍ତ ଓ ଅସୀମର ରହସ୍ୟ ଭେଦ

କରିବାକୁ ଓ ଭଗବାନ୍‌ଙ୍କୁ ନିଜ ଅନ୍ତରାତ୍ମା ଭିତରେ ଉପଲବ୍ଧି କରିବାକୁ ଅଭୀପ୍ସା ଜାଗ୍ରତ କରୁଛନ୍ତି। ତେଣୁ ଉପରୋକ୍ତ ତିନିଜାତିର ଲୋକେ ଅଗ୍ନିଙ୍କ ମାଧ୍ୟମରେ ଈଶ୍ୱର ଆରାଧନା କରନ୍ତି।

ମୁନିମାନେ ଏହି ବିଶ୍ୱବ୍ୟାପ୍ତ ଭଗବାନ୍ ବ୍ରହ୍ମ ବା ପରମାତ୍ମାଙ୍କୁ ନିଜ ଅନ୍ତର ଭିତରେ ଉପଲବ୍ଧି କରିଥାନ୍ତି। ଭଗବାନ୍ ସର୍ବତ୍ର ବିଦ୍ୟମାନ। ସେ ମଧ୍ୟ ପ୍ରତ୍ୟେକ ଜୀବ ଭିତରେ ଅଛନ୍ତି। ପଞ୍ଚଭୂତରେ ନିର୍ମିତ ଏହି ଶରୀର ଭିତରେ ଥାଇ ସେ ଜୀବର ପ୍ରାଣ, ମନ ଓ ବୁଦ୍ଧିକୁ ସଜୀବ ଓ ସକ୍ରିୟ କରି ରଖିଛନ୍ତି। ଯେଉଁମାନେ ମୁନି, ଋଷି ଓ ଯୋଗୀ ସେମାନେ ଧ୍ୟାନ ଓ ସମାଧି ଭିତରେ ରହି ସେହି ବିଶ୍ୱବ୍ୟାପୀ ବ୍ରହ୍ମଙ୍କୁ ନିଜ ଭିତରେ ଅଗ୍ନିଶିଖା ରୂପେ ଦର୍ଶନ କରନ୍ତି।

ଏବଂ ଯେଉଁମାନେ ପ୍ରେମୀ ଓ ଭକ୍ତ ସେମାନେ ସେମାନଙ୍କ ଇଷ୍ଟ ଦେବତାଙ୍କୁ ବା ଭଗବାନ୍‌ଙ୍କୁ ସର୍ବତ୍ର ଦେଖୁଥାନ୍ତି ବା ଅନୁଭବ କରୁଥାନ୍ତି। ସେମାନେ ଆକାଶକୁ ଚାହିଁଲେ ସେହି ବିଶ୍ୱପୁରୁଷଙ୍କ ଏକ ବିଶ୍ୱବ୍ୟାପ୍ତ ନୀଳାଭଜ୍ୟୋତିର୍ମୟ ରୂପରେ ଦେଖିଥାନ୍ତି। ପୃଥିବୀର ଯେ କୌଣସି ସ୍ଥାନରେ ତାଙ୍କ ଆଖି ପଡ଼ିଲେ ସେ ତା'ଭିତରେ ଭଗବାନ୍‌ଙ୍କୁ ଦର୍ଶନ କରିଥାନ୍ତି। ପ୍ରେମ ଓ ଭକ୍ତିର ପରମେଶ୍ୱରୀ, ସଚ୍ଚିଦାନନ୍ଦ ଭଗବାନ୍‌ଙ୍କର ଆହ୍ଲାଦିନୀ ଶକ୍ତି ଓ ମହାଭାବସ୍ୱରୂପିଣୀ ଶ୍ରୀମତୀ ରାଧାରାଣୀ ତାଙ୍କର ପ୍ରେମିକ ଭଗବାନ ଶ୍ରୀକୃଷ୍ଣଙ୍କୁ ସର୍ବତ୍ର ଦେଖୁଥିଲେ। ସେ କଳାମେଘ ଦେଖିଲେ ତାଙ୍କର ମନରେ କୃଷ୍ଣଭାବ ଆସିଯାଉଥିଲା। ତମାଳ ବୃକ୍ଷ ଦେଖିଲେ, ଯମୁନା ନଦୀକୁ ଦେଖିଲେ, କୋଇଲି ଓ ଶାରୀ ପ୍ରଭୃତି ନୀଳବର୍ଣ୍ଣର ପକ୍ଷୀ ଦେଖିଲେ ତାଙ୍କ ମନରେ କୃଷ୍ଣପ୍ରେମ ଉଚ୍ଛୁଳି ଉଠୁଥିଲା। ବ୍ରଜପୁରର ଯେକୌଣସି କିଶୋର ବାଳକକୁ ଦେଖିଲେ ସେ ତା'ଭିତରେ ଶ୍ରୀକୃଷ୍ଣଙ୍କୁ ଦେଖୁଥିଲେ। ଏହାର କାରଣ ହେଉଛି, ମନରେ ଭଗବାନ୍‌ଙ୍କ ପ୍ରତି ପ୍ରେମ ଓ ଭକ୍ତିଭାବ ଜାଗ୍ରତ ହେଲେ ମନ ସମଦର୍ଶିତା ଭାବରେ ବିସ୍ତାରିତ ହୋଇଯାଏ - ଉଦାର ଓ ପବିତ୍ର ହୋଇଯାଏ। ମନ ଭିତରୁ ସର୍ବବିଧ ସଂକୀର୍ଣ୍ଣତା ଦୂର ହୋଇଯାଏ। ତେଣୁ ପ୍ରେମୀଭକ୍ତମାନେ ସମଦର୍ଶୀ ହୋଇଥାନ୍ତି ଓ ପୃଥିବୀର ସବୁଠାରେ ସମସ୍ତଙ୍କଠାରେ ଭଗବାନ୍‌ଙ୍କୁ ଅନୁଭବ କରିପାରନ୍ତି। କାରଣ ସେମାନେ ସତ୍ୟକୁ ଧରି ବଞ୍ଚିଥାନ୍ତି, ସମସ୍ତଙ୍କର ମଙ୍ଗଳ କାମନା କରୁଥାନ୍ତି ଓ ସର୍ବତ୍ର ଭଗବାନ୍‌ଙ୍କର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟକୁ ଆବିଷ୍କାର କରୁଥାନ୍ତି।

ଏବଂ ଶେଷରେ ଯେଉଁମାନେ ସ୍ୱଚ୍ଛବୁଦ୍ଧି ମଣିଷ ଅର୍ଥାତ୍, ଯେଉଁମାନଙ୍କର ମନ ଉଦାର ନୁହଁ, ବୁଦ୍ଧି ସ୍ୱଚ୍ଛ ଓ ଶୁଦ୍ଧ ନୁହେଁ; ଏବଂ ଯେଉଁମାନେ ସ୍ୱାର୍ଥପର, ଅହଂକାରୀ

ଓ ଅଜ୍ଞାନ ଏବଂ ଯେଉଁମାନଙ୍କ ଭିତରେ ଊର୍ଦ୍ଧ୍ୱସ୍ତରକୁ ଉଠିବା ଲାଗି ବା ଚେତନାରେ ଓ କର୍ମରେ ଅଗ୍ରଗତି କରିବା ଲାଗି ସାମାନ୍ୟତମ ଅଭୀପ୍ସା ନ ଥାଏ, ଆସ୍ପୃହା ନ ଥାଏ, ଭାବାବେଗ ନ ଥାଏ, ସେମାନେ ସେମାନଙ୍କ ଇଷ୍ଟଦେବତାଙ୍କୁ ବା ଭଗବାନ୍‌ଙ୍କୁ ଗୋଟିଏ ପ୍ରତିମା ଭିତରେ ଅଛନ୍ତି ବୋଲି ଭାବି, ସେହି ପ୍ରତିମାକୁ ହିଁ ପୂଜା ଉପାସନା କରନ୍ତି। ଭଗବାନ୍ ସର୍ବତ୍ର ବିଦ୍ୟମାନ। ସେ ମଧ୍ୟ ଏକ ପ୍ରତିମା ଭିତରେ ସୂକ୍ଷ୍ମରୂପରେ ବିଦ୍ୟମାନ। ମାତ୍ର ଯେଉଁମାନେ ଭଗବାନଙ୍କୁ କେବଳ ସେହି କାଷ୍ଠ, ପ୍ରସ୍ତର ଓ ଧାତୁରେ ନିର୍ମିତ ପ୍ରତିମା ଭିତରେ ଆବଦ୍ଧ ଅଛନ୍ତି ବୋଲି ଭାବନ୍ତି, ସେମାନେ ନିଶ୍ଚୟ ମୂର୍ଖ ଓ ଅଜ୍ଞାନ। ପାଠକେ ! ଚାଣକ୍ୟ ପଣ୍ଡିତେ ଏଠାରେ ଚାରିପ୍ରକାର ମନୋବୃତ୍ତିର ବା ଚେତନାର ଅଧିକାରୀ ଭଗବତ୍ ଉପାସକମାନଙ୍କ କଥା କହିଅଛନ୍ତି। କିନ୍ତୁ ଆମେ ଏହି ପ୍ରସଙ୍ଗରେ ଆଉ ଗୋଟିଏ କଥା ଏଥିରେ ଯୋଗ କରିପାରିବା। କେତେକ କହନ୍ତି, "ଈଶ୍ୱର ନିରାକାର। ସେ କେବେବି ଏକ ନିର୍ଦ୍ଦିଷ୍ଟ ଆକୃତି ଭିତରେ ରହି ନ ପାରନ୍ତି।" କେତେକ କହନ୍ତି - "ଭଗବାନ୍ ନିରାକାର ନୁହନ୍ତି। କାରଣ ଭଗବାନ୍‌ଙ୍କର ଅସ୍ତିତ୍ୱ ଅଛି। ତେଣୁ ସେ 'ଆକାର' ଭିତରେ ରହିବାକୁ ବାଧ୍ୟ।" କିନ୍ତୁ ଯେଉଁମାନେ ଉଦାରପନ୍ଥୀ ଓ ଯଥାର୍ଥ ତତ୍ତ୍ୱଦର୍ଶୀ ସେମାନଙ୍କ ମତରେ ଭଗବାନ୍‌ଙ୍କ ସମ୍ବନ୍ଧେ ଆମେ କିଛି କିଛି ଧାରଣା କରିପାରୁ ଓ ଉପଲବ୍ଧି କରିପାରୁ। ମାତ୍ର ସେ କେବଳ ଆମରି ଧାରଣା ଓ ଉପଲବ୍ଧିର ସୀମା ଭିତରେ ଆବଦ୍ଧ ନାହାନ୍ତି। ସେ ତେଣୁ ସର୍ବତ୍ର ଅଛନ୍ତି। ପ୍ରତିମା ଭିତରେ ଅଛନ୍ତି ଓ ପ୍ରତିମା ବାହାରେ ବି ଅଛନ୍ତି। ତୁମେ ତାଙ୍କୁ ପ୍ରତିମା ଭିତରେ ଉପଲବ୍ଧି କରିପାର ଓ ପ୍ରତିମା ବାହାରେ ମଧ୍ୟ ଉପଲବ୍ଧି କରିପାର ଏବଂ ନିଜ ଅନ୍ତର ଭିତରେ ବି ତାଙ୍କୁ ଅନୁଭବ କରିପାର।



## ୩୨. ଉଦ୍ୟୋଗ, ଜପ, ମୌନତାଦିର ମାହାତ୍ମ୍ୟ

ବିଚକ୍ଷଣ ବୁଦ୍ଧି ଚାଣକ୍ୟ ଗୋଟିଏ ଉପଦେଶାତ୍ମକ ଶ୍ଳୋକ ଶୁଣାଇ କହୁଛନ୍ତି -

**ଉଦ୍ୟୋଗେ ନାସ୍ତି ଦାରିଦ୍ର୍ୟଂ ଜପତୋ ନାସ୍ତି ପାତକମ୍।**
**ମୌନେଚ କଳହୋ ନାସ୍ତି ନାସ୍ତି ଜାଗରିତେ ଭୟମ୍॥ (୩/୧୧)**

ଏ ଶ୍ଳୋକଟିର ଅର୍ଥ ହେଲା, ଯେଉଁ ବ୍ୟକ୍ତି ଉଦ୍ୟମଶୀଳ ଏବଂ ନାନାବିଧ ଉଦ୍‌ଯୋଗ କରୁଥାଏ, ସର୍ବଦା ଅନଳସ ଓ ପରିଶ୍ରମୀ, ସେ ନିଶ୍ଚୟ ଦାରିଦ୍ର୍ୟକୁ ଜୟ

କରେ। ସତ କଥା, ଧନ ଅର୍ଜନ କରିବାକୁ ହେଲେ କଠିନ ପରିଶ୍ରମ କରିବା ଦରକାର। ଜଣେ ଚାଷ କରୁ, କିମ୍ବା ବାଣିଜ୍ୟ କରୁ, କିମ୍ବା ଚାକିରୁ କରୁ, ସବୁ ବିଷୟରେ ଉନ୍ନତି କରିବାକୁ ହେଲେ କଠିଣ ପରିଶ୍ରମ ଦରକାର। ଯେଉଁ ବ୍ୟକ୍ତି ଓ ଯେଉଁ ଜାତି କର୍ମକୁଣ୍ଠ, ଅଳସୁଆ, କୌଣସି ପ୍ରକାରେ ଉଦ୍‌ଯୋଗ ନ କରି କେବଳ ଭାଗ୍ୟ ଉପରେ ବା ଅନ୍ୟ ଉପରେ ନିର୍ଭର କରି ବସିଥାଏ, ସେ ବ୍ୟକ୍ତି ଓ ଜାତି ନିଶ୍ଚୟ ଦରିଦ୍ର ହେବ। ତାକୁ ଯେତେ ସାହାଯ୍ୟ ସୁଯୋଗ ଓ ସହଯୋଗ ମିଳିଲେ ବି, ସେ କେବେ ଧନ ଅର୍ଜନ କରିପାରିବ ନାହିଁ। ସେ କେବେ ଦାରିଦ୍ର୍ୟରୁ ମୁକ୍ତ ହୋଇପାରିବ ନାହିଁ। ସେହିପରି ଯେଉଁ ବ୍ୟକ୍ତି ସର୍ବଦା ଭଗବାନ୍‌ଙ୍କୁ ଜପ କରୁଥାଏ, ଭଗବାନ୍‌ଙ୍କ ନାମ ଜପ କରୁଥାଏ ବା ଭଗବାନଙ୍କ ଲୀଳା କୀର୍ତ୍ତନ କରୁଥାଏ ଓ ଶ୍ରବଣ କରୁଥାଏ - ତା'ର ଦେହରେ ବା ପ୍ରାଣରେ ବା ମନରେ କେବେ ବି ପାପ ପ୍ରବେଶ କରିପାରିବ ନାହିଁ। ଭଗବାନ୍‌ଙ୍କଠାରେ ପ୍ରେମ ଓ ଭକ୍ତି ଥିଲେ ଏବଂ ତୁମେ ନିଜେ ତୁମ ନିଜକୁ ଓ ତୁମର ସବୁ କିଛିକୁ ଭଗବାନ୍‌ଙ୍କ ନିକଟରେ ସମର୍ପଣ କରି କେବଳ ତାଙ୍କୁ ଇ ପ୍ରତି ମୁହୂର୍ତ୍ତରେ ଭଜନ କରୁଥିଲେ, କୌଣସି ପ୍ରକାର ପାପ ପ୍ରବୃତ୍ତି ତୁମ ଭିତରକୁ ପଶିପାରିବ ନାହିଁ; କିମ୍ବା ତୁମକୁ ପାପ କାର୍ଯ୍ୟରେ ପ୍ରବର୍ତ୍ତାଇପାରିବ ନାହିଁ।

ଚାଣକ୍ୟ ପଣ୍ଡିତେ ପୁନଶ୍ଚ କହୁଛନ୍ତି, ଯଦି ତୁମେ ଠିକଣା ସମୟରେ ମୌନ ରହିପାରିବ, ଅର୍ଥାତ୍, ଜଣେ ତୁମ ସହିତ କଳହ କରିବାକୁ ଆରମ୍ଭ କରିବା ମାତ୍ରେ- ତୁମେ ଯଦି ତା' ସହିତ କ୍ରୋଧରେ ବାକ୍‌ବିତଣ୍ଡା ନ କରି ପାଟି ବନ୍ଦକରି ଚୁପ୍ ରହିପାରିବ, ତେବେ ଆଉ କଳହ ହେବ ନାହିଁ। ତୁମେ ଚୁପ୍ ରହିବା ଫଳରେ ଅପରପକ୍ଷ ବହୁତ ପାଟିତୁଣ୍ଡ କରି କରି ବଳେ ଚୁପ୍ ରହିଯିବ। ତେଣୁ ତୁମର ମୌନତା ଓ ନୀରବତା ଫଳରେ ତୁମେ ଏକ ମହାକଳହ ବା ସଂଘର୍ଷ ଏଡ଼ାଇ ଦେଇପାରିବ। ଶେଷ କଥାଟି ହେଲା, ଚାଣକ୍ୟ କହୁଛନ୍ତି, ସର୍ବଦା ଜାଗ୍ରତ ରହ। ତା'ଫଳରେ ତୁମ ମନ ଆଉ ଭୟଗ୍ରସ୍ତ ହେବ ନାହିଁ। କେବଳ ମନ ନୁହଁ, ଭୟର କାରଣଟି ମଧ୍ୟ ତୁମ ପାଖେ ପହଞ୍ଚିଯିବ ନାହିଁ। ପହଞ୍ଚିଲେ ବି, ତୁମର କିଛି କ୍ଷତି କରିପାରିବ ନାହିଁ। ଯେଉଁମାନେ ସର୍ବଦା ଅଜାଗ୍ରତ ଥାନ୍ତି ଅସତର୍କ ଥାନ୍ତି, ଅସାବଧାନ ଥାନ୍ତି, ସେମାନଙ୍କ ମନ ସର୍ବଦା ଆପଦବିପଦର ଆଶଙ୍କାରେ ବିଚଳିତ ହେଉଥାଏ ଏବଂ ସେମାନେ ମଧ୍ୟ ସତକୁ ସତ ଭୟଙ୍କର ଆପଦବିପଦରେ ପଡ଼ି ଭୟଗ୍ରସ୍ତ ହୁଅନ୍ତି। ତେଣୁ ସର୍ବଦା ଜାଗ୍ରତ ରହିବା ଉଚିତ। ପାଠକେ ! ଆମେ ବର୍ତ୍ତମାନ ଗୋଟିଏ ସତ୍ୟ ହୃଦୟଙ୍ଗମ କଲୁ। ତାହା ହେଲା, ଉଦ୍‌ଯୋଗ ନ କଲେ ଦାରିଦ୍ର୍ୟ ଦୂର ହେବ ନାହିଁ। ଭଗବାନ୍‌ଙ୍କୁ ସ୍ମରଣ ନ କଲେ ପାପର ଆକ୍ରମଣରୁ ନିଜକୁ ରକ୍ଷା କରିହେବ ନାହିଁ। ବାକ୍‌ସଂଯମ

ନ କଲେ ବା ଠିକ୍ ସମୟରେ ଚୁପ୍ ନ ରହିପାରିଲେ କେହି କଳହରୁ ନିବୃତ୍ତ ହୋଇପାରିବେ ନାହିଁ; ଏବଂ ଜାଗ୍ରତ ଓ ସର୍ବଦା ସତର୍କ ନ ରହିଲେ କେହି ଆପଦ ବିପଦର ଭୟ ଆଶଙ୍କାରୁ ମୁକ୍ତ ହୋଇପାରିବେ ନାହିଁ। ଦାରିଦ୍ର୍ୟ, ପାପ, କଳହ ଓ ଭୟ ଏହି ଚାରୋଟି ବିଷୟ ମନୁଷ୍ୟକୁ କେବଳ କଷ୍ଟ ଦିଏ ନାହିଁ, ମଣିଷକୁ ନିମ୍ନଗାମୀ ମଧ୍ୟ କରିଥାଏ। ଦରିଦ୍ର ମଣିଷର ପେଟ ସର୍ବଦା କ୍ଷୁଧାରେ ଜଳୁଥାଏ। ତା'ଭିତରେ ଥିବା କୌଣସି ଗୁଣର ବିକାଶ ହୋଇପାରେ ନାହିଁ। କ୍ଷୁଧା ଜର୍ଜରିତ ହୋଇ ବା ଦାରିଦ୍ର୍ୟଜନିତ ନାନାଦି ଅପାରଗତାରେ ସେ ସର୍ବଦା ମୂହ୍ୟମାନ ହୋଇପଡୁଥାଏ; ଏବଂ ସେ ଅବସ୍ଥାରେ ସେ ନାନାଦି ପାପ ମଧ୍ୟ କରିପାରେ।

ଦରିଦ୍ର ମଣିଷ ବହୁ ସମୟରେ ତା'ର ମାନସିକ ଓ ନୈତିକ ଭାରସାମ୍ୟ ମଧ୍ୟ ହରାଇଥାଏ। ସେ ସର୍ବଦା ହୀନମ୍ମନ୍ୟତା ଓ ଭୟ ଆଶଙ୍କା ଭିତରେ ରହିଥାଏ। ତେଣୁ ପ୍ରଥମ କଥା ହେଲା, କେହି ଯେପରି ଦରିଦ୍ର ନ ହେଉ। କିନ୍ତୁ ଉଦ୍‌ଯୋଗ ନ କଲେ, ପରିଶ୍ରମ ନ କଲେ, ନାନବିଧ ଉଦ୍ୟମରେ ଲାଗି ନ ରହିଲେ, କେହି ଧନ ଅର୍ଜନ କରିପାରିବେ ନାହିଁ; ଏବଂ ଦାରିଦ୍ର୍ୟର କଷାଘାତରୁ ମୁକ୍ତ ହୋଇପାରିବେ ନାହିଁ।



## ୩୩. ...ସର୍ବ ଶୂନ୍ୟା ଦରିଦ୍ରତା

ପାଠକେ! ଆପଣମାନଙ୍କ ମଧରୁ ଅନେକେ 'ଶୂନ୍ୟବାଦ' ଶବ୍ଦଟି ନିଶ୍ଚୟ ଶୁଣିଥିବେ। ନିର୍ବାଣ ସାଧନାର ଗୁରୁ ବୁଦ୍ଧଦେବ କହିଥିଲେ, ଏ ଜଗତର କୌଣସି ସ୍ଥାୟୀ ଅସ୍ତିତ୍ୱ ନାହିଁ। ଆତ୍ମା ବା ବ୍ରହ୍ମ ବୋଲି ମଧ କିଛି ନାହିଁ। ଭଗବାନ୍‌ଙ୍କର ମଧ ଅସ୍ତିତ୍ୱର କିଛି ପ୍ରମାଣ ନାହିଁ। ଏ ଜଗତ ଶୂନ୍ୟରୁ ଆସିଛି ଓ ଶେଷରେ ଏହା ଶୂନ୍ୟରେ ହିଁ ମିଳାଇଯିବ। ଜୀବଜନ୍ତୁ ଓ ମଣିଷ ସମସ୍ତଙ୍କ ଜୀବନ ମଧ ସେହିପରି ଶୂନ୍ୟରୁ ଆସିଛି ଓ ଶେଷରେ ଶୂନ୍ୟରେ ମିଳାଇଯିବ। ଏହି ଅନନ୍ତ ମହାକାଶ ଶୂନ୍ୟ ଏବଂ ସବୁ କିଛି ସେହି ଶୂନ୍ୟରୁ ଆସିଛି ଓ ଶୂନ୍ୟରେ ମିଶିଯିବ। ଅଗ୍ନି ଯେପରି ଶୂନ୍ୟରେ ଜଳିଉଠି, ପୁଣି ଶୂନ୍ୟରେ ଲିଭିଯାଏ, ସେହିପରି ଏ ଜୀବନ ମଧ ଶୂନ୍ୟରୁ ଆଗତ ଏବଂ ସେହି ଶୂନ୍ୟରେ ଇ ଲିଭିଯିବ।

କିନ୍ତୁ ମହାମତି ଚାଣକ୍ୟ ପଣ୍ଡିତେ ଏହି ଶ୍ଳୋକରେ ସେହି ଶୂନ୍ୟବାଦ ଦାର୍ଶନିକତତ୍ତ୍ୱ ସମ୍ବନ୍ଧେ କହୁ ନାହାନ୍ତି। ତାଙ୍କର ଶ୍ଳୋକଟି ହେଲା -

**ଅପୁତ୍ରସ୍ୟ ଗୃହଂ ଶୂନ୍ୟଂ ଦିଶଃ ଶୂନ୍ୟାସ୍ତ୍ୱବାନ୍ଧବାଃ ।**
**ମୂର୍ଖସ୍ୟ ହୃଦୟଂ ଶୂନ୍ୟଂ ସର୍ବଶୂନ୍ୟା ଦରିଦ୍ରତା ।। (୪/୧୪)**

ଶ୍ଳୋକଟିର ଅର୍ଥ ହେଲା, ଯେଉଁ ବ୍ୟକ୍ତିର ପୁତ୍ର ବା ପୁତ୍ରୀ ନ ଥାନ୍ତି, ତା'ପାଇଁ ତା'ର ଘର ଶୂନ୍ୟ ମନେହୋଇଥାଏ । କାରଣ ସେ ତା'ର ଭବିଷ୍ୟତ୍ ଶୂନ୍ୟ ଭଳି ଭାବେ । ତା' ନିଜ ଘର ମଧ୍ୟ ତାକୁ ଖାଁ ଖାଁ ଗୋଡ଼ାଏ । ଯେଉଁ ବ୍ୟକ୍ତିର ବନ୍ଧୁବାନ୍ଧବ ନ ଥାନ୍ତି ବା ବନ୍ଧୁବାନ୍ଧବ ତାକୁ ଛାଡ଼ି ଅନ୍ୟତ୍ର ବା ଆରପୁରକୁ ଚାଲିଯାଇଥାନ୍ତି, ସେଇ ନିର୍ବାନ୍ଧବ ଲୋକଟି ପକ୍ଷରେ ଚାରିଦିଗ ଶୂନ୍ୟମୟ । ତା' ମାନେ ସେ ଲୋକଟିର ଆଖି ଆଉ କୁଆଡ଼କୁ ପାଏ ନାହିଁ । ତା'ର ମନେହୁଏ, ସତେକି ଏଇ ପୃଥିବୀରେ ତା'ର ନିଜରହୋଇ ଆଉକେହି ନାହାନ୍ତି ।

ସେହିପରି ଯେଉଁ ବ୍ୟକ୍ତି ମୂର୍ଖ ଯେ ଅଜ୍ଞାନ, ଯାହାଙ୍କୁ କୌଣସି ବିଦ୍ୟା ଜଣା ନାହିଁ, ଯେ କୌଣସି ଶାସ୍ତ୍ର ଅଧ୍ୟୟନ କରି ନାହିଁ, ଅଥବା କାହା ତୁଣ୍ଡରୁ କିଛି ଜ୍ଞାନପୂର୍ଣ୍ଣ ବାଣୀ ଶୁଣି ନାହିଁ, ତା'ର ହୃଦୟ ସର୍ବଦା ଶୂନ୍ୟ ଥାଏ । ଏଠାରେ ଚାଣକ୍ୟ ପଣ୍ଡିତ ହୃଦୟ ଅର୍ଥରେ ଚିତ୍ତ ବା ମନକୁ ମଧ୍ୟ ଗ୍ରହଣ କରିଛନ୍ତି । ଅଜ୍ଞାନ ଅପାଠୁଆ ଲୋକର ହୃଦୟରେ ଖୁବ୍ ଗଭୀର ଓ ଉନ୍ନତ ଅନୁଭବମାନ ଆସେ ନାହିଁ । ତା'ର ମନ ଭିତରକୁ ମଧ୍ୟ କୌଣସି ଚିନ୍ତା, ଭାବନା ବା ଆଦର୍ଶ ପ୍ରବେଶ କରିପାରେ ନାହିଁ । ସେ ଗୋଟିଏ ଜଡ଼ ତୁଲ୍ୟ ମଣିଷ । ଜ୍ଞାନ ଅର୍ଜନ ନ କଲେ କାହାର ବି ମନ ଓ ହୃଦୟ କର୍ଷିତ ହେବ ନାହିଁ । ସମ୍ବେଦନଶୀଳ ହୋଇପାରିବ ନାହିଁ । ସେ ନିଜେ କିଛି ବୁଝିପାରିବ ନାହିଁ । ଆଉ କାହାକୁ ମଧ୍ୟ କିଛି ବୁଝାଇପାରିବ ନାହିଁ । ସେ ଗୋଟିଏ ଫମ୍ପା ହାଣ୍ଡି ବା ଖାଲି ମାଠିଆଟିଏ ଭଳି ମଣିଷ । ତାକୁ ମନେହୁଏ, ସେ ନିଜେ ଶୂନ୍ୟ ଓ ତା'ର ଚାରିପଟ ବି ଶୂନ୍ୟ । ସେ ସବୁ ଦେଖି ମଧ୍ୟ ଦେଖିପାରେ ନାହିଁ । ସବୁ ଶୁଣି ମଧ୍ୟ କିଛି ଶୁଣିପାରେ ନାହିଁ । ସେ ତା'ର ଆଖି ଆଗରେ କୋଣାର୍କ ମନ୍ଦିର ବା ତାଜମହଲ ଦେଖୁଛି ମାତ୍ର ସେ ସମ୍ବନ୍ଧେ ତା'ର କିଛି ଜ୍ଞାନ ନ ଥିବାରୁ ସେ ଏଇ ଦୁଇଟିକୁ କେବଳ ଦୁଇଟି ଅଟ୍ଟାଳିକା ବୋଲି ଭାବେ । ସେହିପରି ତା' କାନରେ ହୁଏତ ଖୁବ୍ ବଡ଼ ବଡ଼ ସଙ୍ଗୀତଜ୍ଞଙ୍କର ଉଚ୍ଚାଙ୍ଗ ସଙ୍ଗୀତ ଶୁଣାଯାଉଛି । ମାତ୍ର ସେ ସବୁ ତାକୁ ମନେହୁଏ - ସାଧାରଣ ସ୍ୱରଶବ୍ଦ ଭଳି । କାରଣ ଉଚ୍ଚାଙ୍ଗ ସଙ୍ଗୀତ ସମ୍ବନ୍ଧେ ସେ କିଛି ଜାଣେ ନାହିଁ । ଏବଂ ଶେଷରେ ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଦରିଦ୍ର ମଣିଷ ପକ୍ଷରେ ସବୁକିଛି ଶୂନ୍ୟ ମନେହୁଏ । ଜଣେ ଯେତେ ବଡ଼ ଗୁଣୀବ୍ୟକ୍ତି ହୋଇଥାଉ ବା ଯେତେବଡ଼ ପ୍ରତିଭା ନେଇ ଜନ୍ମିଥାଉ, ଅଥବା ଯେତେବଡ଼ ସମ୍ଭ୍ରାନ୍ତ ବଂଶରେ ଜନ୍ମିଥାଉ ପଛକେ, ତା'ର ଯଦି ଧନ ନାହିଁ, ତା'ର ଯଦି ଦିନରାତି ଅନ୍ନବସ୍ତ୍ର ଓ ବାସ ଚିନ୍ତା

ରହିଲା, ସେଇ ହତଭାଗ୍ୟ ଦରିଦ୍ର ଲୋକଟି ପକ୍ଷେ ସରା ଜୀବନ ଶୂନ୍ୟ ଓ ସାରା ପୃଥିବୀ ମଧ୍ୟ ଶୂନ୍ୟ ମନେହୋଇଥାଏ। ଧନହୀନ ବ୍ୟକ୍ତିପାଇଁ ତା'ନିଜର ମନ ଓ ହୃଦୟ ମଧ୍ୟ ଶୂନ୍ୟ ହୋଇଯାଏ।



## ୩୪. ବିଷକୁମ୍ଭଂ ପୟୋମୁଖମ୍...

ମହାମତି ଚାଣକ୍ୟ ସଦ୍‌ବନ୍ଧୁ ଓ ଅସତ୍‌ବନ୍ଧୁ ବିଷୟରେ କହିବାକୁ ଯାଇ ଗୋଟିଏ ବାସ୍ତବ ଦୃଷ୍ଟାନ୍ତ ଦେଉଛନ୍ତି। ଦୃଷ୍ଟାନ୍ତଟି ହେଲା - 'ବିଷକୁମ୍ଭ ପୟୋମୁଖ'। ତା' ଅର୍ଥ ଗୋଟିଏ ବିଷପୂର୍ଣ୍ଣ ମାଠିଆର ଉପରିଭାଗରେ ଦୁଗ୍ଧ ରହିଛି। ଯଦି ଜଣେ ସେ ମାଠିଆ ମୁହଁରେ ଦୁଗ୍ଧ ଦେଖି ସେଇ ବିଶ୍ୱାସରେ ତାକୁ ପିଇଦିଏ, ତେବେ ସେ ନିଶ୍ଚୟ କିଛି ସମୟ ପରେ ବିଷଜ୍ୱାଳାରେ ଛଟପଟହୋଇ ମରିବ। ଦୁଷ୍ଟ ବା ଖଳ ପ୍ରକୃତିର ଲୋକେ ତାଙ୍କ ଶତ୍ରୁକୁ ମାରିବାପାଇଁ କିମ୍ବା ନୀଚ ସ୍ୱାର୍ଥସାଧନା ଲାଗି ଏହିପରି ପ୍ରତାରଣା କରିଥାନ୍ତି। ବିଶେଷତଃ ଅନ୍ୟର ବିଶ୍ୱାସ ଜନ୍ମାଇ ଖାଇବା ପଦାର୍ଥରେ ବିଷ ମିଶାଇ ତାକୁ ସୁସ୍ୱାଦୁ ଖାଦ୍ୟ ଦିଅନ୍ତି ଏବଂ ସେ ବିଚରା ସୁସ୍ୱାଦୁ ଖାଦ୍ୟର ଛଳନାରେ ବିଷଖାଇ ମୃତ୍ୟୁବରଣ କରେ।

ପାଠକେ ! ଏପରି ଛଳବିଷ ପ୍ରୟୋଗ କରି - ମାନେ ଚାହା ବା ବିସ୍କୁଟ୍ ବା ରସଗୋଲାରେ ବିଷ ବା ତୀବ୍ର ବିଷ ମିଶାଇ ଚୋର ଡକାଏତମାନେ ଟ୍ରେନ୍ ବା ବସ୍‌ରେ ଯାତ୍ରୀମାନଙ୍କୁ ବିଶ୍ୱାସ ଜନ୍ମାଇ ଖାଇବାକୁ ଦିଅନ୍ତି; ଏବଂ କିଛିସମୟ ପରେ ବିଷର ପ୍ରତିକ୍ରିୟାରେ ଯାତ୍ରୀଟି ଅଚେତ ହୋଇଗଲେ ଚୋରମାନେ ତା'ର ସର୍ବସ୍ୱ ଲୁଟିନେଇ ପଳାଇଯାନ୍ତି। ଏଭଳି ଘଟଣା କେବଳ ଆଜି ନୁହଁ, ସବୁ ଯୁଗରେ ଘଟିଆସିଛି ଓ ଏବେବି ଘଟୁଛି। କିନ୍ତୁ ଲୋକପ୍ରକୃତି ଅନୁଧ୍ୟାନୀ ବିଚକ୍ଷଣ ବୁଦ୍ଧି ଚାଣକ୍ୟ ପଣ୍ଡିତେ ଏହି ନିଦର୍ଶନଟିକୁ ବନ୍ଧୁ ନିର୍ବାଚନ ବ୍ୟାପାରରେ ପ୍ରୟୋଗ କରୁଛନ୍ତି। ସେ କହୁଛନ୍ତି -

**ପରୋକ୍ଷେ କାର୍ଯ୍ୟହନ୍ତାରଂ ପ୍ରତ୍ୟକ୍ଷେ ପ୍ରିୟବାଦିନମ୍।**
**ବର୍ଜୟେତ୍‌ତାଦୃଶଂ ମିତ୍ରଂ, ବିଷକୁମ୍ଭଂ ପ୍ରୟୋମୁଖମ୍॥ (୨/୫)**

ତା' ଅର୍ଥ ହେଲା - ଯେଉଁ ବନ୍ଧୁ ତୁମ ଅଜ୍ଞାତରେ ତୁମର କାର୍ଯ୍ୟରେ ବିଘ୍ନ ଘଟାଉଥାଏ; କିନ୍ତୁ ତୁମ ଆଗରେ ଅତି ମଧୁର କଥା କହି ତୁମ ମନ ତୋଷିବାକୁ ଚେଷ୍ଟା କରୁଥାଏ, ସେହିପରି ବନ୍ଧୁକୁ ବିଷକୁମ୍ଭ ପୟୋମୁଖ ବୋଲି ଭାବି ଶୀଘ୍ର ପରିତ୍ୟାଗ

କରିବ। ତା'ର ପାଖ ମାଡ଼ିବ ନାହିଁ କି ତାକୁ ମଧ ତୁମ ପାଖ ମଡ଼ାଇ ଦେବ ନାହିଁ। କାରଣ ସେ ଗୋଟିଏ ସ୍ୱାର୍ଥପର ପ୍ରତାରକ ମଣିଷ। ଏପରି ଲୋକ କାହାର ବନ୍ଧୁ ହୋଇପାରିବେ ନାହିଁ। ଏହି ବନ୍ଧୁ ବାଛିବା ପ୍ରସଙ୍ଗ ନେଇ ଚାଣକ୍ୟ ଆଉ ଗୋଟିଏ ଶ୍ଳୋକ କହୁଛନ୍ତି,

> ନ ବିଶ୍ୱସେତ୍ କୁମିତ୍ରେ ଚ, ମିତ୍ରେଚାଽପି ନ ବିଶ୍ୱସେତ୍।
> କଦାଚିତ୍ କୁପିତଂ ମିତ୍ରଂ ସର୍ବଂ ଗୁହ୍ୟଂ ପ୍ରକାଶୟେତ୍' ॥ (୨/୬)

ଅର୍ଥାତ୍ ତୁମର ବନ୍ଧୁ ଖୁବ୍ ଭଲ ଲୋକ ହୋଇପାରନ୍ତି ଏବଂ ତୁମର ଅନ୍ୟ ଜଣେ ବନ୍ଧୁ ଖରାପ ଲୋକ ହୋଇପାରନ୍ତି। କିନ୍ତୁ ତୁମେ ଏଭଳି ବନ୍ଧୁଦ୍ୱୟଙ୍କୁ ଯେତେ ଭଲପାଉଛ ଭଲପାଅ। କିନ୍ତୁ ସେ ଦୁଇଜଣଯାକ ବନ୍ଧୁଙ୍କୁ କେବେ ସଂପୂର୍ଣ୍ଣ ଭାବେ ବିଶ୍ୱାସ କରିବ ନାହିଁ; ଏବଂ ସେମାନଙ୍କୁ ତୁମର କୌଣସି ଗୁପ୍ତକଥା କହିବ ନାହିଁ। କାରଣ ଯୋଉ ଖରାପ ମଣିଷଟିକୁ ତୁମେ ବନ୍ଧୁ ଭାବେ ଭଲ ପାଉଛ ଏବଂ ସେ ମଧ ତୁମକୁ କେତେ ପରିମାଣରେ ଭଲ ପାଉଛି - ମାତ୍ର ତା'ର ଯେତେବେଳେ ରାଗଟେଲା ପହଞ୍ଚିବ - ଅର୍ଥାତ୍ ସେ ଯେତେବେଳେ କୌଣସି କାରଣରୁ କ୍ରୁଦ୍ଧ ହେବ ସେତେବେଳେ ସେ ଉତ୍ୟକ୍ତ ଓ ଉତ୍ତେଜିତ ହୋଇ ତୁମର ସବୁ ଗୁପ୍ତକଥା ଅନ୍ୟ ଆଗରେ ଖୋଲିଦେବ ତୁମ ପ୍ରତି ସେତେବେଳେ ତା'ର ସବୁ ଦୟାମାୟା ଚାଲିଯିବ ଏବଂ ସେ ତୁମର ମାନଇଜ୍ଜତ୍ ମଧ ତଳେ ପକାଇ ଦେବାକୁ ପଛେଇବ ନାହିଁ। ଏପରିକି, ସେ କ୍ରୋଧ-ପ୍ରବୃତ୍ତି ଦ୍ୱାରା ତାଡ଼ିତ ହୋଇ ତୁମର ଜୀବନ - ସଂଶୟର ମଧ କାରଣ ହୋଇଯାଇପାରେ।

ପାଠକେ! ଆପଣମାନେ କେବେ ଭାବିବେ ନାହିଁ ଯେ, ଚାଣକ୍ୟ 'ବିଶ୍ୱାସ' ଉପରେ କୁଠାରାଘାତ କରୁଛନ୍ତି। ଆଧାତ୍ମିକ ଚେତନା ଓ ସାଧନାରେ ବିଶ୍ୱାସକୁ ଖୁବ୍ ବଡ଼ ସ୍ଥାନ ଦିଆଯାଇଛି। 'ଅବିଶ୍ୱାସ' ମଣିଷର ମନକୁ କ୍ଷୁଦ୍ର, ନୀଚ ଓ ନାସ୍ତି ଭାବରେ ଦୂଷିତ  କରିଦିଏ। ତେବେ ଆମର କାହାକୁ ଅବିଶ୍ୱାସ କରିବା ଉଚିତ ନୁହେଁ ବୋଲି ଆମେ ସମସ୍ତଙ୍କୁ ଅନ୍ଧଭାବରେ ବିଶ୍ୱାସ କରି ତା' ଆଗରେ ଆମର ଗୁପ୍ତକଥା ସବୁ ଭାବାବେଗରେ ଖୋଲି କହିଦେବା ଉଚିତ ନୁହଁ। କାରଣ ମଣିଷ ମାତ୍ରେଇ କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଦ୍ୱାରା ଆକ୍ରାନ୍ତ ହୋଇଥାନ୍ତି। ଆମ ଭଳି ମଣିଷମାନେ କ'ଣ ଯୋଗୀ, ମୁନି ହୋଇଛନ୍ତି। ଆମେ ସବୁ ସାଧାରଣ ମଣିଷ। ନାନାଦି ଦୁର୍ବଳତା ଆମର ରହିଛି। ତେଣୁ ଯେତେ ପ୍ରିୟ ବନ୍ଧୁ ବା ବାନ୍ଧବୀ ହେଲେ ବି, ଆମେ ବାଚାଳଙ୍କ ପରି ତା' ଆଗରେ ଆମର ସବୁ କିଛି ଗୁପ୍ତକଥା ଖୋଲି

କହିଦେବା ଉଚିତ ନୁହଁ। କାରଣ ସେହି ପ୍ରିୟବନ୍ଧୁର ତୁମ ପ୍ରତି କୌଣସି ଖରାପ ଉଦ୍ଦେଶ୍ୟ ନ ଥାଇପାରେ; କିନ୍ତୁ ସେ କ୍ରୋଧ ଲୋଭାଦି ପ୍ରବୃତ୍ତିର ଅଧୀନ ନିଶ୍ଚୟ; ଏବଂ କ୍ରୋଧ-ଲୋଭ-କାମ ପ୍ରବୃତ୍ତି ବଳବତ୍ତର ହେଲେ ମଣିଷର ସୁବୁଦ୍ଧି ହଜିଯାଏ। ତାକୁ କୁବୁଦ୍ଧି ଘୋଟିଯାଏ। ସେତେବେଳେ ସେ କ'ଣ କରିବ ବା ନ କରିବ ତାହା ଆଗରୁ କେବେ କହିହେବ ନାହିଁ।

ସେଥିପାଇଁ ବହୁଦର୍ଶୀ ଚାଣକ୍ୟ ପଣ୍ଡିତେ ଆମକୁ ସାବଧାନ ବାଣୀ ଶୁଣାଇଛନ୍ତି। ବାଚାଳଙ୍କ ପରି ଅପରିଣାମଦର୍ଶୀ ହୋଇ କାହା ଆଗେ ତୁମର ଗୁପ୍ତକଥା ବା ଗୁମର କଥା ଖୋଲିଦିଅ ନାହିଁ।



## ୩୫. ଅକର୍ତ୍ତବ୍ୟ ଓ ଅବିଶ୍ୱାସ

**ଯୋ ଧ୍ରୁବାଣି ପରିତ୍ୟଜ୍ୟ ଅଧ୍ରୁବଂ ପରିଷେବତେ।**
**ଧ୍ରୁବାଣି ତସ୍ୟ ନଶ୍ୟନ୍ତି ଅଧ୍ରୁବଂ ନଷ୍ଟମେବଚ॥ (୧/୧୩)**

ପାଠକେ! ଏହି ଶ୍ଳୋକଟିରେ ମହାମତି ଚାଣକ୍ୟ ମହାଶୟ କର୍ମପଦ୍ଧତିର ଏକ ବାସ୍ତବ ସର୍ତ୍ତ ସମ୍ପର୍କରେ କହୁଛନ୍ତି। ତାହା ହେଲା ଯେଉଁ ବ୍ୟକ୍ତି ଗୋଟିଏ ନିଶ୍ଚିତ ବସ୍ତୁ ବା ବିଷୟକୁ କରଗତ ନ କରି ବା କାର୍ଯ୍ୟକାରୀ ନ କରି ଆଉ ଏକ ଅନିଶ୍ଚିତ ବସ୍ତୁ ବା ବିଷୟ ପଛରେ ଧାଏଁ ସେ ବ୍ୟକ୍ତିର ନିଶ୍ଚିତ ବସ୍ତୁଟି ତ ହାସଲ ହୋଇପାରେ ନାହିଁ, ଅନ୍ୟପକ୍ଷରେ ଅନିଶ୍ଚିତ ବସ୍ତୁଟି ମଧ ହାତରୁ ଖସିଯାଏ। ତା' ମାନେ ସେହି ଅପରିଣାମଦର୍ଶୀ ଚଞ୍ଚଳଚିତ୍ତ ବ୍ୟକ୍ତି ଦୁଇଆଡୁ କ୍ଷତିଗ୍ରସ୍ତ ହୁଏ। ଉଦାହରଣଟିଏ ଦିଆଯାଉ। ମନେକର - ତୁମର ଆସନ୍ତାକାଲି ଦଶହଜାର ଟଙ୍କା ନିତାନ୍ତ ଆବଶ୍ୟକ ପଡୁଛି। ତୁମେ ତୁମର ଜଣେ ବନ୍ଧୁଙ୍କୁ ଦଶହଜାର ଟଙ୍କା ଧାର ମାଗିଲ। ସେ କହିଲେ, ଆସନ୍ତାକାଲି ସକାଳ ନଅଟାରେ ଆସିବ। ମୁଁ ଟଙ୍କା ଦେଇଦେବି। କିନ୍ତୁ ଦେଖ! ଡେରି କରିବ ନାହିଁ। ବନ୍ଧୁଠାରୁ ଏତେକ ପ୍ରତିଶ୍ରୁତି ପାଇଲା ପରେ ବି ତୁମ ମନରେ ଆଶଙ୍କା ହେଲା, କାଳେ ସେ ଆସନ୍ତାକାଲି ସକାଳେ ଦଶହଜାର ଟଙ୍କା ଦେଇ ନ ପାରିବ! ଏହା ଭାବି ତୁମେ ତୁମର ଆଉ ଜଣେ ବନ୍ଧୁଙ୍କ ନିକଟକୁ ସେତେକ ଟଙ୍କା ପାଇବାପାଇଁ ଗଲ। ସେ ବନ୍ଧୁଙ୍କ ଘର ବେଶ୍ କିଛି ଦୂରରେ। ବସରେ ଯିବାକୁ ହୁଏ। ତୁମେ ସେ ବନ୍ଧୁଙ୍କୁ କହିଲାମାତ୍ରେ, ସେ କହିଲେ ଆସନ୍ତାକାଲି ଅପରାହ୍ଣ ତିନିଟା ବେଳେ ଆସ।

ଟଙ୍କାତକ ଦେଇଦେବି। ସେଦିନ ରାତି ପାହି ସକାଳ ହେଲା। ତୁମର ନିକଟତମ ବନ୍ଧୁଙ୍କ ପାଖକୁ ସକାଳ ନଅଟା ସୁଦ୍ଧା ଯାଇ ଟଙ୍କାତକ ଆଣିବା କଥା। କିନ୍ତୁ ତମେ ଭାବିଲ, ଏ ବନ୍ଧୁ ତ ଟଙ୍କା ଦେବେ କହିଛନ୍ତି। ଏ ମଧ୍ୟ ଆମ ଘର ପାଖର। ଯେତେବେଳେ ଯାଇ ଟଙ୍କା ଆଣିପାରିବି। ଆଗ ଦୂର ବନ୍ଧୁ ପାଖକୁ ଯାଇ ଦେଖେ। ସେଠୁ ଯଦି ଟଙ୍କାତକ ମିଳିଯାଏ - ତେବେ ଦୁଇବନ୍ଧୁଙ୍କ ଟଙ୍କା ମିଶି କୋଡ଼ିଏ ହଜାର ପାଇଯିବି। ଏହା ଭାବି ତୁମେ ସକାଳ ନଅଟାରେ ପାଖ ବନ୍ଧୁ ଘରକୁ ନ ଯାଇ ବସ୍‌ରେ ବସି ଦୂରବନ୍ଧୁ ଘରକୁ ଗଲ। ଦୁଇଘଣ୍ଟା ପରେ ତୁମେ ସେହି ଦୂର ବନ୍ଧୁଙ୍କ ଘରେ ପହଞ୍ଚିଗଲ। ମାତ୍ର ଯାଇ ଶୁଣିଲ ଯେ - ତୁମର ସେ ବନ୍ଧୁଜଣକ ସକାଳେ ଏକ ମୋଟର ଦୁର୍ଘଟଣାରେ ଆହତ ହୋଇ ଡାକ୍ତରଖାନାରେ ପଡ଼ିଛନ୍ତି। ତୁମେ ଆଉ ଟଙ୍କା କଥା ନ ଭାବି ମନ ଦୁଃଖରେ ଘରକୁ ଫେରିଆସିଲ। ସେତେବେଳକୁ ଦିନ ଦୁଇଟା ବାଜିଲାଣି। ତୁମେ ତୁମ ନିକଟତମ ବନ୍ଧୁଘରକୁ ଟଙ୍କା ମାଗିବାକୁ ଗଲ। ମାତ୍ର ହାୟ! ତାଙ୍କ ଘରେ ପହଞ୍ଚି ଶୁଣିଲି ଯେ - ସେ ବନ୍ଧୁଜଣକ ସକାଳ ଏଗାରଟା ତିରିଶରେ ଟ୍ରେନ୍ ଯୋଗେ ଚେନ୍ନାଇ ବାହାରି ଗଲେଣି। ତୁମେ ଆଉ ଟଙ୍କା କଥା ଭାବିବ କ'ଣ? ଦୁଃଖରେ ଦୀର୍ଘଶ୍ୱାସ ପକାଇ କାନମୁଣ୍ଡା ଆଉଁଶି ତଳକୁ ମୁହଁ ପୋତି ନିଜ ଘରକୁ ଫେରିଆସିଲ। ଘରେ ଆସି ନିରାଶ ମନରେ ଖଟ ଉପରେ ପଡ଼ିଯାଇ ଭାବିଲ, ହାୟ ମୁଁ କି ମୂର୍ଖ! ଘରପାଖର ବନ୍ଧୁ ସକାଳ ନଅଟାରେ ଆସି ଟଙ୍କା ନେଇଯିବାକୁ କହିଥିଲେ। ମାତ୍ର ମୁଁ କି ମୂଢ଼! ବର୍ତ୍ତମାନ ମୁଁ ଏ ଟଙ୍କା ହରାଇଲି। ଦୂର ବନ୍ଧୁଙ୍କ ଟଙ୍କା ମଧ୍ୟ ହରାଇଲି। ଯାହା ନିଶ୍ଚିତ ଥିଲା, ମୋର ଆଗ ସେତେକ ହାସଲ କରିବାର ଥିଲା। ସେଠୁ ଯଦି ଟଙ୍କା ନ ପାଇଥାନ୍ତି, ତେବେ ଦୂର ବନ୍ଧୁଙ୍କ ପାଖକୁ ଯାଇଥାନ୍ତି। ବର୍ତ୍ତମାନ ମୋର ଏଇ କିଂକର୍ତ୍ତବ୍ୟବିମୂଢ଼ତା ଯୋଗୁଁ ମୁଁ ଉଭୟ ହରାଇଲି ଓ ଉଭୟ ଆଡୁ କ୍ଷତିଗ୍ରସ୍ତ ହେଲି।

ପାଠକେ! ବର୍ତ୍ତମାନ ଆମେ ଚାଣକ୍ୟଙ୍କର ଆଉ ଗୋଟିଏ ନୀତି ଶ୍ଳୋକର ଯଥାର୍ଥତା ଦେଖିବା। ଚାଣକ୍ୟ ପଣ୍ଡିତେ ଏ ଜଗତରେ ନିରାପଦରେ ଚଳିବାକୁ ହେଲେ କାହା କାହାକୁ ବିଶ୍ୱାସ କରିବ ନାହିଁ ତା'ର ତାଲିକା ଶୁଣାଇଛନ୍ତି।

**ନଦୀନାଂ ଶସ୍ତ୍ରପାଣୀନାଂ ନଖିନାଂ ଶୃଙ୍ଗିଣାଂ ତଥା।**
**ବିଶ୍ୱାସୋ ନୈବ କର୍ତ୍ତବ୍ୟଃ ସ୍ତ୍ରୀଷୁ ରାଜକୁଳେଷୁ ଚ ।। (୧/୧୫)**

ଅର୍ଥାତ୍ - ହେ ସଂସାରୀ ଲୋକମାନେ! ତୁମ୍ଭେମାନେ ନିରାପଦରେ ବଞ୍ଚିବାକୁ ହେଲେ ନଦୀକୁ ବିଶ୍ୱାସ କରିବ ନାହିଁ। କାରଣ, ନଦୀରେ ନାନାଦି ଜଳଜନ୍ତୁ ଲୁଚିକରି

ଥା'ନ୍ତି। ସେମାନେ ତୁମର କ୍ଷତି କରିପାରନ୍ତି। ନଦୀରେ କେଉଁଠି ଅଳପ ପାଣି ତ କେଉଁଠି ଗଭୀର ଗଣ୍ଡ ରହିଛି - ତୁମକୁ ଜଣା ନ ଥାଏ। ନଦୀ ଯଦି ସମୁଦ୍ର ପାଖ ହୋଇଥାଏ - ତେବେ ତା' ଭିତରକୁ କେତେବେଳେ ସମୁଦ୍ରରୁ ଜୁଆର ମାଡ଼ିଆସିବ - ତୁମେ ଜାଣିପାରିବ ନାହିଁ। ତା'ଛଡ଼ା ବନ୍ୟାପୂର୍ଣ୍ଣ ନଦୀ ମଧ୍ୟ ଅତ୍ୟନ୍ତ ସ୍ରୋତମୁଖର ଓ ଭୟଙ୍କର ହୋଇଥାଏ। ତେଣୁ ନଦୀକୁ ବିଶ୍ୱାସ କରିବ ନାହିଁ। ସାବଧାନରେ ନଦୀ ପାର ହେବ। ସେହିପରି ଯେଉଁ ଲୋକ ତା' ହାତରେ ଛୁରୀ, ଭୁଜାଲି, ଖଣ୍ଡା, ବର୍ଚ୍ଛା, ବନ୍ଧୁକାଦି ଧରିଥିବ - ତାକୁ ମଧ୍ୟ ସହଜରେ ବିଶ୍ୱାସ ନ କରି ତା' ପାଖରୁ ଦୂରରେ ରହିବ। ତା'ପରେ ଯେଉଁ ଇତର ପ୍ରାଣୀମାନଙ୍କ ଚାରି ପାଦରେ ତୀକ୍ଷ୍ଣ ନଖମାନ ଥିବ ଏବଂ ଯେଉଁ ପ୍ରାଣୀମାନଙ୍କ ମୁଣ୍ଡରେ ମୁନିଆ ବଡ଼ ବଡ଼ ଶିଙ୍ଗ ଥିବ - ସେମାନଙ୍କୁ ମଧ୍ୟ ବିଶ୍ୱାସ କରିବ ନାହିଁ। ଦୂରରେ ରହିବ। କାରଣ ଅସ୍ତ୍ରଧାରୀ ମଣିଷମାନେ ଓ ଶୃଙ୍ଗ, ନଖ ଥିବା ପ୍ରାଣୀମାନେ କେତେବେଳେ ଯେ ତୁମକୁ ଆକ୍ରମଣ କରି ମାରି ନ ଦେବେ - ତା'ର ଠିକଣା ନାହିଁ। ଚାଣକ୍ୟ ପୁନଶ୍ଚ କହୁଛନ୍ତି - ରାଜକର୍ମଚାରୀ ବା ସରକାରୀ କର୍ମଚାରୀମାନଙ୍କୁ ମଧ୍ୟ ବିଶ୍ୱାସ କରିବ ନାହିଁ। ସେମାନଙ୍କ ହାତରେ ରାଜକ୍ଷମତା ଅଛି। ସେମାନେ ଯଦି କୌଣସି କାରଣରୁ ତୁମ ଉପରେ ରୁଷ୍ଟ ହୁଅନ୍ତି, ତେବେ ତୁମକୁ ଯେକୌଣସି ମିଥ୍ୟା ଅପରାଧ ଦେଖାଇ ହଇରାଣ କରିପାରନ୍ତି। ଶେଷରେ ଚାଣକ୍ୟ ପଣ୍ଡିତ କହୁଛନ୍ତି, ସ୍ତ୍ରୀଲୋକମାନଙ୍କୁ ମଧ୍ୟ ସହଜରେ ବିଶ୍ୱାସ କରିବ ନାହିଁ। କାରଣ ସେମାନେ ନାନାଦି ଛଳନା, କୂଟକପଟ ଓ ମାୟାଜାଲ ବିସ୍ତାର କରି ଏବଂ କଦର୍ଯ୍ୟ ପ୍ରଲୋଭନ ଦେଖାଇ ପୁରୁଷମାନଙ୍କୁ ନାନା ଆପଦବିପଦରେ ପକାଇଦିଅନ୍ତି। ପାଠକେ ! ଚାଣକ୍ୟ ପଣ୍ଡିତଙ୍କର ଏ କଥାଟି ସହିତ ଆମେ ଏକମତ ହୋଇପାରୁନାହୁଁ। ଆମ ସମାଜରେ ଗୋଟେ ସମୟ ଥିଲା - ଯେତେବେଳେ ସେହି ପୁରୁଷପ୍ରଧାନ ସମାଜରେ ନାରୀ ପ୍ରତି ଓ ତା'ର ଚରିତ୍ର ଏବଂ ବ୍ୟକ୍ତିତ୍ୱ ପ୍ରତି ବଡ଼ ଅବିଚାରିତ ଭୁଲ ମନ୍ତବ୍ୟ ଓ ଧାରଣା ସବୁ ସୃଷ୍ଟି କରାଯାଇଥିଲା। ବର୍ତ୍ତମାନ କିନ୍ତୁ ଯୁଗ ବଦଳିଛି ଓ ଆମ୍ଭେମାନେ ଏକ ଅଧିକ ଉଦାର ଓ ଅଧିକ ଯୁକ୍ତିଯୁକ୍ତ ବିଚାରର ଯୁଗରେ ଆଡୋଚ ହେଉଛୁ। ସ୍ତ୍ରୀଲୋକମାନଙ୍କୁ ଯୋଉ ଯୋଉ କାରଣରୁ ବିଶ୍ୱାସ କରିବା ଉଚିତ ନୁହଁ ବୋଲି ଚାଣକ୍ୟ କହନ୍ତି - ପୁରୁଷଠାରେ ମଧ୍ୟ ସେ ସବୁ ଦୁର୍ଗୁଣ ରହିଛି। ତେଣୁ ଆମର ନୀତି ହେବା ଉଚିତ ଯେ - ଯେକୌଣସି ନାରୀ ବା ପୁରୁଷ ଯଦି କପଟାଚାରୀ, ଛଳନାକାରୀ, ମିଥ୍ୟାବାଦୀ ଓ କୂଟକପଟଯୁକ୍ତ ହୋଇଥାଏ - ତେବେ ସେପରି ଲୋକକୁ ଆଦୌ ବିଶ୍ୱାସ କରିବା ଉଚିତ ନୁହେଁ। ତା' ସହିତ ସାବଧାନ ହୋଇ ଚଳିବା ଉଚିତ।



# ୩୬. ...ଆତ୍ମାର୍ଥେ ପୃଥିବୀଂ ତ୍ୟଜେତ୍

ସୁଧୀବୃନ୍ଦ ! ମୁଁ ଆଜି ଆପଣମାନଙ୍କୁ ମହାପ୍ରାଜ୍ଞ ଚାଣକ୍ୟ ପଣ୍ଡିତଙ୍କର ଗୋଟିଏ ଆଧ୍ୟାତ୍ମିକ ନୀତିବାକ୍ୟ ଓ ତା'ର ମର୍ମ ବୁଝାଇବାକୁ ଚେଷ୍ଟା କରି ଚାଣକ୍ୟଙ୍କର ବକ୍ତବ୍ୟଟି ହେଉଛି -

**ତ୍ୟଜେଦେକଂ କୁଳସ୍ୟାଽର୍ଥେ ଗ୍ରାମସ୍ୟାଽର୍ଥେ କୁଳଂ ତ୍ୟଜେତ୍ ।**
**ଗ୍ରାମଂ ଜନପଦସ୍ୟାଽର୍ଥେ ଆତ୍ମାଽର୍ଥେ ପୃଥିବୀଂ ତ୍ୟଜେତ୍ ॥ (୩/୧୦)**

ଏହି ଶ୍ଳୋକର ଅର୍ଥ ହେଲା, ବଂଶ ବା କୁଳର ମଙ୍ଗଳ ନିମିତ୍ତ ପରିବାରର ଜଣକୁ ପରିତ୍ୟାଗ କରିବ । ସେ ଜଣକ ତୁମର ପୁଅ ହେଉ ବା ପୁତୁରା ହେଉ, ଭାଇ ହେଉ ବା ପତ୍ନୀ ହେଉ, କନ୍ୟା ହେଉ ବା ଝିଆରୀ ହେଉ, ପିତା ହୁଅନ୍ତୁ ବା ମାତା ହୁଅନ୍ତୁ । ତୁମ ନିଜ ଗ୍ରାମର ମଙ୍ଗଳ ନିମିତ୍ତ ଯଦି ତୁମକୁ ତୁମର ପରିବାରକୁ ପରିତ୍ୟାଗ କରିବାକୁ ପଡ଼େ, ତେବେ ପରିବାରକୁ ମଧ୍ୟ ଛାଡ଼ିଦେବ । ସେହିପରି ଦେଶର ମଙ୍ଗଳପାଇଁ ଦରକାର ହେଲେ ନିଜର ଗ୍ରାମକୁ ମଧ୍ୟ ପରିତ୍ୟାଗ କରିବା; ଏବଂ ଶେଷ କଥାଟି ହେଲା ଯଦି ତୁମ ଆତ୍ମାର ମଙ୍ଗଳ ପାଇଁ ଦେଶ ଛାଡ଼ିବା ଦରକାର ପଡ଼େ, ତେବେ ତୁମର ନିଜ ଦେଶକୁ ମଧ୍ୟ ପରିତ୍ୟାଗ କରିବା ଉଚିତ ।

ପାଠକେ ! ଠିକ୍ ଏହିପରି ଶ୍ଳୋକଟିଏ ମହାକବି ବେଦବ୍ୟାସମୁନିଙ୍କ କୃତ ମହାଭାରତରେ ମଧ୍ୟ ଅଛି । ମହାଭାରତ ଯୁଦ୍ଧ ଆରମ୍ଭ ପୂର୍ବରୁ ଧର୍ମ ଓ ନୀତିପରାୟଣ ମହାତ୍ମା ବିଦୁର ଅନ୍ଧରାଜା ଧୃତରାଷ୍ଟ୍ରଙ୍କୁ କହିଛନ୍ତି । ତାଙ୍କ କହିବାର ଉଦ୍ଦେଶ୍ୟ ଥିଲା - ଅନ୍ଧ ରାଜା ଧୃତରାଷ୍ଟ୍ର ପୁତ୍ରସ୍ନେହରେ ଅନ୍ଧହୋଇ କୁଳନାଶକ ଅଧର୍ମାଚାରୀ ପୁତ୍ର ଦୁର୍ଯ୍ୟୋଧନଙ୍କୁ କୁରୁବଂଶ ଭଳି ମହାନ୍ ବଂଶର ମଙ୍ଗଳ ପାଇଁ ପରିତ୍ୟାଗ କରନ୍ତୁ ଓ ଧର୍ମବନ୍ତ ଯୁଧିଷ୍ଠିରଙ୍କୁ ରାଜ୍ୟଭାର ଦିଅନ୍ତୁ । ମାତ୍ର ମୋହାନ୍ଧ ଧୃତରାଷ୍ଟ୍ର ବିଦୁରଙ୍କର ଏଇ ମଙ୍ଗଳମୟ ଉପଦେଶ ଶୁଣି ନ ଥିଲେ । ଫଳରେ ମହାସମର ହେଲା ଓ ବହୁ ଧନଜନ କୁଳକ୍ଷୟ ହେଲା ।

·ମନୁଷ୍ୟକୁ ଭଗବାନ୍ ଦିବ୍ୟଜ୍ଞାନ ଓ ବିବେକ ଦେଇଛନ୍ତି । ବିବେକୀ ଓ ଯଥାର୍ଥ ଧାର୍ମିକ ଜ୍ଞାନୀ ବ୍ୟକ୍ତି ଜାଣେ, ସେ ସର୍ବମଙ୍ଗଳ ଲାଗି କେତେବେଳେ କାହାକୁ ଧରିବ ଓ କାହାକୁ ଛାଡ଼ିବ । କ'ଣ ଧରିବ ଓ କ'ଣ ଛାଡ଼ିବ । ଏଇ ଯଥା ସମୟରେ ଯଥା ବିଷୟକୁ ଧରିବା ଓ ଛାଡ଼ିବା ଉପରେ ମଣିଷର ମଙ୍ଗଳ ନିର୍ଭର କରୁଛି । ଯେ ଯଥାର୍ଥରେ ମଙ୍ଗଳ ଚାହେଁ, ସେ ବୃହତ୍ତର ସ୍ୱାର୍ଥ ଲାଗି କ୍ଷୁଦ୍ରତର ସ୍ୱାର୍ଥକୁ ବର୍ଜନ କରିବା ଉଚିତ ।

କାରଣ ବୃହତ୍ତର ସ୍ୱାର୍ଥ ସାଧନା ଭିତରେ ନିହିତ ଥାଏ କ୍ଷୁଦ୍ରତର ସ୍ୱାର୍ଥ। ପରିବାର ନଷ୍ଟ ହୋଇଗଲେ ବ୍ୟକ୍ତିର ମଙ୍ଗଳ କିପରି ହେବ? ଗ୍ରାମ ନଷ୍ଟ ହୋଇଗଲେ ପରିବାର କିପରି ତିଷ୍ଠିବ? ସେହିପରି ଦେଶ ଯଦି ନଷ୍ଟ ହୋଇଯାଏ - ତେବେ ଗ୍ରାମ ବା କିପରି ତିଷ୍ଠିବ? ତେଣୁ ଆମେ ମଧ୍ୟ ଏହି ସତ୍ୟଟି ସବୁବେଳେ ପ୍ରତ୍ୟକ୍ଷ କରି ଆସୁଛି ଯେ, ଯଥାର୍ଥ ମଙ୍ଗଳ ରହିଛି ବୃହତ୍ତର ମଙ୍ଗଳ ଭିତରେ। କେବଳ ନିଜର କ୍ଷୁଦ୍ର ସ୍ୱାର୍ଥ ଲାଗି ତୁମେ ଯଦି ବୃହତ୍ତର ସ୍ୱାର୍ଥ ବା ଜନସାଧାରଣଙ୍କ ସ୍ୱାର୍ଥକୁ ଲଙ୍ଘନ କରିବ - ତେବେ ତୁମେ ତୁମ ନିଜ ପାଇଁ ମଧ୍ୟ ତୁମେ ଅମଙ୍ଗଳକୁ ଡାକିଆଣିବ।

କିନ୍ତୁ ଚାଣକ୍ୟ ପଣ୍ଡିତଙ୍କର ଏହି ଶ୍ଳୋକଟିର ଶେଷ ଧାଡ଼ିଟି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ। ଶେଷ ଧାଡ଼ିଟି ହେଲା - ନିଜ ଆତ୍ମାର ମଙ୍ଗଳ ଲାଗି ଯଦି ଆବଶ୍ୟକ ପଡ଼େ ତେବେ ଏ ପୃଥିବୀକୁ ମଧ୍ୟ ତ୍ୟାଗ କରିବାପାଇଁ ପ୍ରସ୍ତୁତ ହୋଇଯିବା ଉଚିତ। ଚାଣକ୍ୟ ପଣ୍ଡିତେ ଏଠାରେ 'ଆତ୍ମା'କୁ ଆଧ୍ୟାତ୍ମିକ ଅର୍ଥରେ ବ୍ୟବହାର କରିଛନ୍ତି। ନିଜର ବ୍ୟକ୍ତିଗତ କ୍ଷୁଦ୍ର ସ୍ୱାର୍ଥରେ ନୁହେଁ। ଚାଣକ୍ୟଙ୍କର କହିବାର ମର୍ମ ହେଲା - ନିଜର ଆତ୍ମମର୍ଯ୍ୟାଦା ରକ୍ଷା କରିବା ପାଇଁ, କିମ୍ୱା ନିଜର ସତ୍ୟ ରକ୍ଷା କରିବାପାଇଁ କିମ୍ୱା ଧର୍ମ ଓ ବିଶ୍ୱାସ ରକ୍ଷା କରିବାପାଇଁ କିମ୍ୱା ଈଶ୍ୱରଙ୍କ ବିଧାନ ଓ ନ୍ୟାୟ ରକ୍ଷା କରିବା ପାଇଁ - ଆମେ ଯେପରି ଏହି ପୃଥିବୀ ପ୍ରତି ମୋହକୁ ମଧ୍ୟ ତ୍ୟାଗ କରିପାରିବୁ। ତାହାହିଁ ହେବ ଆମର ଶ୍ରେଷ୍ଠ ମାନବ ଧର୍ମ ଓ ଏହି ଧର୍ମ ପାଳନରେ ଆମର ଅନ୍ତରାତ୍ମାର ହିଁ ମଙ୍ଗଳ ହେବ।

ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ର ଏହି ଆତ୍ମମର୍ଯ୍ୟାଦା ରକ୍ଷା କରିବାପାଇଁ ପିତୃସତ୍ୟ ପାଳନ ଲାଗି ରାଜ୍ୟ ପରିତ୍ୟାଗ କରି ବନବାସୀ ହେଲେ। ରାଜଧର୍ମ ପାଳନ ପାଇଁ ନିଜର ପ୍ରାଣଠାରୁ ବଳି ପ୍ରିୟତମା ପତ୍ନୀ ସତୀଶିରୋମଣି ସୀତାଙ୍କୁ ମଧ୍ୟ ତ୍ୟାଗ କରିଥିଲେ। ତେଣୁ ଏହି ଶ୍ଳୋକରେ ଚାଣକ୍ୟ 'ଆତ୍ମାର୍ଥେ' ଶବ୍ଦକୁ 'ଆତ୍ମାର ମର୍ଯ୍ୟାଦା ଅର୍ଥେ' ଭାବରେ ବ୍ୟବହାର କରିଛନ୍ତି।

ଯେଉଁମାନେ ଧର୍ମପାଇଁ, ସତ୍ୟପାଇଁ ଦେଶର ଓ ପୃଥିବୀର ମଙ୍ଗଳପାଇଁ ନିଜର ପ୍ରାଣ ଉତ୍ସର୍ଗ କରିଛନ୍ତି ସେମାନେ ସେମାନଙ୍କ ଅନ୍ତରାତ୍ମାର ମର୍ଯ୍ୟାଦା ବା ମହତ୍ତ୍ୱ ରକ୍ଷାପାଇଁ ଓ ପ୍ରତିଷ୍ଠାପାଇଁ ଏହି ପୃଥିବୀରେ ବଞ୍ଚିବାର ମୋହକୁ ମଧ୍ୟ ପରିତ୍ୟାଗ କରିଛନ୍ତି।

ପାଠକେ! ମହାମତି ଚାଣକ୍ୟଙ୍କର ଏହି ଶ୍ଳୋକଟିରୁ ଆମେ ମଣିଷର ମହାନ୍ ତ୍ୟାଗଧର୍ମର ମହତ୍ତ୍ୱ କ'ଣ ତାହା ନିଶ୍ଚୟ ବୁଝିପାରିବା।



# ୩୭. ...ନିର୍ଗନ୍ଧା ଇବ କିଂଶୁକାଃ

ଏ ପୃଥିବୀରେ ବନେ, ଉପବନେ, ଉଦ୍ୟାନେ ଅସଂଖ୍ୟ ଫୁଲ ଫଟନ୍ତି। ମଲ୍ଲୀ, ମାଳତୀ, ମାଧବୀ, ରଜନୀଗନ୍ଧା, କଦମ୍ବ, ପଳାଶ, ବକୁଳ, ଛୁରିଅନା - କୁମୁଦ, କହ୍ଲାର, କମଳ, କନିଅର, ଧୁତୁରା, କୃଷ୍ଣଚୂଡ଼ା ଇତ୍ୟାଦି ଇତ୍ୟାଦି। ସବୁ ଫୁଲର ସୌନ୍ଦର୍ଯ୍ୟ ଅଛି ନିଶ୍ଚୟ। ମାତ୍ର ସବୁ ଫୁଲର ସୌରଭ ବା ସୁଗନ୍ଧ ନ ଥାଏ। ଜହ୍ନିଫୁଲ, କଖାରୁଫୁଲ, ଫୁଲକୋବି, କଞ୍ଚନଫୁଲ ଇତ୍ୟାଦି ଫୁଲ ତ ଖାଦ୍ୟରୂପେ ବ୍ୟବହାର କରାଯାଏ। ପଳାଶ ଫୁଲ ବସନ୍ତ ଋତୁରେ ଫୁଟେ। ବନଭୂମି ପଳାଶଫୁଲର ଲାଲରଙ୍ଗରେ ଲାଲେଲାଲ ହୋଇଯାଏ। ଖରାଦିନେ ଲାଲରଙ୍ଗର କୃଷ୍ଣଚୂଡ଼ା ଚତୁର୍ଦ୍ଦିଗରେ ଫୁଟି ରାସ୍ତାଘାଟର ସୌନ୍ଦର୍ଯ୍ୟ ବଢ଼ାଇଥାଏ। ଫୁଲମାତ୍ରକେ ସୁନ୍ଦର। କିନ୍ତୁ ସବୁ ଫୁଲ ଯେପରି କି ପଳାଶଫୁଲ ଆଖିକୁ ଆନନ୍ଦ ଦିଏ। ମାତ୍ର ନାକକୁ ଆନନ୍ଦ ଦିଏନା। କାରଣ ତା'ର ସୌରଭ ନାହିଁ। ଏହି କଥାକୁ ଉଲ୍ଲେଖ କରି ମହାମତି ଚାଣକ୍ୟ ଗୋଟିଏ ନୀତିଶ୍ଳୋକ କହୁଛନ୍ତି -

**ରୂପଯୌବନସମ୍ପନ୍ନାଃ ବିଶାଳକୁଳସମ୍ଭବାଃ।**
**ବିଦ୍ୟାହୀନା ନ ଶୋଭନ୍ତେ ନିର୍ଗନ୍ଧା ଇବ କିଂଶୁକାଃ ॥ (୩/୮)**

ଏହି ଶ୍ଳୋକରେ କିଂଶୁକ ବା ପଳାଶଫୁଲର ନିଦର୍ଶନଦେଇ ଚାଣକ୍ୟ ପଣ୍ଡିତେ କହୁଛନ୍ତି ପଳାଶଫୁଲ ଦେଖିବାକୁ ନାଲି ଓ ସୁନ୍ଦର। ମାତ୍ର ତା'ର ବାସ୍ନା ନ ଥିବାରୁ ଲୋକେ କେବଳ ତା'ର ରୂପ ଦେଖନ୍ତି ଦୂରରୁ। କେହି ତାକୁ ନାକପାଖେ ଲଗାଇ ତା'ର ସୌରଭକୁ ଆଘ୍ରାଣ କରନ୍ତି ନାହିଁ।

ସେହିପରି ଜଣେ ମଣିଷ ହୁଏତ ଗୋଟିଏ ଉଚ୍ଚ ଅଭିଜାତ ପ୍ରାଚୀନ ବଂଶରେ ଜନ୍ମହୋଇଛି ଏବଂ ସେ ବଂଶରେ ବହୁ ବିଖ୍ୟାତ ପ୍ରତିଭାବାନ୍ ନରନାରୀ ଜନ୍ମ ହୋଇଥିଲେ ସେହି ଉଚ୍ଚକୁଳରେ ଜନ୍ମିଥିବା ମଣିଷଟି ହୁଏତ ଖୁବ୍ ରୂପବାନ୍ ବା ରୂପବତୀ। ତା'ର ଦେହ ଯୌବନର ତେଜରେ ଝଲମଲ କରୁଛି। କିନ୍ତୁ ତା'ର ବିଦ୍ୟାଘରେ ଶୂନ୍। ସେ ସାହିତ୍ୟ ପଢ଼ିନି, ଇତିହାସ ପଢ଼ିନି, ଭୂଗୋଳ ପଢ଼ିନି, ଦର୍ଶନ, ବିଜ୍ଞାନ, କଳା, ସଙ୍ଗୀତ ଇତ୍ୟାଦି କୌଣସି ବିଦ୍ୟା ସେ ଅର୍ଜନ କରି ନାହିଁ, କି ଅଭ୍ୟାସ କରିନାହିଁ। ଏପରି କ୍ଷେତ୍ରରେ ସେଭଳି ବିଦ୍ୟାହୀନ ମୂର୍ଖ ଲୋକଟିକୁ କେହି ଖାତିର କରନ୍ତି ନାହିଁ। କାରଣ ତା'ର ସମାଜ ପ୍ରତି କୌଣସି ଉପଯୋଗିତା ନାହିଁ। ସମାଜ ପ୍ରତି କିଛି ଅବଦାନ ନାହିଁ। ତେଣୁ ତା'ର ଉଚ୍ଚକୁଳରେ ଜନ୍ମହେବା

ଏବଂ ରୂପଯୌବନରେ ଦୀପ୍ତିମାନ ହେବା ବ୍ୟାପାରଟିର କୌଣସି ମୂଲ୍ୟ ନାହିଁ। ତା'ର ଜୀବନ ନାଲି ଟୁକୁ ଟୁକୁ ସୁନ୍ଦର କିନ୍ତୁ ସୁବାସହୀନ ପଳାଶଫୁଲ ପରି କାହା ପାଇଁ ମୂଲ୍ୟବାନ୍ ବା ଆଦରଣୀୟ ହୁଏନାହିଁ।

ପାଠକେ! ଚାଣକ୍ୟ ଏଠାରେ 'ବିଦ୍ୟା' ଶବ୍ଦଟିକୁ ଖୁବ୍ ବ୍ୟାପକ ଅର୍ଥରେ ବ୍ୟବହାର କରିଛନ୍ତି। ପ୍ରତ୍ୟେକ ମଣିଷଭିତରେ କିଛି ନା କିଛି ଗୁଣ ଅଳ୍ପ ବହୁତେ ରହିଛି। ପ୍ରତ୍ୟେକ ଲୋକଭିତରେ କିଛି ଗୋଟିଏ ହୋଇପାରିବାର ସମ୍ଭାବନା ମଧ୍ୟ ରହିଛି। ଆଉ ମଧ୍ୟ ପ୍ରତ୍ୟେକ ଲୋକଭିତରେ ସମାଜ ପ୍ରତି ଉପାଦେୟତା ପ୍ରମାଣ କରିବାର କିଛି କ୍ଷମତା ମଧ୍ୟ ଅଛି। କିନ୍ତୁ ଏସବୁ ସମ୍ଭାବନା ଥିଲେ ବି ବହୁଲୋକ କେବଳ ଖାଇପିଇ ବେଫିକ ହୋଇ ଜାମାଯୋଡ଼ ହୋଇ ବୁଲୁଥାନ୍ତି। କିଛି ଗୋଟାଏ ହେବାକୁ ଚେଷ୍ଟା କରନ୍ତି ନାହିଁ କି ସାଧନା କରିବାକୁ ଆଗ୍ରହ ଦେଖାନ୍ତି ନାହିଁ।

କିଛି ଗୋଟାଏ ହେବା ଲାଗି ଏପରିକି ଲୁଗାପଟା, ଜାମା, କାମିଜ ସିଲେଇ କରିବାପାଇଁ ସେହି ସମ୍ବନ୍ଧୀୟ ଜ୍ଞାନ ଦରକାର। ପ୍ରତ୍ୟେକ କାର୍ଯ୍ୟ ଶିଖିବା ପାଇଁ ଜ୍ଞାନ ଦରକାର। ତୁମେ ଚାଷ କର ବା ବାଣିଜ୍ୟ କର, ଚାକିରି କର କି ଅନ୍ୟ କିଛି ବୃତ୍ତି କର ସେ ସବୁ ସମ୍ବନ୍ଧେ ତୁମର ସମ୍ୟକ୍ ଜ୍ଞାନଥିବା ଦରକାର। ଏହି ଜ୍ଞାନ ହିଁ ବିଦ୍ୟା। ହଳ ବୁଲାଇବାଠାରୁ ଆରମ୍ଭ କରି କୁକୁଡ଼ାଚାଷ ବା ମତ୍ସ୍ୟଚାଷ କରିବାପାଇଁ ମଧ୍ୟ ଜ୍ଞାନ ଦରକାର। ଏହି ଜ୍ଞାନ ବା ବିଦ୍ୟା ନ ଥିଲେ ତୁମର ଜୀବନ ବୃଥା। କାରଣ ଜ୍ଞାନ ବା ବିଦ୍ୟା ଜଣା ନ ଥିଲେ ତୁମେ କୌଣସି କର୍ମ କରିପାରିବ ନାହିଁ ଅକର୍ମା ଲୋକ ବଞ୍ଚିବା ମରିବା ସମାନ। ସେଭଳି ମଣିଷକୁ ତା'ର ବଂଶ ଗୌରବ ବା ତା'ର ରୂପ କି ସ୍ୱାସ୍ଥ୍ୟ ଗୌରବ ତା'ର ଜୀବନ ପାଇଁ ଆଦୌ ସହାୟକ ହେବ ନାହିଁ। ତା'ର ସାମାଜିକ ମର୍ଯ୍ୟାଦା ମଧ୍ୟ ରହିବ ନାହିଁ। ସେଭଳି ଲୋକକୁ ସମସ୍ତେ ଉପେକ୍ଷା କରନ୍ତି। ତା' ଜୀବନର କିଛି ମୂଲ୍ୟ ନ ଥାଏ।

ପାଠକେ! ଆପଣମାନେ ବରାବର ଲକ୍ଷ୍ୟ କରୁଥିବେ ଯେ ଚାଣକ୍ୟ ପଣ୍ଡିତେ ମଣିଷର ବିଦ୍ୟାଶିକ୍ଷା ଉପରେ, ଜ୍ଞାନାର୍ଜନ ଉପରେ ସବୁବେଳେ ଜୋର୍ ଦେଇଥାନ୍ତି। ମଣିଷ ଗୋଟିଏ ବୁଦ୍ଧିମାନ୍ ପ୍ରାଣୀ ସତ୍ୟ, ମାତ୍ର ତା'ର ବୁଦ୍ଧିର ବିକାଶ ହୁଏ ତା'ର ବିଦ୍ୟାର୍ଜନ ବା ଜ୍ଞାନାର୍ଜନ ଦ୍ୱାରା। ଜ୍ଞାନ ଅର୍ଜନ ନ କଲେ, ବିଦ୍ୟା ଅଭ୍ୟାସ ନ କଲେ ଜଣେ ଯେତେବଡ଼ ବୁଦ୍ଧିମାନ ବା ପ୍ରତିଭାବାନ୍ ହେଲେ ବି, ତା'ର ବୁଦ୍ଧି ବା ପ୍ରତିଭା କେବେବି ଫଳପ୍ରସୂ ହୋଇପାରିବ ନାହିଁ।



## ୩୮. ବନ୍ଦନୀୟ ସାଧୁ ଓ ନିନ୍ଦନୀୟ ମୂର୍ଖ

ପାଠକେ ! ମହାପ୍ରାଜ୍ଞ ନୀତିଜ୍ଞ ଚାଣକ୍ୟ ପଣ୍ଡିତଙ୍କର ଏହି ନୀତି ଶ୍ଳୋକଟିକୁ ଶୁଣନ୍ତୁ। ଏହି ଶ୍ଳୋକଟିରେ ସେ ଯଥାର୍ଥରେ ସାଧୁ ଓ ଶିଷ୍ଟ ଚରିତ୍ରବାନ୍ ମନୁଷ୍ୟର ଅଟଳ ମର୍ଯ୍ୟାଦା ସଚେତନତା ଉପରେ କହିଛନ୍ତି। ଶ୍ଳୋକଟି ହେଲା :

**ପ୍ରଳୟେ ଭିନ୍ନମର୍ଯ୍ୟାଦା ଭବନ୍ତି କିଳ ସାଗରାଃ।**
**ସାଗରା ଭେଦମିଛନ୍ତି ପ୍ରଳୟେଽପି ନ ସାଧବଃ ॥ (୩/୬)**

ଏହାର ଆକ୍ଷରିକ ଅର୍ଥଟି ହେଲା, ଯେତେବେଳେ ପ୍ରଳୟକାଳ ଭଳି ପରିସ୍ଥିତି ଆସେ ଅର୍ଥାତ୍, ଯେତେବେଳେ ପୃଥିବୀର ଅଭ୍ୟନ୍ତରରେ ଥିବା ଆକାଶରେ ଏକ୍ ଜଳବାୟୁଗତ ଅସ୍ୱାଭାବିକ ପରିସ୍ଥିତି ଉପସ୍ଥିତ ହୁଏ, ସେତେବେଳେ ସମୁଦ୍ରମାନେ ମଧ ଉତ୍କ୍ଷିପ୍ତ ହୋଇଉଠନ୍ତି; ଏବଂ ଉର୍ଦ୍ଧ୍ୱକୁ ଲମ୍ଫପ୍ରଦାନକରି ପ୍ରବଳବେଗରେ କୂଳଲଘଂନ କରି ସ୍ଥଳଭାଗରେ ଧ୍ୱଂସଲୀଳା ଘଟାଇଥାନ୍ତି। ସ୍ଥଳଭାଗରେ ପ୍ରବଳ ଜଳପ୍ଲାବନ ହେତୁ ବହୁ ପ୍ରାଣୀ ବିନଷ୍ଟ ହୁଅନ୍ତି ଓ ଭୟଙ୍କର ଅବସ୍ଥା ସୃଷ୍ଟି ହୁଏ। ମାତ୍ର କି ଆଶ୍ଚର୍ଯ୍ୟ କଥା ମନୁଷ୍ୟମାନଙ୍କ ଭିତରେ ଏପରି ସବୁ ସାଧୁ ସଜ୍ଜନ ଅଛନ୍ତି, ଏପରି ସବୁ ମର୍ଯ୍ୟାଦାବନ୍ତ ନରନାରୀ ଅଛନ୍ତି, ଏପରି ସବୁ ଶିଷ୍ଟ ଓ ଧୀରଚିତ୍ତ ବ୍ୟକ୍ତି ଅଛନ୍ତି, ଯେଉଁମାନେ କି କୌଣସି ପ୍ରତିକୂଳ ପରିସ୍ଥିତିରେ ବି ନିଜର ଧୈର୍ଯ୍ୟ ହରାନ୍ତି ନାହିଁ, ନିଜର ମର୍ଯ୍ୟାଦା ହରାନ୍ତି ନାହିଁ, କୌଣସି ପ୍ରକାରେ ନିମ୍ନଗାମୀ ହୁଅନ୍ତି ନାହିଁ କି ସାମାନ୍ୟ ମାତ୍ର ବିଚଳିତ ହୁଅନ୍ତି ନାହିଁ।

ପ୍ରିୟ ପାଠକେ ! ଚାଣକ୍ୟ ପଣ୍ଡିତଙ୍କର ଏହି ଉକ୍ତିର ସତ୍ୟତା ଆମେ କ'ଣ ପ୍ରତ୍ୟକ୍ଷ କରି ନାହୁଁ ? ପୁରାଣରେ ଓ ଇତିହାସରେ ଏହି ଉଚ୍ଚମନା ନରନାରୀଙ୍କର ବହୁ ଉଦାହରଣ ରହିଛି। କିନ୍ତୁ ଆମ କାଳରେ ବି ଓ ଆମ ସମାଜରେ ବି, ତଥାପି ଏପରି ନରନାରୀ ଏବେବି ଅଛନ୍ତି। ଅବଶ୍ୟ ସେମାନଙ୍କର ସଂଖ୍ୟା ଅଳ୍ପ। ସାଧୁ, ସନ୍ଥ, ମହାତ୍ମା, ଯୋଗୀ ମୁନିଙ୍କ କଥା ଛାଡ଼ନ୍ତୁ, ଆମର ଗ୍ରାମ ଓ ସହରମାନଙ୍କରେ ବି ଆମେ ଏପରି ସବୁ ଧୀରଚିତ୍ତ, ସମଭାବସମ୍ପନ୍ନ ମର୍ଯ୍ୟାଦା ସଚେତନ ନରନାରୀଙ୍କୁ ଦେଖିଛୁ ଓ ଦେଖୁଛୁ ମଧ। ଏପରି ମଣିଷଙ୍କ ସଂଖ୍ୟା କମ୍ ହୋଇପାରେ।

ତଥାପି ଏପରି ନରନାରୀଙ୍କୁ ଆମେ କୃଷକ, ଶ୍ରମିକଙ୍କଠାରୁ ଆରମ୍ଭକରି ଶିକ୍ଷକ, ଡାକ୍ତର, ବୈଜ୍ଞାନିକ, ରାଜନୈତିକ ନେତା, ଶାସକ ଓ ପ୍ରଶାସକମାନଙ୍କ ପର୍ଯ୍ୟନ୍ତ ସବୁ ଶ୍ରେଣୀରେ ଥିବାର ପ୍ରତ୍ୟକ୍ଷ କରିଛୁ।

ମଣିଷର ମର୍ଯ୍ୟାଦା ସମ୍ବନ୍ଧେ ଏତେକ କହିବା ପରେ ଚାଣକ୍ୟ ପଣ୍ଡିତେ ଆଉ ଏକ ଶ୍ରେଣୀୟ ମନ୍ଦ ମଣିଷଙ୍କ କଥା କହୁଛନ୍ତି, ଶ୍ଳୋକଟି ଶୁଣନ୍ତୁ -

**ମୂର୍ଖସ୍ତୁ ପରିହର୍ତ୍ତବ୍ୟଃ ପ୍ରତ୍ୟକ୍ଷୋ ଦ୍ୱିପଦଃ ପଶୁଃ।**
**ଭିନତ୍ତି ବାକ୍ୟଶଲ୍ୟେନ ଅଦୃଷ୍ଟଃ କଣ୍ଟକୋ ଯଥା ।। (୩/୭)**

ଏହି ଶ୍ଳୋକଟିର ଅର୍ଥ ହେଲା, ମୂର୍ଖ ବା ଅଜ୍ଞାନ ଲୋକଠାରୁ ସର୍ବଦା ଦୂରରେ ରହ। କାରଣ ସେମାନେ ଯଥାର୍ଥରେ ଦୁଇଗୋଡ଼ିଆ ମଣିଷ ନୁହନ୍ତି, ଦୁଇ ଗୋଡ଼ିଆ ପଶୁ। ସେମାନେ କାହାକୁ, କେଉଁଠାରେ, କେତେବେଳେ, କିପରି ଓ କ'ଣ କଥା କହିବାକୁ ହେବ, ତାହା ଜାଣନ୍ତି ନାହିଁ। ତେଣୁ ବହୁବେଳେ ସେମାନେ ଶିଷ୍ଟ, ବିଶିଷ୍ଟ, ଭଦ୍ର, ଭବ୍ୟ ଓ ଉଚ୍ଚସ୍ତରର ମଣିଷମାନଙ୍କ ପ୍ରତି ଏପରି କଦର୍ଯ୍ୟ ଭାଷାରେ କର୍କଶ ଅଶ୍ଳୀଳ ଭର୍ତ୍ସନା ବା ଉପହାସ କରନ୍ତି, ଯାହାକି ଅନ୍ଧଲୋକର ଗୋଡ଼ରେ କଣ୍ଟା ଫୁଟିବା ପରି ଭଲ ମଣିଷଙ୍କ ମନକୁ ବାଧେ।

ପାଠକେ! ଏ ସଂସାରରେ ଓ ଆମ ସମାଜରେ ବହୁ ମୂର୍ଖ ଅଜ୍ଞାନ ଲୋକ ଅଛନ୍ତି ଏବଂ ସେମାନେ ପ୍ରକୃତରେ ସାଧୁ, ସରଳ ଓ ଗୁଣୀ ଏବଂ ପଦସ୍ଥ ଲୋକଙ୍କ ପ୍ରତି ଅତି ଅଶାଳୀନ ବାକ୍ୟ ପ୍ରୟୋଗ କରିଥାନ୍ତି। କିନ୍ତୁ ମୂର୍ଖ ଅଜ୍ଞାନ ଶବ୍ଦର ଅର୍ଥକୁ ଆମେ ଯେପରି ବୁଝୁ, ଚାଣକ୍ୟ ପଣ୍ଡିତେ ସେହି ଅର୍ଥରେ ମୂର୍ଖ ଶବ୍ଦ ପ୍ରୟୋଗ କରି ନାହାନ୍ତି। ଚାଣକ୍ୟଙ୍କ ମତରେ ସେହି ହେଉଛି ଯଥାର୍ଥ ମୂର୍ଖ, ଯେ କି ଯେତେ ଶାସ୍ତ୍ର ଜ୍ଞାନ ଅର୍ଜନ କରିଥିଲେ ବି, ଯେତେବଡ଼ ପଦରେ ଅଧିଷ୍ଠିତ ହୋଇଥାଉ ନା କାହିଁକି, ତା'ର ଯଥାର୍ଥ ଜ୍ଞାନ ଅର୍ଜନ ହୋଇ ନ ଥାଏ। ସେ ଭଲ କ'ଣ ମନ୍ଦ କ'ଣ ଜାଣି ନ ଥାଏ। ଉଚ୍ଚ କ'ଣ ନୀଚ କ'ଣ ଜାଣି ନ ଥାଏ। ଶ୍ଳୀଳ କ'ଣ ଅଶ୍ଳୀଳ କ'ଣ ଜାଣି ନ ଥାଏ। ଯେଉଁ ଲୋକର ସ୍ଥାନ କାଳ ପାତ୍ର ଜ୍ଞାନ ନ ଥାଏ, ଆତ୍ମମର୍ଯ୍ୟାଦା କ'ଣ ଜଣା ନ ଥାଏ, ସେହି ଲୋକକୁ ଆମେ ପ୍ରକୃତ ମୂର୍ଖ ଓ ଅଜ୍ଞାନ କହିବା।

ଚାଣକ୍ୟ ପଣ୍ଡିତେ ଆମକୁ ସେହିପରି ମୂର୍ଖଙ୍କ କଥା କହିଛନ୍ତି ଓ ତାଙ୍କଠାରୁ ଦୂରରେ ରହିବାକୁ ଉପଦେଶ ଦେଇଛନ୍ତି।



# ୩୯. ଅତି ସର୍ବତ୍ର ବର୍ଜୟେତ୍...

ଚାଣକ୍ୟ ପଣ୍ଡିତଙ୍କ ଶ୍ଳୋକଟି ହେଲା -

**ଅତି ରୂପେଣ ବୈ ସୀତା ଅତିଗର୍ବେଣ ରାବଣଃ।**
**ଅତି ଦର୍ପେ ହତାଲଙ୍କା ଅତି ମାନେ ଚ କୌରବାଃ।**
**ଅତି ଦାନାତ୍‌ବଳିର୍ବଦ୍ଧୋ ଅତି ସର୍ବତ୍ର ବର୍ଜୟେତ୍ ॥ (୩/୧୨)**

ଏହାର ବ୍ୟାବହାରିକ ଅର୍ଥଟି ହେଉଛି, ଲଙ୍କାର ଅଧିପତି ରାବଣ ଥିଲେ ଖୁବ୍ ଦର୍ପୀ। ତା'ର ଏହି ଦର୍ପିଷତା ଦୋଷଟି ଅତି ବେଶି ହୋଇଯିବାରୁ ସେ ମଲା ଓ ତା'ର ପରିଜନମାନେ ମଧ୍ୟ ହତ ହେଲେ। ସେହିପରି ଅନ୍ଧରାଜା ଧୃତରାଷ୍ଟ୍ରଙ୍କ ପୁତ୍ର ଦୁର୍ଯ୍ୟୋଧନ ଓ ଦୁଃଶାସନାଦି ତାଙ୍କର ଶହେ ଭାଇ ସେମାନଙ୍କର ଅହେତୁକ ଅଭିମାନ ଯୋଗୁଁ ସବଂଶେ ମୃତ୍ୟୁମୁଖରେ ପଡ଼ିଲେ। ଅନ୍ୟ ପକ୍ଷରେ ମହାଭକ୍ତ ପ୍ରହଲ୍ଲାଦଙ୍କ ନାତି ଓ ଉତ୍ତମ ଚରିତ ରାଜା ବିରୋଚନଙ୍କ ସାଧୁପୁତ୍ର ମହାରାଜା ବଳି ତାଙ୍କର ଅତ୍ୟଧିକ ଦାନ କରିବାର ପ୍ରବଣତାରୁ ବିଷ୍ଣୁଙ୍କ ପାଦଚାପରେ ପାତାଳଗାମୀ ହେଲେ। ଅତଏବ - ଏହି ସବୁ ପୌରାଣିକ ଉଦାହରଣରୁ ଜଣାପଡୁଛି ଯେ, ତୁମେ ଭଲ କାମ କର କି ମନ୍ଦ କାମ କର, ସୀମାତିରିକ୍ତ କିଛି କର ନାହିଁ। 'ଅତି' ଶବ୍ଦର ଅର୍ଥ ହେଲା - ସୀମାଲଂଘନ କରିବା। ନିଜ ପାଇଁ ନିର୍ଦ୍ଦିଷ୍ଟ ପାହିରେ ନ ରହି ପାହି ଲଙ୍ଘନ କରିବା ଏବଂ ଏହାଦ୍ୱାରା ହିଁ ବ୍ୟକ୍ତି ବିପଦକୁ ଡାକିଆଣେ, ପତନକୁ ଡାକିଆଣେ; ଏବଂ ଶେଷରେ ମୃତ୍ୟୁ ମଧ୍ୟ ବରଣ କରିଥାଏ।

ଚାଣକ୍ୟ ପଣ୍ଡିତେ ଥିଲେ ସାଂସାରିକ ଜ୍ଞାନୀ ଓ ବିଜ୍ଞମାନଙ୍କର ଶିରୋମଣି। ସେ ମଣିଷର ସାମାଜିକ ଜୀବନ ଓ ବ୍ୟକ୍ତିଗତ ଜୀବନକୁ ଭଲ ଭାବେ ଦେଖିଛନ୍ତି - ଓ କଳନା ମଧ୍ୟ କରିଛନ୍ତି। ସେଇଥିରୁ ସେ ଏକ ଜୀବନନୀତିର ଖସଡ଼ା ମଧ୍ୟ ତିଆରି କରିଛନ୍ତି। ଏହି ଶ୍ଳୋକଟି ଆମକୁ ଜଣାଇଦେଉଛି ଯେ, ତୁମେ ଯାହା କରୁଛ ଭାବିଚିନ୍ତି କର ଓ ସୀମା ଭିତରେ ରହି କର। ସ୍ଥାନ କାଳ ପାତ୍ର ବୁଝି ମଧ୍ୟ କର।

ଲଙ୍କାର ରାଜା ରାବଣ ଜଣେ ଅସାଧାରଣ ପୁରୁଷ ଥିଲେ। ଅସୁରକୁଳରେ ଜନ୍ମ ହେଲେ ବି ତାଙ୍କଠାରେ ତାଙ୍କର ତପସ୍ୱୀ ପିତା ବିଶ୍ରବା ଋଷିଙ୍କର ଶୋଣିତ ବହୁଥିଲା। ସେ ମଧ୍ୟ ଥିଲେ ଜଣେ ତପସ୍ୱୀ ଓ ବେଦବିଦ୍। ବ୍ୟାବହାରିକ ଓ ଧାର୍ମିକ ଜ୍ଞାନ ନୀତିଜ୍ଞାନ ମଧ୍ୟ ତାଙ୍କର କମ୍ ନ ଥିଲା। ସେ ମଧ୍ୟ ଥିଲେ ଜଣେ ଦିଗ୍‌ବିଜୟୀ ବୀରପୁରୁଷ ଏବଂ ରାଜନୀତିଜ୍ଞ ଓ କୂଟନୀତିଜ୍ଞ। ତାଙ୍କ ଉଦ୍ୟମରେ ଲଙ୍କାଦ୍ୱୀପ

ଧନଧାନ୍ୟରେ ଖୁବ୍ ସମୃଦ୍ଧଶାଳୀ ହୋଇଥିଲା। ସେଥିପାଇଁ ଅସୁରପୁରୀ ଲଙ୍କା ସ୍ୱର୍ଣ୍ଣଲଙ୍କା ନାମରେ ବିଦିତ ହୋଇଥିଲା। ମାତ୍ର ଏସବୁ ଥିବାସତ୍ତ୍ୱେ ରାବଣ ଥିଲେ ଜଣେ ଦର୍ପିଷ୍ଠ ବ୍ୟକ୍ତି। ସେ କାହାକୁ ଖାତିର କରୁ ନ ଥିଲେ। ଉଗ୍ର ତପସ୍ୟା କରି ସେ କେତେକ ସିଦ୍ଧି ପାଇଥିଲେ। ମାତ୍ର ରଘୁବଂଶର କୁଳବଧୂ ଶ୍ରୀରାମ ପତ୍ନୀ ସତୀ ଶିରୋମଣି ସୀତାଙ୍କୁ ହରଣ କଲେ ଓ ବିଷ୍ଣୁଙ୍କ ଅବତାର ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କ ସହିତ ଦ୍ରୋହ କଲେ ତା'ର ମୃତ୍ୟୁ ଅନିବାର୍ଯ୍ୟ - ଏପରି ଅଭିଶାପ ମଧ୍ୟ ସେ ପାଇଥିଲେ। ରାବଣ ତପସ୍ୟା କରି ଶିବଙ୍କଠାରୁ ବର ପାଇଥିଲେ ଯେ, ସେ ଦେବ, ଦାନବ, ମାନବ କାହାଦ୍ୱାରା ହତ ହେବେ ନାହିଁ। କିନ୍ତୁ ପାଠକେ ! ଶେଷରେ କ'ଣ ଘଟିଲା ? ରାବଣ ନିଜକୁ ଅତ୍ୟନ୍ତ ବଳବାନ୍ ମନେକରି ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଜୟକଲା ଏବଂ ଅଗ୍ନି, ବାୟୁ, ବରୁଣ, ସୂର୍ଯ୍ୟ, ଚନ୍ଦ୍ରାଦି ଦେବଗଣଙ୍କୁ ଆଣି ନିଜ ଖଟଣିରେ ଖଟାଇଲା। ସ୍ୱର୍ଗର ଅପ୍ସରା ଓ ଦେବକନ୍ୟାମାନଙ୍କୁ ବଳାତ୍କାର କରି ଉପଭୋଗ କଲା। ନିଜକୁ ସେ ଏତେ ଅଜେୟ ମନେକଲା ଯେ, ତା'ର ଦର୍ପ ବଢ଼ିଗଲା ଏବଂ ସେ ସତୀ ବେଦମତୀଙ୍କୁ ମଧ୍ୟ ବଳାତ୍କାର କଲା। ଶେଷରେ ଦର୍ପିଷ୍ଠ ରାବଣ ସତୀ ସୀତାଙ୍କୁ ହରଣ କରି ବାନର ଭଲ୍ଲୁକଙ୍କ ସହ ଯୁଦ୍ଧ କରି ଶ୍ରୀରାମ ଲକ୍ଷ୍ମଣଙ୍କ ଦ୍ୱାରା ସବଂଶେ ହତ ହେଲା। ତେଣୁ ଅତି ଦର୍ପ ଭଲ ଲକ୍ଷଣ ନୁହେଁ। ଜଣେ ଯଦି ନିଜ ଶକ୍ତିର ସୀମା ବୁଝିପାରେ ନାହିଁ, ନିଜ କର୍ମର ଫଳାଫଳକୁ କଳନା ନ କରି ମହାଗର୍ବ ଓ ଦର୍ପରେ ଅନ୍ଧ ହୋଇ ଯଥେଚ୍ଛାଚାର କରେ, ତେବେ ସେ ନିଶ୍ଚୟ ଶୀଘ୍ର ବିନଷ୍ଟ ହୁଏ। ସେହିପରି ଦୁର୍ଯୋଧାନଙ୍କ କଥା ଦେଖନ୍ତୁ। ସେ ଜଣେ ଖୁବ୍ ବୀରପୁରୁଷ ଥିଲେ। ତାଙ୍କର ସ୍ୱାଭିମାନ ଥିଲା ଖୁବ୍ ପ୍ରଚଣ୍ଡ ଏବଂ ଭୟଙ୍କର। ସେ କାହାର ପ୍ରଶଂସା ସହ୍ୟ କରିପାରୁ ନ ଥିଲେ, କାହାର ମହିମା ବା ଯଶକୁ ସ୍ୱୀକାର କରୁ ନ ଥିଲେ। ତାଙ୍କର ହୃଦୟ ଈର୍ଷାଦ୍ୱେଷରେ ସର୍ବଦା ଜଳୁଥିଲା। ବିଶେଷତଃ ଧର୍ମବନ୍ତ ପାଣ୍ଡବ ପାଞ୍ଚଭାଇଙ୍କର କୀର୍ତ୍ତି ଓ ସଦ୍‌ଗୁଣ ଶୁଣିଲେ ତାଙ୍କର ଗାତ୍ରଦାହ ହେଉଥିଲା। ସେଥିପାଇଁ ବିନା ଯୁଦ୍ଧରେ ସୂଚ୍ୟଗ୍ର ପରିମାଣ ମେଦିନୀ ସେ କାହାକୁ ଦେବେ ନାହିଁ ବୋଲି ଭଗବାନ୍ ଶ୍ରୀକୃଷ୍ଣଙ୍କ ଆଗରେ ଦମ୍ଭୋକ୍ତି କରିଥିଲେ। କିନ୍ତୁ ତାଙ୍କର ଏଇ ବୃଥା ଦମ୍ଭ ଓ ଅଭିମାନ ରହିଲା କି ? ଏହି ମହାଗର୍ବୀ, ଉଦ୍ଧତ, ଜିଦ୍‌ଖୋର ରାଜପୁତ୍ରଙ୍କର ସୀମାତିରିକ୍ତ ଔଦ୍ଧତ୍ୟ, ଅଭିମାନ ଯୋଗୁଁ ସେ ଓ ତାଙ୍କର ଅନେଶତ ଭାଇ ସମସ୍ତେ ଯୁଦ୍ଧରେ ମୃତ୍ୟୁବରଣ କଲେ। ପାଠକେ ! ଏ ପର୍ଯ୍ୟନ୍ତ ଆମେ ମଣିଷର ଖରାପ ଗୁଣ ଓ କ୍ରିୟାଗୁଡ଼ିକର ସୀମାଲଙ୍ଘନଜନିତ କୁପରିମାଣ ଦେଖିଲେ। କିନ୍ତୁ ମହାପ୍ରାଜ୍ଞ ଚାଣକ୍ୟ କେବଳ ମନ୍ଦଗୁଣର

ସୀମା ଲଂଘନଜନିତ ପରିମାଣ କଥା କହି ନାହାନ୍ତି, ସେ ମଧ୍ୟ ଭଲ ଗୁଣ ବା ଭଲ କର୍ମର ସୀମାଲଂଘନ ଜନିତ କୁପରିଣାମ ଦର୍ଶାଇଛନ୍ତି।

ମହାଭକ୍ତ ପ୍ରହଲ୍ଲାଦଙ୍କର ନାତିଙ୍କ ସ୍ୱଭାବ ଥିଲା ଅତି ଉତ୍ତମ। ସେ ରାଜା ହେଲେ ବି ପ୍ରଜାଙ୍କ ସୁଖସାଧନ ଥିଲା ତାଙ୍କ ରାଜଧର୍ମର ମୂଳକଥା ତାଙ୍କଠାରେ ଖୁବ୍ ଦାନୀପଣ ଥିଲା। ସେ ସର୍ବଦା ସମସ୍ତଙ୍କୁ ମୁକ୍ତ ହସ୍ତରେ ଦାନ କରୁଥିଲେ। କିନ୍ତୁ ତାଙ୍କ ମନରେ ମହାଦାନୀ ହେବା ଲାଗି ଏକ ପ୍ରଚଣ୍ଡ ଦୂରାକାଂକ୍ଷା ବା ଉଚ୍ଚାକାଂକ୍ଷା ଥିଲା। ସେଥିଯୋଗୁଁ ସେ ପାତ୍ର କି ଅପାତ୍ର କିଛି ନ ବୁଝିବିଚାରି ଯାହାକୁ ଇଚ୍ଛା ତାକୁ ସବୁ ଦାନ କରି ଦେଉଥିଲେ। ଏହା ଶେଷକୁ ଅପାତ୍ରରେ ଦାନ ଭଳି ଅଭିବେକୀ କାର୍ଯ୍ୟରେ ପରିଣତ ହେଲା। ଏହାଛଡ଼ା ତାଙ୍କର ଏଇ ଦାନଦେବା ପଛରେ ଏକ ଦୂରାକାଂକ୍ଷା ଥିଲା ଯେ, ସେ ଏହି ଦାନକାର୍ଯ୍ୟ ଦ୍ୱାରା ଯେଉଁ ପୁଣ୍ୟ ଅର୍ଜନ କରିବେ - ତଦ୍ୱାରା ସେ ସ୍ୱର୍ଗର ଇନ୍ଦ୍ରକୁ ପଦଚ୍ୟୁତ କରି ନିଜେ ଇନ୍ଦ୍ରପଦରେ ବସିବେ।

ପାଠକେ ! ଏହା ଏକ ମାତ୍ରାଧିରିକ୍ତ ଆକାଂକ୍ଷା। ତେଣୁ ଭଗବାନ୍ ବିଷ୍ଣୁ ବାମନ ରୂପରେ ଆସି ବଳିଙ୍କୁ ପାତାଳରେ ଚାପି ଦେଲେ। ଅବଶ୍ୟ ଦୟାଳୁ ଭଗବାନ୍ ବଳିଙ୍କର ପୁଣ୍ୟ କାର୍ଯ୍ୟ ଯୋଗୁଁ ସେଠାରେ ଏକ ନୂତନ ସ୍ୱର୍ଗ ତିଆରି କଲେ ଏବଂ ସେଠାରେ ବଳିକୁ ଇନ୍ଦ୍ରପଦରେ ବସାଇଲେ।



## ୪୦. ...କସ୍ୟ ସୌଖ୍ୟଂ ନିରନ୍ତରମ୍ ?

ଏ ପୃଥିବୀ, ଏ ଜୀବନ ଓ ଏ ସଂସାର ଚିର ପରିବର୍ତ୍ତନଶୀଳ। ପରିବର୍ତ୍ତନଶୀଳତା ହିଁ ସଂସାରର ଓ ଜୀବନର ଧର୍ମ। କାଳସ୍ରୋତ ଅନାଦି କାଳରୁ ଅନନ୍ତକାଳ ଆଡ଼କୁ ବହି ଚାଲିଛି। ଭଙ୍ଗାଗଢ଼ା ସଂସାରର ଧର୍ମ। ଆଜି ଯୋଉଠି ସମୁଦ୍ର ଲହଡ଼ି ଭାଙ୍ଗୁଛି ଦିନେ ସେଠି ଥିଲା ମରୁଭୂମି। ଆଜି ଯାହାକୁ ମରୁଭୂମି ଦେଖୁଛ ହୁଏତ ଦୁଇହଜାର ବର୍ଷ ପରେ ସେଠି ଗୋଟିଏ ବିରାଟ ହ୍ରଦ ସୃଷ୍ଟି ହୋଇଯିବ। ହଜାରେ ବର୍ଷ ତଳେ ଯାହା ଥିଲା ଶ୍ୱାପଦ ପରିପୂର୍ଣ୍ଣ ଘୋର ଅରଣ୍ୟ ଆଜି ସେଠି ରାଜ୍ୟର ରାଜଧାନୀ ହୋଇଛି। ବର୍ତ୍ତମାନ ପୃଥିବୀର ସବୁଠାରୁ ସମୃଦ୍ଧ ନଗର ହୁଏତ ହଜାର ବର୍ଷ ପରେ ଏକ ଅଗମ୍ୟ ଅରଣ୍ୟ ବା ମରୁପ୍ରାନ୍ତରରେ ପରିଣତ ହୋଇଯାଇପାରେ।

ଏ ପ୍ରସଙ୍ଗରେ ଭକ୍ତକବି ମଧୁସୂଦନଙ୍କ 'ଜୀବନ ଚିନ୍ତା' କବିତାରୁ ପଦେ ମନେପଡ଼ିଯାଏ -

ଧନ ମାନ ଯଶ ଆଦି ଯାହା
ଏ ଭାବେ ଲଭନ୍ତି ନରେ - ଭାଗ୍ୟଦେବୀ ପ୍ରସାଦରେ
କାଳଚକ୍ର ଆବର୍ତ୍ତନେ କି ବେଗରେ ଆହା !
ପଳାନ୍ତିରେ ଅନୁସରି ନିଜ ନିଜ ରାହା ।

ପାଠକେ ! ଏ ପଦଟି ମନକୁ କେତେ ଗଭୀର ଭାବେ ଛୁଇଁ ନ ଯାଏ ? ସତ କଥା ! କାହା ଜୀବନରେ କ'ଣ ବା ସ୍ଥାୟୀ । ଯୌବନ ଚିରସ୍ଥାୟୀ ନୁହେଁ । ଜୀବନ ବି ଚିରସ୍ଥାୟୀ ନୁହେଁ । କେତେ କେତେ ଧନୀ ପରିବାର ଆମରି ଆଗରେ ହାତପାତି ଭିକ ମାଗୁଛନ୍ତି ? କେତେ କେତେ କ୍ଷମତାଶାଳୀ ଲୋକେ, ଯାହାଙ୍କ ପ୍ରତାପରେ ରାଜ୍ୟ ଥରୁଥିଲା, ସେ ଆଜି ଜୀର୍ଣ୍ଣଶୀର୍ଣ୍ଣ ଦୁର୍ବଳ ରୋଗୀଟିଏ ହୋଇ ଅସହାୟ ଭାବେ ବିଛଣାରେ ଶୋଇରହିଛି । ତା' ମୁହଁରେ ମାଛି ବସୁଛନ୍ତି । କିନ୍ତୁ ତା' ହାତରେ ବଳ ନାହିଁ ମାଛି ତଡ଼ିବାକୁ । କିଛିବର୍ଷ ତଳେ ଯେଉଁ ଅଭିନେତ୍ରୀ ଅଭିନେତା, କ୍ରୀଡ଼ାବିତ୍, ନାଟ୍ୟକାର, କବି ଓ କଳାକାରମାନେ ଏତେ ଖ୍ୟାତି ପାଉଥିଲେ, ଯେଉଁମାନଙ୍କ ନାମ ଶୁଣିଲେ ବି ଲୋକେ ଉତ୍ଫୁଲ୍ଲିତ ହୋଇ ଉଠୁଥିଲେ, ଆଜି ସେମାନଙ୍କ ଆଡ଼କୁ ଆଡ଼ଆଖିରେ ବି କେହି ଚାହୁଁ ନାହିଁ ।

ସେଥିପାଇଁ ଭକ୍ତକବି ମଧୁସୂଦନ କହୁଛନ୍ତି, ଧନ କହ, ଜନ କହ, ମାନ କହ, ଯଶ କହ - ଏସବୁ ଆମକୁ ଭାଗ୍ୟବଶରୁ ମିଳିଥାଏ କାଳକ୍ରମେ କାଳ ସେସବୁ ଆମ ହାତରୁ ଛଡ଼ାଇ ନିଏ । ଏବେ ଆମେ ପୂରା ନିଃସ୍ୱ ହୋଇଯାଉ । ମହାତ୍ମା ଶଙ୍କରାଚାର୍ଯ୍ୟ ବି ସେଇ କଥା କହନ୍ତି, "ମା କୁରୁ ଧନ ଜନ ଯଉବନ ଗର୍ବଂ - ହରତି ନିମିଷାଦ୍ କାଳ ସର୍ବମ୍ ।" ଅର୍ଥାତ୍, ହେ ଅଜ୍ଞାନ ମଣିଷମାନେ ! ତୁମର ଧନ, ଜନ, ଯୌବନ ପ୍ରଭୃତି ସୌଭାଗ୍ୟକୁ ନେଇ ଗର୍ବ କରନାହିଁ କି ମଦମତ୍ତ ହୁଅନାହିଁ ବା ପ୍ରମତ୍ତ ହୁଅନାହିଁ । ଜାଣିରଖ ! ମହାକାଳ ଗୋଟିଏ ମୁହୂର୍ତ୍ତରେ ଇ ସେଗୁଡ଼ାକ ତୁମଠାରୁ ଛଡ଼ାଇ ନେବ ଓ ତୁମକୁ ନିଃସ୍ୱ କରି ଛାଡ଼ିଦେବ ।

ପାଠକେ ! ଆମେ ବର୍ତ୍ତମାନ ଦେଖିବା ମହାମତି ଚାଣକ୍ୟ ପଣ୍ଡିତେ ଏ ସମ୍ବନ୍ଧେ କ'ଣ କହୁଛନ୍ତି । ସେ କହୁଛନ୍ତି -

**କସ୍ୟ ଦୋଷଃ କୁଳେ ନାସ୍ତି ବ୍ୟାଧିନା କୋ ନ ପୀଡ଼ିତଃ ।**
**ବ୍ୟସନଂ କେନ ନ ପ୍ରାପ୍ତଂ କସ୍ୟ ସୌଖ୍ୟଂ ନିରନ୍ତରମ୍ ॥ (୩/୧)**

ଅର୍ଥାତ୍, ଏ ସଂସାରରେ ଗୋଟିଏ ସାର୍ବଜନୀନ ସତ୍ୟ ହେଲା - ସବୁ କୁଳ ବା ବଂଶରେ କିଛି ନା କିଛି ଦୋଷ ରହିଛି। ଯେତେ ବଡ଼ ବିଖ୍ୟାତ ଧାର୍ମିକ ବଂଶରେ ବି କିଛି କଳଙ୍କ ରହିଥିବ। ପୁରାଣ ଯୁଗର ରଘୁବଂଶ ଓ ଯଦୁବଂଶ - ଏଇ ଦୁଇ ମହାବଂଶରେ କେତେ କେତେ ପୁଣ୍ୟାତ୍ମା ଓ ଯଶସ୍ୱୀ ମଣିଷ ଜନ୍ମ ହୋଇ ନ ଥିଲେ ? ରଘୁବଂଶରେ ଜନ୍ମ ହୋଇଥିଲେ ଭଗବାନ୍ ରାମଚନ୍ଦ୍ର। ଯଦୁବଂଶରେ ଜନ୍ମିଥିଲେ ଭଗବାନ୍ ଶ୍ରୀକୃଷ୍ଣ। କିନ୍ତୁ ସେ ବଂଶର ଦୋଷ କଥା ତ ଆପଣମାନେ ସମସ୍ତେ ଜାଣନ୍ତି। ରଘୁବଂଶରେ ଦୋଷ ଯୋଗୁଁ ରାମ ବନବାସ ଗଲେ ଓ ସୀତା ପାତାଳରେ ପଶିଲେ। ଯଦୁବଂଶରେ ଦୋଷ ଯୋଗୁଁ ଭଗବାନ୍ ଶ୍ରୀକୃଷ୍ଣଙ୍କ ସମେତ ସମଗ୍ର ଯଦୁବଂଶ ଗୋଟିଏ ରାତି ଭିତରେ ଧ୍ୱଂସ ପାଇଗଲା।

ଚାଣକ୍ୟ ପୁନଶ୍ଚ କହୁଛନ୍ତି - କୋଉ ମଣିଷକୁ ଭଲା ରୋଗ ଛାଡ଼ିଛି ? ଯେତେ ସୁସ୍ଥ ସବଳ ହେଲେ ବି ସମସ୍ତଙ୍କ ଦେହରେ କିଛିନା କିଛି ରୋଗ ଅଛି। କିଏବା ଆପଦ ବିପଦରେ ନ ପଡ଼ିଛି। ଏ ସଂସାରରେ କିଏ ଭଲା ଚିରଦିନ ସୁଖ ଭୋଗ କରିଆସିଛି ? କେହି ନୁହଁ। ଜୀବନରେ ସୁଖ କ୍ଷଣିକ। କବିବର ରାଧାନାଥଙ୍କ ଭାଷାରେ ସୁଖ ବୋଲି ପ୍ରକୃତରେ କିଛି ନାହିଁ। ସୁଖ ତୁମ ହାତକୁ ଆସିଲାମାତ୍ରେ ତୁମ ହାତରୁ ଖସିପଡ଼ିବ ହିଁ ପଡ଼ିବ। ତେଣୁ କବିବରଙ୍କ ଭାଷାରେ, ସୁଖ ହେଲା, ଆକଶ କୁସୁମ ଭଳି ଅଳୀକ ବ୍ୟାପାର। ଆକାଶରେ କ'ଣ ଫୁଲ ଫୁଟେ ? ସେମିତି ମଣିଷ ଜୀବନରେ କ'ଣ ସୁଖ ଥାଏ ? ସୁଖ ପଛେ ପଛେ ତ ଦୁଃଖ ଗୋଡ଼ାଇଥାଏ। ବାଘ ଧାବମାନ ହରିଣକୁ ମାଡ଼ିବସିଲା ପରି ଦୁଃଖ ଆମ ସୁଖକୁ ମାଡ଼ିବସେ।



## ୪୧. କାହାର କୋଉ ବଳ ?

ଏ ସଂସାର ବା ଏ ଜଗତ ଏପରି ଗୋଟେ ସ୍ଥାନ, ଯେଉଁଠି ନିରାପଦରେ ଓ ସ୍ୱଚ୍ଛନ୍ଦରେ ବଞ୍ଚିବା ଲାଗି ଜଣକର ଶକ୍ତି ଓ ବଳ ଦରକାର। ଶକ୍ତିହୀନ ଓ ଦୁର୍ବଳ ବ୍ୟକ୍ତି ଏଠାରେ ବଞ୍ଚିବା ଓ ବିକାଶ ବା ପ୍ରତିଷ୍ଠା ଲାଭକରିବା ଆଦୌ ସହଜ ନୁହଁ। ଶକ୍ତି ଓ ବଳ ଭିତରେ ପାର୍ଥକ୍ୟ ହେଲା ଜଣକ ଦେହରେ ଶକ୍ତି ଅଛି ବା ଗୋଟିଏ ପଦାର୍ଥରେ ଶକ୍ତି ଅଛି। ମାତ୍ର ତାହା ସୁପ୍ତ ଥାଏ। ଯେତେବେଳେ ଶକ୍ତିକୁ ଜାଗ୍ରତ କରାଯାଏ ଓ କୌଣସି କାର୍ଯ୍ୟରେ ପ୍ରୟୋଗ କରାଯାଏ, ସେତେବେଳେ ସେହି ସୁପ୍ତ ଶକ୍ତି 'ବଳ'ରେ ପରିଣତ ହୁଏ। ଆମେ କହୁ ବିଦ୍ୟୁତ୍‌ଶକ୍ତି, ସୌରଶକ୍ତି, ରାଷ୍ଟ୍ରଶକ୍ତି, ଇତ୍ୟାଦି।

କିନ୍ତୁ ଚାଣକ୍ୟ ପଣ୍ଡିତେ ଏହି ବଳ ସଂପର୍କରେ ଆଉ ଗୋଟିଏ ନୀତି କଥା କହୁଛନ୍ତି। ତାଙ୍କ ଭାଷାରେ କାହାର ବଳ କ'ଣ ଶୁଣନ୍ତୁ -

**ବଳଂ ବିଦ୍ୟା ଚ ବିପ୍ରାଣାଂ ରାଜ୍ଞାଂ ସୈନ୍ୟଂ ବଳଂ ତଥା।**
**ବଳଂ ବିତ୍ତଂ ଚ ବୈଶ୍ୟାନାଂ, ଶୂଦ୍ରାଣାଂ ପାରିଚର୍ଯ୍ୟକମ୍॥ (୨/୧୬)**

ଏହି ଶ୍ଳୋକଟିର ପାରମ୍ପରିକ ଅର୍ଥ ହେଲା, ବ୍ରାହ୍ମଣମାନଙ୍କର ବଳ ହେଲା ବିଦ୍ୟା। ରାଜା ବା ରାଷ୍ଟ୍ରଶକ୍ତି ହେଲା ସେନାବାହିନୀ। ବୈଶ୍ୟମାନଙ୍କର ବଳ ହେଲା ଧନ ଏବଂ ଶୂଦ୍ରମାନଙ୍କର ବଳ ହେଲା ଦୈହିକ ପରିଶ୍ରମ ଦ୍ୱାରା ଅନ୍ୟର ପରିଚର୍ଯ୍ୟା।

କିନ୍ତୁ ଏପରି ଅର୍ଥ ଆଦୌ ସର୍ବଯୁଗୋପଯୋଗୀ ନୁହେଁ, ସାର୍ବଜନୀନ ମଧ୍ୟ ନୁହେଁ। ତେଣୁ ଆମେ ଏହାର ଯୁଗୋପଯୋଗୀ ଅର୍ଥ କରିବା। ଏଠାରେ 'ବ୍ରାହ୍ମଣ' ଶବ୍ଦକୁ ଆମେ ଜାତିବାଚକ ଅର୍ଥରେ ନ ନେଇ ଗୁଣବାଚକ ଅର୍ଥରେ ବୁଝିବା ଉଚିତ ହେବ। ବ୍ରାହ୍ମଣ ଶବ୍ଦର ଗୁଣବାଚକ ଅର୍ଥ ହେଲା, ଯେଉଁ ବ୍ୟକ୍ତି ବ୍ୟାବହାରିକ ଓ ଆପେକ୍ଷିକ ସତ୍ୟ କ'ଣ, ସେ ସମ୍ବନ୍ଧେ ଗବେଷଣା କରନ୍ତି, ପରମ ସତ୍ୟ କ'ଣ ସେ ସମ୍ବନ୍ଧେ ଅନୁସନ୍ଧାନ କରନ୍ତି ଏବଂ ଜୀବନ ଓ ଜୀବିକାକୁ ସୁଚାରୁରୂପେ ପରିଚାଳନା କରିବାପାଇଁ ନାନାଦି ତଥ୍ୟ ଓ ତତ୍ତ୍ୱ ସମ୍ବନ୍ଧେ ନିଜେ ଜ୍ଞାନ ଅର୍ଜନ କରନ୍ତି ଓ ଅପରକୁ ମଧ୍ୟ ସେହି ଜ୍ଞାନ ପ୍ରଦାନ କରନ୍ତି। ଆଧୁନିକ ଯୁଗର ଶିକ୍ଷକ, ଅଧ୍ୟାପକ, ଦାର୍ଶନି ବୈଜ୍ଞାନିକ ଓ ଧର୍ମ, ସାହିତ୍ୟ, ସଂସ୍କୃତି ସମ୍ବନ୍ଧେ ଜ୍ଞାନୀ ଗୁଣୀ ବ୍ୟକ୍ତିମାନଙ୍କୁ ଆମେ ବ୍ରାହ୍ମଣ କହିପାରିବା। ତେଣୁ ଜଣେ ଶିକ୍ଷକ, ଅଧ୍ୟାପକ; ବୈଜ୍ଞାନିକ ଓ ବିଭିନ୍ନ ବିଦ୍ୟାରେ ନିପୁଣ ବ୍ୟକ୍ତିର ବଳ ହେଲା ଜ୍ଞାନ। ଉପଯୁକ୍ତ ଜ୍ଞାନ ନ ଥିଲେ ଏମାନେ ନିଜେ ଅପଦାର୍ଥ ବୋଲି ନିନ୍ଦିତ ହୁଅନ୍ତି ଏବଂ ଏମାନେ ମଧ୍ୟ ମଥା ଟେକି ସମାଜରେ ଚାଲିପାରନ୍ତି ନାହିଁ। ସେହିପରି ବୈଶ୍ୟ ଶବ୍ଦକୁ ଆମେ ଜାତିବାଚକ ଅର୍ଥରେ ନ ବୁଝି ବୃତ୍ତି ଅର୍ଥରେ ବୁଝିବା। ଆମ ଯୁଗରେ ଯେଉଁ ଜାତିର ଲୋକ ଯଦି ବାଣିଜ୍ୟ ବ୍ୟବସାୟ କରେ, ଆମେ ତାକୁ ବୈଶ୍ୟ କହିବା। ବୈଶ୍ୟବୃତ୍ତିରେ ବେପାରବଣିଜ କଳକାରଖାନା କରି ଯେଉଁ ଲୋକ ପ୍ରଚୁର ଧନ ଉପାର୍ଜନ କଲା ଓ ସେହି ଧନକୁ ଆହୁରି ଅଧିକ ଧନ ଉପାର୍ଜନରେ ଖଟାଇ ପାରିଲା, ତେବେ ତା'ର ବଳ ହେଲା ଏହି ଧନ। କାରଣ ତଦ୍ୱାରା ସେ ସମାଜର ବହୁ ଲୋକଙ୍କର ଭରଣପୋଷଣର ସୁଯୋଗ ସୃଷ୍ଟି କରିଥାଏ; ଏବଂ ସାଧାରଣ ଲୋକଙ୍କ ନିକଟରେ ତା'ର ବ୍ୟବହାର ଉପଯୋଗୀ ପଦାର୍ଥ ସବୁ ଯୋଗାଇ ପାରିଥାଏ। ତେଣୁ ବୈଶ୍ୟବୃତ୍ତିର ବଳ ହେଲା 'ଧନ'।

ସେହିପରି ଆଜିର ଗଣତନ୍ତ୍ର ଯୁଗରେ ଅବଶ୍ୟ ରାଜାମାନେ ନାହାନ୍ତି। କିନ୍ତୁ ରାଷ୍ଟ୍ର ଅଛି ଓ ଗଣତନ୍ତ୍ର ଶାସନର ସର୍ବୋଚ୍ଚ କ୍ଷମତାଧାରୀ ପ୍ରେସିଡେଣ୍ଟ ଅଛନ୍ତି। ରାଷ୍ଟ୍ରପତି

ହେଉଛନ୍ତି ରାଷ୍ଟ୍ରଶକ୍ତିର ପ୍ରତୀକ ଏବଂ ରାଷ୍ଟ୍ରଶକ୍ତିର ମୁଖ୍ୟ। ଆଧୁନିକ ପୃଥିବୀରେ ଗୋଟିଏ ରାଷ୍ଟ୍ର ଉପଯୁକ୍ତ ନିଷ୍ଠାପର ସେନାବାହିନୀ ଓ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ କରି ନିଜକୁ ବଳଶାଳୀ କରିଥାଏ। ଆଜିକାଲି ପରମାଣୁ ଶକ୍ତି ଯାହାର ଅଛି, ସେ ଏକ ବଳଶାଳୀ ରାଷ୍ଟ୍ର। ପରମାଣୁ ଅସ୍ତ୍ର ଓ ସୁଶିକ୍ଷିତ ସେନାବାହିନୀ ଯେଉଁ ରାଷ୍ଟ୍ରର ଯେତେ ଅଧିକ, ସେ ବର୍ତ୍ତମାନ ସେହି ବଳରେ ବଳୀୟାନ୍ ହୋଇ ଅନ୍ୟ ଛୋଟ ରାଷ୍ଟ୍ରମାନଙ୍କୁ ଡରାଇ ରଖିଛି।

ଶେଷ କଥାଟି ହେଲା, ଅନ୍ୟର ସେବା, ପରିଚର୍ଯ୍ୟା କରିବାରେ ଯେଉଁ ଲୋକ ଯେତେ ଅଧିକ ନିଷ୍ଠାପର ଓ କୁଶଳୀ ସେ ସେତିକି ସୁଖୀଜୀବନ ବଞ୍ଚିପାରେ। ଏହି ପରିଚର୍ଯ୍ୟା ବା ସେବା ହେଲା ଦୈହିକ। ଗୋଟିଏ ଦମ୍ପତିଙ୍କଠାରୁ ଚାରୋଟି ସନ୍ତାନ ଜନ୍ମିଲେ। ସେଥିରୁ ଜଣେ ଜ୍ଞାନ ଦିଗରେ ଚାଲିଲା, ସେ ବ୍ରାହ୍ମଣ। ଆଉ ଜଣେ ସେନାବାହିନୀରେ ବା ଶାସନ କାର୍ଯ୍ୟରେ ଯୋଗ ଦେଲା, ସେ କ୍ଷତ୍ରିୟ। ଆଉ ଜଣେ ବାଣିଜ୍ୟ ବେପାର କଲା, ସେ ହେଲା ବୈଶ୍ୟ ଓ ଅନ୍ୟଜଣକ ଏସବୁକୁ ପାରିଲା ନାହିଁ। ତା'ର ଏତେ ବୁଦ୍ଧି ନାହିଁ କି ସାହସ ବି ନାହିଁ। କିନ୍ତୁ ତା'ର ଅଛି ଏକ ସୁସ୍ଥସବଳ ଶରୀର; ଏବଂ ଯେକୌଣସି ଦୈହିକ କାର୍ଯ୍ୟ କରିବାପାଇଁ ଆଗ୍ରହ ଓ ନିଷ୍ଠା; ତେଣୁ ଶ୍ରମିକ ବା କୃଷକ ହେଲା। ତାକୁ ଆମେ ଶୂଦ୍ର କହିବା। ନିଷ୍ଠାପର ହୋଇ ଆନ୍ତରିକ ଭାବେ ଯଦି ଜଣେ ଗୋଟିଏ ଦୈହିକ କାର୍ଯ୍ୟକୁ ଆପଣାର ଶ୍ରମ ଦେଇ ସୁଚାରରୂପେ ସଂପନ୍ନ କରେ, ତେବେ ଏହି ନିଷ୍ଠାପର ଦୈହିକ ଶ୍ରମ ହିଁ ତା'ର ବଳ ହୋଇଥାଏ।

ପାଠକେ! ଏଠାରେ ବ୍ରାହ୍ମଣକୁ ସର୍ବଶ୍ରେଷ୍ଠ ଆସନ ଓ ଶୂଦ୍ରକୁ ସର୍ବନିମ୍ନ ଆସନ ଦିଆଯାଇ ନାହିଁ। ଯେଉଁମାନେ ଆମର ସନାତନ ହିନ୍ଦୁଧର୍ମକୁ ଠିକ୍ ଭାବେ ବୁଝିଛନ୍ତି, ଯେଉଁମାନଙ୍କର ବେଦ, ଉପନିଷଦ ଓ ସଂହିତାମାନଙ୍କ ସମ୍ବନ୍ଧେ ଭଲ ଜ୍ଞାନ ଅଛି, ଯେଉଁମାନେ ରାମକୃଷ୍ଣ ପରମହଂସ, ମା' ଶାରଦାମଣି, ସ୍ୱାମୀ ବିବେକାନନ୍ଦ, ସିଷ୍ଟର ନିବେଦିତା-ଶ୍ରୀଅରବିନ୍ଦ, ଶ୍ରୀମା, ମୀରା, ମହାତ୍ମା ଗାନ୍ଧୀ ଓ ବିନୋବା ଭାବେ ପ୍ରମୁଖଙ୍କୁ ଭଲ ଭାବେ ଜାଣିଛନ୍ତି ଓ ବୁଝିଛନ୍ତି, ସେମାନେ ନିଶ୍ଚୟ ଜାଣନ୍ତି ଯେ, ଆମ ଧର୍ମରେ ଓ ସମାଜରେ କାହାକୁ ଅତି ମାନ୍ୟ ଦିଆଯାଇ ଅନ୍ୟକୁ ହୀନିମାନ କରାଯାଇ ନାହିଁ। ବ୍ରାହ୍ମଣ ତାଙ୍କ ସ୍ଥାନରେ, କ୍ଷତ୍ରିୟ ତାଙ୍କ ସ୍ଥାନରେ, ବୈଶ୍ୟ ତାଙ୍କ ସ୍ଥାନରେ ଓ ଶୂଦ୍ର ତାଙ୍କ ସ୍ଥାନରେ ବଡ଼। ଆମେ ଜଣେ ନିଷ୍ଠାପର କର୍ମକୁଶଳୀ, ସତ୍‌ଚରିତ୍ର ଓ ଧର୍ମପରାୟଣ ଶ୍ରମିକଙ୍କୁ ଯେ କୌଣସି ବ୍ୟଭିଚାରୀ, ଅସାଧୁ, ନିଷ୍ଠାହୀନ, ଧର୍ମାଧର୍ମ ଜ୍ଞାନରହିତ ଜ୍ଞାନୀ, ଅଧାପକ, ବୈଜ୍ଞାନିକ, ପ୍ରଶାସକ, ନେତା ଓ ଯେ କୌଣସି ପ୍ରତିଭାବାନ୍

ମଣିଷଠାରୁ ଅଧିକ ସମ୍ମାନ ଦେବୁ। ବାଲିଗାଁ ଦାସିଆ ବା ରେଢ଼ାଖୋଲ ଭୀମଭୋଇଙ୍କୁ ସମଗ୍ର ଜାତି, ଜଗନ୍ନାଥ ଦାସ ଓ ଗୋପବନ୍ଧୁ ଦାସଙ୍କ ସହିତ ସମାନ ଆସନରେ ବସାଇ ମାନ୍ୟତା ଦେଇ ଆସୁଛି।



## ୪୨. କିଏ କାହାର ପ୍ରକାଶକ

ମହାମତି ଚାଣକ୍ୟ ଗୋଟିଏ ଶ୍ଳୋକରେ କହୁଛନ୍ତି -

**ଆଚାରଃ କୁଳମାଖ୍ୟାତି ଦେଶମାଖ୍ୟାତି ଭାଷଣମ୍।**
**ସମ୍ଭ୍ରମଃ ସ୍ନେହମାଖ୍ୟାତି ବପୁରାଖ୍ୟାତି ଭୋଜନମ୍ ।। (୩/୨)**

ଏହି ଶ୍ଳୋକର ଆକ୍ଷରିକ ଅର୍ଥ ହେଲା ସ୍ନେହ, ଆଦର, ଅଭ୍ୟର୍ଥନା ଦ୍ୱାରା ଜଣକର ଅନ୍ୟଜଣକ ପ୍ରତି ପ୍ରୀତି ବା ପ୍ରେମ ପ୍ରକାଶିତ ହୋଇଥାଏ। ଜଣକର ସୁସ୍ଥ ସବଳ ଶରୀର ତା'ର ଖାଦ୍ୟପେୟକୁ ପ୍ରକାଶ କରେ। ଜଣକର ଆଚାର, ବ୍ୟବହାର, କଥାବାର୍ତ୍ତା ଦ୍ୱାରା ତା'ର କୁଳ ବା ବଂଶର ମାହାତ୍ମ୍ୟ ପ୍ରକାଶ ପାଏ; ଏବଂ ଗୋଟିଏ ଦେଶର ବିଦ୍ୱାନ୍‌ମାନଙ୍କ ଦ୍ୱାରା ଅର୍ଥାତ୍, ସେ ଦେଶର କବି, ଲେଖକ, ଦାର୍ଶନିକ, ବୈଜ୍ଞାନିକ ଓ ସାଧୁସନ୍ଥମାନଙ୍କର ଜ୍ଞାନବିଜ୍ଞାନପୂର୍ଣ୍ଣ ଭାଷଣ ଓ ଲେଖା ଦ୍ୱାରା ସେହି ଦେଶର ଗୌରବ ପ୍ରକାଶିତ ହୋଇଥାଏ।

ପାଠକେ! ଚାଣକ୍ୟ ପଣ୍ଡିତେ ଯାହା କହିଛନ୍ତି ତାହା ନିଶ୍ଚୟ ଯଥାର୍ଥ ଅଟେ। ଧରନ୍ତୁ - ଆମେ ଦେଶଛାଡ଼ି କିଛି ଦିନପାଇଁ ବିଦେଶକୁ ଯାଇଛୁ। ସେଠାରେ ଲୋକମାନେ ନିଶ୍ଚୟ ଆମର ଆଚାର ବ୍ୟବହାର, ଚାଲିଚଳନକୁ ଲକ୍ଷ୍ୟ କରୁଥିବେ। ଆମର ବ୍ୟବହାର ଯଦି ସୁନ୍ଦର, ମାର୍ଜିତ, ଭଦ୍ର, ଭବ୍ୟ, ସଂଯତ ଓ ସମୁଚିତ ହୋଇଥାଏ ତେବେ ତାକୁ ଦେଖି ବିଦେଶୀମାନେ ଆମର ଦେଶମାତାଙ୍କର ଗୌରବ କରିବେ। ତଦ୍ୱାରା ଆମ ଦେଶ ବା ଜାତି ଅନ୍ୟଦୃଷ୍ଟିରେ ଖୁବ୍‌ବଡ଼ ବୋଲି ମାନ୍ୟତା ପାଇବ। ଆମେ ବିଦେଶକୁ ଯାଇ ସେଠାରେ ହୀନ ଆଚରଣ କଲେ - ସେମାନେ କେବଳ ଆମକୁ ହୀନ ଭାବିବେ ନାହିଁ, ସାରା ଦେଶ ଓ ଜାତିକୁ ମଧ୍ୟ ଖୁବ୍ ନିମ୍ନଦୃଷ୍ଟିରେ, ଅବଜ୍ଞାଦୃଷ୍ଟିରେ ଦେଖିବେ। ତେଣୁ ଜ୍ଞାନବିଜ୍ଞାନ ଭଳି ଆଚାର ବ୍ୟବହାର ମଧ୍ୟ ତୁମର ବଂଶମର୍ଯ୍ୟାଦା, ଜାତିମର୍ଯ୍ୟାଦା ଓ ଦେଶମର୍ଯ୍ୟାଦାକୁ ପ୍ରକାଶ କରିଥାଏ।

ସୁସ୍ଥ ଓ ସବଳ ଶରୀରଟିଏ ଦେଖିଲେ ଆମେ ନିଶ୍ଚୟ ବୁଝିବା ଯେ, ଏ ଲୋକଟି ଭଲ ଶକ୍ତିଦାୟକ ଓ ସ୍ୱାସ୍ଥ୍ୟକର ଖାଦ୍ୟ ଭୋଜନ କରେ। ତା' ନ ହେଲେ, ତା'ର ଏ ବପୁ ଏପରି ସୁନ୍ଦର ହେଲା କିପରି ? କିନ୍ତୁ ଭଲ ଭୋଜନ ଓ ଖାଦ୍ୟ କହିଲେ ଆମେ ଅତି ମହାର୍ଘ୍ୟ ଖାଦ୍ୟ କଥା ବୁଝିବା ନାହିଁ। ଜିହ୍ୱାର ସ୍ୱାଦରଞ୍ଜନ ପାଇଁ ବା ଲୋଭ ହେତୁ ଯେଉଁମାନେ ଖୁବ୍ ତୈଳାକ୍ତ ବା ମଧୁର ଖାଦ୍ୟ ଖାଆନ୍ତି ସେମାନେ ହୁଏତ ହଜମ କରି ନ ପାରି ନାନାଦି ରୋଗ ଭୋଗି ଜୀର୍ଣ୍ଣଶୀର୍ଣ୍ଣ ଦିଶନ୍ତି; କିମ୍ବା ଖୁବ୍ ସ୍ଥୁଳକାୟ ଅଥର୍ବ ଅସୁନ୍ଦର ଚେହେରାଟିଏ ପାଇଥାନ୍ତି। ତେଣୁ ଶରୀରକୁ ସୁସ୍ଥ, ସବଳ, ସୁନ୍ଦର ରଖିବାକୁ ହେଲେ ଆମକୁ ପୁଷ୍ଟିକର ଓ ସମରସପୂର୍ଣ୍ଣ ଖାଦ୍ୟ ଖାଇବାକୁ ହେବ। ଯୋଗୀ ମୁନିଙ୍କ ଶରୀର ହାତୀ ଭଳି ନୁହେଁ। କିନ୍ତୁ ସଂଯତ ଓ ପୁଷ୍ଟିକର ଖାଦ୍ୟ ଖାଇବା ଦ୍ୱାରା ସେମାନଙ୍କ ଶରୀର ଯେପରି ସୁସ୍ଥ, ସବଳ ଦିଶୁଥାଏ - ସେହିପରି ବେଶ୍ ସୁନ୍ଦର ଓ ତେଜୋବନ୍ତ ମଧ ଦିଶୁଥାଏ। ତେଣୁ ଚାଣକ୍ୟ ପଣ୍ଡିତେ ଯାହା କହୁଛନ୍ତି ତାହା ସତ୍ୟ। ତୁମର ଶରୀର ଦେଖିଲେ ତୁମେ କ'ଣ ଖାଉଛ କିପରି ଖାଉଛ ଓ କେତେ ଖାଉଛ ତାହା ନିଶ୍ଚୟ ବୁଝାପଡ଼େ। ସେହି ସ୍ନେହ ପ୍ରେମର ସୂଚକ କ'ଣ ? ସ୍ୱାମୀ ସ୍ତ୍ରୀ ହେଉ - ପିତା ମାତା ଓ ସନ୍ତାନ ସନ୍ତତିହୁଅନ୍ତୁ ବନ୍ଧୁବାନ୍ଧବଙ୍କ କଥା ହେଉ - ଏପରିକି ପଶୁପକ୍ଷୀଙ୍କ କଥା ହେଉ ସେମାନଙ୍କ ଭିତରେ କେତେ ସ୍ନେହ, ପ୍ରୀତି ଅଛି ତାହା କିପରି ଆମେ ଜାଣିବା ? ଜାଣିବା ସେମାନଙ୍କ ଭିତରେ କିପରି ଆଦାନପ୍ରଦାନ ହେଉଛି - ସେ କଥାରୁ। ଦୁଇ ସ୍ନେହୀ ପକ୍ଷଙ୍କ ଭିତରେ ଦୁଇପ୍ରକାର ଆଦାନପ୍ରଦାନ ହୋଇଥାଏ। ଭାବର ଆଦାନପ୍ରଦାନ ଓ ବସ୍ତୁର ଆଦାନପ୍ରଦାନ। ଦୁଇ ପ୍ରେମୀଙ୍କ ଭିତରେ ସର୍ବଦା ଆଦର ଅଭ୍ୟର୍ଥନା ମଧ ଚାଲିଥାଏ। ଉଭୟପକ୍ଷ ପରସ୍ପରର ହିତ ଚାହାନ୍ତି - ପରସ୍ପରର ଗୌରବ ଦେଖିବାକୁ ଚାହାନ୍ତି - ସୁଖଦୁଃଖରେ ଭାଗୀ ହୁଅନ୍ତି। ଦେଖିଲେ ଆନନ୍ଦଉଲ୍ଲାସ ଲାଭ କରନ୍ତି। ନ ଦେଖିଲେ ମନମାରି ରହିଥାନ୍ତି। ସର୍ବଦା ଦୁଇପକ୍ଷ ପରସ୍ପରକୁ ଦୁଃଖ ବିପଦରେ ସାହାଯ୍ୟ କରିବାକୁ ପ୍ରସ୍ତୁତ ଥା'ନ୍ତି; ଏବଂ ପରସ୍ପରର ସୁଖ ଆନନ୍ଦରେ ଉଭୟପକ୍ଷ ଉତ୍‌ଫୁଲ୍ଲିତ ଅନୁଭବ କରନ୍ତି। ସେମାନଙ୍କ ଭିତରେ ସର୍ବଦା ଭାରଥୋର ଓ ବିଭିନ୍ନ ବସ୍ତୁର ଦିଆନିଆ ମଧ ଚାଲିଥାଏ। ଏ ଘରୁ ଆମ୍ବ ପଠାଇଲେ ସେ ବନ୍ଧୁଘରୁ ପଣସ ଆଦି ପହୁଞ୍ଚେ। ଭଲ ଭଲ ଦିନମାନଙ୍କରେ ପରସ୍ପର ପରସ୍ପରକୁ ନାନାଦି ଉପହାର ଦେଇଥାନ୍ତି। ଏପରି ଚାଲିଥାଏ ଏବଂ ଏପରି ଚାଲିଥିବାର ଦେଖିଲେ ଆମେ ଜାଣିବା ଯେ, ଦୁହିଁଙ୍କ ଭିତରେ ଖୁବ୍ ପ୍ରଗାଢ଼ ଓ ମଧୁର ପ୍ରୀତି ସମ୍ପର୍କ ରହିଛି ଏବଂ ଉଭୟ ପକ୍ଷ ପରସ୍ପରର ପ୍ରେମ ପ୍ରୀତିକୁ ଉପଭୋଗ କରୁଛନ୍ତି।



## ୪୩. ଆଗ କର୍ମ - ପରେ କଥା

ଚାଣକ୍ୟ ପଣ୍ଡିତେ କହୁଛନ୍ତି,

**ମନସା ଚିନ୍ତିତଂ କାର୍ଯ୍ୟଂ ବାଚା ନୈବ ପ୍ରକାଶୟେତ୍ ।**
**ମନ୍ତ୍ରେଣ ରକ୍ଷୟେଦ୍ ଗୂଢ଼ଂ କାର୍ଯ୍ୟେ ଚାଽପି ନିଯୋଜୟେତ୍ ॥ (୨/୭)**

ଅର୍ଥାତ୍, ମନ ଭିତରେ ଯେଉଁ କାର୍ଯ୍ୟଟି କରିବ ବୋଲି ଭବିଛ - ତାକୁ କାହା ଆଗରେ ପ୍ରକାଶ କର ନାହିଁ। କାର୍ଯ୍ୟଟି ବାସ୍ତବରେ ସମ୍ପନ୍ନ ହେବା ଆଗରୁ ତାକୁ ବରଂ ତୁମ ମନ ଭିତରେ ମନ୍ତ୍ର ଭଳି ଗୋପନୀୟ ରଖ; ଏବଂ କାହାକୁ ନ ଜଣାଇ ସମସ୍ତଙ୍କ ଅଗୋଚରରେ ସେଇ କାର୍ଯ୍ୟଟିକୁ ସମ୍ପାଦନ କର ।

ପାଠକେ ! ଚାଣକ୍ୟ କେବଳ ଜଣେ ଜ୍ଞାନୀ ପଣ୍ଡିତ ବା ଶାସ୍ତ୍ରବିତ୍ ନ ଥିଲେ। ସେ ଥିଲେ ଜଣେ କୂଟନୀତିଜ୍ଞ, ରାଜନୀତିଜ୍ଞ ଓ ଜଣେ ଅତ୍ୟୁତ୍ତମ କର୍ମକୁଶଳ ବ୍ୟକ୍ତି। ତେଣୁ କର୍ମରେ ସଫଳ ହେବାକୁ ହେଲେ ଆମକୁ କି ପ୍ରକାର ମନୋଭାବ ରଖିବାକୁ ହେବ, କି ପ୍ରକାର ସତର୍କତା ଅବଲମ୍ବନ କରିବାକୁ, ସେସବୁ କର୍ମ-କୌଶଳ ତାଙ୍କୁ ଖୁବ୍ ଜଣାଥିଲା। ତେଣୁ ସେ ଆମକୁ ଯାହାସବୁ ଉପଦେଶ ଦେଇଛନ୍ତି, ସେ ସବୁ ତାଙ୍କ ନିଜର ଅଭିଜ୍ଞତା-ପ୍ରସୂତ।

ସତ କଥା। ଆମ ଭିତରେ ବହୁ ମଣିଷ ଅଛନ୍ତି, ଯେଉଁମାନଙ୍କର ବାକ୍-ସଂଯମ ନ ଥାଏ। ଯାହା ମନକୁ ପାଇଲା ସ୍ଥାନ କାଳ ପାତ୍ର ନ ବିଚାରି ଗପି ଚାଲନ୍ତି। ତାଙ୍କ କଥାର ପରିଣାମ କ'ଣ ହେବ, ସେ କଥା ମଧ୍ୟ ସେମାନେ ଭାବିପାରନ୍ତି ନାହିଁ। ଆଉ ମଧ୍ୟ ଆମ ଭିତରେ ବହୁଲୋକ ଅଛନ୍ତି ଯେଉଁମାନେ କଥା କହିବାରେ ବାଚାଳ। ଅନବରତ ଯାଡୁସାଡୁ ଗପୁଥାନ୍ତି। ଛୋଟିଆ କଥାକୁ ଏଡ଼େ ବଡ଼ କରି କହନ୍ତି। କୌଣସି କଥାକୁ ସଂକ୍ଷେପରେ କହିପାରନ୍ତି ନାହିଁ। ତିଳକୁ ତାଳ କରି କହନ୍ତି।

ଭଗବାନ୍ ମଣିଷକୁ କଥା କହିବାର ଶକ୍ତି ଓ ପ୍ରତିଭା ଦେଇଛନ୍ତି। ମାତ୍ର ସବୁ ମଣିଷ ତା'ର ସଦ୍‌ବ୍ୟବହାର କରିପାରନ୍ତି ନାହିଁ। ବରଂ ମଣିଷ ହିଁ ତା' ବାକ୍-ଶକ୍ତି ଓ ବାକ୍-ପ୍ରତିଭାର ଅପବ୍ୟବହାର କରିଥାଏ। ଏହିସବୁ ଦୃଷ୍ଟିରୁ ବାକ୍ୟକୁଶଳୀ ଓ କର୍ମକୁଶଳୀ ଚାଣକ୍ୟ ଆମକୁ ସତର୍କ ବାଣୀ ଶୁଣାଇଛନ୍ତି।

ଦେଖ ବାବୁ! ଯୋଉ କାମଟି କରିବ ବୋଲି ମନରେ ଭାବିଛ ବା ମନ ଭିତରେ ଯୋଜନା କରିଛ, ତାହା ବାସ୍ତବରେ କରିବା ଆଗରୁ ସେ କଥା ବାଚାଳଙ୍କ

ପରି ଡିଣ୍ଡିମ ପିଟି ସମସ୍ତଙ୍କ ଆଗରେ କହିବୁଲନା। କାରଣ ତୁମ ଶ୍ରୋତାମାନଙ୍କ ଭିତରେ ଏପରି ଲୋକ ଥିବେ, ଯେଉଁମାନେ ତୁମ କଥା ଶୁଣିଲାପରେ ତୁମର କାର୍ଯ୍ୟଟିକୁ ଭଣ୍ଡୁର କରିବା ପାଇଁ ଚେଷ୍ଟା କରିପାରନ୍ତି। ତୁମେ ଜଣକୁ ହୁଏତ ତୁମର ମନକଥାଟି କହିଛ, ମାତ୍ର ସେ ଟାକୁ ବହୁ ଲୋକଙ୍କ ଆଗରେ କହିଦେବ; ଏବଂ ତୁମର ବିରୋଧୀମାନେ ବା ହିଂସ୍ରକମାନେ ହୁଏତ ଏପରି ପରିସ୍ଥିତି ସୃଷ୍ଟି କରିପାରନ୍ତି, ଯାହାଫଳରେ ତୁମେ ତୁମର ମନୋନୀତ କର୍ମଟିକୁ ଆଦୌ ଆରମ୍ଭ ମଧ୍ୟ କରିପାରିବ ନାହିଁ।

ରାଜନୈତିକ କ୍ଷେତ୍ରରେ ରାଜା, ମନ୍ତ୍ରୀ ବା ଶାସକ ପ୍ରଶାସକମାନେ ଏ ସମ୍ବନ୍ଧେ ଖୁବ୍ ସତର୍କ ଥାଆନ୍ତି। ରହିବା ଉଚିତ ମଧ୍ୟ। କାରଣ ଏମାନଙ୍କର ଶତ୍ରୁ ବା ବିରୋଧୀଙ୍କ ସଂଖ୍ୟା ଅଧିକ ନୁହେଁ କି? କିନ୍ତୁ ଏଇ ସାବଧାନ ବାଣୀଟି ମଧ୍ୟ ଆମ ସମସ୍ତଙ୍କ ପ୍ରତି ସମାନଭାବେ ପ୍ରଯୁଜ୍ୟ। ଯୋଉ କାମଟି କରିବାକୁ ମନସ୍ଥ କରିଛ - ତାହା ତୁମ ମନରେ ଥାଉ। କାମଟି କରିବା ଆଗରୁ ଏଣେତେଣେ କହିବୁଲନା ଯେ ମୁଁ ଏହା କରିବି ବା ତାହା କରିବି ବା ଏସା କରିବି ତେସା କରିବି।

ନେପଥ୍ୟବିଦ୍ (ଅକଲ୍‌ଟିଷ୍ଟ)ମାନେ କହନ୍ତି, ଆମର ଏଇ ବାୟୁମଣ୍ଡଳରେ ଯେଉଁ ଅଦୃଶ୍ୟ ସୂକ୍ଷ୍ମ ଜଗତସବୁ ଅଛି, ସେ ସବୁଥିରେ ବହୁ ବହୁ ଦୁଷ୍ଟ ସତ୍ତା (ଏଇଭିଲ୍ ବିଂଗସ୍ ବା ହୋଷ୍ଟାଇଲ୍ ବିଗଂସ୍) ଅଛନ୍ତି। ବିଶେଷତଃ ନିମ୍ନ ପ୍ରାଣଜଗତରେ ବହୁ ଅନିଷ୍ଟକାରୀ ସୂକ୍ଷ୍ମସତ୍ତା ଅଛନ୍ତି। ସେମାନେ ଅବଶ୍ୟ ଆମ ମନଭିତରେ ପଶି ଆମ ମନ କଥା ଜାଣିପାରିବେନି। କାରଣ ସେମାନେ ତ ଆଉ ଅନ୍ତର୍ଯାମୀ ଭଗବାନ୍ ନୁହନ୍ତି। କିନ୍ତୁ ସେହି ସୂକ୍ଷ୍ମ ଦୁଷ୍ଟ ସତ୍ତାମାନେ ତୁମ ପାଟିରୁ ଉଚ୍ଚାରିତ କଥା ଶୁଣିପାରିବେ; ଏବଂ ସେମାନଙ୍କ ଦୁଷ୍ଟାମି ଗୁଣରେ ତୁମର ସବୁ ଯୋଜନା ଓ କାର୍ଯ୍ୟରେ ବିଘ୍ନ ଘଟାଇବେ ବା ଭଣ୍ଡୁର କରିଦେବେ। ତୁମେ ଅବଶ୍ୟ ସେମାନଙ୍କୁ ଦେଖିପାରିବନି କି ଶୁଣିପାରିବନି। କାରଣ ତୁମର ପଞ୍ଚ ଜ୍ଞାନେନ୍ଦ୍ରିୟ ଓ ପଞ୍ଚ କର୍ମେନ୍ଦ୍ରିୟ ସେଥିପାଇଁ ସମର୍ଥ ନୁହନ୍ତି।

କିନ୍ତୁ ଯେଉଁମାନଙ୍କର ସୂକ୍ଷ୍ମ ମନେନ୍ଦ୍ରିୟ ଅଛି, ସୂକ୍ଷ୍ମ ବୋଧିଚେତନା ଅଛି, ସେମାନେ ସେହିସବୁ ସୂକ୍ଷ୍ମ ସତ୍ତାମାନଙ୍କୁ ପ୍ରତ୍ୟକ୍ଷ କରିପାରନ୍ତି। ତେଣୁ ଆମେ ବିଚକ୍ଷଣ ବୁଦ୍ଧି ଚାଣକ୍ୟ ପଣ୍ଡିତଙ୍କର ଉପଦେଶ ନିଶ୍ଚୟ ମାନିବା ଯଦି ଆମେ ଆମ କର୍ମର ସଫଳତା ଚାହୁଁ। କୌଣସି କର୍ମ କରିବା ଆଗରୁ ସେକଥା ସମସ୍ତଙ୍କ ଆଗରେ ଆଗତୁରା କହିବୁଲନା। ତୁମ ମନ ଭିତରେ ରଖ। ମନ୍ତ୍ର ଭଳି ଗୋପନ କରି ରଖ।

କାର୍ଯ୍ୟଟି ସରିଯାଉ। ବଳେ ବଳେ ସେ କଥା ସମସ୍ତେ ଜାଣିପାରିବେ। ପ୍ରକୃତ କର୍ମୀମାନେ ବାହାପିଆ ନୁହନ୍ତି, ବହକାଲିଆ ନୁହନ୍ତି, ବାଚାଳ ନୁହନ୍ତି, କି ବାହାଦୁରିଆ ନୁହନ୍ତି। ପ୍ରକୃତ କର୍ମୀ କୋଳାହଳ କରି କର୍ମ କରେ ନାହିଁ। ନୀରବରେ ହିଁ ମହାମହା କାର୍ଯ୍ୟମାନ ସାଧିତ ହୁଏ।



## ୪୪. ବିଦ୍ୟାହୀନର ସାମର୍ଥ୍ୟ କାହିଁ ?

ପାଠକେ ! ଉଜ୍ଜ୍ୱଳ ବୁଦ୍ଧି ଚାଣକ୍ୟ ଏଥର ଆମକୁ ଏଇ ଶ୍ଳୋକରେ 'ବିଦ୍ୟାର ଆବଶ୍ୟକତା ଓ ଏହା କିପରି ଜଣେ ଅଧମ ଲୋକକୁ ଖୁବ୍ ଭାଗ୍ୟବାନ୍ କରିଦିଏ ଓ ଏହା ବିହୁନେ ଜଣେ ଭାଗ୍ୟବାନ୍ ଲୋକ କିପରି ଅପଦାର୍ଥ ହୋଇଯାଏ, ସେହି କଥା କହୁଛନ୍ତି। ଶ୍ଳୋକଟି ଶୁଣନ୍ତୁ।

**ଶୁନଃ ପୁଚ୍ଛମିବ ବ୍ୟର୍ଥଂ ଜୀବିତଂ ବିଦ୍ୟୟା ବିନା।**
**ନ ଗୁହ୍ୟଗୋପନେ ଶକ୍ତଂ ନ ଚ ଦଂଶନିବାରଣେ ।। (୭/୧୯)**

ଅର୍ଥାତ୍, କୁକୁରର ଲାଞ୍ଜ ଯେପରି କୁକୁର ପାଇଁ ଏକ ବ୍ୟର୍ଥ ଅଙ୍ଗ ହୋଇଥାଏ, ସେହିପରି ବିଦ୍ୟାହୀନ ବ୍ୟକ୍ତିର ଜୀବନ ବିଦ୍ୟାବିହୁନେ ବ୍ୟର୍ଥ ହୋଇଥାଏ। ବିଷୟଟିର ବିଶଦ ଓ ବ୍ୟାପକ ଆଲୋଚନା କଲେ ଏହାର ଯଥାର୍ଥତା ବୁଝିହୁଏ। ଗୋରୁ, ଘୋଡ଼ା, ଗଧ, ମଇଁଷି, ଶୃଗାଳ, ମାଙ୍କଡ଼ ପ୍ରଭୃତି ପ୍ରାଣୀମାନଙ୍କର ପଛରେ ଲାଞ୍ଜ ଥାଏ। କୋଉ ପ୍ରାଣୀର ଲାଞ୍ଜ ଛୋଟ, କାହାର ବା ଲମ୍ବା, କାହାର ଲାଞ୍ଜ ମୋଟା ଓ ଲୋମଶ, କାହାର ପୁଣି ସରୁ ଓ ନିର୍ଲୋମ। କିନ୍ତୁ ଏହି ଲାଞ୍ଜ ଅଙ୍ଗଟି ସେମାନଙ୍କର ବହୁତ ଉପକାର କରିଥାଏ। ସେମାନେ ଏଇ ଲାଞ୍ଜକୁ ସେମାନଙ୍କର ଗୁପ୍ତଅଙ୍ଗକୁ ଘୋଡ଼ାଇବାରେ ବ୍ୟବହାର କରନ୍ତି। କୌଣସି ପ୍ରାଣୀ ତା'ର ଲମ୍ବା ଓ ଲୋମଶ ବା ଚାମର ଥିବା ଲାଞ୍ଜକୁ ମଶା, ମାଛି ତଡ଼ିବାରେ ବ୍ୟବହାର କରିଥାଏ। କେହି କେହି ପ୍ରାଣୀ (ଯଥା ବାନର) ତା'ର ଲମ୍ବା ଓ ଶକ୍ତିଶାଳୀ ଲାଞ୍ଜକୁ ଗଛଡାଳରେ ଗୁଡ଼ାଇ ନିରାପଦରେ ବସି ଘୁମାଉଥାନ୍ତି। ଏହିପରି ମୂଷା, ବିଲେଇ, ବାଘ, ସିଂହ ସଭିଙ୍କ ଲାଞ୍ଜ ତାଙ୍କ ପାଇଁ ଉପକାରୀ। କିନ୍ତୁ କୁକୁର ଗୋଟିଏ ପ୍ରାଣୀ, ଯାହାର ଲାଞ୍ଜଟିଏ ଅଛି। ମାତ୍ର ତା'ର ଲାଞ୍ଜ ତା'ପାଇଁ କୌଣସି ଆବଶ୍ୟକତା ପୂରଣ କରିପାରେ ନାହିଁ। କୁକୁରଙ୍କର ଲାଞ୍ଜ ବଙ୍କା। ତେଣୁ ସେ ଲାଞ୍ଜ ନା ତା'ର ଗୁପ୍ତାଙ୍ଗକୁ ଘୋଡ଼ାଇପାରେ ନା ତା'

ଦେହରୁ ମଶା, ମାଛି ଘଉଡ଼ାଇବାରେ କିଞ୍ଚିତ୍‌ମାତ୍ର ସାହାଯ୍ୟ କରିପାରେ। ତେଣୁ ଚାଣକ୍ୟ କହୁଛନ୍ତି, କୁକୁରର ଲାଞ୍ଜ ତା'ପାଇଁ ଏକ ବୃଥା ଅଙ୍ଗ। ଏହି ଉଦାହରଣ ଦେଇ ମହାମତି ଚାଣକ୍ୟ କହୁଛନ୍ତି, ମଣିଷଜାତି କୌଣସି ବିଦ୍ୟା ନ ଶିଖିଲେ ତେବେ ତା'ର ଜୀବନ କୁକୁର ଲାଞ୍ଜ ପରି ବୃଥା। କିଛି ବିଦ୍ୟା ଜାଣି ନ ଥିବା ଲୋକର ହାତଗୋଡ଼ ଥାଇ ମଧ୍ୟ ମନ ଓ ହୃଦୟଟିଏ ଥାଇ  ତାହା ତା'ର ଜୀବନକୁ ବିକାଶ କରିବାରେ ଆଦୌ ସାହାଯ୍ୟ କରି ନ ଥାଏ। କାରଣ ମଣିଷର ବଞ୍ଚିବା ପ୍ରଣାଳୀ ଏକପ୍ରକାରର ନୁହଁ; ଏବଂ ମଣିଷ କୋଉ କାର୍ଯ୍ୟ ସୁଚାରୁରୂପେ କରିପାରିବ, ତାହା ତା'ର ଜ୍ଞାନ ଉପରେ ନିର୍ଭର କରେ। ଏହି ଜ୍ଞାନ ହିଁ ତା'ର ବିଦ୍ୟା। ଜଣେ ଚାଷୀ ହେବାକୁ ଚାହିଁଲେ ତାକୁ କୃଷିବିଦ୍ୟା ଜଣାଥିବା ଆବଶ୍ୟକ। ବାଣିଜ୍ୟ କରିବାକୁ ଚାହିଁଲେ, ବାଣିଜ୍ୟ ବେପାରରେ ମଧ୍ୟ ଜ୍ଞାନଥିବା ଆବଶ୍ୟକ। ଡାକ୍ତର ବା ଇଞ୍ଜିନିୟର ହେବାକୁ ଚାହିଁଲେ ବା ପ୍ରଶାସକ କି ଶିକ୍ଷକ ହେବାକୁ ଚାହିଁଲେ ତାକୁ ସେହି ସେହି ବିଦ୍ୟା ଆୟତ୍ତ କରିବାକୁ ପଡ଼ିବ। ତା' ନ ହେଲେ ସେ କିଛି କରିପାରିବ ନାହିଁ। ତା'ର ବୁଦ୍ଧି ଥିଲେ ବି ସେ ସେହି ବୁଦ୍ଧି କୌଣସି ବିଦ୍ୟା ଅର୍ଜନ ନ କଲେ ବିକଶିତ ହୋଇପାରେନା, କ୍ରିୟାଶୀଳ ହୋଇପାରେନା।

ପ୍ରକାଶଥାଉ କି, ଇତର ପ୍ରାଣୀମାନେ ମଧ୍ୟ ବଞ୍ଚିବା ଲାଗି ପ୍ରକୃତିମାତାଙ୍କ ପ୍ରସାଦରୁ ଜନ୍ମସୂତ୍ରରେ ପ୍ରବୃତ୍ତି ଫଳରେ ଅନେକ କଥା ଶିଖିଥାନ୍ତି। ପକ୍ଷୀମାନେ କିପରି ଆକାଶରେ ଉଡ଼ିବାକୁ ହୁଏ ଶିଖନ୍ତି ତାଙ୍କ ମାଆଙ୍କଠାରୁ। ପ୍ରକୃତିଦତ୍ତ ସୀମିତ ବୁଦ୍ଧିବଳରେ ରହିବାପାଇଁ ନୀଡ଼ ବା ବସାଟିଏ ତିଆରି କରିପାରନ୍ତି। ସେମାନଙ୍କ ଜୀବନ ସରଳ। ତେଣୁ ସେମାନଙ୍କୁ ବହୁ ବିଦ୍ୟା ଅର୍ଜନ କରିବାକୁ ପଡ଼େ ନାହିଁ। ମାତ୍ର ମନୁଷ୍ୟର ଜୀବନଯାତ୍ରା ଖୁବ୍ ଜଟିଳ। ତେଣୁ ତାକୁ ନାନାଦି ବିଦ୍ୟାରେ ପାରଙ୍ଗମ ହେବାକୁ ହୁଏ। ଗୋଟିଏ ଉଦାହରଣ ଶୁଣନ୍ତୁ।

ଜଣେ ଚାଷ କରିବାକୁ ଚାହୁଁଛି। ତେବେ ତାକୁ କେତେ ଜ୍ଞାନ ଅର୍ଜନ କରିବାକୁ ହେବ ଦେଖନ୍ତୁ। ତା'ର ପାଗଯୋଗ ଜ୍ଞାନ ଥିବା ଦରକାର, ମୃତ୍ତିକା ବା ମାଟିର ଉପଯୋଗିତା, ଅପଯୋଗିତା ଜ୍ଞାନ ଅର୍ଜିବା ଦରକାର। କୋଉ ଶସ୍ୟ କିପରି ଚାଷ ହେବ, ସେ ସମ୍ବନ୍ଧେ ଜ୍ଞାନ ଥିବା ଦରକାର। ତା'ଛଡ଼ା ମତ୍ସ୍ୟଚାଷ, କୁକୁଡ଼ାଚାଷ, ମହୁଚାଷ ଇତ୍ୟାଦି ସମ୍ବନ୍ଧେ ବି ଜ୍ଞାନ ଥିବା ଦରକାର। ସବୁକଥା କରିବାପାଇଁ ଯେଉଁ ଜ୍ଞାନ ବା ବିଦ୍ୟା ଦରକାର ତାହା ଅର୍ଜନ ନ କଲେ ମଣିଷର ହାତ, ଗୋଡ଼, ଆଖି, କାନ ଥିଲେ ବି ତାହା ଅଦରକାରୀ ହୋଇପଡ଼େ ଓ ତା'ର ଜୀବନ ମଧ୍ୟ ବୃଥା ହୋଇଯାଏ।

ତେଣୁ ପ୍ରତ୍ୟେକ ମଣିଷକୁ କିଛି କିଛି ବିଦ୍ୟା ଅର୍ଜନ କରିବାକୁ ପଡ଼ିବ। ବିଦ୍ୟା ହିଁ ତା'ର ଜୀବନ୍‌କୁ ବଞ୍ଚାଏ ଓ ବିକଶିତ ହେବାରେ ସାହାଯ୍ୟ କରେ। ଚାଣକ୍ୟ ପଣ୍ଡିତେ କେବଳ ବ୍ରାହ୍ମଣକୁଳରେ ଜନ୍ମ ହୋଇ ନ ଥିଲେ। ସେ ସାଂସାରିକ ଜ୍ଞାନ ବା ବିଦ୍ୟାରେ ଯେପରି ଧୁରୀଣ ଥିଲେ – ବ୍ରହ୍ମବିଦ୍ୟା ବା ଆଧ୍ୟାତ୍ମିକ ଜ୍ଞାନରେ ବି ସେହିପରି ପ୍ରବୀଣ ଥିଲେ। ତାଙ୍କ ମତରେ ବିଦ୍ୟା ହିଁ ମଣିଷର ଅବିଦ୍ୟା ଓ ଅଜ୍ଞାନକୁ ଦୂର କରିଥାଏ ଓ ତା'ର ଜୀବନରକ୍ଷାରେ ସାହାଯ୍ୟ କରିଥାଏ।



## ୪୫. କୋଉଠିକି ଗଲେ କ'ଣ ପାଇବ ?

ପାଠକେ ! ଆପଣମାନେ ନିଶ୍ଚୟ ଜାଣନ୍ତି, ସବୁକଥା ନିର୍ଭର କରେ ସ୍ଥାନ, କାଳ, ପାତ୍ର ଉପରେ। କେତେବେଳେ କ'ଣ ଘଟିବ ତାହା ଆଗରୁ ଜଣା ନ ଥାଏ। କିନ୍ତୁ ବୁଦ୍ଧିମାନ୍ ଓ ସଚେତନ ମଣିଷ ସମୟ ଦେଖି କାରବାର କରେ। ସମୟ ଦେଖି ବ୍ୟବହାର କରେ। କାଳ, ବେଳା ଉପରେ ସଚେତନ ଥାଇ ଯାତାୟାତ କରେ। କୋଉ ବେଳରେ ପାଇଖାନା ଯିବ, କୋଉ ବେଳାରେ ଭୋଜନ କରିବ, କେଉ ବେଳାରେ ମନ୍ଦିରକୁ ଯିବ, କୋଉ ବେଳାରେ ଡାକ୍ତରଙ୍କ ପାଖକୁ ଯିବ, କେତେବେଳେ ଓକିଲ ପାଖକୁ ଯିବ, କେତେବେଳେ ଶାସକଙ୍କ ପାଖକୁ ଯିବ ସେଇ ବେଳାଟି ନିର୍ଣ୍ଣୟ କରିବା ହିଁ ବୁଦ୍ଧିମାନର କାମ।

ସେହିପରି କୋଉ ପାତ୍ର ସଙ୍ଗେ କିପରି ବ୍ୟବହାର କରିବ, ଶିକ୍ଷକ ସଙ୍ଗେ କିପିରି ବ୍ୟବହାର, ମନ୍ତ୍ରୀଙ୍କ ସହିତ କିପରି ବ୍ୟବହାର, ଡାକ୍ତରଙ୍କ ସହିତ କିପରି ବ୍ୟବହାର, ସାଧୁସନ୍ଥଙ୍କ ସଙ୍ଗେ କିପରି ବ୍ୟବହାର, କୋଉ ଜୀବଜନ୍ତୁଙ୍କ ସଙ୍ଗେ କିପରି ବ୍ୟବହାର କରିବ, ଅସାଧୁ ଓ ବଦମାସ୍ ଲୋକଙ୍କ ସହିତ କିପରି ବ୍ୟବହାର କରିବ, ସେ ସବୁ ବିଷୟରେ ଯେ ସଚେତନ ନ ଥାଏ ବା ସେସବୁ ସମ୍ବନ୍ଧେ ଯାହାର ଜ୍ଞାନ ନ ଥାଏ ସେ ତା' ଜୀବନରେ ବହୁତ ହଇରାଣ ହୋଇଥାଏ। ସେହିପରି କୋଉ ସ୍ଥାନକୁ ଗଲେ କ'ଣ ଦେଖିବ ବା କି ପ୍ରକାର ଅଭିଜ୍ଞତା ତୁମର ହେବ, ତାହା ଉତ୍ତମ ରୂପେ ବୁଝିବା ଦରକାର। ସ୍ଥାନ, ଅସ୍ଥାନ ନ ଜାଣି ବା ଜାଣିଥିଲେ ବି ତାହାକୁ ସ୍ୱୀକାର ନ କରି ଯେ ଯଦୃଚ୍ଛା ଯେ କୌଣସି ସ୍ଥାନକୁ ମାଡ଼ିଯାଏ, ସେ ତା'ର ପ୍ରତିଫଳ ନିଶ୍ଚୟ ପାଇବ। ତା'ର ଅଭିଜ୍ଞତା ମଧ୍ୟ ତଦ୍ରୂପ ହେବ। ଏ ସମ୍ବନ୍ଧେ ବିଜ୍ଞୋତ୍ତମ ମହାମତି ଚାଣକ୍ୟ ଗୋଟିଏ ଶ୍ଳୋକରେ କ'ଣ କହୁଛନ୍ତି, ପଢ଼ନ୍ତୁ।

ଗମ୍ୟତେ ଯଦି ମୃଗେନ୍ଦ୍ର-ମନ୍ଦିରଂ
ଲଭ୍ୟତେ କରି-କପୋଳ-ମୌକ୍ତିକମ୍।
ଜମ୍ବୁକାଽଽଳୟଗତେ ଚ ପ୍ରାପ୍ୟତେ
-ବତ୍ସ-ପୁଚ୍ଛ-ଖର-ଚର୍ମ-ଖଣ୍ଡନମ୍ ॥ (୭/୧୮)

ଏ ଶ୍ଳୋକଟିର ସରଳାର୍ଥଟି ହେଲା, ଯେ ଯୋଉଠିକି ଯିବ ସେଠି ସେ ସ୍ଥାନାନୁକୂଳ କଥା ଦେଖିବ ବା ଶୁଣିବ ବା ପାଇବ। ମୃଗେନ୍ଦ୍ର ଅର୍ଥ ସିଂହ। ତୁମେ ଯଦି ସିଂହ ନ ଥିଲା ବେଳେ ତା ଗୁମ୍ଫା ଭିତରକୁ ଯିବ, ତେବେ ସେଠି କ'ଣ ପାଇବ? ସିଂହ କୌଣସି ହାତୀକୁ ମାରି ତା'ର ମୁଣ୍ଡଟାକୁ ଗୁମ୍ଫା ଭିତରକୁ ଆଣି ଖାଏ; ଏବଂ ହାତୀ ମୁଣ୍ଡରେ ଥିବା ବହୁ ମୂଲ୍ୟବାନ୍ ମୁକ୍ତା (ଗଜମୋତି) ସେଠାରେ ପଡ଼ିଥାଏ। ତୁମେ ସେଇ ସିଂହର ଗୁମ୍ଫା ଭିତରକୁ ଯଦି ପଶିବ - ତେବେ ଏହି ମୂଲ୍ୟବାନ୍ ମୁକ୍ତାଟିଏ ପାଇବ।

କିନ୍ତୁ ତୁମେ ଯଦି ଜମ୍ବୁକ ମାନେ ଗୋଟିଏ ଶୃଗାଳ ବା ବିଲୁଆ ରହୁଥିବା ଗୋଟିଏ ଗୁମ୍ଫାକୁ ଯିବ, ତେବେ ସେଠାରେ କ'ଣ ଦେଖିବ? ବିଲୁଆ ଗୋଟିଏ ମଲା ବାଛୁରୀର ମଢ଼ ଖାଇ ତା'ର ଲାଞ୍ଜଟାକୁ ଘୋଷାରି ଆଣି ତା' ଗୁମ୍ଫାରେ ରଖିଥାଏ। ତୁମେ ତେଣୁ ସେଠି ଦେଖିବ ଗୋଟିଏ ମଲା ବାଛୁରୀର କୁତ୍ସିତ ଲାଞ୍ଜ; କିମ୍ବା ତୁମେ ମଧ ଗୋଟିଏ ମଲା ଗଧର ଗନ୍ଧିଆ ଚମ ସେଠି ପଡ଼ିଥିବାର ଦେଖିବ; କାରଣ ବିଲୁଆ ଗୋଟାଏ ଗଧମଡ଼ାକୁ ଖାଇ ତା'ର କୁତ୍ସିତ ଚମଡ଼ାଟିକୁ ପାଟିରେ ଘୋଷାଡ଼ି ଆଣି ତା' ଗୁମ୍ଫାରେ ପକାଇଥାଏ। ପାଠକେ! ଏହି ଶ୍ଳୋକରୁ ଆପଣ କ'ଣ ବୁଝିଲେ? ତାହା ହେଲା ପ୍ରତି ସ୍ଥାନର ଗୋଟାଏ ସ୍ୱତନ୍ତ୍ର ପ୍ରଭାବ ଥାଏ। ଯେମିତି ପ୍ରତି ପାତ୍ର (ମଣିଷ) ଓ କାଳର ଗୋଟାଏ ପ୍ରଭାବ ଥାଏ। ଶ୍ମଶାନର ପ୍ରଭାବ ଯାହା ଦେବାଳୟର ପ୍ରଭାବ ତା' ନୁହେଁ। ଡାକ୍ତରଖାନା ବା ନର୍ସିଂହୋମ୍‌ର ପ୍ରଭାବ ଯାହା, ବିଦ୍ୟାଳୟର ପ୍ରଭାବ ତାହା ନୁହଁ। ସାଲୁନ୍‌କୁ ଯାଅ। ସେଠି ତୁମେ ଯାହା ଅନୁଭବ କରିବ, ଲଣ୍ଡ୍ରୀକୁ ଯାଇ କ'ଣ ସେଠି ତାହାହିଁ ଅନୁଭବ କରିବ? ଏପରିକି ଶ୍ୱଶୁରାଳୟକୁ ଗଲେ ତୁମେ ଯାହା ଅନୁଭବ କରିବ, ମାମୁଘର ବା ମାଉସୀଘରକୁ ଗଲେ ତୁମେ ସେଇଆ ଅନୁଭବ କରିବ ନାହିଁ। ଜଣେ ପାପାଚାରୀ ଲୋକର ଘର ଓ ସଦାଚାରୀ ମହତ୍ ଲୋକର ଘର ଭିତରେ ଆକାଶ ପାତାଳ ପ୍ରଭେଦ। ତୁମେ ଦୁଇଟି ଜାଗାରେ ଦୁଇ ପ୍ରକାର ସ୍ପନ୍ଦନ ଅନୁଭବ କରିବ ଓ ଦୁଇଟି ବିପରୀତ ଦୃଶ୍ୟ ବି ଦେଖିପାରିବ। ତେଣୁ ବିବେକୀ ମଣିଷ କୋଉ ସ୍ଥାନକୁ ଯିବ ବା କୋଉ ସ୍ଥାନକୁ ନ ଯିବ ସେ କଥା ଭଲ ରୂପେ ବିବେଚନା କରିବା ଉଚିତ। ତେବେ ଏ କଥା ବି ସତ ଯେ, ଜୀବନରେ ଏମିତି

ସବୁ ମୁହୂର୍ତ୍ତ ଆସି ପହଞ୍ଚିବ, ଯେତେବେଳେ ତୁମର ସ୍ଥାନ ଅସ୍ଥାନ ଜ୍ଞାନ ରହିବ ନାହିଁ କିମ୍ବା ତୁମ ଅନିଚ୍ଛାରେ ମଧ୍ୟ ତୁମକୁ ଅସ୍ଥାନକୁ ଯିବାକୁ ପଡ଼ିପାରେ। ପାଠକେ ! କେହି କ'ଣ ମଶାଣିକୁ ଯିବା ପାଇଁ ଚାହେଁ ? କିନ୍ତୁ ତାକୁ କେବେ ଶବବାହକ ହୋଇ ମଶାଣିକୁ ଯିବା ଲାଗି ପଡ଼ିପାରେ ଏବଂ ଦିନେ କେବେ ସେ ନିଜେ ମଧ୍ୟ କୋକେଇରେ ଶୋଇ ମଶାଣିକୁ ଯାଇପାରେ।

ସେମିତି କେହି କ'ଣ ଡାକ୍ତରଖାନା ବା ନର୍ସିଂହୋମ୍‌କୁ ଯିବାଲାଗି ଇଚ୍ଛା କରେ ? ମାତ୍ର ଏପରି ବେଳ ଆସିପାରେ - ଯେତେବେଳେ ଆପଣ ନିଜ ରୋଗୀର ପରିଚର୍ଯ୍ୟା କରିବା ପାଇଁ ଦିନରାତି ରୋଗୀମାନଙ୍କ ଗହଣରେ ନିଜର ରୋଗୀଟି ପାଖେ ବସି ଶୁଶ୍ରୂଷା କରିବାକୁ ପଡ଼ିପାରେ; କିମ୍ବା କେବେ ଦିନେ ନିଜେ ରୋଗୀଟିଏ ହୋଇ ନର୍ସିଂହୋମର କୌଣସି ବେଡ୍‌ରେ ଦିନରାତି ପଡ଼ିବାର ଦୁର୍ଯୋଗ ଘଟିପାରେ।

ପାଠକେ ! ଯେତେ ଯାହା ଯୋଉ ପ୍ରକାରେ କହିଲେ ବି, ଚାଣକ୍ୟ ପଣ୍ଡିତଙ୍କ ବିଜ୍ଞ - ସୁଲଭ ବାଣୀ ଆମକୁ ସ୍ଥାନ ଅସ୍ଥାନ ସମ୍ପର୍କରେ ସଚେତନ ଓ ସାବଧାନ ହେବା ଲାଗି ଏକ ଚେତାବନୀସଦୃଶ କାମ କରେ, ଏହା ନିଃସନ୍ଦେହ।



## ୪୬. ଶାସ୍ତ୍ରର ଗୁରୁତ୍ୱ

ଶ୍ରୁତ୍ୱା ଧର୍ମଂ ବିଜାନାତି ଶ୍ରୁତ୍ୱା ତ୍ୟଜତି ଦୁର୍ମତିମ୍।
ଶ୍ରୁତ୍ୱା ଜ୍ଞାନମବାପ୍ନୋତି ଶ୍ରୁତ୍ୱା ମୋକ୍ଷମବାପ୍ନୁୟାତ୍॥ (୬/୧)

ପାଠକେ ! ଉପରୋକ୍ତ ଶ୍ଳୋକଟିରେ ଜ୍ଞାନୀପ୍ରବର ଚାଣକ୍ୟ ଆମ ଜୀବନରେ ଶାସ୍ତ୍ର ପଠନ ବା ଶ୍ରବଣର ଗୁରୁତ୍ୱ କେତେ ବା ଆବଶ୍ୟକତା କେତେ, ତାହାହିଁ ପ୍ରତିପାଦନ କରିଛନ୍ତି। ଚାଣକ୍ୟ କହୁଛନ୍ତି, ମନୁଷ୍ୟ ଯଦି ଉପଯୁକ୍ତ ଶାସ୍ତ୍ର ପଠନକରେ, ଅଧ୍ୟୟନକରେ, ମନନକରେ ଓ ସ୍ୱାଧ୍ୟାୟକରେ, ଶ୍ରବଣକରେ ବା ଆଲୋଚନାକରେ, ତେବେ ସେ ଧର୍ମ କ'ଣ ତାହା ଜାଣିପାରେ, ତା'ର ଦୁର୍ବୁଦ୍ଧିକୁ ମଧ୍ୟ ତ୍ୟାଗ କରିପାରେ। ପ୍ରଶସ୍ତ ଓ ଗଭୀର ଜ୍ଞାନ ଅର୍ଜନ କରିପାରେ ପରିଶେଷରେ ଭଗବତ୍ ଜ୍ଞାନ ବା ଦିବ୍ୟ ଜ୍ଞାନ ଲାଭକରି ସେ ଜୀବନରେ ଓ ମୃତ୍ୟୁପରେ ପରମପଦ ବା ମୋକ୍ଷ ଲାଭ କରିପାରେ।

ଆମେ ପ୍ରଥମେ ବୁଝିବା "ଶାସ୍ତ୍ର" କ'ଣ ? ଶାସ୍ତ୍ର ହେଲା ସର୍ବବିଧ ଜ୍ଞାନର ଭଣ୍ଡାର। ସେହି ଶାସ୍ତ୍ରସବୁର ପ୍ରଣେତା ହେଉଛନ୍ତି ଅଭିଜ୍ଞ ଓ ଜ୍ଞାନୀ ବ୍ୟକ୍ତିମାନେ;

ବିଜ୍ଞ ଓ ଚିନ୍ତାଶୀଳ ବ୍ୟକ୍ତିମାନେ। ଏହି ଶାସ୍ତ୍ର ମଧ୍ୟ ବହୁବିଧ। କର୍ମଶାସ୍ତ୍ର, ଭାବଶାସ୍ତ୍ର, ବୁଦ୍ଧିଶାସ୍ତ୍ର, ଦର୍ଶନଶାସ୍ତ୍ର, ବିଜ୍ଞାନଶାସ୍ତ୍ର, ଧର୍ମ ବା ଅଧ୍ୟାତ୍ମଶାସ୍ତ୍ର ଇତ୍ୟାଦି ଇତ୍ୟାଦି। ଯେ କୌଣସି କର୍ମ କରିବାକୁ ହେଲେ ସେହି କର୍ମ ସମ୍ବନ୍ଧେ ଜ୍ଞାନ ଥିବା ଉଚିତ। କୃଷକଟିଏ କୃଷିଶାସ୍ତ୍ର ପଢ଼ିବା ଉଚିତ। ଶିଳ୍ପୀଟିଏ ଶିଳ୍ପଶାସ୍ତ୍ର ପଢ଼ିବା ଉଚିତ। ଚିନ୍ତାଶୀଳ ବ୍ୟକ୍ତିଟିଏ ଦର୍ଶନଶାସ୍ତ୍ର ପଢ଼ିବା ଉଚିତ। ବୈଜ୍ଞାନିକ ହେବାକୁ ଚାହୁଁଥିବା ବ୍ୟକ୍ତି ବିଜ୍ଞାନଶାସ୍ତ୍ର ପଢ଼ିବା ଉଚିତ। ସାହିତ୍ୟ, ସଂଗୀତ, ସଂସ୍କୃତି ଇତ୍ୟାଦି ସମ୍ବନ୍ଧେ ଜାଣିବାକୁ ଚାହୁଁଥିବା ବ୍ୟକ୍ତି ସେ ସମ୍ପର୍କୀୟ ଶାସ୍ତ୍ର ପଢ଼ିବା ଉଚିତ। ଧର୍ମ କ'ଣ ଜାଣିବାକୁ ଚାହୁଁଥିବା ବ୍ୟକ୍ତି ଧର୍ମଶାସ୍ତ୍ର ପଢ଼ିବା ଦରକାର। ଈଶ୍ୱରଙ୍କୁ ଉପଲବ୍ଧି କରିବାକୁ ଚାହୁଁଥିବା ବ୍ୟକ୍ତି ଈଶ୍ୱରଙ୍କ ସମ୍ବନ୍ଧୀୟ ଶାସ୍ତ୍ର ପାଠକରିବା ବା ଶ୍ରବଣ କରିବା ଉଚିତ।

ଶାସ୍ତ୍ର ଅସୀମ, କାରଣ ଜ୍ଞାନ ମଧ୍ୟ ଅସୀମ। ମନୁଷ୍ୟ ତା'ର ସାରା ଜୀବନ ଯେତେ ଜ୍ଞାନ ଅର୍ଜନକଲେ ବି ତା'ର ଅଜ୍ଞତା କଟେନାହିଁ। ଆଜିକାଲି ସବୁ ବିଷୟରେ ଶାସ୍ତ୍ର ଲେଖାଯାଉଛି। ମତ୍ସ୍ୟ ଉତ୍ପାଦନଠାରୁ ଆରମ୍ଭ କରି ଅଣ୍ଡା ଉତ୍ପାଦନ ପର୍ଯ୍ୟନ୍ତ; ଏବଂ ଗୋମହିଷାଦି ପାଳନଠାରୁ ଆରମ୍ଭ କରି କୁକ୍କୁଟ ଓ ବତକ ପାଳନ ବା ଘୁଷୁରି ପାଳନ ପର୍ଯ୍ୟନ୍ତ ସବୁ ବିଷୟରେ ଅଭିଜ୍ଞ ବ୍ୟକ୍ତିମାନେ ଶାସ୍ତ୍ର ଲେଖିଲେଣି। ସେଲୁନ୍‌ଟିଏ କରିବାକୁ ଗଲେ ବା ଲଣ୍ଡ୍ରୀଟିଏ କରିବାକୁ ଗଲେ; କିମ୍ବା ବିଉଟି ପାର୍ଲରଟିଏ କରିବାକୁ ଗଲେ; କି ହୋଟେଲଟିଏ କରିବାକୁ ଗଲେ ତତ୍‌ସମ୍ବନ୍ଧୀୟ ଶାସ୍ତ୍ରସବୁ ପାଠକରି ଜ୍ଞାନଲାଭ କରିବା ଆବଶ୍ୟକ ପଡୁଛି। ସେ ସବୁ ସମ୍ବନ୍ଧେ ଶାସ୍ତ୍ରଜ୍ଞାନ ନ ଥିଲେ ଜଣେ ସେଥିରେ ପାରଦର୍ଶିତା ଲାଭ କରିପାରିବ ନାହିଁ; କାରଣ ଯେକୌଣସି କର୍ମ କରନା କାହିଁକି ସେହି କର୍ମଟି ବିଷୟରେ ତୁମର ଯଥାଯଥ ଜ୍ଞାନ ଥିବା ଉଚିତ। ତେବେ ସବୁ ଜ୍ଞାନ ଯେ ଖାଲି ଲିଖିତ ବହିରୁ ମିଳେ ତା' ନୁହେଁ, ଅଭିଜ୍ଞ, ତଦ୍‌ବିଦ୍ ଜ୍ଞାନୀଲୋକଙ୍କ ମୁଖରୁ ଶୁଣି ମଧ୍ୟ ଆମେ ସେ ସମ୍ବନ୍ଧେ ଜ୍ଞାନ ଅର୍ଜନ କରୁ। ମହାମହିମ ସମ୍ରାଟ୍ ଆକବର ମୂଳରୁ ଲେଖିପଢ଼ି ଜାଣି ନ ଥିଲେ। ମାତ୍ର ତାଙ୍କର ଥିଲା ଏକ ବଡ଼ ପଣ୍ଡିତ ସଭା। ସେ ସଭାରେ ବହୁ ଗୁଣୀ, ଜ୍ଞାନୀ ବ୍ୟକ୍ତିମାନେ ଆକବରଙ୍କ ସମକ୍ଷରେ ବହୁ ବିଷୟରେ ଆଲୋଚନା କରୁଥିଲେ। ଆକବର ତାହା ଶ୍ରବଣ କରି କରି ଖୁବ୍ ଜ୍ଞାନ ଅର୍ଜନ କରିଥିଲେ। ମୋଗଲ ସମ୍ରାଟ୍‌ମାନଙ୍କ ଭିତରେ ଆକବରଙ୍କୁ ହିଁ ବଡ଼ ଜ୍ଞାନୀ ବୋଲି ଐତିହାସିକମାନେ ଲେଖିଛନ୍ତି। ରାଜା ବା ଶାସକ, ପ୍ରଶାସକମାନେ ଯଦି ତାଙ୍କ ରାଜ୍ୟ ସମ୍ବନ୍ଧେ ବା ରାଜ୍ୟବାସୀଙ୍କ ସମ୍ବନ୍ଧେ କିଛି ଜାଣି ନ ଥିବେ, ଯଦି ସେ ତାଙ୍କ ରାଜ୍ୟ ବା ଦେଶର ଇତିହାସ, ଭୂଗୋଳ, ସାହିତ୍ୟ, ସଂସ୍କୃତି, ଧର୍ମ ଓ ଗୁଣୀ ବ୍ୟକ୍ତିମାନଙ୍କ ସମ୍ବନ୍ଧେ କିଛି ଜାଣି ନ ଥିବେ, ଯଦି ରାଜ୍ୟବାସୀଙ୍କ ଦୁଃଖ ଓ ସମସ୍ୟା

ସମ୍ପର୍କରେ ସେମାନଙ୍କର କିଛି ଜ୍ଞାନ ନ ଥାଏ, ତେବେ ସେମାନେ କିପରି ଦେଶ ଶାସନ କରିବେ ଓ ପ୍ରଜା ପାଳନ କରିବେ ? ତେଣୁ ଜ୍ଞାନର ଆବଶ୍ୟକତା କେତେ ତାହା ଆମେ ନ ଜାଣିଲେ ଏହି ଜୀବନରେ କୃତକାର୍ଯ୍ୟ ହୋଇପାରିବା ନାହିଁ । ଏପରିକି ରନ୍ଧନ ଜ୍ଞାନ ନ ଥିଲେ ଆମେ ଗଣ୍ଡେ ରାନ୍ଧିକରି କ୍ଷୁଧା ମଧ୍ୟ ନିବାରଣ କରିପାରିବା ନାହିଁ ।

ପାଠକେ ! ଚାଣକ୍ୟ ପଣ୍ଡିତେ ଶାସ୍ତ୍ର ବା ଜ୍ଞାନର ଆବଶ୍ୟକତା ଓ ଗୁରୁତ୍ୱ ସମ୍ବନ୍ଧେ ଆମକୁ ସଚେତନ କରିଦେଇଛନ୍ତି । କିନ୍ତୁ ସେ ଏହି ଶ୍ଳୋକରେ ଜୀବନରେ ବଞ୍ଚିବାପାଇଁ କେବଳ ଶାସ୍ତ୍ରଜ୍ଞାନର ଆବଶ୍ୟକତା କଥା କହି ନାହାନ୍ତି । ଏ ଜୀବନରେ ମୁକ୍ତି ବା ମୋକ୍ଷ ପାଇବାପାଇଁ ବା ଭଗବାନ୍‌ଙ୍କୁ ଉପଲବ୍ଧି କରିବାପାଇଁ ଧର୍ମଶାସ୍ତ୍ର ଓ ଅଧ୍ୟାତ୍ମ ଶାସ୍ତ୍ର ପଠନ ଓ ଆଲୋଚନାର ଆବଶ୍ୟକତା ଉପରେ ମଧ୍ୟ ଜୋର ଦେଇଛନ୍ତି । ରାମାୟଣ, ମହାଭାରତ, ଭାଗବତ, ଗୀତା, କୋରାନ୍ ଓ ବାଇବେଲ ଇତ୍ୟାଦି ପାଠ ନ କଲେ ଆମର ଈଶ୍ୱରଙ୍କ ପ୍ରତି ଭକ୍ତି କିପରି ଜାଗ୍ରତ ହେବ ?



## ୪୭. ସର୍ବଶ୍ରେଷ୍ଠ ମିତ୍ର କିଏ ?

**ବିଦ୍ୟା ମିତ୍ରଂ ପ୍ରବାସେଷୁ ଭାର୍ଯ୍ୟା ମିତ୍ରଂ ଗୃହେଷୁ ଚ ।**
**ବ୍ୟାଧିତସ୍ୟୌଷଧଂ ମିତ୍ରଂ ଧର୍ମୋ ମିତ୍ରଂ ମୃତସ୍ୟ ଚ ॥ (୫/୧୫)**

ମହାପ୍ରାଜ୍ଞ ଚାଣକ୍ୟ ପଣ୍ଡିତେ ଉପରୋକ୍ତ ଶ୍ଳୋକରେ ଆମକୁ ପ୍ରକୃତ ମିତ୍ର କିଏ ତାହା ଚିହ୍ନାଇ ଦେଉଛନ୍ତି । ଭଗବାନ୍ ସବୁ ପ୍ରାଣୀଙ୍କୁ କିଛି କିଛି ସ୍ନେହଭାବ ଦେଇଛନ୍ତି । ଇତର ପ୍ରାଣୀମାନଙ୍କ ଭିତରେ ବି କିଛି ପରିମାଣରେ ଓ ସେମାନଙ୍କ ଅଜ୍ଞାତରେ ସେମାନଙ୍କ ପ୍ରବୃତ୍ତି ଭିତରେ ସ୍ନେହଭାବ ରହିଛି । ଅନ୍ୟ ପ୍ରାଣୀମାନେ ସେମାନଙ୍କ ଛୁଆମାନଙ୍କୁ ସ୍ନେହ କରନ୍ତି । କେହି କେହି ପ୍ରାଣୀ ପରସ୍ପର ସହିତ ସାଙ୍ଗ ହୁଅନ୍ତି । କିନ୍ତୁ ମଣିଷର ମନ ଓ ହୃଦୟ ପ୍ରାଣୀମାନଙ୍କ ମନ ଓ ହୃଦୟ ଅପେକ୍ଷା ବହୁତ ଉଦାର, ଗଭୀର ଓ ଭାବପ୍ରବଣ । ମନୁଷ୍ୟ ଭିତରେ ହିଁ ସ୍ନେହ, କରୁଣା, ଦୟା, ଅନୁକମ୍ପା, ସହାନୁଭୂତି, ସମ୍ମାନବୋଧ, ବିସ୍ମୟବୋଧ, କୃତଜ୍ଞତାବୋଧ, ତ୍ୟାଗଭାବ, ସେବାଭାବ ଓ ଦାନଦାକ୍ଷିଣ୍ୟ ଭାବ ସ୍ପଷ୍ଟ, ବିଶଦ ଓ ବିପୁଳ ଭାବେ ଦେଖାଦେଇଥାଏ । ମନୁଷ୍ୟ ହିଁ ମହାନ୍ ଭାବ ପ୍ରତି ଆକୃଷ୍ଟ ହୁଏ । ଉଜ୍ଜ୍ୱଳ ମହିମା ପ୍ରତି ଆକୃଷ୍ଟ ହୁଏ, ସୁଗୁଣ ଓ ସୌନ୍ଦର୍ଯ୍ୟ ପ୍ରତି ଆକୃଷ୍ଟ ହୁଏ; ଏବଂ ବିଶାଳତା ପ୍ରତି ଆକୃଷ୍ଟ ହୁଏ । ଏହିସବୁ

ଗୁଣ ହେଲା ପ୍ରକୃତ ପ୍ରେମଭାବର ଜନକ। ମନୁଷ୍ୟକୁ ଭଗବାନ୍ ଏହି ପ୍ରେମଭାବ ଦେଇଛନ୍ତି। ମାତ୍ର ଏହି ପ୍ରେମଭାବ ସବୁ ମଣିଷଠାରୁ ସମାନ ଭାବେ ବିକଶିତ ହୋଇପାରେନା। କାରଣ ଅହଂକାର, ଅହମିକା, ସ୍ୱାର୍ଥପରତା ଓ ଅନୁଦାରତା ପ୍ରଭୃତି ଦୁର୍ଗୁଣରେ ଯେଉଁ ମଣିଷର ମନ ଓ ହୃଦୟ କୁଳଷିତ ହୋଇଥାଏ, ସେ ମଣିଷ ଭିତରେ ଶୁଦ୍ଧ ସ୍ୱଚ୍ଛ ପ୍ରେମ ଜାଗ୍ରତ ହୋଇପାରେନା। ତେବେବି ଆମେ ପୁରାଣ, ଇତିହାସ ଓ ଆମ ସମୟରେ ମଧ୍ୟ ବହୁ ପ୍ରେମୀ ମଣିଷଙ୍କୁ ଦେଖିଛୁ ଓ ଜାଣିଛୁ।

ମଣିଷର ଏହି ପ୍ରେମଭାବ ମୂଳତଃ ଏକ ହେଲେ ବି ଏହାର ପ୍ରକାଶ ବିଭିନ୍ନ ପାତ୍ର ବା ପାତ୍ରୀଙ୍କଠାରେ ବିଭିନ୍ନ ପ୍ରକାର ହୋଇଥାଏ। ପ୍ରଭୁ ଓ ଦାସ ମଧ୍ୟରେ ଯେଉଁ ନିବିଡ଼ ଭାବର ଦିଆନିଆ ହୁଏ, ତାକୁ 'ଦାସ୍ୟପ୍ରେମ' କୁହାଯାଏ। ଦୁଇ ସାଙ୍ଗସାଥୀଙ୍କ ଭିତରେ ଯେଉଁ ଭାବର ଦିଆନିଆ ହୁଏ ତାକୁ 'ସଖାପ୍ରେମ' କୁହାଯାଏ। ପିତାମାତା ବା ସେହି ଶ୍ରେଣୀର ମଣିଷଙ୍କ ସଙ୍ଗେ ପିଲାମାନଙ୍କର ଯେଉଁ ଭାବରେ ଆଦାନପ୍ରଦାନ ହୁଏ ତାହା ବାତ୍ସଲ୍ୟପ୍ରେମ ଓ ଶେଷରେ ନାରୀ ଓ ପୁରୁଷ ଭିତରେ ଯେଉଁ ଶୃଙ୍ଗାର ଭାବର ଦିଆନିଆ ହୁଏ - ତାକୁ ଦାମ୍ପତ୍ୟପ୍ରେମ କୁହାଯାଏ। ଈଶ୍ୱର ଓ ଭକ୍ତ ମଧ୍ୟରେ ଯେଉଁ ଭାବରେ ଦିଆନିଆ ହୁଏ - ତାକୁ ପ୍ରେମଭକ୍ତି କୁହାଯାଏ। ତେବେ ଏ କଥା ସତ ଯେ, ସବୁ ପ୍ରକାର ପ୍ରେମ ଭିତରେ ସର୍ବଦା ଏକ ଅଛିଦ୍ର କାନ୍ଥ ନ ଥାଏ କି ଅନତିକ୍ରମ୍ୟ ବନ୍ଧବାଡ଼ ନ ଥାଏ। ସବୁ ପ୍ରେମ ବେଳେ ବେଳେ ମିଶିମାଣି ଯାନ୍ତି ଏବଂ ସବୁ ପ୍ରେମରେ ସବୁ ପ୍ରେମ ଥାଏ। ଚାଣକ୍ୟ ପଣ୍ଡିତେ ତାଙ୍କ ଶ୍ଳୋକରେ କେଉଁ ସ୍ଥାନରେ କେଉଁ ପ୍ରକାର ମିତ୍ରର ଗୁରୁତ୍ୱ ବେଶି ତା'ର ବିଚାର କରିଛନ୍ତି। ଏହି ସଖ୍ୟଭାବର ଅଧିକାରୀମାନଙ୍କୁ ଆମେ ସାଙ୍ଗ, ସାଥୀ, ବନ୍ଧୁ, ସଖା ଓ ମିତ୍ର ବୋଲି ସମ୍ବୋଧନ କରିଥାଉଁ। ଅବଶ୍ୟ ସବୁପ୍ରକାର ବନ୍ଧୁତ୍ୱ ଭିତରେ ପ୍ରେମର ଗୁଣଗତ ଓ ପରିମାଣଗତ ପାର୍ଥକ୍ୟ ଥାଏ। ସାଙ୍ଗଠାରୁ ସାଥୀ ପୃଥକ୍ - ବନ୍ଧୁଠାରୁ ସଖା ପୃଥକ୍ - ସଖାଠାରୁ ମିତ୍ର ପୃଥକ୍ ଏବଂ ଜଣେ ନର ବା ନାରୀ ଅନ୍ୟ ଜଣକର ଏକାଧାରରେ ସାଙ୍ଗ, ସାଥୀ, ବାନ୍ଧବୀ, ସଖୀ ଓ ମିତ୍ର ହୋଇପାରେ। ତେବେ ଏପରି ଭାବ ସମ୍ପର୍କ ଖୁବ୍ ଦୁର୍ଲଭ। ଏହି ବନ୍ଧୁ ବା ମିତ୍ର ଭାବ ପୁଣି ପାରିବାରିକ, ସାମାଜିକ ଓ ସମ୍ପୂର୍ଣ୍ଣ ଭାବେ ଭାବାବେଗାତ୍ମକ ହୋଇପାରେ। ଆମର ଅନ୍ୟ ଜଣକ ସହିତ ସମ୍ପର୍କ ରକ୍ତଗତ ହୋଇପାରେ ବା ଭାବାଗତ ହୋଇପାରେ। ଉପରୋକ୍ତ ଶ୍ଳୋକରେ ଚାଣକ୍ୟ କହୁଛନ୍ତି - ତୁମର ବହୁ ମିତ୍ର ଥାଇପାରନ୍ତି। ବହୁ ବନ୍ଧୁ ଓ ସଖା ସଖୀ ଥାଇପାରନ୍ତି। ମାତ୍ର ବିଭିନ୍ନ ସମୟରେ ଓ ବିଭିନ୍ନ ସ୍ଥାନରେ ତୁମର ଯଥାର୍ଥ ବା ଶ୍ରେଷ୍ଠ ମିତ୍ର ଜଣେ ମାତ୍ର। ତୁମେ ଯେତେବେଳେ ନିଜ ପରିବାର, ଗ୍ରାମ, ସମାଜ ଓ ଦେଶ ଛାଡ଼ି ଅନ୍ୟ

ଗୋଟିଏ ଦେଶରେ ଅଛ - ସେହି ବିଦେଶରେ ସେହି ଅଜଣା ଅନାତ୍ମୀୟ ସ୍ଥାନରେ ତୁମର ପ୍ରକୃତ ମିତ୍ର କିଏ ହୋଇପାରେ ? ଅଜଣା ସ୍ଥାନରେ କିଏ ତୁମକୁ ସାହାଯ୍ୟ କରିପାରେ ? ସେହି ସାହାଯ୍ୟକାରୀ ମିତ୍ର ହେଉଛନ୍ତି ତୁମ ନିଜର ଅର୍ଜିତ ବିଦ୍ୟା। ତୁମେ ଯେଉଁ ବିଦ୍ୟାଟି ଆୟତ୍ତ କରିଛ ସେ ବିଦ୍ୟା ତୁମ ମୁଣ୍ଡ ଭିତରେ ଅଛି। ବିଦେଶ ଜାଗାରେ ସେହି ବିଦ୍ୟା ତୁମର ମିତ୍ର ହୋଇ ତୁମକୁ ବଞ୍ଚିବାରେ ସାହାଯ୍ୟ କରିବ। ଧର ତୁମେ ଯଦି ଇଞ୍ଜିନିୟରିଂ ବିଦ୍ୟା ଜାଣିଥାଅ ବା ଚିକିତ୍ସା ବିଦ୍ୟା ଜାଣିଥାଅ ବା ତୁମେ ଯଦି ସ୍ଥାପତ୍ୟ ବିଦ୍ୟା ଜାଣିଥାଅ ବା ଶିଳ୍ପ ବିଦ୍ୟା  ଜାଣିଥାଅ ବା କୃଷି ବିଦ୍ୟା ଜାଣିଥାଅ, ତେବେ ସେହି ବିଦ୍ୟା ପ୍ରତି ବିଦେଶୀମାନେ ଆକର୍ଷିତ ହେବେ ଓ ତୁମର ବିଦ୍ୟା ପ୍ରୟୋଗ କରି ତୁମେ ସେମାନଙ୍କ ଦ୍ୱାରା ଆଦୃତ ହେବ; ଏବଂ ସେ ବିଦେଶରେ ମଧ୍ୟ ତୁମେ ଗୌରବ ସହିତ ପେଟ ପୋଷିପାରିବ। ଏପରିକି ତୁମେ ଯଦି କଳାବିଦ୍ୟାରେ ନିପୁଣ ହୋଇଥାଅ କିମ୍ବା ତୁମେ ଜଣେ କବି  ହୋଇଥାଅ, ଲେଖକ ହୋଇଥାଅ, ଗାୟକ ହୋଇଥାଅ ବା ଅଭିନେତା ଅଭିନେତ୍ରୀ ହୋଇଥାଅ ତେବେ ମଧ୍ୟ ତୁମେ ବିଦେଶରେ ଆଦୃତ ହେବ। ତେଣୁ ବିଦେଶରେ ଏହି ବିଦ୍ୟା ହିଁ ତୁମର ଶ୍ରେଷ୍ଠ ମିତ୍ର। ସେହିପରି ତୁମ ନିଜ ଘରେ ତୁମର ପିତାମାତା, କକାଖୁଡ଼ୀ, ଭାଇଭଉଣୀ, ଏପରିକି ପୁଅଝିଅମାନେ ଥିଲେ ବି ତୁମର ପ୍ରକୃତ ମିତ୍ର ହେଲେ ତୁମର ଭାର୍ଯ୍ୟା ବା ପତ୍ନୀ। ଅବଶ୍ୟ ସେହି ପତ୍ନୀ ଯଦି ଗୁଣବତୀ, କର୍ମନିପୁଣା, ପ୍ରେମମୟୀ, ସେବାମୟୀ ଓ ଠିକ୍ ସମୟରେ ତୁମକୁ ଠିକ୍ ମନ୍ତ୍ରଣା ଦେଇ ତୁମ ଜୀବନକୁ ସୁଗମ ଓ ଧର୍ମସମ୍ମତ କରୁଥାନ୍ତି ! ଏଭଳି ପତ୍ନୀ ପ୍ରକୃତରେ ପରିବାର ଭିତରେ ଆମର ଶ୍ରେଷ୍ଠ ମିତ୍ର। ଆଉ ଗୋଟିଏ ମିତ୍ର କଥା ଚାଣକ୍ୟ କହୁଛନ୍ତି। ସେ କହୁଛନ୍ତି, ଆମର ରୋଗ ବୈରାଗରେ ବା ଆମେ ବ୍ୟାଧିଗ୍ରସ୍ତ ହେଲାବେଳେ ଆମର ଯଥାର୍ଥ ମିତ୍ର ହେଲେ ଔଷଧ ଓ ଚିକିତ୍ସକ। କାରଣ ରୋଗଗ୍ରସ୍ତ ଅବସ୍ଥାରେ ଆବଶ୍ୟକ ଔଷଧ ହିଁ ଆମର ଜୀବନ ରକ୍ଷା କରେ।

ସବଶେଷରେ ଚାଣକ୍ୟ କହୁଛନ୍ତି, ମୃତ୍ୟୁ କାଳରେ ଓ ମୃତ୍ୟୁ ପରେ ଆମର 'ଧର୍ମ' ହିଁ ଏକମାତ୍ର ମହାମିତ୍ର। ଆମେ ବଞ୍ଚିଥିଲା ବେଳେ ଏହି ଧର୍ମ ନାବରେ ବସି ସଂସାର ସମୁଦ୍ରକୁ ପାରିହୋଇଯିବା ଏବଂ ମୃତ୍ୟୁ ପରେ ମଧ୍ୟ ଅର୍ଜିତ ଧର୍ମ ଆମକୁ ସ୍ୱର୍ଗସ୍ଥ କରାଇ ଦେବେ; କିମ୍ବା ଭଗବାନଙ୍କ ସହ ମିଳିତ କରାଇଦେବେ କିମ୍ବା; ବାରମ୍ବାର ଜନ୍ମ-ମୃତ୍ୟୁର ଘେର ଭିତରୁ ଆମକୁ ମୁକ୍ତି ଦେବେ। ଏହି ଧର୍ମ କ'ଣ ? ସତ୍ୟ, ଅହିଂସା, ଦୟା, କ୍ଷମା, ପ୍ରେମ ଓ ଭକ୍ତି ହିଁ ପ୍ରକୃତ ଧର୍ମ। ଏହି ଧର୍ମ ହିଁ ଆମର ଜୀବନକାଳରେ ଓ ମୃତ୍ୟୁ ପରେ ପ୍ରକୃତ ମିତ୍ର।



## ୪୮. ପଞ୍ଚପିତା ଓ ପଞ୍ଚମାତା

ଏ ଜଗତରେ ଯେତେ ପ୍ରକାର ସମ୍ପର୍କ ବା ସମ୍ବନ୍ଧ ଅଛି - ସବୁ ଭିତରେ ପିତା ଓ ମାତାଙ୍କ ସମ୍ପର୍କକୁ ଖୁବ୍ ବଡ଼ ସ୍ଥାନ ଦିଆଯାଇଛି ଓ ବହୁ ମାନ୍ୟତା ବି ଦିଆଯାଇଛି। କାରଣ ପିତାମାତା ଆମର ଜନ୍ମଦାତା ଓ ଦାତ୍ରୀ - ଆମର ପାଳନ ଓ ବର୍ଦ୍ଧନକର୍ତ୍ତା ଓ କର୍ତ୍ତ୍ରୀ। ତାଙ୍କର ସ୍ନେହ ଓ ତ୍ୟାଗର ତୁଳନା ନାହିଁ। ଆମେ ଯେତେ ଯାହା କଲେ ବି - ମାତାପିତାଙ୍କ ଋଣ ଶୁଝିପାରିବା ନାହିଁ। ତେଣୁ କୁହାଯାଇଛି - 'ଆକାଶ ହୁଁ ବଡ଼ ପିତା-ମାତା ବଡ଼ ଆକାଶ ଅପେକ୍ଷା।' ଆକାଶକୁ ଯେପରି କଳନା କରିହେବ ନାହିଁ ସେହିପରି ପିତାଙ୍କର ଉଦାର ସ୍ନେହକୁ ମଧ୍ୟ କଳନା କରିହେବ ନାହିଁ। ଅନ୍ୟ ପକ୍ଷରେ ଆମର ଏହି ପୃଥିବୀର ଧାରଣ ଶକ୍ତି ଓ ପାଳନ ଶକ୍ତିକୁ ଯେପରି କଳନା କରିହେବ ନାହିଁ, ସେହିପରି ମାତାଙ୍କର ଧାରଣ ଓ ପାଳନ ଶକ୍ତିକୁ ମଧ୍ୟ କେହି କଳନା କରିପାରିବେ ନାହିଁ।

କିନ୍ତୁ ମହାପ୍ରାଜ୍ଞ ଚାଣକ୍ୟ ପଣ୍ଡିତେ ଆମକୁ ଏ ସମ୍ପର୍କରେ ଆଉ ଗୋଟିଏ ସତ୍ୟ କହୁଛନ୍ତି। ଚାଣକ୍ୟ କହୁଛନ୍ତି, ତୁମେ ଯେଉଁମାନଙ୍କ ଔରସରୁ ଜାତ ହୋଇଛ, ସେମାନେ ଯେ କେବଳ ତୁମର ପିତାମାତା ତା' ନୁହଁ। ତୁମର ପାଞ୍ଚଟି ପିତା ଓ ପାଞ୍ଚଟି ମାତା ଅଛନ୍ତି। ଯଥା :

**ଜନିତା ଚୋପନେତା ଚ ଯସ୍ତୁ ବିଦ୍ୟାଂ ପ୍ରଯଚ୍ଛତି।**
**ଅନ୍ନଦାତା ଭୟତ୍ରାତା ପଞ୍ଚୈତେ ପିତରଃ ସ୍ମୃତାଃ ।। (୪/୧୯)**

ଅର୍ଥାତ୍, ଜନ୍ମଦାତା, ବିଦ୍ୟାଦାତା, ଯଜ୍ଞକର୍ମରେ ପ୍ରବର୍ତ୍ତକ ବ୍ୟକ୍ତି, ଅନ୍ନଦାତା ଓ ଭୟ ବିନାଶକ ବ୍ୟକ୍ତି, ଏହି ପାଞ୍ଚଜଣ ଆମର ପିତା ଅଟନ୍ତି।

ମାତ୍ର ଆମେ କେବଳ ଆମର ଜନ୍ମଦାତାଙ୍କୁ ପିତା ବୋଲି ଭାବିଆସିଛୁ। କିନ୍ତୁ ଯେଉଁମାନେ ଆମକୁ ବିଦ୍ୟାଶିକ୍ଷା ଦେଇଛନ୍ତି, ସେମାନେ ମଧ୍ୟ ଆମର ଜଣେ ପିତା ବା ପିତୃତୁଲ୍ୟ। ସେହିପରି ଯେ ଆମକୁ ଯଜ୍ଞ ବା ଧର୍ମଦୀକ୍ଷା ଦେଇଛନ୍ତି, ସେ ମଧ୍ୟ ଆମର ଆଉ ଜଣେ ପିତା ବା ପିତୃତୁଲ୍ୟ ଅଟନ୍ତି। ଜୀବନରେ ଯେ ଆମର ଅନ୍ନସଂସ୍ଥାନ କରିଦେଇଛନ୍ତି, ଅର୍ଥାତ୍ ଆମକୁ ବଞ୍ଚିବାପାଇଁ ଯେ ସାହାଯ୍ୟ କରିଛନ୍ତି, ତାଙ୍କୁ ମଧ୍ୟ ପିତୃତୁଲ୍ୟ ମାନ୍ୟ କରିବା ଉଚିତ। କାରଣ ସେ ଆମକୁ ଜୀବିକାର୍ଜନ ପାଇଁ ସୁଯୋଗ ଦେଇଛନ୍ତି, ଆମର ଅନ୍ନସଂସ୍ଥାନ କରିଦେଇ ଆମକୁ ବଞ୍ଚାଇଛନ୍ତି। ଆମର ପଞ୍ଚମ ପିତା ବା ପିତୃତୁଲ୍ୟ ବ୍ୟକ୍ତି ହେଲେ, ଯେ ଆମକୁ ଭୟରୁ ରକ୍ଷା କରିଛନ୍ତି। ମାନେ, ଯେ ଆମ ଜୀବନରେ ଭୟଙ୍କର ସଂକଟ ଓ ଆପଦବିପଦରୁ ରକ୍ଷା କରିଛନ୍ତି। ତେଣୁ ଆମେ

ଆମ ଜନ୍ମଦାତା ପିତାଙ୍କ ପରି ଏହି ଚାରିଜଣଙ୍କୁ ମଧ୍ୟ ପିତାତୁଲ୍ୟ ମାନ୍ୟ କରିବା ଉଚିତ।

ଏବେ ଚାଣକ୍ୟ ପଣ୍ଡିତେ କେଉଁ ପାଞ୍ଚଜଣଙ୍କୁ ଆମର ମାତା ବା ମାତୃତୁଲ୍ୟ ବୋଲି କହୁଛନ୍ତି ଦେଖନ୍ତୁ।

**ରାଜପତ୍ନୀ ଗୁରୋଃ ପତ୍ନୀ ମିତ୍ରପତ୍ନୀ ତଥୈବ ଚ।**
**ପତ୍ନୀମାତା, ସ୍ୱମାତା ଚ ପଞ୍ଚୈତା ମାତରଃ ସ୍ମୃତାଃ ।। (୪/୨୦)**

ଏହି ଶ୍ଳୋକର ଅର୍ଥ ହେଲା, ରାଜାଙ୍କର ପତ୍ନୀ, ଗୁରୁଙ୍କର ପତ୍ନୀ, ବନ୍ଧୁ ବା ମିତ୍ରଙ୍କର ପତ୍ନୀ, ନିଜ ପତ୍ନୀଙ୍କର ମାତା ବା ଆମର ଶାଶୂ ଏବଂ ନିଜର ଜନ୍ମଦାତ୍ରୀ - ଏହି ପାଞ୍ଚଜଣ ଆମର ମାତା ଅଟନ୍ତି ବା ମାତୃତୁଲ୍ୟା ଅଟନ୍ତି। ଏମାନଙ୍କୁ ଆମର ମାତା ବୋଲି ଭାବି ଭକ୍ତି କରିବା ଉଚିତ।

ରାଜତନ୍ତ୍ର ଶାସନ ଥିଲାବେଳେ ରାଜାଙ୍କୁ ପ୍ରଜାମାନଙ୍କର ପାଳକପିତା ରୂପେ ମାନ୍ୟ କରାଯାଉଥିଲା। ତାଙ୍କର ପତ୍ନୀ ବା ରାଣୀଙ୍କୁ ମାତୃତୁଲ୍ୟ ଜ୍ଞାନ କରାଯାଉଥିଲା। ମାତ୍ର ଏବେ ତ ରାଜତନ୍ତ୍ର ନାହିଁ ବା ରାଜାରାଣୀ ନାହାନ୍ତି। ତେଣୁ ସେ ପ୍ରଶ୍ନ ଉଠୁନାହିଁ। କିନ୍ତୁ ଗଣତନ୍ତ୍ର ଶାସନରେ ବି ଯେଉଁମାନେ ଶାସକ ଓ ପ୍ରଶାସକ, ସେମାନଙ୍କୁ ମଧ୍ୟ ଆମେ ପିତୃତୁଲ୍ୟ ମାନ୍ୟତା ଦେବା ଉଚିତ ଓ ସେମାନେ ମଧ୍ୟ ଆମକୁ ପିତୃତୁଲ୍ୟ ପାଳନ କରିବା ଉଚିତ। ଏହି ଶାସକ ବା ପ୍ରଶାସକମାନଙ୍କ ଭିତରୁ ଯେଉଁମାନେ ନାରୀ, ସେମାନେ ମଧ୍ୟ ମାତୃତୁଲ୍ୟ, ପ୍ରଜାଙ୍କୁ ପାଳନ କରିବା ଉଚିତ। ଆମେ ମଧ୍ୟ ସେମାନଙ୍କୁ ମାତୃତୁଲ୍ୟ ମାନ୍ୟତା ଦେବା ଉଚିତ।

ସେହିପରି ଆମର ଶିକ୍ଷାଗୁରୁ, ବିଦ୍ୟାଗୁରୁ, ଦୀକ୍ଷାଗୁରୁ ବା ଧର୍ମଗୁରୁଙ୍କ ପତ୍ନୀ ମଧ୍ୟ ଆମର ମାତୃତୁଲ୍ୟା ଏବଂ ଆମେ ବି ସେମାନଙ୍କ ପ୍ରତି ସନ୍ତାନବତ୍ ଆଚରଣ କରିବା ଉଚିତ। ଚାଣକ୍ୟ ପଣ୍ଡିତେ ବନ୍ଧୁପତ୍ନୀଙ୍କୁ ମଧ୍ୟ ମାତୃତୁଲ୍ୟ ଜ୍ଞାନକରିବା ଉଚିତ ବୋଲି କହୁଛନ୍ତି। କିନ୍ତୁ କେହି କେହି ବନ୍ଧୁପତ୍ନୀଙ୍କୁ ବାନ୍ଧବୀ ତୁଲ୍ୟ ସ୍ନେହ ଓ ମାନ୍ୟ ଉଭୟ କରିଥାନ୍ତି।

ନିଜ ପତ୍ନୀଙ୍କର ମାତା ପୁରୁଷର ଶାଶୂ ଅଟନ୍ତି ଏବଂ ନିଜ ସ୍ୱାମୀଙ୍କର ମାତା ମଧ୍ୟ ପତ୍ନୀଙ୍କ ଶାଶୂ ଅଟନ୍ତି। ତେଣୁ ଏହି ଦୁଇ ଶାଶୂଙ୍କୁ ମଧ୍ୟ ମାତୃତୁଲ୍ୟ ଜ୍ଞାନ କରିବ ଓ ମାନ୍ୟ କରିବ। ତେବେ ଏ କଥା ବି ସତ ଯେ ସ୍ୱାମୀ ଓ ପତ୍ନୀ ଉଭୟେ ନିଜ ନିଜର ଶ୍ୱଶୁରମାନଙ୍କୁ ପିତୃତୁଲ୍ୟ ଜ୍ଞାନ ଓ ମାନ୍ୟ କରିବେ।



# ୪୯. ସର୍ବଂ ସତ୍ୟେ ପ୍ରତିଷ୍ଠିତମ୍

**ସତ୍ୟେନ ଧାର୍ଯ୍ୟତେ ପୃଥିବୀ ସତ୍ୟେନ ତପତେ ରବିଃ ।**
**ସତ୍ୟେନ ବାତି ବାୟୁଶ୍ଚ ସର୍ବଂ ସତ୍ୟେ ପ୍ରତିଷ୍ଠିତମ୍ ॥ (୫/୧୯)**

ଉପରୋକ୍ତ ଶ୍ଳୋକରେ ସତ୍ୟଧର୍ମା ଚାଣକ୍ୟ ସତ୍ୟର ଜୟଗାନ କରିଛନ୍ତି, ସତ୍ୟର ମହିମା ପ୍ରତିପାଦନ କରିଛନ୍ତି, ଏବଂ ସତ୍ୟ ପ୍ରତି ଆମର ଜାଗ୍ରତ ଦୃଷ୍ଟି ଆକର୍ଷଣ କରିଛନ୍ତି । ସେ କହୁଛନ୍ତି ଯେ, ଆମର ଏହି ପୃଥିବୀ ମହାଶୂନ୍ୟରେ ସତ୍ୟକୁ ଆଶ୍ରୟ କରି ପ୍ରତିଷ୍ଠିତ ରହିଛି । ଆକାଶରେ ସୂର୍ଯ୍ୟଦେବତା ସତ୍ୟବଳରେ ହିଁ ତାଙ୍କର ତାପ ଓ ଆଲୋକ ପ୍ରଦାନ କରୁଛନ୍ତି । ବାୟୁ ମଧ ସତ୍ୟ ଧର୍ମ ରକ୍ଷାକରି ବହମାନ ହେଉଛି । ତେଣୁ ଏହି ବିଶ୍ୱବ୍ରହ୍ମାଣ୍ଡରେ ସବୁକିଛି ସତ୍ୟ ଦ୍ୱାରା ପରିଚାଳିତ ହେଉଛି ଓ ସେହି ସତ୍ୟ ଉପରେ ହିଁ ପ୍ରତିଷ୍ଠିତ ରହିଛି ।

ପାଠକେ ! ଶ୍ଳୋକଟିରେ ଯେଉଁ ସତ୍ୟ ଶବ୍ଦଟି ବ୍ୟବହାର କରାଯାଇଛି, ତାହା ବୁଝିବା ସହଜ ନୁହଁ ।

କାରଣ ସତ୍ୟ ଏକ ଜଟିଳ ଶବ୍ଦ ଏବଂ ଏହାର ଅର୍ଥ ଯେପରି ବହୁମୁଖୀ, ସେହିପରି ସୁଗଭୀର । ଏ ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା ଓ ଧ୍ୱଂସକର୍ତ୍ତା ପରମେଶ୍ୱର ହେଉଛନ୍ତି ସ୍ୱୟଂ ସଚ୍ଚିଦାନନ୍ଦ । ତା' ମାନେ ସେ ହିଁ ସତ୍, ସେ ଚିତ୍ ଓ ସେ ମଧ ଆନନ୍ଦ । ଯାହା କିଛି ଅଛି, ଥିଲା ଓ ରହିବ, ତାହା ସତ୍ୟ । ବସ୍ତୁ ସତ୍ୟ ଅବସ୍ତୁ ମଧ ସତ୍ୟ । ଶୂନ୍ୟ ଯେପରି ସତ୍ୟ - ପୂର୍ଣ୍ଣ ସେହିପରି ସତ୍ୟ । ଆଲୋକ ସତ୍ୟ - ଅନ୍ଧକାର ମଧ ସତ୍ୟ । ସତ୍ ସତ୍ୟ - ମିଥ୍ୟା ମଧ ସତ୍ୟ । ଜନ୍ମ ସତ୍ୟ - ମୃତ୍ୟୁ ମଧ ସତ୍ୟ । ଅସ୍ତି ଯେପରି ସତ୍ୟ - ନାସ୍ତି ମଧ ସେହିପରି ସତ୍ୟ । ମୋଟ ଉପରେ ଆମେ ଯାହା ପ୍ରତ୍ୟକ୍ଷ କରୁଛୁ ବା ଅନୁଭବ କରୁଛୁ - ତା' ହେଲା ସତ୍ୟ ହେଉଛି ସତ୍ ଓ ଅସତ୍ ଉଭୟ ।

ଦ୍ୱିତୀୟ କଥା ହେଲା - ସତ୍ୟ ଏକ ଆପେକ୍ଷିକ ଶବ୍ଦ । ଆମେ ଆମର ପ୍ରାର୍ଥିବ ଓ ସୀମିତ ମନବୁଦ୍ଧିରେ ଯାହାକୁ ସତ୍ୟ କହୁଛୁ, ତାହା ଆଂଶିକ ସତ୍ୟ ବା ଆପେକ୍ଷିକ ସତ୍ୟ । ଉଦାହରଣସ୍ୱରୂପ, ମୋ ଆଖି ଯେତିକି ଦେଖୁଛି ଓ ମୋ କାନ ଯେତିକି ଶୁଣିପାରୁଛି ଏବଂ ମୁଁ ଯେତିକି ବିଷୟ ଛୁଇଁପାରୁଛି - ମୋ ପାଇଁ ସତ୍ୟ ସେତିକି ମାତ୍ର । ମୋର ବୁଦ୍ଧି ଯେତିକି ଭାବିପାରୁଛି ଓ ବୁଝିପାରୁଛି, ମୋ ପାଇଁ ସତ୍ୟ ସେତିକି ମାତ୍ର । ମୋର ଦୃଷ୍ଟିବଳୟ, ଶ୍ରବଣବଳୟ, ସ୍ପର୍ଶବଳୟ ଓ ଚିନ୍ତନବଳୟ ଯେତିକି

ବଢ଼ି ଚାଲିବ - ମୁଁ ସତ୍ୟର ସେତିକି ବିସ୍ତାରିତ ରୂପ ଦେଖିପାରିବି। ମୋର ଜ୍ଞାନର ବୃଦ୍ଧି ସଙ୍ଗେ ସଙ୍ଗେ ମୋର ସତ୍ୟବୋଧ ମଧ୍ୟ ସେତିକି ବଢ଼ି ବଢ଼ି ଯାଏ।

ଏହି ଦୃଷ୍ଟିରୁ ସତ୍ୟକୁ ଆପେକ୍ଷିକ ଓ ପରମ ଏହିପରି ଦୁଇଭାଗରେ ବିଭକ୍ତ କରାଯାଇଛି। ପରମ ସତ୍ୟକୁ ବୁଝିବା ଅବଶ୍ୟ ସମସ୍ତଙ୍କ ପକ୍ଷରେ ସହଜ ନୁହେଁ। ନିଜ ଭିତରର ଅନ୍ତରାତ୍ମା ଜାଗ୍ରତ ହେଲେ ଜଣେ ପରମ ସତ୍ୟକୁ ଜାଣିପାରେ। ଏ ସୃଷ୍ଟିର ରହସ୍ୟକୁ ବହୁ ପରିମାଣରେ ବୁଝିପାରେ। ବସ୍ତୁ ଓ ଭାବର ସ୍ୱରୂପକୁ ପ୍ରତ୍ୟକ୍ଷ କରିପାରେ।

କେତେକ ମଧ୍ୟ ସତ୍ୟକୁ ତାତ୍ତ୍ୱିକ ସତ୍ୟ ଓ ବ୍ୟାବହାରିକ ସତ୍ୟ, ଏହିପରି ଦୁଇ ପ୍ରକାର ସତ୍ୟ ଅଛି ବୋଲି କହନ୍ତି। ସେହିପରି ମଧ୍ୟ ଦାର୍ଶନିକ ଋଷିମାନେ ସତ୍ୟକୁ ସତ୍ୟ ରୂପେ ଓ ଋତ ରୂପେ କଳନା କରିଛନ୍ତି। ଆଉ ମଧ୍ୟ ସତ୍ୟକୁ ବାସ୍ତବ ସତ୍ୟ ଓ କାଳ୍ପନିକ ସତ୍ୟ - ଏହି ଦୁଇରୂପରେ ଦେଖିଛନ୍ତି। କେହି କେହି ଦାର୍ଶନିକ କହନ୍ତି - ଏ ପୃଥିବୀରେ ଓ ଜୀବନରେ ପ୍ରକୃତ ସତ୍ୟ କ'ଣ ତାହା ଜାଣିବା ସମ୍ଭବ ନୁହେଁ। ବହୁ ମହାତ୍ମାଙ୍କ ମତରେ ସତ୍ୟ ହିଁ ସ୍ୱୟଂ ଭଗବାନ୍; ଏବଂ ଏହି ସତ୍ୟ ସର୍ବଦା ସୁନ୍ଦର ଓ ମଙ୍ଗଳମୟ ହୋଇଥାଏ। ଏହା ମଧ୍ୟ ସୁନୀତିସମ୍ମତ ହୋଇଥାଏ।

ବହୁ ମହାତ୍ମା ସତ୍ୟକୁ ଧର୍ମ ଅର୍ଥରେ ବ୍ୟବହାର କରନ୍ତି। ସେମାନେ କହନ୍ତି, ଯାହା ସତ୍ୟ, ତାହାହିଁ ଧର୍ମ। ଜଳର ଧର୍ମ ନିମ୍ନକୁ ବହମାନ ହେବା ଏବଂ ଏହି ତରଳ ବହମାନତା ହିଁ ଜଳର ସତ୍ୟ। ଅଗ୍ନିର ଧର୍ମ ତେଜ ଓ ଆଲୋକ। ଏହି ତେଜ ଓ ଆଲୋକ ହିଁ ଅଗ୍ନିର ଧର୍ମ। ବାୟୁର ଧର୍ମ ବହମାନତା ଏବଂ ଏହି ବହମାନତା ହିଁ ବାୟୁର ସତ୍ୟ।

ଏହି ଦର୍ଶନକୁ ଆଧାର କରି ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଏ ପୃଥିବୀ ସତ୍ୟ ଉପରେ ପ୍ରତିଷ୍ଠିତ ରହିଛି। ତା' ଅର୍ଥ ଏ ପୃଥିବୀ କେତେଗୁଡ଼ିଏ ନୀତି ଓ ଧର୍ମକୁ ଆଶ୍ରାକରି ରହିଛି। ଏଠାରେ ଜଳଧର୍ମ, ପ୍ରାଣଧର୍ମ, ମନଧର୍ମ ଓ ଆତ୍ମାଧର୍ମ, ଏହି ଚାରୋଟି ଧର୍ମ ପୃଥିବୀକୁ ତିଷ୍ଠିବାରେ ସାହାଯ୍ୟ କରୁଛନ୍ତି। ସେହିପରି ସୂର୍ଯ୍ୟ ମଧ୍ୟ ଏକ ଧର୍ମ ବା ନୀତିକୁ ମାନି ତାଙ୍କର ତାପ ଓ କିରଣ ପ୍ରଦାନ କରୁଛନ୍ତି। ବାୟୁ ମଧ୍ୟ ଏକ ଧର୍ମନୀତିକୁ ମାନି ବହୁଅଛନ୍ତି।

କିନ୍ତୁ ପାଠକେ ! ସମଗ୍ର ସୃଷ୍ଟିରେ ଏହି ଯେଉଁ ନୀତି, ସତ୍ୟ ବା ଧର୍ମ ସବୁକିଛିର ପଛରେ ରହି କାର୍ଯ୍ୟ କରୁଛି - ସେହି ଧର୍ମ, ନୀତି ବା ସତ୍ୟକୁ କିଏ ନିର୍ଦ୍ଧାରଣ କରିଛି ? ଗୋଟିଏ କଥାରେ ଏହାର ଉତ୍ତର ହେଲା - ପରମେଶ୍ୱର। ସେ ହିଁ ପରମ

ସତ୍ୟ। ସେ ଆଗରୁ ଥିଲେ - ବର୍ତ୍ତମାନ ଅଛନ୍ତି ଓ ଭବିଷ୍ୟତ୍‌ରେ ମଧ ରହିବେ। ସେ ଶାଶ୍ୱତ ଓ ଚିରନ୍ତନ। ସୃଷ୍ଟି, ସ୍ଥିତି ଓ ଲୟ ପଛରେ ଯେଉଁ ପରମ ଶାଶ୍ୱତ ସତ୍ୟ ରହିଛନ୍ତି - ତାହାହିଁ ଏ ସୃଷ୍ଟିର ଶାଶ୍ୱତ ଧର୍ମ ଓ ସେ ହିଁ ସ୍ୱୟଂ ଭଗବାନ୍।



## ୫୦. ନିଃସ୍ପୃହସ୍ୟ ତୃଣଂ ଜଗତ୍

**ତୃଣଂ ବ୍ରହ୍ମବିଦଃ ସ୍ୱର୍ଗସ୍ତୃଣଂ ଶୂରସ୍ୟ ଜୀବିତମ୍।**
**ଜିତାଽଶସ୍ୟ ତୃଣଂ ନାରୀ ନିଃସ୍ପୃହସ୍ୟ ତୃଣଂ ଜଗତ୍॥ (୫/୧୪)**

ଏହି ଶ୍ଳୋକଟିରେ ମହାଜ୍ଞାନୀ ଚାଣକ୍ୟ ପଣ୍ଡିତେ ଗୋଟିଏ ଚମତ୍କାର ଜୀବନଦର୍ଶନ ଉପସ୍ଥାପନ କରିଛନ୍ତି। ତାହା ହେଲା, ଆମକୁ ବା ଆମ ଭଳି ସାଧାରଣ ମଣିଷଙ୍କୁ ଯାହାସବୁ ଖୁବ୍ ମହାର୍ଘ ମନେହୁଏ, ଯାହାକିଛି ଆମ୍ଭମାନଙ୍କୁ ଖୁବ୍ ବଡ଼ ମନେହୁଏ, ସେ ସବୁ ଅସାଧାରଣ ଲୋକମାନଙ୍କ ଦୃଷ୍ଟିରେ ଅତି ଅକିଂଚିତ୍‌କର ଓ ସାମାନ୍ୟ ତୃଣବତ୍ ମନେହୁଏ।

ଆମେ ସ୍ୱର୍ଗକୁ ଖୁବ୍ ବଡ଼ ମନେକରୁ। ସ୍ୱର୍ଗସୁଖକୁ ସବୁଠାରୁ ଆନନ୍ଦମୟ ବୋଲି ଭାବିଥାଉଁ। ଅନେକ ବ୍ୟକ୍ତି ମୃତ୍ୟୁପରେ ସ୍ୱର୍ଗବାସ କରିବେ ବୋଲି ଜୀବନରେ ବହୁ ପୁଣ୍ୟକାର୍ଯ୍ୟ କରିଥାନ୍ତି। ବହୁଲୋକ ସ୍ୱର୍ଗପ୍ରାପ୍ତି ପାଇଁ ଏ ଜୀବନରେ ବହୁ କଠିନ ତପସ୍ୟା କରିଥାନ୍ତି। ଆମର ଧାରଣା ଯେ, ସ୍ୱର୍ଗ ହେଲା ସବୁଠାରୁ ଆନନ୍ଦମୟ ସ୍ଥାନ। ଏଠାରେ ଦେବତାମାନେ ଥାନ୍ତି। ଏଠି କେହି ରୋଗରେ ପଡ଼ନ୍ତି ନାହିଁ। ବାର୍ଦ୍ଧକ୍ୟଗ୍ରସ୍ତ ହୁଅନ୍ତି ନାହିଁ। କେହି ମଧ୍ୟ ଏଠି ମରନ୍ତି ନାହିଁ। ଏହା ହେଲା ଅମରଲୋକ। କୌଣସି ପ୍ରକାର ଦୁଃଖ, ବେଦନା, ଯନ୍ତ୍ରଣା, ସ୍ୱର୍ଗବାସୀଙ୍କୁ ଅନୁଭବ କରିବାକୁ ପଡ଼େନାହିଁ। ଜୀବନଧାରଣପାଇଁ କିଛି ପରିଶ୍ରମ ମଧ୍ୟ କରିବାକୁ ପଡ଼େ ନାହିଁ। ତେଣୁ ଆମ ମର୍ତ୍ତ୍ୟଲୋକର ସବୁ ମଣିଷ ସ୍ୱର୍ଗବାସୀ ହେବାକୁ କାମନା କରନ୍ତି। ଅମୃତ ଭୋଜନ କରି ଅମର ହେବାକୁ ବାଞ୍ଛା କରନ୍ତି। ମାତ୍ର ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଯେଉଁ ମନୁଷ୍ୟମାନେ ବ୍ରହ୍ମଜ୍ଞାନୀ, ଯେଉଁମାନେ ଭଗବାନ୍‌ଙ୍କ ପ୍ରେମ ଓ ଭକ୍ତିରେ ବିଭୋଳିତ ହୋଇଥାନ୍ତି, ସେମାନେ ଏହି ତଥାକଥିତ ଆନନ୍ଦମୟ ସ୍ୱର୍ଗକୁ ତୃଣତୁଲ୍ୟ, ଅର୍ଥ ଘାସକୁଟା ଭଳି ତୁଚ୍ଛ ମନେକରନ୍ତି। ସେମାନେ ବ୍ରହ୍ମ ବା ଭଗବାନ୍‌ଙ୍କୁ ସ୍ୱର୍ଗ ଅପେକ୍ଷା ଅଧିକ କାମ୍ୟ ବୋଲି ମନେକରନ୍ତି।

ସତ କଥା । ଯେ ସର୍ବତ୍ର ପରିବ୍ୟାପ୍ତ, ଶାଶ୍ୱତ ବ୍ରହ୍ମଚେତନାରେ ନିମଗ୍ନ ହୋଇଥାନ୍ତି ଏବଂ ଯେ ସେହି ସଚ୍ଚିଦାନନ୍ଦ ଭଗବାନ୍‌ଙ୍କ ନିକଟରେ ବିଭୋଳିତ ହୋଇଥାନ୍ତି - ସେମାନେ ସେପରି ଅବସ୍ଥାରେ ଯେଉଁ ଆନନ୍ଦ ଉପଲବ୍ଧି କରନ୍ତି - ତା' ତୁଳନାରେ ସ୍ୱର୍ଗସୁଖ କି ନଗଣ୍ୟ ! କି ତୁଚ୍ଛ ! ! ସେହିପରି ଯେଉଁମାନେ ବୀରପୁରୁଷ ଯେଉଁମାନେ ଅସହାୟ ଓ ଦୁର୍ବଳକୁ ଅତ୍ୟାଚାରୀଙ୍କ କବଳରୁ ରକ୍ଷା କରିବା ଲାଗି ସଦା ଉଦ୍ୟତ ଥାନ୍ତି - ଯେଉଁମାନେ ଦେଶ, ଜାତି ଓ ଧର୍ମକୁ ଶତ୍ରୁ କବଳରୁ ରକ୍ଷା କରିବା ଲାଗି ସଦା ଜାଗ୍ରତ ଓ ପ୍ରସ୍ତୁତ ଥା'ନ୍ତି - ସେମାନେ ନିଜ ଜୀବନକୁ ତୃଣ ବା ଘାସଠାରୁ ତୁଚ୍ଛ ମନେ କରିଥାନ୍ତି । ତା'ମାନେ - ସେ ବୀରବୃନ୍ଦ ଯେ କୌଣସି ମୁହୂର୍ତ୍ତରେ ଅନ୍ୟ ପାଇଁ, ଆଦର୍ଶ ପାଇଁ ନିଜର ଜୀବନ ତ୍ୟାଗ କରିବାକୁ ପ୍ରସ୍ତୁତ ଥାନ୍ତି ।

ଆଉ ଗୋଟିଏ ଉଦାହରଣ ହେଲା, ଯେଉଁ ପୁରୁଷମାନେ ଜିତେନ୍ଦ୍ରିୟ - ଅର୍ଥାତ୍ ଯେଉଁମାନେ ନିଜର ଇନ୍ଦ୍ରିୟମାନଙ୍କୁ ସଂଯତ କରିଛନ୍ତି, ସେହି ପୁରୁଷମାନେ ନାରୀ ସହ ସଙ୍ଗମକୁ ବା କାମଲାଳସାକୁ ତୃଣବତ୍ ତୁଚ୍ଛ ମନେକରନ୍ତି । କେବଳ ଜିତେନ୍ଦ୍ରିୟ ପୁରୁଷ ନୁହନ୍ତି, ଜିତେନ୍ଦ୍ରିୟ ନାରୀମାନେ ମଧ୍ୟ କାମୀ ପୁରୁଷକୁ ବା କାମୀ ପୁରୁଷ ସହ ଯୌନସଙ୍ଗମ ଲାଳସାକୁ ତୁଚ୍ଛ ମନେକରିଥାନ୍ତି ।

ପାଠକେ ! ଚାଣକ୍ୟ ପଣ୍ଡିତେ ଏଠାରେ ନାରୀର ପୁରୁଷ ପ୍ରତି ବା ପୁରୁଷର ନାରୀ ପ୍ରତି ଅଯଥା ଘୃଣାଭାବ କଥା କହୁନାହାନ୍ତି । ସେ କେବଳ ଯୌନସଙ୍ଗମ ସୁଖଭିଳାଷୀ ନାରୀପୁରୁଷଙ୍କ କଥା କହୁଛନ୍ତି । କାମଲାଳସାପ୍ରବଣ ପୁରୁଷମାନେ ନାରୀସଙ୍ଗ ଲାଗି ଯେତେ ବ୍ୟାକୁଳ ହୁଅନ୍ତି ଓ କାମଲାଳସାପ୍ରବଣା ନାରୀମାନେ ପୁରୁଷ ଲାଗି ଯେତେ ବ୍ୟାକୁଳ ହୁଅନ୍ତି - ସେହି କଥା ମନେପକାଇ ଚାଣକ୍ୟ କହୁଛନ୍ତି ଯେ - ସଂଯତେନ୍ଦ୍ରିୟ ପୁରୁଷପକ୍ଷରେ ନାରୀ-ସଙ୍ଗମ-ସୁଖ ତୃଣବତ୍ ତୁଚ୍ଛ ବ୍ୟାପାର ।

ଚାଣକ୍ୟ ପଣ୍ଡିତେ ଶେଷ ଉଦାହରଣଟି ଦେଇ କହୁଛନ୍ତି, ଯେଉଁ ବ୍ୟକ୍ତି ନିଃସ୍ପୃହ- ଅର୍ଥାତ୍ ଯେଉଁ ବ୍ୟକ୍ତି ଅନାସକ୍ତ, ଯାହାର ଏହି ପାର୍ଥିବ ଜୀବନ ପ୍ରତି ସାମାନ୍ୟ ଆକର୍ଷଣ ନାହିଁ - ଯେ ବୈରାଗୀ, ଯେ ସନ୍ନ୍ୟାସୀ, ଯାହାର ସୁଖ ପ୍ରତି କାମନା ନାହିଁ କି ଦୁଃଖ ପ୍ରତି ଭୟ ନାହିଁ, ଯେ ସବୁ କଥା ପ୍ରତି ଉଦାସୀନ, ତାକୁ ଏହି ପୃଥିବୀ ତୃଣତୁଲ୍ୟ ତୁଚ୍ଛ ମନେହୁଏ; ଏବଂ ଏହି ପାର୍ଥିବ ଜୀବନ ତାକୁ ବଡ଼ ଅସାର ମନେହୋଇଥାଏ ।

ପାଠକେ ! ମହାମତି ଚାଣକ୍ୟଙ୍କର ଏହି ଉଦାହରଣଗୁଡ଼ିକରୁ ଆମେ ଏତିକି ବୁଝିବା ଯେ, ଜଣେ ବ୍ୟକ୍ତି କାହାକୁ କ'ଣ ପାଇଁ ମୂଲ୍ୟ ଦେଇଥାଏ ଓ କାହାକୁ କାହା ତୁଳନାରେ ତୁଚ୍ଛ ମଣିଥାଏ ।



## ୫୧. ଯିଏ କର୍ତ୍ତା - ସେ ହିଁ ଭୋକ୍ତା

ଏ ସଂସାରରେ ଆମେ ଯାହାସବୁ ଭୋଗକରୁ ସେସବୁ ଆମ ନିଜ କର୍ମର ଫଳ। ଭଲ କର୍ମକଲେ ତା'ର ଭଲ ଫଳହୁଏ ଓ ଆମେ ସେହି ଫଳ ଲାଭକରି ଖୁସିହେଉ। ଖରାପ କାମକଲେ ତା'ର ଫଳ ଖରାପହୁଏ। ଆମେ ସେହି ଖରାପ ଫଳ ଭୋଗି ଦୁଃଖପାଉ। ଏହି ସଂସାରର ଜଞ୍ଜାଳ ଆମେ ନିଜେ ସ୍ୱେଚ୍ଛାରେ ବହନ କରୁ ଓ ତା'ର ବନ୍ଧନରେ ଆମେ ନିଜେ ବନ୍ଧାପଡୁ। ଆମେ ନିଜେ ଇଚ୍ଛା କଲେ ସେହି ସଂସାର ବନ୍ଧନକୁ କାଟି ମୁକ୍ତିଲାଭ କରିପାରୁ। ମହାମତି ଚାଣକ୍ୟଙ୍କ ଭାଷାରେ -

**ସ୍ୱୟଂ କର୍ମ କରୋତ୍ୟାତ୍ମା ସ୍ୱୟଂ ତତ୍ ଫଳମଶ୍ନୁତେ।**
**ସ୍ୱୟଂ ଭ୍ରମତି ସଂସାରେ ସ୍ୱୟଂ ତସ୍ମାଦ୍‌ବିମୁଚ୍ୟତେ ॥** (୬/୮)

ଏହି ଶ୍ଳୋକଟିରୁ ବୁଝାପଡୁଛି ଯେ, ମନୁଷ୍ୟ ଏ ସଂସାରରେ ସ୍ୱାଧୀନ ହୋଇ ଜନ୍ମିଛି। ଭଗବାନ୍ ତାକୁ ଏକ ସ୍ୱତନ୍ତ୍ର ବୁଦ୍ଧି ଦେଇଛନ୍ତି। ତା' ଭିତରେ ଏକ ବିବେକ ଖଞ୍ଜି ଦେଇଛନ୍ତି, ଯାହାକି ଜୀବନରେ କ'ଣ ଭଲ ଓ କ'ଣ ମନ୍ଦ ତାହା ବୁଝି ବିଚାରକରି ସିଦ୍ଧାନ୍ତ ଦେଇପାରେ; ଏବଂ ତାକୁ ଏକ ସଂକଳ୍ପ ଶକ୍ତି ମଧ୍ୟ ଦେଇଛନ୍ତି - ଯାହା ଫଳରେ କି ସେ କୋଉ ବାଟରେ ଯିବ ଓ କ'ଣ କରିବ ସେଥିପାଇଁ 'ହଁ' ବା 'ନା' କହିପାରେ। ମୋଟ ଉପରେ ମଣିଷ ନିଜ କର୍ମଫଳ ପାଇଁ ଅନ୍ୟକୁ ଦାୟୀ କରିପାରିବ ନାହିଁ। ଏପରକି ଈଶ୍ୱରଙ୍କୁ ମଧ୍ୟ ନୁହେଁ, ଭାଗ୍ୟକୁ ମଧ୍ୟ ନୁହେଁ।

ପାଠକେ! ମହାଜ୍ଞାନୀ ଚାଣକ୍ୟଙ୍କର ଏହି ବିଚାରକୁ ବା ମନ୍ତବ୍ୟକୁ ଆମେ ସମ୍ପୂର୍ଣ୍ଣ ଅସ୍ୱୀକାର କରିପାରିବା ନାହିଁ। କିନ୍ତୁ ବିଷୟଟି ଏତେ ସହଜ ମଧ୍ୟ ନୁହେଁ।

ପ୍ରଥମ କଥା ମଣିଷ ଭିତରେ ଅବଶ୍ୟ ଭଲ ମନ୍ଦ ବିଚାର କରିବାର ଶକ୍ତି ରହିଛି। ମାତ୍ର ସବୁ ମଣିଷଙ୍କ ବିଚାରବୁଦ୍ଧି ସମାନ ନୁହଁ। କାରଣ ସମସ୍ତେ ସମାନ ଭାବରେ ଉଚ୍ଚଶିକ୍ଷା ବା ସତ୍‌ଶିକ୍ଷା ପାଇ ନ ଥାନ୍ତି। ସମସ୍ତେ ସତ୍ ପରିବାର ବା ସତ୍ ସମାଜରେ ଲାଳିତପାଳିତ ହୋଇ ନ ଥାନ୍ତି। ସମସ୍ତେ ସମାନଭାବେ ଜ୍ଞାନ ଅର୍ଜନକରି ନ ଥାନ୍ତି। ତେଣୁ କ'ଣ ଶ୍ରେୟ ଓ କ'ଣ ପ୍ରେୟ ତାହା ବୁଝିପାରନ୍ତି ନାହିଁ। ତେଣୁ ଆମେ ସବୁକଥାପାଇଁ ବ୍ୟକ୍ତି ବା ମଣିଷଟିକୁ ସମ୍ପୂର୍ଣ୍ଣ ଦାୟୀ କରିପାରିବା ନାହିଁ।

ଦ୍ୱିତୀୟ କଥାଟି ହେଲା, ମଣିଷ ବହୁ ସମୟରେ ତା'ର ବଂଶଗତ ଗୁଣ ବା ଦୁର୍ଗୁଣର ଉତ୍ତରାଧିକାରୀ ହୋଇଥାଏ। ଆଧୁନିକ ବିଜ୍ଞାନର ଜିନ୍ ତତ୍ତ୍ୱ ଅନୁଯାୟୀ ଜଣେ ତା'ର ପ୍ରକୃତିରେ ଭଲ ଜିନ୍ ବା ଖରାପ୍ ଜିନ୍ ଧରି ଜନ୍ମିଥାଏ। ସେହି ଜିନ୍‌ଗୁଡ଼ିକ

ତା'ର ପିତୃକୁଳ ବା ମାତୃକୁଳର ପୂର୍ବପୁରୁଷମାନଙ୍କଠାରୁ ସେ ଲାଭ କରିଥାଏ। ଫଳରେ ଜଣେ ସାଧୁ ବା ଜ୍ଞାନୀ ମଣିଷ ତା'ର ରକ୍ତରେ ତା'ର କେହି ପୂର୍ବପୁରୁଷଙ୍କ ସହ ଜିନ୍ ବହନକରି ଜନ୍ମନେଇଥାଏ। ସେହିପରି ଜଣେ ଅଜ୍ଞାନୀ ଓ ଅସାଧୁ ମଣିଷ ମଧ ତା'ର ପୂର୍ବପୁରୁଷଙ୍କ ଜିନ୍ ନିଜ ରକ୍ତରେ ଧାରଣକରି ଜନ୍ମିଥିବାରୁ ତା' ଜୀବନରେ ଅଜ୍ଞାନ ଓ ପାପକର୍ମରେ ବୁଡ଼ି ରହିଥାଏ। ତେଣୁ ଆମେ ବ୍ୟକ୍ତି ତା'ର କର୍ମଫଳ ପାଇଁ ସମ୍ପୂର୍ଣ୍ଣ ଦାୟୀ ବୋଲି କହିପାରିବା ନାହିଁ।

ଆଉ ମଧ ଆହାର, ନିଦ୍ରା, ଭୟ ଓ ମୈଥୁନ ପ୍ରଭୃତିରେ ସେ ଇତର ପ୍ରାଣୀଙ୍କ ସହିତ ସମାନ ଏବଂ ତା' ପ୍ରକୃତିରେ କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟାଦି ଛଅଟି ଅତ୍ୟନ୍ତ ମାରାତ୍ମକ ଅବିଗୁଣ ପ୍ରବେଶ ରହିଛନ୍ତି। ସେସବୁକୁ ଷଡ଼ରିପୁ କୁହାଯାଇଛି। ଏହି ଷଡ଼ରିପୁଙ୍କ କବଳରୁ ରକ୍ଷା ପାଇବା ଏତେ ସହଜ ନୁହେଁ। ମନୁଷ୍ୟ ଜନ୍ମରୁ ଏ ସବୁ ଦୁର୍ଗୁଣ ନେଇ ଜନ୍ମିଥାଏ। ସେଥିପାଇଁ ଆମେ ମଣିଷକୁ ତା'ର କର୍ମ ଅକର୍ମ ପାଇଁ ସମ୍ପୂର୍ଣ୍ଣ ଦାୟୀ କରିପାରିବା କି ?

ପାଠକେ ! ଏ ସବୁ କଥା ସତ। ମାତ୍ର ଚାଣକ୍ୟ ପଣ୍ଡିତେ ଏ ସବୁ ସତ୍ତ୍ୱେ ମଣିଷକୁ ତା'ର କର୍ମଫଳ ପାଇଁ ସମ୍ପୂର୍ଣ୍ଣ ଭାବେ ଦାୟୀ କରିଛନ୍ତି କାହିଁକି ?

ଚାଣକ୍ୟଙ୍କ କଥା ପଛରେ ଅବଶ୍ୟ ଏକ ମହାତତ୍ତ୍ୱ ରହିଛି। ତାହା ହେଲା - ଭଗବାନ୍ ମଣିଷ ଭିତରେ ନାନାଦି ସୁଗୁଣ ଓ ଦୁର୍ଗୁଣ ଦେଇ ତାକୁ ସୃଷ୍ଟି କରିଛନ୍ତି। ତାକୁ ମଧ ଏକ ସ୍ୱାଧୀନ ଇଚ୍ଛା ଦେଇଛନ୍ତି। ମାତ୍ର ସବୁମଣିଷ ନିଜର ସେହି ସ୍ୱାଧୀନ ଇଚ୍ଛାଶକ୍ତିର ସତ୍ ବ୍ୟବହାର କରନ୍ତି ନାହିଁ ବା କରିପାରନ୍ତି ନାହିଁ। ଯେତେ ମୂର୍ଖ ବା ଅଜ୍ଞାନ ମଣିଷ ହେଲେ ବି ସେ ତା'ର ଅଭିଜ୍ଞତାରୁ ମଧ ଅନେକ କଥା ଶିକ୍ଷା କରିପାରେ। ଯେଉଁ ବାଟରେ ଗଲେ ବା ଯୋଉ କର୍ମକଲେ ସେ ଦୁଃଖପାଉଛି ବା ଅନ୍ୟ ଲୋକ ଦୁଃଖ ପାଉଛି ସେ କର୍ମର ଫଳ ଦେଖିଲା ପରେ ସେ ଆଉ ସେ ବାଟେ ଯିବ ନାହିଁ ବା ସେ କର୍ମ କରିବ ନାହିଁ। ମାତ୍ର ବହୁ ମଣିଷ ନିଜ ପାଖେ ନିଜେ ଅବାଧ ହୁଅନ୍ତି ଏବଂ କୁପଥରେ ଯିବାକୁ ଇଚ୍ଛା କରି କୁପଥରେ ଚାଲନ୍ତି ଓ ତା'ର କୁଫଳ ଭୋଗ କରନ୍ତି। ବହୁ ମଣିଷଙ୍କୁ ବନ୍ଧନ ଭଲ ଲାଗେ। ସେମାନେ ଜାଣି ଜାଣି ବନ୍ଧନକୁ ବରଣ କରନ୍ତି। ଖୁଣ୍ଟରେ ବନ୍ଧାହେଲେ ସେମାନେ ନିଜକୁ ନିରାପଦ ଓ ସୁଖୀ ମନେକରନ୍ତି।

ମାତ୍ର କେତେକ ଲୋକ ନିଜକୁ ସବୁ ବନ୍ଧନରୁ ମୁକ୍ତ ରଖିବାକୁ ଚାହାନ୍ତି। ସେମାନେ ଜାଣିଶୁଣି କୋଉ ବନ୍ଧନରେ ବାନ୍ଧିହୋଇ ଯାଆନ୍ତି ନାହିଁ। କୌଣସି ବନ୍ଧନରେ ଅକସ୍ମାତ୍ ପଡ଼ିଗଲେ - ସେମାନେ ଖୁଣ୍ଟ ଉପାଡ଼ି ଓ ସେ ବନ୍ଧନ ବଳାତ୍କାରେ ଛିନ୍ନକରି

ନିଜକୁ ମୁକ୍ତ ରଖନ୍ତି । ତେଣୁ ସୁଖ, ଦୁଃଖ, ଆପଦ, ବିପଦ, ବନ୍ଧନ ଓ ମୁକ୍ତି, ଏ ସବୁ ଭୋଗ କଲାବେଳେ ମଣିଷ ନିଜର ବିବେକ ଦ୍ୱାରା ପରିଚାଳିତ ହେବା ଉଚିତ । ନିଜର କୁପ୍ରବୃତ୍ତିଗୁଡ଼ିକଠାରୁ ନିଜର ମୁକ୍ତ ରଖିବା ଉଚିତ ।

ବୁଦ୍ଧଦେବ ମଣିଷକୁ କିଛି ସମୟ ଧ୍ୟାନସ୍ଥ ଓ ନୀରବ ରହିବାକୁ କହିଥିଲେ । ସମ୍ୟକ୍ ବୁଦ୍ଧି ଚାଳନା ଦ୍ୱାରା ସତ୍, ଅସତ୍ - ଶ୍ରେୟ ଓ ପ୍ରେୟ ଓ ବନ୍ଧନ ମୁକ୍ତି ସମ୍ବନ୍ଧେ ସମ୍ୟକ୍ ଚିନ୍ତାକରି ସିଦ୍ଧାନ୍ତ ନେବାକୁ କହିଥିଲେ । ସବୁ ଧର୍ମଶାସ୍ତ୍ରରେ ମଧ୍ୟ ମଣିଷକୁ ଈଶ୍ୱରଙ୍କଠାରେ ନିଜକୁ ସମର୍ପଣ କରିବାକୁ କୁହାଯାଇଛି । ଏହି ସମର୍ପଣ ଫଳରେ ମଣିଷ ସଦ୍‌ଗତି ଲାଭ କରିଥାଏ । କାରଣ ନିଜର ଅହଂକାର ଆମକୁ ଦୁର୍ଗତି ଆଡ଼କୁ ଟାଣି ନେଇଯାଏ ।



## ୫୨. ପ୍ରକୃତ ଶତ୍ରୁ କିଏ ?

ପ୍ରିୟ ପାଠକେ ! ସଂସାରରେ ଘର କରିଥିଲେ ଆମକୁ ନିଜର ପରିବାର ସଙ୍ଗେ ଓ ସମାଜ ସଙ୍ଗେ ବିବିଧ ସମ୍ପର୍କରଖି ଚଳିବାକୁ ପଡ଼ିଥାଏ । ଆମେ ବଞ୍ଚିବାପାଇଁ ବହୁ ଲୋକଙ୍କ ଉପରେ ନିର୍ଭର କରୁ ଓ ଆମ ଉପରେ ମଧ୍ୟ ବହୁ ଲୋକ ବଞ୍ଚିବା ପାଇଁ ନିର୍ଭର କରିଥାନ୍ତି । ଏହି ପରସ୍ପର ସଙ୍ଗେ କାରବାର କରିବା ଭିତରେ ଆମେ ବହୁ ଲୋକଙ୍କର ବନ୍ଧୁ ଓ କେତେ ଲୋକଙ୍କର ଶତ୍ରୁ ହୋଇଥାଉ । ଆମର ବି କେତେ ଲୋକ ବନ୍ଧୁ ହୋଇଥାନ୍ତି ଓ କେତେକ ଶତ୍ରୁମଧ୍ୟ ହୋଇଥାନ୍ତି । ଯିଏ ଅନ୍ୟର ମଙ୍ଗଳ ପାଞ୍ଚେ ଓ ତା'ର ମଙ୍ଗଳ କରେ, ସେ ବ୍ୟକ୍ତି ତା'ର ବନ୍ଧୁ ହୋଇଯାଏ । ଯେ ଅନ୍ୟର ଅମଙ୍ଗଳ ପାଞ୍ଚେ ଓ ଅନିଷ୍ଟ କରେ, ସେ ତା'ର ଶତ୍ରୁ ହୋଇଯାଏ । ପ୍ରକୃତରେ ଦେଖିବାକୁ ଗଲେ ଏ ସଂସାରରେ 'ଅଜାତଶତ୍ରୁ' ବୋଲି ଶବ୍ଦଟିଏ ଅବଶ୍ୟ ଅଛି, ମାତ୍ର 'ଅଜାତଶତ୍ରୁ' ହୋଇ ପ୍ରକୃତରେ କେହି ଜନ୍ମି ନାହିଁ । ସାଧୁ, ସନ୍ଥ, ମହାତ୍ମାମାନଙ୍କର ବି ଶତ୍ରୁ ଅଛନ୍ତି । ଈଶ୍ୱରପୁତ୍ର ପରମ କାରୁଣିକ ଯିଶୁଖ୍ରୀଷ୍ଟଙ୍କୁ ତାଙ୍କୁ ସହ୍ୟ କରିପାରୁ ନ ଥିବା ଶତ୍ରୁମାନେ କ୍ରୁଶରେ ଚଢ଼ାଇ ମାରିଲେ । ଭଗବାନ୍ ଶ୍ରୀକୃଷ୍ଣ ଓ ଶ୍ରୀରାମଙ୍କର ମଧ୍ୟ ଶତ୍ରୁ ଥିଲେ । ଏ ଯୁଗରେ ମହାତ୍ମା ଗାନ୍ଧୀଙ୍କର ମଧ୍ୟ ଶତ୍ରୁ ଥିଲେ ଓ ସେହି ଶତ୍ରୁମାନଙ୍କ ଦ୍ୱାରା ଗୁଳିବିଦ୍ଧ ହୋଇ ମୃତ୍ୟୁବରଣ କଲେ ।

ମୋଟ ଉପରେ ଯିଏ ଆମର ଉପକାର କରେ, ସେ ଆମର ବନ୍ଧୁ ଓ ଯେ ଆମର ଅପକାର କରେ, ସେ ଆମର ଶତ୍ରୁ । କିନ୍ତୁ ଆଉ କେତେକ ଲୋକ ଅଛନ୍ତି -

ସେମାନେ ବିନା କାରଣରେ ବି ଅନ୍ୟର ଶତ୍ରୁ ହୋଇଯାନ୍ତି। ଯେଉଁମାନେ ଅନ୍ୟର ସଦ୍‌ଗୁଣ ସହିପାରନ୍ତି ନାହିଁ ସେମାନେ ବି ସେଇ ଗୁଣୀଲୋକର ଶତ୍ରୁ ହୋଇଉଠନ୍ତି।

କିନ୍ତୁ ଏ କଥା ବି ସତ ଯେ, ସାଧୁ ଓ ପ୍ରେମୀ ଲୋକମାନେ ଈଶ୍ୱରପରାୟଣ ବ୍ୟକ୍ତିମାନେ କାହାକୁ ଶତ୍ରୁବୋଲି ଭାବନ୍ତି ନାହିଁ। କେହି ତାଙ୍କର ଅନିଷ୍ଟ କଲେ ବି ସେ ତାକୁ ଶତ୍ରୁ ବୋଲି ନ ଭାବି ଯିଶୁଖ୍ରୀଷ୍ଟଙ୍କ ପରି କହିନ୍ତ, ଈଶ୍ୱର ତାକୁ ସଦ୍‌ବୁଦ୍ଧି ଦିଅନ୍ତୁ। ଆମ ଯୁଗରେ ବି ଅନେକ ଧାର୍ମିକ ଓ ଈଶ୍ୱରପରାୟଣ ବ୍ୟକ୍ତି ଅଛନ୍ତି ଯେଉଁମାନେ ଅନିଷ୍ଟକାରୀକୁ ବି ଶତ୍ରୁବୋଲି ଭାବନ୍ତି ନାହିଁ। ଧର୍ମାତ୍ମା ଯୁଧିଷ୍ଠିର କୌରବମାନଙ୍କୁ କେବେବି ଶତ୍ରୁ ବୋଲି ଭାବୁ ନ ଥିଲେ। ମହାତ୍ମା ଗାନ୍ଧୀ, ସ୍ୱାମୀ ବିବେକାନନ୍ଦ ପ୍ରମୁଖ ସନ୍ଥ ପୁରୁଷମାନେ କାହାକୁ ଶତ୍ରୁ ବୋଲି ଭାବି ନାହାନ୍ତି।

କିନ୍ତୁ ପାଠକେ! ଆମେ ବର୍ତ୍ତମାନ ନୀତିଜ୍ଞ ପଣ୍ଡିତ ଚାଣକ୍ୟ 'ଶତ୍ରୁ' ସମ୍ବନ୍ଧେ କ'ଣ କହୁଛନ୍ତି - ତାହା ଆଲୋଚନା କରିବା। ଚାଣକ୍ୟଙ୍କ ଶ୍ଳୋକଟି ହେଲା -

**ଋଣକର୍ତ୍ତା ପିତା ଶତ୍ରୁଃ ମାତା ଚ ବ୍ୟଭିଚାରିଣୀ।**
**ଭାର୍ଯ୍ୟା ରୂପବତୀ ଶତ୍ରୁଃ ପୁତ୍ରଃ ଶତ୍ରୁଅପଣ୍ଡିତଃ ॥** (୬/୧୦)

ଏହି ଶ୍ଳୋକଟିର ଅର୍ଥ ହେଲା - ଯାହାର ବାପା ଜୀବନଯାକ ଋଣକରି ବଞ୍ଚିଲା ଓ ସେ ଋଣ ନିଜେ ନ ଶୁଝି ପୁତ୍ରକନ୍ୟାଙ୍କ ଉପରେ ପକାଇ ମରିଗଲା - ସେ ପିତା ତା' ସନ୍ତାନମାନଙ୍କ ସହ ଶତ୍ରୁବତ୍ ଆଚରଣ କଲା। ଯାହାର ମାଆ ଚରିତ୍ରହୀନା ଓ ବ୍ୟଭିଚାରରେ ଲିପ୍ତାହୋଇ ନିଜକୁ ନଷ୍ଟକଲା ଓ ନିଜର ବଂଶମର୍ଯ୍ୟାଦା ମଧ ନଷ୍ଟ କଲା - ସେପରି ମାତା ନିଶ୍ଚୟ ପିଲାମାନଙ୍କପାଇଁ ଶତ୍ରୁବତ୍ ଆଚରଣ କଲା।

ଆଉ ପ୍ରକାରେ ଶତ୍ରୁ ହେଲେ ରୂପବତୀ ଭାର୍ଯ୍ୟାମାନେ। ଭାର୍ଯ୍ୟା ରୂପବତୀ ହେଲେ - ବିପଦ ହେଉଛି ଯେ ଅନ୍ୟମାନେ ତା'ପ୍ରତି ଆକୃଷ୍ଟ ହୁଅନ୍ତି। ରୂପବତୀ ଭାର୍ଯ୍ୟା ମଧ ଅନ୍ୟ ପୁରୁଷ ବା ଜାରପୁରୁଷଙ୍କ ଆକର୍ଷଣୀୟ ଜାଲରେ ପଡ଼ିଯାଇ ନିଜେ ନଷ୍ଟା ଓ ଭ୍ରଷ୍ଟା ହୁଏ, କୁଳରେ ମଧ କଳଙ୍କ ଲଗାଇଦିଏ। ଏପରି ରୂପବତୀ ଭାର୍ଯ୍ୟା ମିଳିବା ଯେତିକି ସୌଭାଗ୍ୟର କଥା, ସେତିକି ମଧ ଦୁର୍ଭାଗ୍ୟର କଥା । ଚାଣକ୍ୟ ପଣ୍ଡିତେ ରୂପବତୀ ଭାର୍ଯ୍ୟାଙ୍କୁ ସ୍ୱାମୀର ଓ ବଂଶର ଶତ୍ରୁ ବୋଲି କହିଛନ୍ତି।

ଅନ୍ୟପ୍ରକାର ଶତ୍ରୁ ହେଲା ପୁତ୍ର ଯଦି ମୂର୍ଖ, ଅଜ୍ଞାନ ଓ ଅପଣ୍ଡିତ ହୁଏ। ପ୍ରକୃତ କଥା, ମୂର୍ଖ ପୁତ୍ର ବା ମୂର୍ଖ କନ୍ୟାମାନେ ନିଜେ ସଂସାରରେ ଭଲ ଭାବେ ଚଳିପାରିବେ ନାହିଁ। କୌଣସି ବିଦ୍ୟା ହାସଲ କରି ନ ଥିବାରୁ ସେମାନେ କୌଣସି କାର୍ଯ୍ୟ କରିପାରନ୍ତି ନାହିଁ। ଫଳରେ ନିଜର ଭରଣପୋଷଣ ମଧ କରିପାରନ୍ତି ନାହିଁ। ସେମାନେ ପିତାମାତାଙ୍କ

ଉପରେ ବୋଝସଦୃଶ ହୋଇଯାଆନ୍ତି । ଏପରି ବିଦ୍ୟାହୀନ ଶ୍ରମକୁଣ୍ଠ ଓ ଶିକ୍ଷାକୁଣ୍ଠ କନ୍ୟାପୁତ୍ରମାନେ ପ୍ରକୃତରେ ମାଆବାପାଙ୍କର ଶତ୍ରୁ ଭଳି କାର୍ଯ୍ୟ କରନ୍ତି । ତା'ଅର୍ଥ ସେମାନେ ମାତାପିତାଙ୍କର ଦୁଶ୍ଚିନ୍ତାର କାରଣ ହୋଇଉଠନ୍ତି ।

ପାଠକେ ! ଆମେ ବର୍ତ୍ତମାନ ମହାମତି ଚାଣକ୍ୟଙ୍କର ଏହି ଶ୍ଳୋକଟିର ଅନ୍ୟ ଦିଗଟି ମଧ୍ୟ ଦେଖିବା । ବାପା ଯଦି କିଛି ଋଣ କରିଥାନ୍ତି, ସେଥିପାଇଁ ତାଙ୍କୁ ଶତ୍ରୁ ବୋଲି କାହିଁକି ଭାବିବା ? ଏ ଜଗତଟା ତ ଋଣରେ ଚାଲିଛି ! ବାପା ଯଦି କର୍ମକୁଣ୍ଠ ହୋଇଥାନ୍ତି, ନାନାଦି ବିଳାସବ୍ୟସନରେ ମାତି ଅନର୍ଥକ ଋଣ କରୁଥାନ୍ତି ଓ ତାକୁ ଶୁଝିପାରୁ ନ ଥାନ୍ତି, ପିଲାମାନଙ୍କ ଭବିଷ୍ୟତ୍ କଥା ନ ଭାବି, ନିଜେ ବଦ୍‌ଖର୍ଚ୍ଚ କରି ସର୍ବସ୍ୱାନ୍ତ ହୁଅନ୍ତି, ତେବେ ଅବଶ୍ୟ ବାପା ଜଣେ ଶତ୍ରୁ ଭଳି ପିଲାଙ୍କ ଭବିଷ୍ୟତ୍‌କୁ ଆର୍ଥିକ ଦୃଷ୍ଟିରୁ ଅନ୍ଧକାରମୟ କରି ଦିଅନ୍ତି ।

ସେହିପରି କାହାର ଭାର୍ଯ୍ୟା ରୂପବତୀ ହେବା ତା'ର ଦୋଷ ନୁହଁ । ବରଂ ରୂପ ସୌନ୍ଦର୍ଯ୍ୟ ସମସ୍ତଙ୍କୁ ଆନନ୍ଦ ଦିଏ । କିନ୍ତୁ କେବଳ ରୂପ ଥିବ ମାତ୍ର କିଛି ଗୁଣ ନ ଥିବ, ଏବଂ ସେ ରୂପବତୀ ଭାର୍ଯ୍ୟାଟି ଯଦି ବ୍ୟଭିଚାରିଣୀ ହୋଇଥିବ, ତେବେ ସେ ତା'ର ସ୍ୱାମୀ, ସନ୍ତାନ ଓ ବଂଶପାଇଁ ଶତ୍ରୁବତ୍ ଦୁଃଖଦାୟିକା ହୋଇଥାଏ ।



## ୫୩. କିଏ ଭୋଗେ କାହା ପାପ

ପାଠକେ ! ଭଗବାନ୍‌ଙ୍କର ଏହି ସୃଷ୍ଟିରେ ଛପନକୋଟି ଜୀବଜନ୍ତୁଙ୍କ ଭିତରେ ମଣିଷ ହିଁ ଶ୍ରେଷ୍ଠ ବୋଲି କୁହାଯାଏ । କାରଣ ଅନ୍ୟ ପ୍ରାଣୀମାନେ ପ୍ରକୃତି ଦ୍ୱାରା ଓ ପ୍ରବୃତ୍ତି ଦ୍ୱାରା ପରିଚାଳିତ ହୁଅନ୍ତି । ମାତ୍ର ମନୁଷ୍ୟକୁ ଭଗବାନ୍ ଏକ ସ୍ୱତନ୍ତ୍ରଧରଣର ବୁଦ୍ଧି ଦେଇଛନ୍ତି । ଏହି ବୁଦ୍ଧି ଦ୍ୱାରା ମଣିଷ କଳ୍ପନା କରିପାରେ, ଚିନ୍ତା କରିପାରେ, ନୂତନ ସୃଷ୍ଟି କରିପାରେ, ଭଲମନ୍ଦ ବିଚାର କରିପାରେ ଓ ତା' ନିଜର ମାନବୀୟ ସୀମାକୁ ନିଜର ଚିନ୍ତା ଓ ଆଚରଣ ଦ୍ୱାରା ଓ ମହତ୍ ଅଭୀପ୍ସା ଦ୍ୱାରା ଅତିକ୍ରମ କରି ଅତିମାନବ ବା ଦିବ୍ୟମାନବରେ ରୂପାନ୍ତରିତ କରିବାକୁ ଚେଷ୍ଟା କରେ ।

ମାତ୍ର ଯେଉଁ ମଣିଷମାନେ ଦିବ୍ୟ ବୁଦ୍ଧିରେ ପରିଚାଳିତ ନ ହୋଇ ଅସୁର, ରାକ୍ଷସ ଓ ପିଶାଚର ବୁଦ୍ଧି ଦ୍ୱାରା ପରିଚାଳିତ ହୁଅନ୍ତି, ସେମାନେ ଅନ୍ୟମାନଙ୍କୁ ବହୁତ କଷ୍ଟ ଦିଅନ୍ତି ଏବଂ ନିଜେ ମଧ୍ୟ ବହୁତ କଷ୍ଟ ପାଆନ୍ତି । ଏହି ଆସୁରିକ, ରାକ୍ଷସୀୟ

ଓ ପୈଶାଚିକ ପ୍ରକୃତିର ମଣିଷମାନଙ୍କ ବୁଦ୍ଧି ବିକୃତ ହୋଇଯାଇଥାଏ । ଏପରି ବିକୃତମନା ଅନୀତିପରାୟଣ ଲୋକଙ୍କ କର୍ମକୁ ପାପ କୁହାଯାଏ । ଏହି ପାପର ଫଳ ହେଲା ଦୁଃଖ ଏବଂ ଏହି ଦୁଃଖ ସ୍ୱୟଂ ପାପକର୍ତ୍ତା ଭୋଗେ ଓ ତା'ର ପ୍ରତିକ୍ରିୟାଜନିତ ଦୁଃଖ ଅନ୍ୟମାନେ ମଧ୍ୟ ଭୋଗନ୍ତି । ମିଥ୍ୟାଚାର, କପଟାଚାର, ନୃଶଂସତା, ହିଂସା ଓ ଈର୍ଷାଦି ଅସୂୟାଭାବରେ ପ୍ରଣୋଦିତ ଯେ କୌଣସି କର୍ମକୁ ପାପକର୍ମ କୁହାଯାଏ । ଏବଂ ଆଶ୍ଚର୍ଯ୍ୟର କଥା ଅନ୍ୟ ପ୍ରାଣୀମାନେ ଏହି କୁଟୀଳ ଓ ବିକୃତ ବୁଦ୍ଧି ଦ୍ୱାରା ପରିଚାଳିତ ପାପକର୍ମ କରନ୍ତି ନାହିଁ । କେବଳ ମଣିଷ ହିଁ ବିକୃତ ବିକଟ ବୁଦ୍ଧି ଦ୍ୱାରା ପ୍ରଣୋଦିତ ହୋଇ ପାପକର୍ମ କରେ। ନିଜ ପାଇଁ ଓ ଅନ୍ୟ ପାଇଁ ଘୋର ଦୁଃଖକୁ ଡାକିଆଣେ । ପାଠକେ ! ରାକ୍ଷସ, ଅସୁର, ପିଶାଚ ବୋଲି ସ୍ୱତନ୍ତ୍ର ପ୍ରାଣୀ ନାହାନ୍ତି। ଏହି ମଣିଷ ହିଁ ଦେବତା ହୋଇଥାଏ ଓ ଅସୁର, ପିଶାଚ ବି ହୋଇଥାଏ । ମଣିଷର ପ୍ରକୃତି ଇତର ପ୍ରାଣୀଙ୍କ ପ୍ରକୃତି ଭଳି ଅପରିବର୍ତ୍ତନୀୟ ନୁହେଁ । ମାତ୍ର ପାପାଚାରୀ ମଣିଷମାନେ ନିଜ ପ୍ରକୃତିର ଉର୍ଦ୍ଧ୍ୱଗତି ଚାହାନ୍ତି ନାହିଁ । ସେମାନେ ଅଧୋଗତିକୁ ହିଁ ଭଲ ପାନ୍ତି । ବିକୃତମନା ମଣିଷର ଏଇ ଅଧୋଗତିକୁ ପାପ କହନ୍ତି । ଧର୍ମଭ୍ରଷ୍ଟ, ନୀତିଭ୍ରଷ୍ଟ, ଦୁର୍ମଦ, ଅହଂକାରୀ ବ୍ୟକ୍ତି ହିଁ ଏହି ପାପ କରିଥାଏ । ମଣିଷ ସମାଜରେ ବେଳେବେଳେ ପାପାଚାର ବଢ଼ିଯାଏ ଏବଂ ବେଳେବେଳେ ମଧ୍ୟ କମିଯାଏ । ଏହି ପାପର କୁଫଳକୁ ପାପାଚାରୀ ବ୍ୟକ୍ତି ହିଁ ଭୋଗ କରେ ।

ମାତ୍ର ବିଜ୍ଞଶିରୋମଣି ଚାଣକ୍ୟ ପଣ୍ଡିତେ ଆଉ ଗୋଟିଏ କଥା କହୁଛନ୍ତି । ତାଙ୍କ ମତରେ, ରାଜ୍ୟର ପ୍ରଜାମାନେ ଯେଉଁ ପାପ କରନ୍ତି, ତାହାର କୁଫଳ ରାଜାଙ୍କୁ ଭୋଗିବାକୁ ପଡ଼େ ଏବଂ ରାଜା ଯେଉଁ ପାପ କରନ୍ତି, ତା'ର ଫଳ ଭୋଗନ୍ତି ତାଙ୍କର ବୁଦ୍ଧିଦାତା ଓ ପଥପ୍ରଦର୍ଶକ ପୁରୋହିତ । ସେହିପରି ପତ୍ନୀକୃତ ପାପର ଫଳକୁ ଭୋଗ କରନ୍ତି ତାଙ୍କର ସ୍ୱାମୀ ଏବଂ ଶେଷରେ ଶିଷ୍ୟଙ୍କ କୃତ ପାପଫଳକୁ ତାଙ୍କର ମାର୍ଗଦର୍ଶକ ଜ୍ଞାନଦାତା ଗୁରୁଙ୍କୁ ବା ଶିକ୍ଷକଙ୍କୁ ଭୋଗ କରିବାକୁ ପଡ଼େ । ପାଠକେ ! ଆପଣ ଏ କଥାରେ ଆଶ୍ଚର୍ଯ୍ୟ ହୋଇ ପଚାରିପାରନ୍ତି, ବାଃ ବାଃ! ଆଚ୍ଛା ନ୍ୟାୟ ପଣ୍ଡିତେ କହୁଛନ୍ତି!! ଏ କେମନ୍ତ କଥା ହେ ? ପାପ କରିବ ଜଣେ, ଆଉ ତା'ର ଫଳ ଭୋଗିବ ଆଉ ଜଣେ ? ଭଲ ନ୍ୟାୟ ତ ପଣ୍ଡିତେ ବତେଇଲେ ?

ମାତ୍ର ଆମେ ଚାଣକ୍ୟଙ୍କୁ ଦୋଷ ଦେଇପାରିବା ନାହିଁ । ସେ ଖୁବ୍ ଗଭୀର ଓ ନିରପେକ୍ଷ ଭାବେ କଥାଟି ବିଚାରକରି କହିଛନ୍ତି । ବହୁଦର୍ଶୀ ଚାଣକ୍ୟ ପଣ୍ଡିତେ କହୁଛନ୍ତି, ବୁଦ୍ଧିମାନ୍ ମଣିଷ ସହଜରେ ପାପ କରେନାହିଁ । ବେଳେବେଳେ ସେ ତା'ର ଅଜ୍ଞାତ ଦୋଷରୁ ପାପକରେ । ପାପ ପୁଣ୍ୟ, ନୀତି ଅନୀତି, ଧର୍ମ ଅଧର୍ମ ଭିତରେ ପ୍ରଭେଦ

ବୁଝି ନ ପାରି ପାପ କରେ । ଆଉ କେବେ କେବେ ଅଭାବରୁ ତା'ର ସ୍ୱଭାବ ନଷ୍ଟ ହୋଇଯାଏ । ଆଉ କେବେ କେବେ ପ୍ରାଣ ବିକଳରେ ପାପ କରିପକାଏ ଏବଂ କେବେ କେବେ ପୁଣି ଗୁରୁ, ଶିକ୍ଷକ, ପୁରୋହିତମାନଙ୍କର ଭୁଲ୍ ମାର୍ଗଦର୍ଶନ ଯୋଗୁ ମଣିଷ ପାପ କରିପକାଏ । ରାଜା ବା ଶାସକ ପ୍ରଶାସକମାନେ ଯଦି ସେମାନଙ୍କ ରାଜ୍ୟକୁ ସବୁଦିଗରୁ ସୁରକ୍ଷିତ କରି ପ୍ରଜାମାନଙ୍କୁ ସନ୍ତାନବତ୍ ପାଳନ କରନ୍ତି, ତେବେ ସେ ରାଜ୍ୟରେ ପ୍ରଜାମାନଙ୍କର ଧନାଭାବ, ଖାଦ୍ୟାଭାବ ଓ ସୁଖସମୃଦ୍ଧିର ଅଭାବ ଘଟେ ନାହିଁ । ସେମାନେ ମଧ କାହା ଦ୍ୱାରା ଉତ୍ପୀଡ଼ିତ ହୁଅନ୍ତି ନାହିଁ । ପ୍ରଜାମାନେ ସୁଖଶାନ୍ତିରେ ରହିଲେ ପାପାଚାର କମିଯାଏ ଓ ଧର୍ମାଚାର ବଢ଼ିଯାଏ । ମାତ୍ର ରାଜା ବା ଶାସକମାନେ ଯଦି ଠିକ୍ ଭାବେ ପ୍ରଜାପାଳନ ନ କରନ୍ତି ଓ ନିଜେ ଭ୍ରଷ୍ଟାଚାରୀ ହୁଅନ୍ତି ତେବେ ପ୍ରଜାମାନଙ୍କର ଜୀବନ ଭ୍ରଷ୍ଟାଚାରୀ ହୋଇଯାଏ ଏବଂ ସେମାନେ ଅଧିକ ପରିମାଣରେ ପାପାଚାରୀ ହୁଅନ୍ତି । ଏ କ୍ଷେତ୍ରରେ ପ୍ରଜାଙ୍କର ସବୁ ଦୋଷ ପାପର ଫଳ ନିଶ୍ଚୟ ରାଜା ଓ ଶାସକ ପ୍ରଶାସକଙ୍କୁ ଭୋଗିବାକୁ ପଡ଼ିବ । ରାଜପୁରୋହିତ ବା ରାଜଗୁରୁ ରାଜାଙ୍କୁ ଠିକ୍ ପରାମର୍ଶ ଦେଇଥାନ୍ତି । ଶାସନ ପ୍ରଶାସନର ଉଚିତ ମାର୍ଗ ଦେଖାଇଥାନ୍ତି । ନୀତି, ଅନୀତିର ଭେଦ ବୁଝାଇଥାନ୍ତି । ମାତ୍ର ପୁରୋହିତ ବା ରାଜାଙ୍କ ପରାମର୍ଶଦାତାମାନେ ଯଦି ଉଚିତ ପରାମର୍ଶ ଦେଇ ନ ଥାନ୍ତି- ତେବେ ରାଜାଙ୍କ କୃତପାପର ଫଳ ପୁରୋହିତଙ୍କୁ ହିଁ ଭୋଗିବାକୁ ହେବ ।

ଅନ୍ୟପକ୍ଷରେ ଯେଉଁ ପତି ବା ସ୍ୱାମୀ ତା'ର ପତ୍ନୀଙ୍କୁ ସତ୍‌ଶିକ୍ଷା ଦେଇ ନ ଥାଏ- ଏବଂ ତା'ର ଉତ୍ତମ ଭରଣପୋଷଣ କରି ନ ଥାଏ ଏବଂ ନିଜେ ସ୍ୱେଚ୍ଛାଚାରୀ ଓ ଭ୍ରଷ୍ଟାଚାରୀ ହୋଇଥାଏ, ତେବେ ତା'ର ପତ୍ନୀ ଯଦି ପାପାଚାରିଣୀ ହୁଏ, ସେ ପାପର ଫଳ ତା' ସ୍ୱାମୀ ମୁଣ୍ଡରେ ଯିବ । ଶେଷରେ ଗୁରୁ ବା ଶିକ୍ଷକମାନେ ଯଦି ନିଜେ ସତ୍‌ମାର୍ଗୀ ନ ହୁଅନ୍ତି, ସଦ୍‌ଜ୍ଞାନୀ ନ ହୁଅନ୍ତି ଓ ସଦାଚାରୀ ନ ହୁଅନ୍ତି, ତାଙ୍କର ଶିଷ୍ୟମାନଙ୍କୁ ଯଦି ସଦ୍‌ଜ୍ଞାନ ଦେଇ ନ ଥାନ୍ତି ଏବଂ ସେମାନଙ୍କୁ ଉତ୍ତମ ମାର୍ଗ ଦେଖାଇ ନ ଥାନ୍ତି, ତେବେ ଶିଷ୍ୟମାନଙ୍କ କୃତ ପାପର ଫଳ ନିଶ୍ଚୟ ଗୁରୁମାନଙ୍କୁ ଭୋଗ କରିବାକୁ ପଡିବ । ଚାଣକ୍ୟ କହୁଛନ୍ତି-

**ରାଜା ରାଷ୍ଟ୍ରକୃତଂ ଭୁଂକ୍ତେ ରାଜ୍ଞଃ ପାପଂ ପୁରୋହିତଃ ।**
**ଭର୍ତ୍ତା ଚ ସ୍ତ୍ରୀକୃତଂ ପାପଂ ଶିଷ୍ୟପାପଂ ଗୁରୁସ୍ତଥା ॥** (୬/୯)



# ୫୪. ଛଅ ପ୍ରାଣୀଙ୍କୁ ଗୁରୁ କର

ପ୍ରିୟ ପାଠକେ ! ଆପଣମାନେ ଭକ୍ତକବି ଜଗନ୍ନାଥ ଦାସଙ୍କ ଭାଗବତରୁ ଅବଧୂତଙ୍କର ଚବିଶ ଗୁରୁ କଥା ପଢ଼ିଥିବେ । ମହାଯୋଗୀ ଅବଧୂତ ଆମ ଚାରିପାର୍ଶ୍ୱରେ ଥିବା ବିଭିନ୍ନ ପଶୁପକ୍ଷୀଙ୍କୁ ମଧ୍ୟ ଗୁରୁ କରି ସେମାନଙ୍କଠାରୁ ଜୀବନର ନୀତି ବା ସୁମାର୍ଗର ନିର୍ଦ୍ଦେଶ ପାଇଛନ୍ତି । ଅବଧୂତ କପୋତ ପକ୍ଷୀମାନଙ୍କଠାରୁ ଶିଖିଲେ ସଂସାରର ଏଇ ମାୟାମୋହଗ୍ରସ୍ତ ଜୀବନରୁ କିପରି ମୁକ୍ତି ପାଇବାକୁ ହେବ । ଅଜଗର ସାପଠାରୁ ଶିଖିଲେ ଏକ ଧରଣର ଉଦାସୀନତା । ମହୁମାଛିଙ୍କଠାରୁ ଶିଖିଲେ ନିଜର ସଞ୍ଚିତ ଧନ କିପରି ଅନ୍ୟର ଉପକାରରେ ଆସେ । ଏହିପରି ମହାଯୋଗୀ ଅବଧୂତ କେତେକ ପ୍ରାଣୀଙ୍କୁ ଗୁରୁ କରି ତାଙ୍କଠାରୁ ସଦ୍‌ଜ୍ଞାନ ପାଇଥିଲେ ।

ଏବେ ଆପଣମାନଙ୍କୁ ଆମେ ମହାପ୍ରାଜ୍ଞ ଚାଣକ୍ୟଙ୍କର କେତୋଟି ନୀତିଶ୍ଳୋକ ବିଶ୍ଳେଷଣ କରି ଶୁଣାଇବା, ଯେଉଁଥିରେ ଚାଣକ୍ୟ ପଣ୍ଡିତେ କେତୋଟି ପ୍ରାଣୀଙ୍କର ସଦ୍‌ଗୁଣ ବର୍ଣ୍ଣନା କରିଛନ୍ତି ଓ ସେମାନଙ୍କଠାରୁ ମନୁଷ୍ୟମାନେ ସେହିସବୁ ଗୁଣ ଶିଖିବା ଉଚିତ ବୋଲି ନିର୍ଦ୍ଦେଶ ଦେଇଛନ୍ତି । ଶ୍ଳୋକଗୁଡ଼ିକୁ ଏବେ ଦେଖନ୍ତୁ-

**ସିଂହାଦେକଂ ବକାଦେକଂ ଶିକ୍ଷେତ୍ ଚତ୍ୱାରି କୁକ୍କୁଟାତ୍ ।**
**ବାୟସାତ୍ ପଞ୍ଚଶିକ୍ଷେଚ୍ଚ ଷଟ୍ ଶୁନସ୍ତୀଣି ଗର୍ଦ୍ଦଭାତ୍ ।।** (୬।୧୪)

ଅର୍ଥାତ୍, ସିଂହଠାରୁ ଗୋଟିଏ ଗୁଣ ଶିଖିବ । ବଗଠାରୁ ଗୋଟିଏ ଗୁଣ ଶିଖିବ । କୁକୁଡ଼ାଠାରୁ ଚାରିଟି ଗୁଣ ଶିଖିବ । କୁଆଠାରୁ ପାଞ୍ଚଟି ଗୁଣ ଶିଖିବ । କୁକୁରଠାରୁ ଛଅଟି ଏବଂ ଗଧଠାରୁ ତିନୋଟି ଗୁଣ ଶିକ୍ଷା କରିବ ।

ବର୍ତ୍ତମାନ ଦେଖିବା, କୋଉ ପ୍ରାଣୀଠାରୁ ଆମେ କୋଉ ଗୁଣ ଶିଖିବା ! ପ୍ରଥମେ ସିଂହର ବିଶିଷ୍ଟ ଗୁଣଟି ଦେଖନ୍ତୁ । ସିଂହ କ'ଣ କରେନା, ତା'ର ସବୁ କାମକୁ ଖୁବ୍ ଯତ୍ନର ସହିତ ସାବଧାନରେ ସମ୍ପନ୍ନ କରେ । ଆମେ ମଧ୍ୟ ଆମ ଜୀବନର କୌଣସି କାର୍ଯ୍ୟକୁ ଛୋଟବଡ଼ ନ ଭାବି, ସବୁପ୍ରକାର କାମକୁ ସମାନ ଯତ୍ନର ସହିତ କରିବା ଉଚିତ । ସ୍ୱୟଂ ଭଗବାନ୍ ମଧ୍ୟ ଗୋଟାଏ ହାତୀକୁ ଯେପରି ଯତ୍ନର ସହିତ ସୃଷ୍ଟି କରିଛନ୍ତି, ଗୋଟିଏ ମାଛି ବା ପିମ୍ପୁଡ଼ିକୁ ମଧ୍ୟ ସେମିତି ଯତ୍ନର ସହିତ ସୃଷ୍ଟି କରିଛନ୍ତି । ଜଣେ ସୁଦକ୍ଷ ଶାସକ ରାଜକାର୍ଯ୍ୟ ବା ସରକାରୀ କର୍ମକୁ ଯେପରି ନିପୁଣ ଭାବେ ସମ୍ପାଦନ କରନ୍ତି, ନିଜ ଗାଧୁଆଘରକୁ ମଧ୍ୟ ସେହିପରି ନିପୁଣ ଭାବେ ପରିଷ୍କାର କରିଥାନ୍ତି । ପଶୁରାଜ ସିଂହ ସେହିପରି ତା'ର ଜୀବନ ବଞ୍ଚାଇଥାଏ । କୌଣସି କଥାକୁ ଅବହେଳା କରେ ନାହିଁ ।

ଚାଣକ୍ୟ ପଣ୍ଡିତେ କହନ୍ତି, ମଣିଷର ବଗପକ୍ଷୀଠାରୁ ମଧ୍ୟ କେତେକ କଥା ଶିଖିବାର ଅଛି । ବଗପକ୍ଷୀ ବଡ଼ ସତର୍କ ଥାଏ । ଦେଶ-କାଳ-ପାତ୍ର ବିବେଚନା କରେ । ଏଣୁତେଣୁ କଥା ନ ଭାବି ପୋଖରୀ କୂଳରେ ଧ୍ୟାନସ୍ଥହୋଇ ଏକାଗ୍ର ଚିତ୍ତରେ ବସିଥାଏ । ପୋଖରୀ ପାଣିରେ ମାଛଟିଏ ହଲିଲା ମାତ୍ରେ ତାକୁ ତା'ର ଲମ୍ୱା ଥଣ୍ଟ ବଢ଼ାଇ ଆହାର କରେ । ଆମେ ମଣିଷମାନେ ବଗଠାରୁ ଏହି ଏକାଗ୍ରତା ଓ ଧ୍ୟାନସ୍ଥତା ଶିକ୍ଷା କରିବା ଉଚିତ । ତା' ସହିତ ବଗ ପରି ସ୍ଥାନ କାଳ ପାତ୍ର ପ୍ରତି ସଚେତନ ହେବା ଦରକାର ।

ଆମେ କୁକୁଡ଼ାଠାରୁ ମଧ୍ୟ ଚାରୋଟି ଗୁଣ ଆହରଣ କରିବା ଉଚିତ । କୁକୁଡ଼ା ସର୍ବଦା ସତର୍କ ଥାଏ ଓ ଠିକ୍ ସମୟରେ ଜାଗିଉଠେ । କାହାଠାରୁ ଯୁଦ୍ଧର ଆହ୍ୱାନ ଆସିଲେ, ସେ ଯୁଦ୍ଧ ପାଇଁ ତତ୍‌କ୍ଷଣାତ୍ ପ୍ରସ୍ତୁତ ହୋଇଯାଏ । ଖାଇଲାବେଳେ ବା ଚାଲିଲାବେଳେ ସେ ଅନ୍ୟ କୁକୁଡ଼ାମାନଙ୍କୁ ମଧ୍ୟ ଭାଗ ଦିଏ । ଯେ କୌଣସି କୀଟପତଙ୍ଗକୁ ନିଜେ ଆକ୍ରମଣ କରି ତାକୁ ଭୋଜନ କରେ । ଆମେ ମନୁଷ୍ୟମାନେ କୁକୁଡ଼ାଙ୍କଠାରୁ ଏହିସବୁ ସଦ୍‌ଗୁଣ ଆହରଣ କଲେ ଏବଂ ଆମ ଜୀବନରେ ସେ ସବୁକୁ ପ୍ରୟୋଗ କଲେ, ନିଶ୍ଚୟ ଜୀବନରେ ସୁଖୀ ହୋଇପାରିବା ।

ବର୍ତ୍ତମାନ କାକଠାରୁ ଆମେ କ'ଣ ଶିଖିବା ଶୁଣନ୍ତୁ । କାଉ ନିଜକୁ ସର୍ବଦା ସୁରକ୍ଷିତ ରଖିଲା ପରି ଆମେ ମଧ୍ୟ ସର୍ବଦା ଆପଦବିପଦ ପ୍ରତି ସଚେତନ ରହିବା ଉଚିତ । କାଉଙ୍କର ମୈଥୁନ ପରି ଆମେ ମଧ ଗୋପନରେ ମୈଥୁନରତ ହେବା ଉଚିତ୍ । କାହାକୁ କାଉ ଶୀଘ୍ର ବିଶ୍ୱାସ କରେନା । ଆମେ କିନ୍ତୁ ସମସ୍ତଙ୍କୁ ବିଶ୍ୱାସ ନ କରିପାରିଲେ ବି କାହାକୁ ମୂଳରୁ ଅବିଶ୍ୱାସ କରିବା ଉଚିତ ନୁହେଁ ।

ଏବେ କୁକୁରର ସଦ୍‌ଗୁଣଗୁଡ଼ିକୁ ଦେଖନ୍ତୁ ଓ ତା'ଠାରୁ ଏଗୁଡ଼ିକ ଶିକ୍ଷା କରନ୍ତୁ । ହଜମ ଶକ୍ତି ଥିଲେ ବି ଓ ଖାଇବାକୁ ଆଗ୍ରହ ଥିଲେ ବି କୁକୁର ଅଳ୍ପ ଭୋଜନରେ ବି ସନ୍ତୁଷ୍ଟ ରହେ । ପ୍ରଗାଢ଼ ନିଦ୍ରାରେ ହୋଇଥିଲେ ବି ଆବଶ୍ୟକ ବେଳେ ହଠାତ୍ ଉଠିପଡ଼େ । ତା'ର ଖୋରାକଦାତା ପ୍ରଭୁ ପ୍ରତି କୁକୁର ଖୁବ୍ ଅନୁରକ୍ତ ଥାଏ ଏବଂ ବୀରପରି ଯୁଦ୍ଧକୁ ଆଗେଇ ଆସେ ।

ଆମେ ମନୁଷ୍ୟମାନେ କୁକୁରଠାରୁ ଏହି ସଦ୍‌ଗୁଣଗୁଡ଼ିକୁ ନିଜ ଜୀବନରେ ଆଚରିତ କରିବା ଉଚିତ ନୁହେଁ କି ? ଏବେ ଗଧଠାରୁ ଆମେ କ'ଣ ଶିଖିବା ଶୁଣନ୍ତୁ ।

ଗଧର ସଦ୍‌ଗୁଣଗୁଡ଼ିକ ହେଲା ଚାଣକ୍ୟଙ୍କ ଭାଷାରେ-

**ସୁଶ୍ରାନ୍ତୋଽପି ବହେଦ୍ ଭାରଂ ଶୀତୋଷ୍ଣଂ ନ ଚ ପଶ୍ୟତି ।**
**ସନ୍ତୁଷ୍ଟଶ୍ଚରତେ ନିତ୍ୟଂ ତ୍ରୀଣି ଶିକ୍ଷେଚ୍ଚ ଗର୍ଦ୍ଦଭାତ୍ ।। (୬/୨୦)**

ଖୁବ୍ କ୍ଳାନ୍ତ ହୋଇ ପଡ଼ିଥିଲେ ବି ଗଧ ତା' ପିଠିରେ ବୋଝ ବହନ କରି ଚାଲିଥାଏ। ଶୀତ ଓ ଖରାକୁ ସେ ଖାତିର କରେ ନାହିଁ। ସର୍ବଦା ନିଜ ଜୀବନକୁ ନେଇ ସନ୍ତୁଷ୍ଟ ଥାଏ।

ପାଠକେ! ଚାଣକ୍ୟ କହନ୍ତି, ମହାନ୍ ମଣିଷମାନେ, ସଫଳ ମଣିଷମାନେ ଗଧର ଏହି ଗୁଣଗୁଡ଼ିକୁ ନିଜ ଜୀବନରେ ପ୍ରଦର୍ଶନ କରିଥାନ୍ତି । ସଫଳକାମ ମଣିଷ ମାନଙ୍କର ବୋଝ ବହନ କରିବାକୁ କୁଣ୍ଠିତ ହୁଏ ନାହିଁ । ସୁଖଦୁଃଖ ସବୁକୁ ସମାନ ଭାବେ ଅନୁଭବ କରେ ଓ ନୀରବ ରହେ। ଅଭିଯୋଗ ମନୁଷ୍ୟ ଇତର ପ୍ରାଣୀଙ୍କଠାରୁ ବୁଦ୍ଧିମାନ୍ ହେଲେ ବି ଇତରପ୍ରାଣୀଙ୍କଠାରୁ ତା'ର ବହୁକଥା ଶିକ୍ଷା କରିବାର ଅଛି।



## ୫୫. କାହିଁରେ ସନ୍ତୋଷ କାହିଁରେ ଅସନ୍ତୋଷ

**ସନ୍ତୋଷାଽମୃତ-ତୃପ୍ତାନାଂ ଯଦ୍‌ସୁଖଂ ଶାନ୍ତଚେତସାମ୍ ।**
**ନ ଚ ତଦ୍ ଧନଲୁବ୍‌ଧାନାମିତଶ୍ଚେତଶ୍ଚ ଧାବତାମ୍ ।। (୭/୩)**

ମହାପ୍ରାଜ୍ଞ ନୀତିବାନ୍ ଚାଣକ୍ୟ ଆମକୁ ସନ୍ତୋଷ ଓ ଅସନ୍ତୋଷ ସମ୍ବନ୍ଧେ କହୁଛନ୍ତି । ଉପରୋକ୍ତ ଶ୍ଳୋକରେ ସେ କେଉଁଥିରୁ କିପରି ସନ୍ତୋଷ ମିଳେ ଓ ସନ୍ତୋଷ କିପରି ... ଜୀବନରେ ସୁଖଶାନ୍ତି ଦେଇଥାଏ ସେ ସମ୍ବନ୍ଧେ କହୁଛନ୍ତି । ସନ୍ତୋଷ ଏକ ମାନସିକ ଅନୁଭୂତି । ଏହା ମନକୁ ଶାନ୍ତ କରିଦିଏ, ସୁଖମୟ କରିଦିଏ । ମନରେ ପରିପୂର୍ଣ୍ଣଭାବ ଆସେ ଏବଂ ମନ ସ୍ଥିର ହୋଇଯାଏ । ସନ୍ତୋଷ ହେଲା ସ୍ୱର୍ଗର ଅମୃତ ଭଳି । ଯେ ମନରେ ସବୁକଥାରେ ସନ୍ତୋଷ ପ୍ରକାଶ କରେ, ତା' ମନ ଓ ହୃଦୟ ସବୁବେଳେ ସଜୀବ ଓ ସରସ ରହିଥାଏ । ଜୀବନରେ ଆମେ ଯାହା ପାଇଥାଉଁ ତା' ଠାରୁ ଢେର ଢେର ବେଶି ବିଷୟ ପାଇବା ଲୋକ ଅଛନ୍ତି-କମ୍ ପାଇବା ଲୋକ ବି ଅଛନ୍ତି । ଆମଠାରୁ ଧନ, ଗୁଣ, ମାନସମ୍ମାନ, ଯଶ ଓ କ୍ଷମତାରେ ଅଧିକ ଥିବା ଲୋକ ଯେମିତି ଅଛନ୍ତି, ଏ ସବୁଥିରେ ଆମଠାରୁ କମ୍ ଥିବା ଲୋକେ ବି ଅଛନ୍ତି ।

କିନ୍ତୁ ଆମେ ଜାଣୁ, ଯେଉଁମାନଙ୍କର ଯେଉଁ ଜିନିଷ ନାହିଁ, ବା ଅଳ୍ପ ଅଛି, ସେ ସେହି ବିଷୟ ପାଇବାକୁ ତା' ପିଛା ଅଣନିଃଶ୍ୱାସୀ ହୋଇ ଧାଇଁଥାଏ । ଯେତେ

ପାଇଲେ ବି ସେ ସବୁବେଳେ ମନଭିତରେ ହାଇଁପାଇଁ ହେଉଥାଏ । ଖୁବ୍ ଧନୀଲୋକ ଖୁବ୍ ଖ୍ୟାତିମାନ୍ ଲୋକ ଖୁବ୍ କ୍ଷମତାଶାଳୀ ଲୋକ ସେହିଧନ, ଖ୍ୟାତି, କ୍ଷମତା ପଛରେ ତଥାପି ଅଣନିଃଶ୍ୱାସୀ ହୋଇ ଧାଇଁଥାନ୍ତି ଆଉ ଅଧିକ ପାଇବା ପାଇଁ । କିନ୍ତୁ ଏମାନଙ୍କ ଜୀବନ ସର୍ବଦା କାମନା ବାସନାର ନିଆଁରେ ଦଗ୍ଧ ହେଉଥାଏ । ଏମାନେ ନିଜେ ସନ୍ତୁଷ୍ଟ ହୁଅନ୍ତି ନାହିଁ; କି ଆଉ କାହାକୁ ସନ୍ତୋଷ ଦେଇପାରନ୍ତି ନାହିଁ । ନିଜେ ସୁଖଶାନ୍ତି ଭୋଗିପାରନ୍ତି ନାହିଁ; ଏବଂ ଅନ୍ୟ ପାଇଁ ଦୁଃଖ, ଅଶାନ୍ତି ଓ ସନ୍ତାପର କାରଣ ହୋଇଥାନ୍ତି । ଏମାନଙ୍କ ପାରିବାରିକ ଜୀବନ ମଧ୍ୟ ଖୁବ୍ ଦୁଃଖଦାୟକ ହୋଇଥାଏ ।

କିନ୍ତୁ ଏହି ଭାବର ବିପରୀତ କଥା ମଧ୍ୟ ଅଛି । ଚାଣକ୍ୟ ପଣ୍ଡିତେ କହନ୍ତି- ମଣିଷ ତା' ଜୀବନ ପାଇଁ ଯେତିକି ଧନ, ଜନ, ଗୋପ, ଲକ୍ଷ୍ମୀ ଦରକାର ସେତିକି ପାଇବା ପାଇଁ ପରିଶ୍ରମ କରୁ ଓ ସେତିକି ପ୍ରାପ୍ତିରେ ସନ୍ତୁଷ୍ଟ ହେଉ । ମାତ୍ର ଜୀବନରେ ଆଉ କେତେକ ବିଷୟ ଅଛି- ଯାହାକୁ ପାଇବା ଲାଗି ସାରା ଜୀବନ ପରିଶ୍ରମ କରିବାକୁ ହେବ । ସେ ସବୁ ବିଷୟରେ ଅଳ୍ପରେ ସନ୍ତୁଷ୍ଟ ହେବା ଅନୁଚିତ ।

ଚାଣକ୍ୟଙ୍କ ଭାଷାରେ-

**ସନ୍ତୋଷସ୍ତ୍ରିଷୁ କର୍ତ୍ତବ୍ୟଃ ସ୍ୱଦାରେ ଭୋଜନେ ଧନେ ।**
**ତ୍ରିଷୁ ଚୈବ ନ କର୍ତ୍ତବ୍ୟୋଽଧ୍ୟୟନେ ତପଦାନୟୋଃ ॥ (୭/୪)**

ଏହାର ଅର୍ଥ ହେଲା, ଯେଉଁ ନାରୀକୁ ତୁମେ ସମ୍ମତ ହୋଇ ବିବାହ କରିଛ ବା ପତ୍ନୀ ରୂପେ ଗ୍ରହଣ କରିଛ, ସ୍ୱେଚ୍ଛାରେ ନିର୍ବାଚନ କରିଛ ବା ପ୍ରଜାପତିଙ୍କ ଘଟସୂତ୍ରକୁ ମାନ୍ୟକରି ଅଗ୍ନିଦେବତାଙ୍କୁ ସାକ୍ଷୀ ରଖି, ତାଙ୍କୁ ଆହୁତି ଦେଇ, ତାଙ୍କ ଆଗେ ପ୍ରତିଜ୍ଞା କରି, ତାଙ୍କ ପାଣିଗ୍ରହଣ କରିଛ, ତାଙ୍କ ପ୍ରତି ସର୍ବଦା ସନ୍ତୁଷ୍ଟ ରହିବା ଉଚିତ । ତାଙ୍କର ସାମାନ୍ୟ ଦୋଷତ୍ରୁଟିକୁ କ୍ଷମା କରିବା ଉଚିତ । ଆନନ୍ଦରେ ତାଙ୍କର ସେବା ଗ୍ରହଣ କରିବା ଉଚିତ ଓ ସମାନ ଆନନ୍ଦରେ ତାଙ୍କର ସେବା ମଧ୍ୟ କରିବା ଉଚିତ । ତାଙ୍କଠାରୁ ଅଧିକ ରୂପବତୀ, ଗୁଣବତୀ ବା ଧନବତୀ ନାରୀ ପ୍ରତି ଆକୃଷ୍ଟ ହୋଇ ନିଜର ବିବାହିତା ପତ୍ନୀଙ୍କୁ ଅବଜ୍ଞା କରି ସେହିସବୁ ନାରୀମାନଙ୍କ ପିଛା ଧାବନ କରିବା ଅନୁଚିତ । ଏହାଦ୍ୱାରା ତୁମେ ନିଜ ପତ୍ନୀଠାରୁ ଯେପରି ସନ୍ତୋଷ ପାଇବ ନାହିଁ, ଅନ୍ୟ ନାରୀଠାରୁ ବି ସେମିତି ସୁଖସନ୍ତୋଷ ପାଇପାରିବ ନାହିଁ ।

ସେହିପରି ତୁମକୁ ଯେତେବେଳେ ଯାହା ଭୋଜନ ମିଳିଲା, ତାକୁ ଖାଇ ସନ୍ତୁଷ୍ଟ ରହ । ଅନ୍ୟ ଖାଦ୍ୟ ପ୍ରତି ଲୋଭ କରି ହାଇଁପାଇଁ ହୁଅ ନାହିଁ । ଏହାଦ୍ୱାରା ତୁମେ ନିଶ୍ଚୟ ଦୁଃଖ ପାଇବ ଏବଂ 'ଧନ' ବିଷୟରେ ମଧ୍ୟ ସେଇ ଏକା କଥା । ତୁମର

ଯେତିକି ଧନ ଦରକାର ଓ ଯେତିକି ତୁମର ଝାଳବୁହା ଧନ-ଧର୍ମ ଅର୍ଜିତ ଧନ-ସେତିକି ପାଇ ସନ୍ତୁଷ୍ଟ ରହ । ଧନ ପଛରେ ଯେ ଗୋଡ଼ାଏ, ସେ ପାପ କରେ ଓ ଦୁଃଖ ପାଏ ।

କିନ୍ତୁ ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଉପରୋକ୍ତ ବିଷୟଗୁଡ଼ିକରେ ସନ୍ତୋଷ ପ୍ରକାଶ କରିବ ସିନା, ଅଧ୍ୟୟନ, ଜପ ଓ ଦାନରେ କେବେ ସନ୍ତୋଷ ପ୍ରକାଶ କରିବ ନାହିଁ । କାରଣ ଜ୍ଞାନ ଯେତେ ଅର୍ଜନ କରିବ, ଯେତେ ପ୍ରଭୁଙ୍କ ନାମ ଜପ କରିବ ଓ ଯେତେ ଅନ୍ୟକୁ ଦାନ କରିବ, ସେଥିରେ ତୃପ୍ତ ବା ସନ୍ତୁଷ୍ଟ ହେବ ନାହିଁ । କାରଣ ଏହି ତିନୋଟି ବିଷୟ ମନୁଷ୍ୟର ଆତ୍ମାର ବିକାଶ ପାଇଁ ସାହାଯ୍ୟ କରିଥାଏ ଏବଂ ମନୁଷ୍ୟ ତା'ର ମୃତ୍ୟୁ ପର୍ଯ୍ୟନ୍ତ ତା' ଅନ୍ତରାତ୍ମାର ବିକାଶ କରି ଚାଲିବା ଉଚିତ ।

ଜୀବନଯାକ ଜ୍ଞାନ ଅର୍ଜନ କରିବାକୁ ବିବିଧ ଗ୍ରନ୍ଥ ଅଧ୍ୟୟନ କରି ଚାଲିଯାଅ । ତାହା ତୁମର ମନ, ହୃଦୟ ଓ ଆତ୍ମାକୁ ପ୍ରସନ୍ନ ରଖିବ, ଉଜ୍ଜ୍ୱଳ କରି ରଖିବ ଓ ବିକଶିତ କରି ରଖିବ । "ଦାନ" କରିବା ଏକ ମହତ୍ କର୍ମ । କେହି କେହି ଦରିଦ୍ରକୁ ଧନଦାନ କରନ୍ତି, କେହି ଦୁର୍ବଳକୁ ଶକ୍ତିଦାନ କରନ୍ତି, କେହି ଅଜ୍ଞାନକୁ ଜ୍ଞାନ ଦାନ କରନ୍ତି, କେହି ନିରୁତ୍ସାହିତ ବ୍ୟକ୍ତିଙ୍କୁ ଉତ୍ସାହଦାନ କରନ୍ତି, କେହି କେହି ମଠମନ୍ଦିରକୁ ବି ଧନଦାନ କରିଥାନ୍ତି । ଏହି ଦାନ ଦ୍ୱାରା ଦାନୀର ମନ ଓ ହୃଦୟ ପ୍ରଶସ୍ତ ହୋଇଥାଏ । ସେହିପରି ଭଗବାନ୍‌ଙ୍କ ନାମ ଜପ କରିବା ଦ୍ୱାରା ଆମର ଅନ୍ତରାତ୍ମା ଜାଗ୍ରତ ହୋଇଥାଏ ଏବଂ ଆମେ ପରମାନନ୍ଦର ଆକର ଭଗବାନ୍‌ଙ୍କୁ ଉପଲବ୍ଧି କରିଥାଉ ।



## ୫୬. ଅର୍ଥୀ ଦୋଷଂ ନ ପଶ୍ୟତି

ପ୍ରିୟ ପାଠିକା-ପାଠକମାନେ! ଆମେ ସମସ୍ତେ ଅନ୍ଧ କାହାକୁ କହନ୍ତି, ତାହା ଜାଣୁ । ପ୍ରାଣୀମାନେ ଆଖିରେ ଦେଖନ୍ତି । ଯାହାର ଆଖି ଜନ୍ମରୁ ଫିଟି ନାହିଁ ବା ଯେକୌଣସି ରୋଗରେ ଆକ୍ରାନ୍ତ ହୋଇ ତା'ର ଆଖି ଦୁଇଟି ହରାଇଥାଏ, ସେ କିଛି ଦେଖିପାରେ ନାହିଁ । ତେଣୁ ତାକୁ ଆମେ ଅନ୍ଧ ବୋଲି କହିଥାଉ । କିନ୍ତୁ ଏହା ହେଲା ଶାରୀରିକ ଅନ୍ଧତ୍ୱ । ଏହି ଅନ୍ଧମାନଙ୍କୁ ଦେଖିଲେ ଆମର ଦୟା ହୁଏ । ହୃଦୟବାନ୍ ବ୍ୟକ୍ତିମାନେ ଅନ୍ଧକୁ ବାଟ ଚାଲିବାରେ ସାହାଯ୍ୟ କରିଥାନ୍ତି ଏବଂ ଅକାତରେ ସେମାନଙ୍କୁ ମଧ୍ୟ କିଛି ଅର୍ଥ ଦାନ କରନ୍ତି । ଏମାନେ ହତଭାଗ୍ୟ ନିଶ୍ଚୟ । ମାତ୍ର ଏମାନେ ଆମର ସହାନୁଭୂତି ଓ ସାହାଯ୍ୟ ପାଇବାକୁ ଯୋଗ୍ୟ ଅଟନ୍ତି । ଏହି ଅନ୍ଧମାନଙ୍କ ଭିତରେ

ମଧ୍ୟ ବହୁ ମହାତ୍ମା, କବି, ଦାର୍ଶନିକ ଜନ୍ମ ହୋଇ ଜଗତର କଲ୍ୟାଣ କରି ଯାଇଛନ୍ତି । ବିଶ୍ୱପ୍ରସିଦ୍ଧ ପାଶ୍ଚାତ୍ୟ କବି ମିଲ୍‌ଟନ୍, ସେ ଥିଲେ ମହାକବି । 'ପାରାଡାଇଜ୍ ଲଷ୍ଟ', 'ହୃତ ସ୍ୱର୍ଗ' ତାଙ୍କର ଏକ କାଳଜୟୀ କାବ୍ୟ । ଭାରତର ଅନ୍ୟତମ ଭକ୍ତକବି ହେଲେ ପରମ ବୈଷ୍ଣବ ବିଲ୍ୱମଙ୍ଗଳ । ଆମ ଓଡ଼ିଶାର ପ୍ରାତଃସ୍ମରଣୀୟ ଭକ୍ତ ଓ ବିପ୍ଳବୀ କବି ଭୀମଭୋଇ ଥିଲେ ଅନ୍ଧ । ତାଙ୍କର 'ସ୍ତୁତି ଚିନ୍ତାମଣି' କାବ୍ୟ ଗ୍ରନ୍ଥଟି କାଳଜୟୀ ଏବଂ ନୂତନ ଯୁଗର ସୃଷ୍ଟି ପାଇଁ ଏକ ଆକୁଳ କ୍ରୁଦ୍ଧ ଓ କ୍ରନ୍ଦନ-କ୍ଷୁବ୍ଧ ମର୍ମସ୍ପର୍ଶୀ ଉଚ୍ଚାରଣ ।

ତେଣୁ ଦୈହିକ ଅନ୍ଧମାନେ ନିଶ୍ଚୟ ଆମର କରୁଣା, ସହାନୁଭୂତି ଓ ସମ୍ମାନର ପାତ୍ର । ସେଥିପାଇଁ ଆଧୁନିକ ଯୁଗରେ ଅନ୍ଧ ଓ ଅନ୍ୟ ପ୍ରକାର ବିକଳାଙ୍ଗମାନଙ୍କ ସମ୍ମାନଜନକ ଜୀବନ ବଞ୍ଚିବା ପାଇଁ ସ୍କୁଲ କଲେଜ ଓ ଜୀବିକାର୍ଜନ କ୍ଷେତ୍ର ସାରା ପୃଥିବୀରେ ଖୋଲାଯାଇଛି । ପୂର୍ବକାଳ ଭଳି ବର୍ତ୍ତମାନ ଜଣେ ଅନ୍ଧବ୍ୟକ୍ତି ନିଜକୁ ଏତେ ଅକ୍ଷମ ଓ ଅସହାୟ ମନେକରୁନାହିଁ । ...ଆଉ ଗୋଟିଏ କଥା ହେଲା, ବହୁ କ୍ଷେତ୍ରରେ ଦେଖାଯାଇଛି ଯେଉଁମାନେ ଜନ୍ମାନ୍ଧ ବା ପରବର୍ତ୍ତୀ ଜୀବନରେ ସେମାନଙ୍କର ଦୃଷ୍ଟିଶକ୍ତି ହରାଇଛନ୍ତି ସେମାନଙ୍କର ଅନ୍ତର୍ଦୃଷ୍ଟି ସେହି ଅନୁପାତରେ ଖୋଲିଯାଇଛି । ସେମାନେ ଅଧିକ ମାର୍ମିକ ଓ ବୁଦ୍ଧିମାନ୍ ହୋଇଉଠିଛନ୍ତି । ସେମାନଙ୍କର ମଧ୍ୟ ଅନ୍ୟାନ୍ୟ ଇନ୍ଦ୍ରିୟ ଖୁବ୍ ଗ୍ରହଣଶୀଳ ଓ ଅଧିକ ତୀକ୍ଷ୍ଣ ଓ ସକ୍ରିୟ ହୋଇଉଠିଛନ୍ତି ।

ବର୍ତ୍ତମାନ ଆମେ ଦେଖିବା, ମହାପ୍ରାଜ୍ଞ ଚାଣକ୍ୟ ପଣ୍ଡିତେ ଗୋଟିଏ ଶ୍ଳୋକରେ ଅନ୍ଧମାନଙ୍କ ସମ୍ବନ୍ଧେ କ'ଣ କହୁଛନ୍ତି ।

**ନ ପଶ୍ୟତି ଚ ଜନ୍ମାନ୍ଧଃ କାମାନ୍ଧୋ ନୈବ ପଶ୍ୟତି ।**
**ନ ପଶ୍ୟତି ମଦୋନ୍ମତ୍ତୋ ହ୍ୟର୍ଥୀ ଦୋଷାନ୍ ନ ପଶ୍ୟତି ॥** (୬।୭)

ଅର୍ଥାତ୍, ଜନ୍ମରୁ ଯେଉଁମାନେ ଚକ୍ଷୁ ବା ଦୃଷ୍ଟିଶକ୍ତି ହରାଇଥାନ୍ତି, ଆମେ ସେମାନଙ୍କୁ ଅନ୍ଧ କହୁ । କାରଣ ସେମାନେ କିଛି ଦେଖିପାରନ୍ତି ନାହିଁ । ସେମାନେ ଜନ୍ମାନ୍ଧ । ସେମାନେ ଏହି ଦୃଶ୍ୟମାନ ପୃଥିବୀକୁ ଦେଖିବାର ସୌଭାଗ୍ୟରୁ ବଞ୍ଚିତ । କିନ୍ତୁ ଏ ପୃଥିବୀରେ ଆଉ କେତେକ ଲୋକ ଅଛନ୍ତି, ଯେଉଁମାନେ ଆଖିରେ ଅନ୍ଧ ନୁହନ୍ତି । ମାତ୍ର ସେମାନଙ୍କ ପ୍ରକୃତିରେ ଏପରି କୁତ୍ସିତ ଦୋଷ ସବୁ ଥାଏ ଯାହା ସେମାନଙ୍କୁ ଅନ୍ଧ କରିଦେଇଛି । ସେମାନେ ଆଖି ଥାଇ ମଧ୍ୟ ଠିକ୍ ଭାବେ ଦେଖିପାରନ୍ତି ନାହିଁ କିମ୍ବା ସେମାନଙ୍କ ଅନ୍ତର୍ଦୃଷ୍ଟି ମଧ୍ୟ ଆଦୌ ଖୋଲେ ନାହିଁ ।

ଏହି ଅନ୍ଧମାନଙ୍କ ଭିତରେ ପ୍ରଥମ ଅନ୍ଧଟି ହେଲା କାମାନ୍ଧ । ଯେଉଁ ନାରୀ ପୁରୁଷମାନେ ସର୍ବଦା ଯୌନ ସମ୍ଭୋଗ ଇଚ୍ଛା କରୁଥାନ୍ତି ସେମାନେ କାମାନ୍ଧ । ଯୌନକାମନା ସେମାନଙ୍କ ମନକୁ ଏପରି ଆକ୍ରାନ୍ତ କରିଥାଏ ଯେ ସେମାନେ ଗମ୍ୟାଗମ୍ୟ

ଭିତରେ ପ୍ରଭେଦ ଦେଖିପାରନ୍ତି ନାହିଁ । ଏମାନେ ନିଜ ଭିତରେ ଯୌନ ପ୍ରବେଶ ବା ବୁଭୁକ୍ଷା ଅନୁଭବ କଲା ମାତ୍ରେ ପାଖରେ ଯେ ଥାଉ- ତା' ସହିତ ଯୌନ ସମ୍ଭୋଗ କରିବାକୁ ବ୍ୟାକୁଳ ହୋଇପଡ଼ନ୍ତି । କେବଳ ଯୌନ କାମନା ନୁହେଁ, ଯେକୌଣସି ତୀବ୍ର କାମନା ବାସନାର ବଶବର୍ତ୍ତୀ ନାରୀନରମାନେ ପାପ ପୁଣ୍ୟ, ନ୍ୟାୟ ଅନ୍ୟାୟ, ମଙ୍ଗଳ ଅମଙ୍ଗଳ ଭିତରେ ଭେଦ ଜାଣିପାରନ୍ତି ନାହିଁ । ସେତେବେଳ ସେ ପର ଆପଣାଙ୍କୁ ଚିହ୍ନିପାରନ୍ତି ନାହିଁ । ଏମାନେ ହେଲେ କାମାନ୍ଧ ।

ଆଉ ପ୍ରକାରେ ଅନ୍ଧ ଅଛନ୍ତି - ସେମାନଙ୍କୁ ଚାଣକ୍ୟ ପଣ୍ଡିତେ 'ମଦାନ୍ଧ' ବୋଲି ଆଖ୍ୟାତ କରିଛନ୍ତି ।

ଏହି ମଦାନ୍ଧ ଦୁଇ ପ୍ରକାର । କେତେକ ମାଦକଦ୍ରବ୍ୟ ଅତ୍ୟଧିକ ମାତ୍ରାରେ ସେବନ କରି ମାତାଲ ହୋଇଯାନ୍ତି । ସେମାନେ ପୃଥିବୀରେ ନିଜକୁ ସବୁଠାରୁ ବଳବାନ୍, ଜ୍ଞାନୀ ଓ ମାନୀ ବୋଲି ମନେକରନ୍ତି । ସେମାନଙ୍କ ମଦମତ୍ତ ଆଖିକୁ ମାନ୍ୟଜନ ଗୁରୁଜନ ଦେଖାଯାନ୍ତି ନାହିଁ । ନାରୀ ପୁରୁଷ ଦେଖାଯାନ୍ତି ନାହିଁ । ଦିଅଁ, ଦେବତା ଦେଖାଯାନ୍ତି ନାହିଁ । ମାତାଲ ଅବସ୍ଥାରେ ସେମାନେ ଯାହାକୁ ଯାହା ଇଚ୍ଛା କହନ୍ତି ଓ ଯାଚ୍ଛାତାଇ କାର୍ଯ୍ୟ କରନ୍ତି । ସେମାନେ ମଧ ନିଶାରେ ଭୋଳ ହୋଇ କିଛି ଦେଖିପାରନ୍ତି ନାହିଁ, ଜାଣିପାରନ୍ତି ନାହିଁ । ଏହି ମଦମତ୍ତ ଲୋକଙ୍କୁ ଚାଣକ୍ୟ ମଦାନ୍ଧ ବୋଲି କହୁଛନ୍ତି ।

ମଦାନ୍ଧ କେବଳ ମାଦକଦ୍ରବ୍ୟ ସେବନକାରୀଙ୍କୁ କୁହାଯାଏନା । ଯେଉଁମାନେ ଧନବଳ, ଜନବଳ ଓ କ୍ଷମତାବଳରେ ତୃପ୍ତ ହୋଇଥାନ୍ତି ସେମାନେ ମଧ ମଦମତ୍ତଙ୍କ ଭଳି କିଛି ଦେଖିପାରନ୍ତି ନାହିଁ କି ଜାଣିପାରନ୍ତି ନାହିଁ । ସେମାନେ ପବିତ୍ର ଶାଳଗ୍ରାମକୁ ମଧ ସାମାନ୍ୟ ପଥର ଖଣ୍ଡେ ଭାବି ଗୋଇଠା ମାରନ୍ତି । ଏମାନେ ମଧ ମଦାନ୍ଧ ।

ଚାଣକ୍ୟ ଶେଷରେ 'ଅର୍ଥାନ୍ଧ'ଙ୍କ ଦୃଷ୍ଟାନ୍ତ ଦେଉଛନ୍ତି । ଯେଉଁମାନେ ଧନଲୋଭୀ ଯେଉଁମାନେ ଧନଲୋଭକୁ ଚରିତାର୍ଥ କରିବା ପାଇଁ ଚୋରି, ରାହାଜାନି ଭଳି ପାପ କାର୍ଯ୍ୟ କରିବାକୁ ମଧ ପଛାନ୍ତି ନାହିଁ, ଯେଉଁମାନଙ୍କର ଧନ-ଲୋଲୁପ ଆଖି, ସେମାନଙ୍କ ଦୃଷ୍ଟିରେ କେବଳ ଧନ ପଡୁଥାଏ । ସେମାନଙ୍କ ମନମୁନ ଚଇତନ ସେଇ 'ଧନ' ଉପରେ ହିଁ ନିବଦ୍ଧ ଥାଏ । ଧନ ଲୋଭରେ ଅନ୍ଧ ହୋଇ ସେମାନେ ମା'ର ବେକକୁ କାଟି ମଧ ସୁନାହାର ନେଇଯିବେ । ଜଗନ୍ନାଥ ମନ୍ଦିର ଭିତରେ ମହାଲକ୍ଷ୍ମୀଙ୍କ ମୁଣ୍ଡକୁ ଛେଦି ଛେଦି ଅଷ୍ଟରତ୍ନ ମଣ୍ଡିତ ସ୍ୱର୍ଣ୍ଣମୁକୁଟ ମଧ ଚୋରାଇ ନେବେ । ଏହି ଧନାନ୍ଧ ବା ଅର୍ଥକାମୀମାନଙ୍କ ଆଖିରେ ଧନ ପରଳ ମାଡ଼ିଯାଇ ସେମାନଙ୍କୁ ଅନ୍ଧ କରି ଦେଇଥାଏ ।



## ୫୭. ମତିମାନ୍ ନ ପ୍ରକାଶୟେତ୍ ...

ସବୁ ମଣିଷ ନିଜର ମନକଥା ଅନ୍ୟ ଆଗରେ ପ୍ରକାଶ କରିବାକୁ ଚାହାନ୍ତି । ଅବଶ୍ୟ ସବୁ କଥା ମଣିଷ ଅନ୍ୟ ଆଗରେ ପ୍ରକାଶ କରିବାକୁ ଚାହେଁନା । କେତେ କଥା ମଧ ଅନ୍ୟ ଆଗରେ ପ୍ରକାଶ କରିବା ଉଚିତ ନୁହେଁ । କୋଉ କୋଉ କଥା ଅନ୍ୟ ଆଗରେ ପ୍ରକାଶ କରିବ ନାହିଁ ସେ ସମ୍ବନ୍ଧେ ଜ୍ଞାନୀପ୍ରବର ଚାଣକ୍ୟ କହନ୍ତି-

**ଅର୍ଥନାଶଂ ମନସ୍ତାପଂ ଗୃହେ ଦୁଷ୍ଚରିତାନି ଚ ।**
**ହୋ ବଞ୍ଚନଂ ଚାଽପମାନଂ ମତିମାନ୍ ନ ପ୍ରକାଶୟେତ୍ ॥ (୭/୧)**

ଶ୍ଳୋକଟିର ଅର୍ଥ ହେଲା, ଯଦି କୌଣସି କାରଣରୁ ତୁମର ଅର୍ଥ ନଷ୍ଟ ହୋଇଥାଏ, ତେବେ ସେ କଥା କାହାକୁ କହିବ ନାହିଁ । ନାନା କାରଣରୁ ଆମେ ଅନେକ ସମୟରେ ଧନ ହରାଇଥାଉ । ଚୋର ଡକାୟତ ଆମର ଧନ ଲୁଣ୍ଠନ କରିପାରନ୍ତି । ଅଗ୍ନିଦାହରେ ଆମର ଧନ ନଷ୍ଟ ହୋଇଥାଏ । କେତେକ ଜଟିଳ ମକଦ୍ଦମାରେ ପଡ଼ି ଆମର ବହୁ ଅର୍ଥ ଖର୍ଚ୍ଚ ହୋଇଯାଏ । ନିଜର ବା ପ୍ରିୟଜନଙ୍କର ରୋଗବ୍ୟାଧିର ଉପଶମ ଲାଗି ବହୁ ଅର୍ଥ ବ୍ୟୟ ହୋଇଯାଇପାରେ । କେତେବେଳେ ନିଜର ଅସାବଧାନତା ହେତୁ ଆମର ବହୁ ଧନ ନଷ୍ଟ ହୋଇଯାଏ । ତେବେ ତାହା ଯୋଉ କାରଣରୁ ହେଉପଛେ ବୁଦ୍ଧିମାନ୍ ଲୋକ ସେ କଥା ଅନ୍ୟ ଆଗରେ ପ୍ରକାଶ କରିବା ଉଚିତ ନୁହେଁ । କାରଣ ତା' ଫଳରେ ଅନ୍ୟମାନେ ଆମର ଧନବଳ କେତେ ତାହା ଜାଣିଯାନ୍ତି, ଫଳରେ ଆମ ପ୍ରତି ସେମାନଙ୍କର ଖାତିର କଟିଯାଏ । ବୁଦ୍ଧିମାନ୍ ଲୋକ କେବେହେଲେ ବି ଅନ୍ୟକୁ ନିଜର ଅର୍ଥବଳ କଷିବାକୁ ସୁଯୋଗ ଦିଏ ନାହିଁ । କିନ୍ତୁ ଦୁଃଖର କଥା, ବହୁ ଲଘୁଚେତା ବ୍ୟକ୍ତି ନିଜର ଧନନାଶ କଥା ଅନ୍ୟ ଆଗରେ ଖୁବ୍ ବଢ଼େଇ କରି କହିଥାନ୍ତି ।

ଦ୍ୱିତୀୟ ଗୋପନ କଥାଟି ହେଲା ନିଜ ମନଭିତରେ ଚାପି ରଖିଥିବା କୌଣସି ଗୋପନୀୟ ଦୁଃଖ ବା ସନ୍ତାପକୁ ମଧ ଅନ୍ୟ ଆଗରେ ପ୍ରକାଶ କରିବା ଠିକ୍ ନୁହେଁ । ତୁମର ବିଭିନ୍ନ କାରଣରୁ ମନସ୍ତାପ ଘଟିପାରେ । ପ୍ରିୟଜନ ବିଚ୍ଛେଦ ଦୁଃଖ, ଧନହାନି ବା ସମ୍ମାନହାନିଜନିତ ଦୁଃଖ ପାରିବାରିକ ବିଶୃଙ୍ଖଳାଜନିତ ଦୁଃଖ, କିମ୍ବା ନିଜକୃତ କୌଣସି ମନ୍ଦ କାର୍ଯ୍ୟ ପାଇଁ ଅନୁତାପଜନିତ ଦୁଃଖ, ଏସବୁ ବାଚାଳଙ୍କ ପରି ଅନ୍ୟ ଆଗରେ ଗପିବା ଉଚିତ ନୁହେଁ । ଏହାର ପ୍ରଧାନ କାରଣ ହେଲା, ଏ ସଂସାରରେ କାହାର ଭଲା ଦୁଃଖ ନାହିଁ ? ମଣିଷ ମାତ୍ରେ ଇ ନାନାବିଧ ଦୁଃଖ ଭୋଗ କରିଥାଏ ।

ରୋଗ ଶୋକ, ମନସ୍ତାପ ଭଲା କିଏ ନ ଭୋଗୁଛି ? ଏ ସ୍ଥଳେ ତୁମେ ନିଜ ଦୁଃଖ ବାଚାଳଙ୍କ ପରି ଅନ୍ୟଆଗରେ ବଢ଼େଇ କରି କହିବା ଦ୍ୱାରା ତୁମେ ତା'ଠାରୁ ସମବେଦନା ତ ପାଇବ ନାହିଁ, ଅନ୍ୟପକ୍ଷରେ ସେ ତୁମ ଉପରେ ବିରକ୍ତ ହୋଇଯିବ। ତୁମେ ଅନ୍ୟ ଆଗରେ ତୁମର ମନସ୍ତାପର କାରଣ କହିବା ଦ୍ୱାରା ସେ ତୁମର ଅନେକ ଗୋପନ କଥା ଜାଣିଯିବାର ସୁଯୋଗ ପାଇବ । ତେଣୁ ଚାଣକ୍ୟ ପଣ୍ଡିତେ ନିଜର ବ୍ୟକ୍ତିଗତ ଦୁଃଖକଥା ଅନ୍ୟଆଗେ ପ୍ରଗଲ୍‌ଭ ହୋଇ ଗପିବାକୁ ବାରଣ କରିଛନ୍ତି । ତେବେ ଏ କଥା ସତ ଯେ ଜଣେ ତା'ର ସହୃଦୟ ମରମୀ ବନ୍ଧୁ ଆଗରେ ନିଜର ମନସ୍ତାପ ସମ୍ବନ୍ଧେ କିଛି କହିପାରେ । କିନ୍ତୁ କବିସୂର୍ଯ୍ୟ ବଳଦେବଙ୍କ ଭାଷାରେ "ଗଙ୍ଗାରୁ ବିଶଦ ଗଭୀର ହୃଦୟ" ଏବଂ ଗଭୀର ସମ୍ବେଦନଶୀଳ ବନ୍ଧୁ ଏ ସଂସାରରେ ଦୁର୍ଲଭ । ଆମେ ନିଜେ ମଧ୍ୟ କାହାର ସେହିପରି ମରମୀ ବନ୍ଧୁ ହୋଇପାରିନୁ ।

ଚାଣକ୍ୟ ପଣ୍ଡିତେ ଆଉ ଗୋଟିଏ କଥା ଗୋପନ ରଖିବାକୁ କହୁଛନ୍ତି । ତାହା ହେଲା, କେହି ନିଜର ଗୃହିଣୀ ବା ଭାର୍ଯ୍ୟାର ଚରିତ ଅନ୍ୟଆଗରେ ଗପିବା ଉଚିତ ନୁହେଁ । ତଦ୍ୱାରା ଗୃହଛିଦ୍ର ବୃଥାରେ ବାହାରେ ପ୍ରକାଶ ପାଇଥାଏ । ତୁମ ପତ୍ନୀ ଖୁବ୍ କଳିହୁଡୀ କିମ୍ବା କ୍ରୋଧୀ କିମ୍ବା ଖରତୁଣ୍ଡୀ କିମ୍ବା ଅତ୍ୟନ୍ତ ଗର୍ବିଣୀ ଓ ଅହଂକାରୀ, ପତ୍ନୀଙ୍କର ଏଇସବୁ ଦୁର୍ଗୁଣଗୁଡ଼ିକ ଅନ୍ୟ ଆଗେ କେବେ ପ୍ରକାଶ କରିବ ନାହିଁ । ଏପରିକି ପତ୍ନୀ ଯଦି ଅନ୍ୟ ପୁରୁଷ ପ୍ରତି ଆସକ୍ତ ଥାନ୍ତି, ସେ କଥା ମଧ୍ୟ କାହା ଆଗେ ଗପିବ ନାହିଁ । ଏହାଦ୍ୱାରା କିଛି ଲାଭ ହୁଏନା, ବରଂ ତୁମେ ନିଜେ ଅନ୍ୟମାନଙ୍କ ଉପହାସର ପାତ୍ର ହୋଇପାର । ଅନ୍ୟ ପକ୍ଷରେ ତୁମ ପତ୍ନୀଙ୍କର ସୌନ୍ଦର୍ଯ୍ୟ ବା ସୁଗୁଣ ମଧ୍ୟ ଅନ୍ୟମାନଙ୍କ ଆଗରେ ବାଚାଳଙ୍କ ପରି ଗପିବା ଅନୁଚିତ । ଏହାଦ୍ୱାରା ଅନ୍ୟମାନେ ତୁମ ପ୍ରତି ଈର୍ଷାନ୍ୱିତ ହୋଇପାରନ୍ତି, କିମ୍ବା ତୁମକୁ 'ମାଇବୋଲା' କହି ଉପହାସ କରିପାରନ୍ତି । ମୋଟ ଉପରେ ନିଜ ପତ୍ନୀଙ୍କର ସୁଗୁଣ ବା ଦୁର୍ଗୁଣ ଅନ୍ୟ ଆଗରେ ବାଚାଳଙ୍କ ପରି ଗପିଚାଲିବ ନାହିଁ ।

ଶେଷରେ ଚାଣକ୍ୟ ପଣ୍ଡିତେ ଖୁବ୍ ବଡ଼ ଉପଦେଶଟିଏ ଦେଇଛନ୍ତି । ତା' ହେଲା, କେହି ଯଦି ତୁମକୁ ନୀଚବାକ୍ୟ କହିଥାଏ ଓ ଅପମାନ କରିଥାଏ, ତେବେ ସେକଥା ମଧ୍ୟ ଆଉ କାହା ଆଗରେ ପ୍ରକାଶ କରିବ ନାହିଁ । କାରଣ ଏହାଦ୍ୱାରା ନିଜର ସମ୍ମାନ ବା ମର୍ଯ୍ୟାଦା ନଷ୍ଟହୁଏ । ଯେଉଁ ବ୍ୟକ୍ତି ଅନ୍ୟ ପ୍ରତି ନୀଚବାକ୍ୟ ପ୍ରୟୋଗ କରେ, ସେ ଜଣେ ନୀଚବ୍ୟକ୍ତି । ଭଦ୍ର ଓ ଭବ୍ୟ ମଣିଷ ସର୍ବଦା ଅନ୍ୟ ସହ କଥା କହିଲା ବେଳେ ନିଜର ବାକ୍ୟକୁ ଯଥାସମ୍ଭବ ଭଦ୍ର ଓ ଭବ୍ୟ କରିବା ଉଚିତ ।

ନିଜେ ଯଦି କାହାଠୁଁ ଅପମାନ ପାଇଛ, ତେବେ ସେ କଥା ମନଭିତରେ ଗୋପନୀୟ କରି ରଖିବ । ତୁମେ ଅପମାନିତ ହୋଇଛ ଶୁଣିଲେ ସବୁଲୋକ ଦୁଃଖିତ ହେବେ ନାହିଁ । ବରଂ କେତେ ଲୋକ ଖୁସି ହେବେ । ତୁମକୁ ଶକ୍ତିହୀନ ବୋଲି ଭାବିବେ । ତେଣୁ ସବୁକଥା ସବୁବେଳେ ସମସ୍ତଙ୍କ ଆଗରେ ବାଚାଳଙ୍କ ପରି ଗପି ଚାଲିବା ଅନୁଚିତ ।



## ୫୮. କାଳୋହି ଦୁରତିକ୍ରମଃ

ମହାଜ୍ଞାନୀ ଚାଣକ୍ୟ ନିମ୍ନୋକ୍ତ ଶ୍ଳୋକରେ 'କାଳ' ବା 'ସମୟ'ର ଦୁରତିକ୍ରମ୍ୟ ଶକ୍ତି ସମ୍ବନ୍ଧେ କହୁଛନ୍ତି-

**କାଳଃ ପଚତି ଭୂତାନି କାଳଃ ସଂହରତେ ପ୍ରଜାଃ ।**
**କାଳଃ ସୁପ୍ତେଷୁ ଜାଗର୍ତ୍ତି କାଳୋ ହି ଦୁରତିକ୍ରମଃ ॥** (୬/୬)

ଅର୍ଥାତ୍, ଅସୀମ ବଳଶାଳୀ କାଳ ପ୍ରତ୍ୟେକ ଜୀବକୁ ଜୀର୍ଣ୍ଣ କରିଥାଏ। କାଳ ବକ୍ଷରେ ଜନ୍ମ ହୋଇଥିବା ସମସ୍ତଙ୍କୁ କାଳ ସଂହାର କରିଥାଏ । ସମସ୍ତେ ନିଦ୍ରାଭିଭୂତ ଥିଲା ବେଳେ କେବଳ କାଳ ହିଁ ଜାଗ୍ରତ ଥାଏ । ଏହି ସଦାଜାଗ୍ରତ ଓ ଅନୁବ୍ରତେ ପ୍ରବହମାନ କାଳସ୍ରୋତକୁ କେହି ଅତିକ୍ରମ କରିପାରିନାହାନ୍ତି କି ପାରିବେ ମଧ୍ୟ ନାହିଁ ।

ପାଠକେ ! 'କାଳ'ର ଧାରଣା ଓ 'ଆକାଶ'ର ଧାରଣା କରିବା ଆମ ସମସ୍ତଙ୍କ ପକ୍ଷରେ ସହଜ ନୁହଁ । କେବଳ ବଡ଼ ବଡ଼ ଦାର୍ଶନିକମାନେ ଓ ଆଧ୍ୟାତ୍ମିକ ଯୋଗୀ ବା ସିଦ୍ଧମାନେ କାଳକୁ ଜାଣନ୍ତି ଓ କାଳକୁ ମଧ୍ୟ ନିଜ ଇଚ୍ଛାନୁସାରେ ପରିଚାଳିତ କରନ୍ତି । କାଳ ନିରପେକ୍ଷ ନୁହେଁ । ପାତ୍ର ଅର୍ଥ ସ୍ଥାନ ବା ଆକାଶରେ ଯେଉଁ କର୍ମ କରନ୍ତି ସେହି କର୍ମଧାରାର ଆରମ୍ଭ, ମଧ୍ୟ ଓ ଶେଷ ଅନୁଭବଟି ହେଲା କାଳର ଅନୁଭବ । 'କାଳ'କୁ ମୃତ୍ୟୁ ବୋଲି ମଧ୍ୟ କୁହାଯାଏ । କିନ୍ତୁ 'କାଳ' ମଧ୍ୟ ଜନ୍ମକୁ ବୁଝାଏ ଏବଂ କୌଣସି କର୍ମର ଆରମ୍ଭ, ମଧ୍ୟ ଓ ଶେଷ ଏଇ ତିନୋଟି ଚେତନାଗତ ଅବସ୍ଥାର ଅନୁଭବକୁ ମଧ୍ୟ 'କାଳ' କୁହାଯାଇଥାଏ । କାଳ ସମ୍ବନ୍ଧେ ଭାବିଲେ ମନେହୁଏ ଏତେ କି ଆମ ଜୀବନ କୁଆଡୁ ଆସି କୁଆଡକୁ ଧାଇଁ ଚାଲିଛି, ଯାହା କିଛି ଆରମ୍ଭ ହେଉଛି ତାହା ଶେଷ ହେଉଛି । କିଛି ସବୁଦିନ ପାଇଁ ରହୁ ନାହିଁ। ଜ୍ଞାନୀମାନେ କହନ୍ତି ସବୁ କଥା ଯଥାକାଳରେ ଘଟିବ ଓ ଯଥାକାଳରେ ଶେଷ ହେବ ।

ବୁଦ୍ଧିମାନ୍ ଓ ସ୍ଥିତପ୍ରଜ୍ଞ ମଣିଷମାନେ କୌଣସି ବିଷୟରେ ଚଞ୍ଚଳ ହୁଅନ୍ତି ନାହିଁ, ବ୍ୟସ୍ତ ବିବ୍ରତ ହୁଅନ୍ତି ନାହିଁ । କାରଣ ସେମାନେ ଜାଣନ୍ତି ଯେ ବିଭିନ୍ନ ଘଟଣା ସଂଯୋଗ ଓ ବିଯୋଗ ଫଳରେ ଆଉ ଗୋଟିଏ ଘଟଣା ଘଟେ । ଯାହା ବି ଚାଲିଯାଉଛି-ତାହା ଅତୀତ । ଯାହା ଏଇ ମୁହୂର୍ତ୍ତରେ ଅଛିବୋଲି ମୋର ମନେହେଉଛି, ତାହା 'ବର୍ତ୍ତମାନ' ଏବଂ ଯାହା କିଛି ଆସିବ, ତାହା ଭବିଷ୍ୟତ୍ । ସମସ୍ତ କାଳ ନିରପେକ୍ଷ । କାଳ ନିଜେ କିଛି କରେନାହିଁ । କିନ୍ତୁ କାଳକୁ ଆଶ୍ରାକରି ସ୍ଥାନ ମାଧ୍ୟମରେ ଆକାଶ ବକ୍ଷରେ ପାତ୍ରମାନେ ହିଁ ସବୁ କରନ୍ତି । ଆମେ କାଳକୁ ଆପେକ୍ଷିକ ଭାବରେ ବୁଝୁ । ଘଟଣା ପରମ୍ପରାକୁ ଦେଖି ବୁଝୁ । କିନ୍ତୁ ଯୋଗୀ ମୁନି ଦାର୍ଶନିକମାନେ କାଳର ପରମ ସ୍ୱରୂପକୁ ମଧ୍ୟ ଅନୁଭବ କରିଥାନ୍ତି । ସେମାନେ କାଳର ଅଧୀନ ହୋଇ କାଳକୁ ଉତ୍ତୀର୍ଣ୍ଣ ହୋଇଯାନ୍ତି । କାଳସ୍ରୋତରେ କୌଣସି ପ୍ରଭାବ ତାଙ୍କ ମନଉପରେ ପଡେନାହିଁ । ଶରୀରଗୁଡ଼ିକ ମାଟି, ପାଣି, ପବନ, ଅଗ୍ନି, ବାୟୁ ଓ ଆକାଶକୁ ନେଇ ତିଆରି ହୋଇଥାଏ । ପରମାଣୁମାନଙ୍କ ସଂଯୋଗ ବିଯୋଗ ଫଳରେ ଶରୀରଗୁଡ଼ିକ ସୃଷ୍ଟି ହୁଏ । ଶରୀର ମାତ୍ରେଇ ଜଡବସ୍ତୁରେ ନିର୍ମିତ । କିନ୍ତୁ ତା' ଠାରୁ ସୂକ୍ଷ୍ମ ହେଲା ପ୍ରାଣ ଓ ପ୍ରାଣଠାରୁ ସୂକ୍ଷ୍ମ ହେଲା ମନ ଓ ମନଠାରୁ ସୂକ୍ଷ୍ମ ହେଲା ଆତ୍ମା ।

ଅଧ୍ୟାତ୍ମ ବିଜ୍ଞାନ କହନ୍ତି, ବସ୍ତୁ ଯେତେ ସୂକ୍ଷ୍ମ ହୋଇଚାଲିବ, ସେତେ ସେତେ ତାହା କାଳକୁ ଅତିକ୍ରମ କରିଯିବ । ଉଦାହରଣସ୍ୱରୂପ, ଯେଉଁମାନେ କେବଳ ଦେହସର୍ବସ୍ୱ ଦେହକୈନ୍ଦ୍ରିକ, ସେମାନଙ୍କୁ କାଳ ଖୁବ୍ ଶୀଘ୍ର ବାର୍ଦ୍ଧକ୍ୟଗ୍ରସ୍ତ କରିଦିଏ । କିନ୍ତୁ ଯେଉଁମାନେ ପ୍ରାଣପ୍ରଧାନ, ସେମାନଙ୍କୁ ଖୁବ୍ ଡେରିରେ ବାର୍ଦ୍ଧକ୍ୟ ଆକ୍ରମଣ କରେ। ଯେଉଁମାନେ ମନକୈନ୍ଦ୍ରିକ ବା ମନପ୍ରଧାନ ମଣିଷ ସେମାନଙ୍କୁ ବାର୍ଦ୍ଧକ୍ୟଗ୍ରସ୍ତ କରିବା ପାଇଁ କାଳ ଖୁବ୍ ଅବସର ଦିଏ। ଶେଷରେ ଯେଉଁମାନେ ସେମାନଙ୍କର ଅନ୍ତରାତ୍ମାକୁ ଉପଲବ୍ଧି କରିଛନ୍ତି, ଯେଉଁମାନେ ଆତ୍ମସ୍ଥ ହୋଇ ବଞ୍ଚନ୍ତି । ଯେଉଁମାନେ ଆଧ୍ୟାତ୍ମିକ ଜୀବନ ଅତିବାହିତ କରନ୍ତି ସେମାନଙ୍କୁ କାଳ ସହଜରେ ଗ୍ରାସ କରିପାରେନା । ସେମାନେ ମଧ୍ୟ କାଳର ଅଧୀନ ନୁହନ୍ତି । ସେମାନେ କାଳର ପ୍ରଭାବକୁ ଅତିକ୍ରମ କରିଥାନ୍ତି । ସେମାନଙ୍କର କାଳଭୟ ମଧ୍ୟ ନ ଥାଏ । ସେମାନଙ୍କ ଉପରେ କାଳସ୍ରୋତ ବହୁଥାଏ ମାତ୍ର ସେମାନେ କାଳସ୍ରୋତରେ ଭାସିଯାନ୍ତି ନାହିଁ ।

କାଳ ସମ୍ବନ୍ଧେ ଆଉ ଗୋଟିଏ ସତ୍ୟ ହେଲା କାଳଜୟୀ ପାତ୍ରପାତ୍ରୀମାନେ କାଳକୁ ନିଜ ଇଚ୍ଛାନୁସାରେ ପରିଚାଳିତ କରିପାରନ୍ତି । ଯଥାକାଳରେ କାଳବକ୍ଷରେ ଚିନ୍ତାର ବା କର୍ମର ବୀଜଟିଏ ପୋତିଦେଲେ ତାହା ଯଥାସମୟରେ ବୃକ୍ଷଟିଏ ହୋଇଉଠିବ ଓ ଫଳବତୀ ମଧ୍ୟ ହେବ । ଏ ପୃଥିବୀର କ୍ରମବିକାଶରେ ଓ ଜୀବନର କ୍ରମବିକାଶରେ

ବଳବାନ୍ ପ୍ରାଣୀ ଓ ମନୁଷ୍ୟମାନେ କାଳର ଗତିକୁ ଭିନ୍ନ ମୋଡ଼ ଦେଇଥାନ୍ତି । ମହାନ୍ ଦାର୍ଶନିକ ଓ କର୍ମବୀରମାନେ ଗୋଟିଏ ଚିନ୍ତା ଓ ଧାରଣାକୁ କାଳବକ୍ଷରେ ପୋତିଦେବା ଫଳରେ ଯଥାସମୟରେ ତାହା ପୃଥିବୀ ଓ ଜୀବନକୁ ଏକ ନୂତନ ରୂପ ଦେଇଛି ।

ଆମ ପୁରାଣରେ ମୃତ୍ୟୁଦେବତା ଯମଙ୍କୁ 'କାଳ' ବୋଲି କୁହାଯାଇଛି । କିନ୍ତୁ ଦେବଦେବ ମହାଦେବ ଶିବଭଗବାନ୍‌ଙ୍କୁ 'ମହାକାଳ' ଓ ଆଦିମାତା ଦୁର୍ଗାଙ୍କୁ ମଧ 'ମହାକାଳୀ' କୁହାଯାଇଛି । ମହାକାଳ ଓ ମହାକାଳୀଙ୍କର ସଂଯୋଗରେ ସବୁ କିଛିର ଉଦ୍ଭବ ହୋଇଥାଏ। ସେ ଦୁହିଁଙ୍କ ବିଯୋଗରେ ସବୁକିଛିର ବିନାଶ ହୋଇଥାଏ । ଦେବତାମାନେ କାଳାଧୀନ ନୁହନ୍ତି । ମାତ୍ର ମନୁଷ୍ୟ ଓ ପ୍ରାଣୀମାନେ କାଳାଧୀନ । ଭଗବାନ୍ ସ୍ୱୟଂ କାଳର ଉର୍ଦ୍ଧ୍ୱରେ । କିନ୍ତୁ ସୃଷ୍ଟି କଲାବେଳେ ଓ ଧ୍ୱଂସ କଲାବେଳେ ସେ କାଳକୁ ଆଶ୍ରା କରି ସୃଜନ, ପାଳନ ଓ ଧ୍ୱଂସ କାର୍ଯ୍ୟଟି କରିଥାନ୍ତି ।

ପାଠକେ! ଚାଣକ୍ୟ ପଣ୍ଡିତେ କାଳର ଦୁରତିକ୍ରମଣୀୟତା ସମ୍ବନ୍ଧେ କେବଳ ଉକ୍ତ ଶ୍ଳୋକଟି କହିଛନ୍ତି ।



## ୫୯. ...ପୁତ୍ରଂ ମିତ୍ର ବଦାଚରେତ୍

ପାଠକେ ! ଆପଣମାନେ ସମସ୍ତେ ଜାଣନ୍ତି ଯେ ମହାପ୍ରାଜ୍ଞ ଚାଣକ୍ୟ କେବଳ ଜଣେ କୁଟିଳବୁଦ୍ଧି ରାଜନୀତିଜ୍ଞ ନ ଥିଲେ । ଜୀବନର ସବୁ କ୍ଷେତ୍ରରେ କ'ଣ ହେଉଛି, କ'ଣ ହେଉ ନାହିଁ ଓ କ'ଣ ହେବା ଉଚିତ ଏ ସମ୍ବନ୍ଧେ ମଧ ତାଙ୍କର ବହୁ ଜ୍ଞାନ ଓ ଅଭିଜ୍ଞତା ଥିଲା । ଆମେ ପୂର୍ବଶ୍ଳୋକ କେତୋଟିରେ ସନ୍ତାସନ୍ତତିଙ୍କର ପରିମାଣାତ୍ମକ ଓ ଗୁଣାତ୍ମକ ଦୋଷାଦୋଷ ଚାଣକ୍ୟଙ୍କ ଦୃଷ୍ଟିକୋଣରୁ ବିଚାର କରିଅଛୁ । ଏବେ ପୁତ୍ର ବା ପୁତ୍ରୀ ଜନ୍ମ ହେଲା ପରଠାରୁ ସେ ବୟସ୍କ ହେବା ପର୍ଯ୍ୟନ୍ତ ଆମେ ତା' ସହିତ କିପରି ବ୍ୟବହାର କରିବା ସେଇ କଥା ଇ କହୁଛନ୍ତି । ପୂରା ଶ୍ଳୋକଟି ଶୁଣନ୍ତୁ-

**ଲାଳୟେତ୍ ପଞ୍ଚବର୍ଷାଣି ଦଶ ବର୍ଷାଣି ତାଡ଼ୟେତ୍ ।**
**ପ୍ରାପ୍ତେ ତୁ ଷୋଡ଼ଶେ ବର୍ଷେ ପୁତ୍ରଂ ମିତ୍ରବଦାଚରେତ୍ ॥** (୩/୧୮)

ଏହି ଶ୍ଳୋକର ବାକ୍ୟାର୍ଥ ହେଲା- ପୁତ୍ର ଓ ପୁତ୍ରୀମାନଙ୍କୁ ଅର୍ଥାତ୍ ସନ୍ତାନସନ୍ତତିଙ୍କୁ ଜନ୍ମରୁ ପାଞ୍ଚବର୍ଷ ପର୍ଯ୍ୟନ୍ତ ଖୁବ୍ ସ୍ନେହ ଆଦରରେ ପାଳନ କରିବ । ସେମାନଙ୍କୁ କେବେ ସେମାନଙ୍କ ଅବାଧତା ପାଇଁ ଦଣ୍ଡ ଦେବ ନାହିଁ । ଖାଇବାଠାରୁ ଖେଳିବା,

ଶୋଇବା, ଗାଧୋଇବା, ଝାଡ଼ାଯିବାଦି ସର୍ବପ୍ରକାର ନିତିଦିନିଆ କାର୍ଯ୍ୟରେ ତାକୁ ତୁମେ ଖୁବ୍ ମଧୁର ଆଦର ବ୍ୟବହାରରେ ସାହାଯ୍ୟ କରିବ । ତାକୁ ଗାଳି ଦେବ ନାହିଁ-ତା' ଉପରେ ରାଗିବ ନାହିଁ -ତାକୁ ବିରକ୍ତ ହେବ ନାହିଁ-ସେ ଯଦି କୋଉ କଥାରେ ଜିଦ୍ କରେ-ତେବେ ତାକୁ ଖୁବ୍ ଗେଲ ଆଦରରେ ବୁଝାଇ ଶୁଝାଇ ତାକୁ ସେଥିରୁ ନିବୃତ୍ତ କରିବ ।

ସବୁ ପିତାମାତା ଜାଣିବା ଉଚିତ ଯେ ପିଲାକୁ ପାଞ୍ଚବର୍ଷ ହେବା ପର୍ଯ୍ୟନ୍ତ ସେ ବହୁତ ଗେଲ ଆଦର ଚାହେଁ । ସେତିକିବେଳେ ତା' ମନରେ ଓ ହୃଦୟରେ ସ୍ନେହଭାବ ସଞ୍ଚରିତ ହୁଏ । ବହୁ ପ୍ରକାର କୋମଳ ସୁକୁମାର ଆବେଗ ଓ ଭାବମାନଙ୍କର ସଞ୍ଚାର ହୁଏ । ତେଣୁ ସେ ବୟସରେ ପିଲାଙ୍କୁ କେବେ କଠୋର ବ୍ୟବହାର କରିବ ନାହିଁ ।

ତା'ପର ଦଶବର୍ଷ ପୁତ୍ର କନ୍ୟାମାନଙ୍କୁ ତାଡ଼ନ୍ କରିବ । ଅର୍ଥାତ୍-ସେମାନଙ୍କୁ ଜିଦ୍‌ଖୋର ଓ ଅବାଧ ହେବାକୁ ଦେବ ନାହିଁ । ହେଲେ-ସାମାନ୍ୟ ଦଣ୍ଡ ଦେବା ଓ ଧମକ ଦେବା ଉଚିତ । ତା' ହେଲେ ସେମାନେ ଖରାପ ବ୍ୟବହାର କରିବାକୁ ଭୟ କରିବେ ଓ ସେଥିରୁ ନିବୃତ୍ତ ହେବେ । ସେ ବୟସରେ ସେମାନଙ୍କୁ ପାଠ ପଢ଼ିବାକୁ ହେବ-ସାମାଜିକ ବ୍ୟବହାର ଶିକ୍ଷା କରିବାକୁ ହେବ-ଧର୍ମାଚାର ଶିକ୍ଷା କରିବାକୁ ହେବ ଏବଂ ଭବିଷ୍ୟତ୍ ସମ୍ବନ୍ଧେ ମଧ୍ୟ ସଚେତନ ଓ ସାବଧାନ ହେବା ଲାଗି ଶିକ୍ଷା କରିବାକୁ ହେବ । ଏହି ବୟସରେ ପିଲାମାନେ ଦାୟିତ୍ୱବାନ୍ ହେବାକୁ ଚେଷ୍ଟା କରିବା ଉଚିତ । ତେଣୁ ପନ୍ଦର ଷୋଳ ବର୍ଷ ହେଲା ପର୍ଯ୍ୟନ୍ତ ପିଲାମାନଙ୍କୁ ଟିକିଏ ଦୃଢ଼ତାର ସହ ଶାସନ କରିବା ଉଚିତ । କିନ୍ତୁ ତା'ମାନେ ନୁହେଁ ଯେ ଏଇ ବୟସର ପିଲାଙ୍କୁ ନୃଶଂସ ଭାବେ ଶାସନ କରିବ ଏବଂ ସେମାନଙ୍କର ସ୍ୱାଧୀନ ଇଚ୍ଛା ଓ ରୁଚିକୁ ନିର୍ମମ ଭାବେ ଦଳନ ବା ଦମନ କରିବ । ଶାସନ ଖୁବ୍ ଯୁକ୍ତିଯୁକ୍ତ ହେବା ଉଚିତ-ନିଷ୍ଠୁର ହେବା ଉଚିତ ନୁହେଁ । ନିର୍ମମ ହେବା ମଧ୍ୟ ଉଚିତ ନୁହେଁ ।

ତା' ପରେ ପିଲାମାନେ ଯେତେବେଳେ ଷୋଳ ସତର ବର୍ଷ ବୟସରେ ପହଞ୍ଚିବେ-ସେତେବେଳେ ସେମାନଙ୍କ ସହିତ ବନ୍ଧୁଭଳି ବ୍ୟବହାର କରିବା ଉଚିତ ବୋଲି ଚାଣକ୍ୟ କହୁଛନ୍ତି ।

ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ମଧ୍ୟ ଚାଣକ୍ୟଙ୍କର ଏହି ଉକ୍ତିକୁ ଦୃଢ଼ ସମର୍ଥନ ମିଳୁଛି । ଷୋଳ ସତର ବର୍ଷ ପରେ ପିଲାମାନଙ୍କର ବ୍ୟକ୍ତିତ୍ୱ କ୍ରମେ ବୃଦ୍ଧି ପାଇବାକୁ ଆରମ୍ଭ କରେ । ସେମାନଙ୍କର ବୁଦ୍ଧି ବୃତ୍ତି ମଧ୍ୟ ବିକଶିତ ହେବା ଅବସ୍ଥାକୁ ଆସିଯାଇଥାଏ । ସେମାନଙ୍କ ଭିତରେ ଆତ୍ମସମ୍ମାନ ଜାଗ୍ରତ ହୋଇଯାଇଥାଏ । ତେଣୁ ଏ ସମୟରେ

ପିତାମାତା, ଅଭିଭାବକ ଓ ଶିକ୍ଷକ ଶିକ୍ଷୟିତ୍ରୀମାନେ ପିଲାମାନଙ୍କ ସହିତ ମଧୁର ମିତ୍ରଭାବ ପୋଷଣ କରି ସେମାନଙ୍କୁ ଉପଦେଶ ବା ଶିକ୍ଷା ଦେବେ । ଏହି ବୟସରେ ଅଭିଭାବକମାନେ ସେମାନଙ୍କ ପ୍ରତି ଅଶୋଭନୀୟ, ଅଯୌକ୍ତିକର ଓ ଅସମ୍ମାନଜନକ ବ୍ୟବହାର କଲେ ସେମାନେ କ୍ଷୁଣ୍ଣ ହୁଅନ୍ତି ଓ ସେମାନଙ୍କ ଆତ୍ମସମ୍ମାନରେ ବାଧା ପଡ଼େ । ଏଇ ବୟସର ପୁଅଝିଅମାନଙ୍କ ସହିତ ଯେକୌଣସି ବିଷୟରେ ଯୁକ୍ତିଯୁକ୍ତଭାବେ ସ୍ଥାନ କାଳ ପାତ୍ର ବିଚାରପୂର୍ବକ ଆଳାପ ଆଲୋଚନା କଲେ ସେମାନେ ଖୁସୀ ହୁଅନ୍ତି ଏବଂ ବୟସ୍କ ବ୍ୟକ୍ତିମାନଙ୍କ ଉପଦେଶଗୁଡ଼ିକୁ ସମ୍ମାନର ସହିତ ଗ୍ରହଣ ଓ ପାଳନ କରନ୍ତି । ମାତ୍ର ଯଦି ସେମାନଙ୍କ ସହିତ ଅନ୍ୟ ପ୍ରକାର ବ୍ୟବହାର କରାଯାଏ, ତେବେ ସେମାନେ ଆତ୍ମଗ୍ଲାନି ଅନୁଭବ କରନ୍ତି-ଅବାଧ ହୁଅନ୍ତି ଓ ବିଦ୍ରୋହୀ ମନୋଭାବ ଦେଖାନ୍ତି । ତେଣୁ ଆମେ ଚାଣକ୍ୟଙ୍କର ଏଇ ବିଜ୍ଞନୀତି ପ୍ରତି ସଚେତନ ରହିବା ଉଚିତ ।



## ୬୦. ...କଃ ପରଃ ପ୍ରିୟବାଦିନାମ୍ ?

ପ୍ରଜ୍ଞାବାନ୍ ଚାଣକ୍ୟ ପଣ୍ଡିତେ କହନ୍ତି- ଯେଉଁ ବ୍ୟକ୍ତି ପ୍ରିୟ କଥା କହେ-ତା'ର ଶତ୍ରୁ କେହି ନ ଥାନ୍ତି । ତା' ମାନେ ଯେଉଁ ବ୍ୟକ୍ତି ସତ କଥାକୁ ବି ମଧୁର ବାକ୍ୟରେ କହେ-ଯୁକ୍ତିଯୁକ୍ତ କଥା କହେ- କିନ୍ତୁ ସେ ବାକ୍ୟରେ କାହା ପ୍ରତି ବ୍ୟକ୍ତିଗତ ଆକ୍ଷେପ ବା ବିଦ୍ରୂପ ନ ଥାଏ - ଯେଉଁ ବ୍ୟକ୍ତି ଯଥାସମୟରେ ଯଥା କଥା କହେ-ଅର୍ଥାତ୍ ସ୍ଥାନ-କାଳ-ପାତ୍ର ବିବେଚନା କରି କଥା କହେ- ତା'ର କଥାଗୁଡ଼ିକ ପ୍ରକୃତରେ ପ୍ରିୟ ବାକ୍ୟ । ତେଣୁ ତା'ର କଥାରେ କେହି ଆହତ ହୁଅନ୍ତି ନାହିଁ । ତେଣୁ କିଏ କାହିଁକି ସେହି ପ୍ରିୟ ବାକ୍ୟ କହୁଥିବା ଲୋକର ଶତ୍ରୁ ହେବ ?

ଅନ୍ୟ ବ୍ୟକ୍ତି ଅଛନ୍ତି - ଯେଉଁମାନେ ରୁକ୍ଷସ୍ୱରରେ ଅଶ୍ଳୀଳ ଭାଷାରେ ବାକ୍ୟଶରମାନ ନିକ୍ଷେପ କରି ଅପରକୁ ଆଘାତ କରନ୍ତି । ଅନ୍ୟର ଆତ୍ମା ପର୍ଯ୍ୟନ୍ତ ସେହିସବୁ ବାକ୍ୟ-ଶର ବିନ୍ଧିଦିଏ । ସେ ବାକ୍ୟ ଯେତେ ସତ୍ୟ ଉପରେ ଆଧାରିତ ହେଲେ ବି ମିଥ୍ୟାକଥନଠାରୁ ତା'ର ପରିଣାମ ଅଧିକ ଭୟଙ୍କର ହୁଏ । ତେଣୁ କୁହାଯାଇଛି ସତ୍ୟକୁହ କିନ୍ତୁ ତାକୁ ପ୍ରିୟଭାଷାରେ ଭଦ୍ରଭବ୍ୟ ଭାଷାରେ କୁହ । ଚାଣକ୍ୟ ପଣ୍ଡିତେ ଏହି ନୀତିବାକ୍ୟଟି ସହିତ ଆଉ କେତେଗୁଡ଼ିଏ ସମପର୍ଯ୍ୟାୟର ନିଦର୍ଶନାତ୍ମକ ନୀତିବାକ୍ୟ ବ୍ୟବହାର କରି ପୂର୍ଣ୍ଣ ଶ୍ଳୋକଟିଏ କହିଛନ୍ତି । ସମୁଦାୟ ଶ୍ଳୋକଟି ଶୁଣନ୍ତୁ-

**କୋ ହି ଭାରଃ ସମର୍ଥାନାଂ କିଂ ଦୂରଂ ବ୍ୟବସାୟିନାମ୍ ।**
**କୋ ବିଦେଶଃ ସୁବିଦ୍ୟାନାଂ କଃ ପରଃ ପ୍ରିୟବାଦିନାମ୍ ।। (୩/୧୩)**

ଏହି ଶ୍ଳୋକଟିର ପ୍ରଥମ ଧାଡ଼ିଟିର ଅର୍ଥ ହେଲା- ଯେଉଁ ବ୍ୟକ୍ତି କର୍ମନିପୁଣ, ଦାୟିତ୍ୱବାନ୍ ଏବଂ ଯେ କୌଣସି ଆହ୍ୱାନ ବା ପରିସ୍ଥିତିର ମୁକାବିଲା କରିବାକୁ ସମର୍ଥ ତାକୁ କୋଉକର୍ମ ଦୁଷ୍କର ମନେହୁଏ ନାହିଁ । କୌଣସି ଦାୟିତ୍ୱକୁ ସେ ଭାର ବା ଓଜନ ମନେକରେ ନାହିଁ । ଆଉ ମଧ୍ୟ ସେ ନିଜକୁ ଯେକୌଣସି କର୍ମର ଭାର ନେବାକୁ ସବୁବେଳେ ପ୍ରସ୍ତୁତ କରି ରଖିଥାଏ । ତା' ଉପରେ ସେ କୌଣସି ଦାୟିତ୍ୱକୁ ପର୍ବତଟିଏ ମାଡ଼ିବସିଲା ଭଳି ମନେକରେ ନାହିଁ । ଏହାକୁ ହିଁ କୁହାଯାଏ ଯଥାର୍ଥ ସାମର୍ଥ୍ୟ ।

ଏବେ ଦ୍ୱିତୀୟ ଧାଡ଼ିଟିର ଅର୍ଥ ବୁଝନ୍ତୁ । ଯେଉଁମାନେ ଯଥାର୍ଥରେ ବ୍ୟବସାୟୀ, ଯେଉଁମାନେ ବେପାର ବାଣିଜ୍ୟକୁ ନିଜର ସ୍ୱାଭାବିକ ବୃତ୍ତି ରୂପେ ଗ୍ରହଣ କରିଛନ୍ତି, ସେମାନଙ୍କ ଲାଗି କୌଣସି ସ୍ଥାନର ଦୂରତା ବଡ଼ କଥା ନୁହଁ । ଦ୍ରବ୍ୟ ଆହରଣ, ଦ୍ରବ୍ୟଗୁଡ଼ିକର କ୍ରୟବିକ୍ରୟ ପାଇଁ ବଣିକ ଓ ବ୍ୟବସାୟୀମାନେ କୌଣସି ସ୍ଥାନର ଦୂରତାକୁ ଡରନ୍ତି ନାହିଁ । ମନୁଷ୍ୟ ସଭ୍ୟ ହେଲା ଦିନଠାରୁ ତା'ର ଦୈନନ୍ଦିନ ବ୍ୟବହାର କରିବା ପାଇଁ ନାନା ଦ୍ରବ୍ୟ ଉତ୍ପନ୍ନ କରୁଛି, ନାନା ଦ୍ରବ୍ୟ ଉତ୍ପାଦନ କରୁଛି, ନାନା ଦ୍ରବ୍ୟ ଆହରଣ କରୁଛି ଏବଂ ସବୁ ଦ୍ରବ୍ୟର କ୍ରୟବିକ୍ରୟ କରୁଛି । ଏଥିପାଇଁ ବଣିକମାନେ ଜଳ ସ୍ଥଳ ଉଭୟ ପଥରେ ଦୂରବିଦେଶକୁ କ୍ରୟବିକ୍ରୟ ପାଇଁ ଖୁବ୍ ସାହସର ସହିତ ବିଭିନ୍ନ ଯାନବାହନ, ନୌକା ଓ ପୋତ ସାହାଯ୍ୟରେ ଯିବାଆସିବା କରିଥାନ୍ତି । ଏବେ ତ ବ୍ୟୋମଯାନରେ ଆକାଶପଥରେ ମଧ୍ୟ ବଣିକମାନେ ଆମଦାନୀ ରପ୍ତାନି କରୁଅଛନ୍ତି । ତେଣୁ ଚାଣକ୍ୟ ପଣ୍ଡିତେ କହନ୍ତି, ବଣିକ ଓ ବ୍ୟବସାୟୀମାନଙ୍କ ପାଇଁ କୌଣସି ସ୍ଥାନର ଦୂରତା ବାଧକ ହୁଏ ନାହିଁ ।

ଶ୍ଳୋକଟିର ତୃତୀୟ ନିଦର୍ଶନଟିର ଅର୍ଥ ହେଲା, ଯେଉଁମାନେ ବିଦ୍ୱାନ ବା ବିଦ୍ୟାର୍ଥୀ, ସେମାନଙ୍କ ପାଇଁ ଦେଶ ଓ ବିଦେଶ ଭିତରେ କିଛି ପାର୍ଥକ୍ୟ ନ ଥାଏ । ଜଣେ କବି ବା ଦାର୍ଶନିକ ବା ବୈଜ୍ଞାନିକ ବା କଳାବିଦ୍‌ର ସବୁଦେଶରେ ଆଦର ଅଭ୍ୟର୍ଥନା ଥାଏ । ବିଦ୍ୱାନ୍‌ମାନେ ଅନ୍ୟଦେଶକୁ ବିଦ୍ୟା ବା ଜ୍ଞାନ ବିତରଣ କରିବାକୁ ଯାନ୍ତି; ଏବଂ ବିଦ୍ୟାର୍ଥୀମାନେ ଜ୍ଞାନ ଆହରଣ କରିବାକୁ ଯା'ନ୍ତି । ବିଦ୍ୟାଦାନ ବା ବିଦ୍ୟା ଆହରଣ-ଯୋଉ ଉଦ୍ଦେଶ୍ୟରେ ଗଲେ ମଧ୍ୟ ବିଦ୍ୟାବାନ୍‌ଙ୍କୁ ଅନ୍ୟ ଦେଶଟି ବିଦେଶ ବୋଲି ମନେହୁଏ ନାହିଁ; କିମ୍ବା ସେ ଦେଶର ଲୋକେ ତାଙ୍କୁ ମଧ ବିଦେଶୀ

ବୋଲି ଭାବନ୍ତି ନାହିଁ । ବରଂ ବିଦେଶୀମାନେ ଅନ୍ୟ ଦେଶରେ କୌଣସି ବିଦ୍ୱାନ୍‌ଙ୍କୁ ବିପୁଳ ଆଦର ଓ ଅଭ୍ୟର୍ଥନା ଜଣାଇଥାନ୍ତି ।

ଏହି ସମ୍ପର୍କରେ ଆଉ ଗୋଟିଏ ନୀତିଶ୍ଳୋକ ଅଛି । ସେହି ଶ୍ଳୋକଟିର ଅର୍ଥ ହେଲା; କୌଣସି ଦେଶର ରାଜା କେବଳ ସେହି ରାଜ୍ୟରେ ସମ୍ମାନିତ ହୁଏ । ମାତ୍ର ବିଦ୍ୱାନ୍ ସବୁ ଦେଶରେ ସମାଦର ଲାଭକରେ ।

ଅବଶ୍ୟ ଆଧୁନିକ କାଳରେ ଆମଦେଶ ଭଳି ଅଜ୍ଞ ଓ ହୁଣ୍ଡାଗଣ୍ଡାଙ୍କ ଦେଶରେ ବିଦ୍ୱାନ୍‌ମାନଙ୍କ ଆଦର ଅଭ୍ୟର୍ଥନା କମିଯାଉଛି । ଏଭଳି ଦେଶମାନଙ୍କରେ ତଥାକଥିତ ଗଣତନ୍ତ୍ର ଓ ସମାଜବାଦ ଆଳରେ ମୂର୍ଖ, ଅପୋଗଣ୍ଡ, ହୁଣ୍ଡା ଗୁଣ୍ଡାମାନଙ୍କ ଦ୍ୱାରା ଦେଶ ଶାସିତ ହେଉଥାଏ । ଏଭଳି ଦେଶମାନଙ୍କର କବି, ଦାର୍ଶନିକ, ବୈଜ୍ଞାନିକ ଓ କଳାବିଦ୍‌ମାନଙ୍କ ପ୍ରତି ଶାସକ ପ୍ରଶାସକ ବର୍ଗଙ୍କର ଆଦର ନ ଥାଏ, କି ହୁଣ୍ଡାଗୁଣ୍ଡା ମୂର୍ଖ ରାଜ୍ୟବାସୀଙ୍କର ବି ଆଦର ନ ଥାଏ ।

ତେବେ ଏହା ସତ୍ତ୍ୱେପି, ଏହି ଯୁଗରେ ମଧ୍ୟ ସବୁ ଦେଶରେ ଗୁଣୀ, ପ୍ରତିଭାବାନ୍ ଓ ବିଦ୍ୱାନ୍‌ମାନଙ୍କୁ ଜନସାଧାରଣ କିଛି କିଛି ଆଦର ସମ୍ମାନ ଜଣାଇଥାନ୍ତି । ତେବେ ଶାସକ, ପ୍ରଶାସକ ଗୋଷ୍ଠୀଙ୍କ ଅପେକ୍ଷା ସେମାନଙ୍କ ମୂଲ୍ୟ ଆମ ସମାଜରେ ଖୁବ୍ କମ୍ ବୋଲି ମନେହୁଏ ।



## ୬୧. ଯଃ ପଳାୟତେ ଜୀବତି

ପାଠକେ ! ଆପଣମାନେ ନିଶ୍ଚୟ ଜାଣନ୍ତି, ଯେ ପଳାୟନ କରିବା ଗୋଟିଏ ଭୀରୁର କର୍ମ ଏବଂ ପଳାୟନପନ୍ଥୀମାନେ ସମସ୍ତେ କର୍ମରେ ଓ ଚିନ୍ତାରେ ଦୁର୍ବଳ । ସେମାନେ ପରିସ୍ଥିତିର ସମ୍ମୁଖୀନ ହୁଅନ୍ତି ନାହିଁ, କି ଚାହାନ୍ତି ନାହିଁ ମଧ । ପ୍ରକୃତ ବୀର ଯୁଦ୍ଧକ୍ଷେତ୍ରରେ ପ୍ରାଣଦେବ ପଛେ କିନ୍ତୁ ଯୁଦ୍ଧକୁ ଡରି ପଳାଇଯିବ ନାହିଁ । ପ୍ରକୃତ କର୍ମବୀର ଯେଉଁମାନେ ସେମାନେ କର୍ମଟିକୁ ସମ୍ପୂର୍ଣ୍ଣ ନ କଲା ପର୍ଯ୍ୟନ୍ତ ତାକୁ ଅଧାପନ୍ତରିଆ କରି ଛାଡ଼ି ପଳାନ୍ତି ନାହିଁ । ଦାୟିତ୍ୱବାନ୍ ବ୍ୟକ୍ତିମାନେ ଯେତେ କଷ୍ଟ ହେଲେ ବି ଦାୟିତ୍ୱକୁ ଫୋପାଡ଼ି ଦେଇ ପଳାନ୍ତି ନାହିଁ ।

କିନ୍ତୁ ମହାପ୍ରାଜ୍ଞ ଚାଣକ୍ୟ ପଣ୍ଡିତେ ଆମକୁ 'ପଳାୟନ' ସପକ୍ଷରେ ଗୋଟିଏ ଶ୍ଳୋକ କହୁଛନ୍ତି । ବର୍ତ୍ତମାନ ଶ୍ଳୋକଟି ଶୁଣନ୍ତୁ ଏବଂ ତା'ର ତାତ୍ପର୍ଯ୍ୟ ମଧ ଶୁଣନ୍ତୁ ।

ଶ୍ଳୋକଟି ହେଲା -

**ଉପସର୍ଗେଽନ୍ୟଚକ୍ରେ ଚ ଦୁର୍ଭିକ୍ଷେ ଚ ଭୟାବହେ ।**
**ଅସାଧୁ-ଜନ-ସମ୍ପର୍କେ ଯଃ ପଳାୟତି ଜୀବତି ।। (୩/୧୯)**

ଅର୍ଥାତ୍, ହଠାତ୍ କୌଣସି ଉପଦ୍ରବର ଆଭାସ ମିଳିଲା ମାତ୍ରେ- ଶତ୍ରୁମାନଙ୍କର ଆକ୍ରମଣ ହେବବୋଲି ସୁରାକ ପାଇବାମାତ୍ରେ, ରାଜ୍ୟରେ ଭୟାବହ ଦୁର୍ଭିକ୍ଷ ଓ ଖାଦ୍ୟାଭାବର ଆଶଙ୍କା ହେଲାମାତ୍ରେ, ଏବଂ ଦୈବାତ୍ ଯେଉଁ ନୂଆ ଲୋକଟି ସହିତ ତୁମର କିଛି ସମ୍ପର୍କ ଓ ସମ୍ବନ୍ଧ ସୃଷ୍ଟିହେଲା ପରେ ପରେ ହିଁ ସେ ଲୋକଟି ଗୋଟିଏ ଖଳଲୋକ ଏବଂ ତା'ର ଦୁଷ୍ଟ ଉଦ୍ଦେଶ୍ୟ ଅଛିବୋଲି ଜାଣିଗଲା ପରେ ଯେ ସେହି ସ୍ଥାନ, ସେହି ରାଜ୍ୟ ଏବଂ ସେହି ଅସାଧୁ ଲୋକଟିକୁ ଛାଡ଼ି ପଳାଇଯାଏ, ତା'ର ଜୀବନ ରକ୍ଷା ପାଇଯାଏ । ସେ ଆସନ୍ନ ମୃତ୍ୟୁ ହାତରୁ କୌଣସି ପ୍ରକାରେ ରକ୍ଷା ପାଇଯାଏ ।

ପାଠକେ ! ଚାଣକ୍ୟ ପଣ୍ଡିତେ ଏଇ ଶ୍ଳୋକଟିରେ ମୃତ୍ୟୁ ହାତରୁ ରକ୍ଷାପାଇବା ସମ୍ବନ୍ଧେ କହିଛନ୍ତି । ଏହି ଉପଦେଶଟି ଏକ ଜୀବନଧର୍ମୀ ଉପଦେଶ । ଏହା ଏକ ବାସ୍ତବ ବୁଦ୍ଧିସମ୍ପନ୍ନ ଉପଦେଶ । ଚାଣକ୍ୟ ଯେ ସବୁ କ୍ଷେତ୍ରରୁ 'ପଳାୟନ'କୁ ଇ ଜୀବନର ଉତ୍କୃଷ୍ଟ ପନ୍ଥା ବୋଲି ଭାବିଥିବେ, ତାହା ବିଶ୍ୱାସ କରିହୁଏନା । ତା' ହୋଇଥିଲେ ସେ ଏତେ ବଡ଼ ରାଜନୀତିଜ୍ଞ ଓ କୂଟନୀତିଜ୍ଞ ହୋଇ ନ ଥାନ୍ତେ । ଉପଯୁକ୍ତ ଶ୍ଳୋକଟି ଅବଶ୍ୟ ସାଧାରଣ ଲୋକଙ୍କ ଜୀବନ-ରକ୍ଷାର ଉପାୟ ହିସାବରେ କୁହାଯାଇଛି ଏବଂ ଏହା ମଧ୍ୟ ସତ୍ୟ ।

କିନ୍ତୁ ଯେଉଁମାନେ ଅସାଧାରଣ ଧୀଶକ୍ତିର ଅଧିକାରୀ, ଯେଉଁମାନେ ଦୁଃସାହସିକ ର୍ଯ୍ୟ କରି ଜୀବନରେ କିଛି ଅସାଧ ସାଧନ କରିବାକୁ ଚାହାନ୍ତି, ଯେଉଁମାନେ ଜୀବନରେ ସତ୍ୟର ସନ୍ଧାନ କରୁଥାନ୍ତି, ଜ୍ଞାନିବିଜ୍ଞାନର ଅନ୍ୱେଷଣ କରୁଥାନ୍ତି ଏବଂ ଜୀବନରେ କିଛି, ଅସାଧାରଣ ଅଭିଜ୍ଞତା ଅର୍ଜନ କରିବାକୁ ଚାହାନ୍ତି, ସେମାନେ ଜୀବନ-ଭୀରୁ ନୁହନ୍ତି ବା ଜୀବନ ଯେତେ ବିପଦପୂର୍ଣ୍ଣ ହେଲେ ବି କୌଣସି ବିପଦକୁ ଡରି ପଳାଇଯାଆନ୍ତି ନାହିଁ । ସେମାନେ ବିପଦର ସମ୍ମୁଖୀନ ହୁଅନ୍ତି; ଏବଂ ତାକୁ ଜୟକରିବା ପର୍ଯ୍ୟନ୍ତ ତା' ସହିତ ଲଢୁଥାନ୍ତି । ଯେତେ ମାରାତ୍ମକ ପରିସ୍ଥିତି ହେଲେ ବି ଜଣେ ନିଷ୍ଠାପର ବୈଜ୍ଞାନିକ ତାଙ୍କର ଗବେଷଣା କ୍ଷେତ୍ର ଛାଡ଼ି ବା ତାଙ୍କର ଗବେଷଣାର ବିଷୟବସ୍ତୁକୁ ଛାଡ଼ି ପଳାଇଯାଆନ୍ତି ନାହିଁ । ତେଣୁ ଆମେ ଚାଣକ୍ୟଙ୍କର ଏହି ଶ୍ଳୋକଟିକୁ ପଳାୟନପନ୍ଥୀ ଆଦର୍ଶ ବୋଲି କହିବା ନାହିଁ । ସେ କେବଳ ଏଇ ଶ୍ଳୋକରେ ସାଧାରଣ ଲୋକଙ୍କ ପାଇଁ ଏକ ସତର୍କତାମୂଳକ ଉପଦେଶ ଦେଇଛନ୍ତି ।

କେତେ ଲୋକ ମୃତ୍ୟୁକୁ ଭୟ କରି ଦୁଃସାହସିକ କାର୍ଯ୍ୟ କରନ୍ତି ନାହିଁ । କିନ୍ତୁ ଅସାଧାରଣ ଲୋକମାନେ ବିପଦର ସମ୍ମୁଖୀନ ହେଲାମାତ୍ରେ ସେଇ ବିପଦର ଘେର ଭିତରୁ ରକ୍ଷାପାଇବା ପାଇଁ ଉପାୟ ଭାବନ୍ତି ଓ ସେଥିରୁ ରକ୍ଷା ମଧ ପାଆନ୍ତି । କିନ୍ତୁ କୌଣସି ଅସାଧାରଣ ଲକ୍ଷ୍ୟ ନ ଥିଲେ ବା ଜୀବନରେ କିଛି ମହାନ୍ କାର୍ଯ୍ୟ କରିବାର ସଂକଳ୍ପ ନ ଥିଲେ ଜଣେ ସାଧାରଣ ଲୋକ ନିଜ ଜୀବନକୁ ସବୁଦିଗରୁ ରକ୍ଷାକରିବାପାଇଁ ସାବଧାନ ହେବା ଉଚିତ ।



## ୬୨. ହଂସ ମଧ୍ୟେ ବକୋ ଯଥା

ମହାମତି ଚାଣକ୍ୟ ତାଙ୍କ ସମୟରେ ପାଠ-ବିମୁଖ ଜନସାଧାରଣଙ୍କୁ ବହୁ ପ୍ରକାରେ ଉପଦେଶ ଦେଇଛନ୍ତି । ସନ୍ତାନସନ୍ତତିଙ୍କୁ ବିଦ୍ୟା ଶିକ୍ଷା ଓ ମୂଳରୁ ସଦାଚାର ଶିକ୍ଷା ଦେବା ପାଇଁ ମାତାପିତାଙ୍କୁ ମଧ ସାବଧାନ ବାଣୀ ଶୁଣାଇଛନ୍ତି । ଗୋଟିଏ ଶ୍ଳୋକରେ ସେ କହିଛନ୍ତି, ବିବେକୀ ମାତାପିତା ତାଙ୍କର ଝିଅପୁଅମାନଙ୍କୁ ଖୁବ୍ ଛୋଟ ବୟସରୁ ଉପଯୁକ୍ତ ନୈତିକ ଓ ସାମାଜିକ ସଦାଚାର ଶିକ୍ଷା ଦେଇଥାନ୍ତି । ପିଲାମାନେ କିପରି ନୀତିବାନ ହେବେ, ନ୍ୟାୟବାନ୍ ହେବେ, ସତ୍‌ପଥରେ ଚାଲିବେ, ଅଧର୍ମ ଆଡକୁ ଯିବେ ନାହିଁ, ଦୁଃଖୀ, ଅସହାୟମାନଙ୍କୁ ସାହାଯ୍ୟ କରିବେ, ସ୍ୱାର୍ଥପର ହେବେ ନାହିଁ, ଗୁଣୀ ଓ ବୟୋବୃଦ୍ଧ ବ୍ୟକ୍ତିମାନଙ୍କୁ ସମ୍ମାନ ଜଣାଇବେ, ସମସ୍ତଙ୍କ ପ୍ରତି ଭଦ୍ର ବ୍ୟବହାର କରିବେ, ଏସବୁ କଥା ମାତାପିତା ପିଲାମାନଙ୍କୁ ମୂଳରୁ ଶିଖାଇବା ଉଚିତ । ତା' ନ ହେଲେ ସେମାନେ ସ୍ୱେଚ୍ଛାଚାରୀହୋଇ ନାନାଦି କୁକର୍ମରେ ରତହେବେ ଓ ଉନ୍ମାର୍ଗଗାମୀ ହେବେ । କିନ୍ତୁ ଯେଉଁ ମାତାପିତା ନିଜେ ମୂର୍ଖ ଓ ଅସଦଚାରୀ ସେମାନେ ତାଙ୍କ ପିଲାଙ୍କୁ କ'ଣ ଶିକ୍ଷା ଦେବେ ? ପିଲାମାନଙ୍କୁ ସଜ୍ଜନ କରି ଗଢ଼ିବାକୁ ହେବ । କିନ୍ତୁ ମାତାପିତା, ଅଭିଭାବକ ଓ ଶିକ୍ଷୟିତ୍ରୀ ଶିକ୍ଷକମାନେ ନିଜେ ଯଦି ସଜ୍ଜନ ନ ହୋଇଥାନ୍ତି ତେବେ ସେମାନେ କିପରି ସେମାନଙ୍କ ପିଲାମାନଙ୍କୁ ସଜ୍ଜନ ପଥରେ ନେଇପାରିବେ ।

ଚାଣକ୍ୟ ପଣ୍ଡିତ ତା' ପରେ ଆଉ ଗୋଟିଏ ସୁନ୍ଦର କଥା କହୁଛନ୍ତି ଏବଂ ଖୁବ୍ କଡ଼ାଭାଷାରେ କହୁଛନ୍ତି । ସେ ଶ୍ଳୋକଟି ହେଲା-

**ମାତା ଶତ୍ରୁଃ ପିତା ବୈରୀ ଯେନ ବାଲୋ ନ ପାଠିତାଃ ।**
**ନ ଶୋଭତେ ସଭାମଧ୍ୟେ ହଂସମଧ୍ୟେ ବକୋ ଯଥା ॥** (୨/୧୧)

ଏହି ଶ୍ଳୋକଟିର ଓଡ଼ିଆ ଅର୍ଥ ହେଲା, ସେହି ମାଆ ସନ୍ତାନର ଶତ୍ରୁ ଏବଂ ସେଇ ବାପା ସନ୍ତାନର ବୈରୀ ଯେଉଁମାନେ ତାଙ୍କ ପିଲାଙ୍କୁ ପାଠ ପଢ଼ାଇ ନ ଥାନ୍ତି । କାରଣ ସେହି ମୂର୍ଖ ଅଜ୍ଞାନ ପିଲାମାନେ ଯେତେବେଳେ ବଡ଼ ହୁଅନ୍ତି ସେମାନେ ବିଦ୍ୱାନ୍ ସମାଜରେ ମିଶିପାରନ୍ତି ନାହିଁ । ପାଠୁଆ ଓ ଜ୍ଞାନୀ ମଣିଷଙ୍କ ଭିତରେ ସେମାନେ ଯଦିବା କେବେ ଏକତ୍ର ହୁଅନ୍ତି; ତେବେ ସୁନ୍ଦର ଶୁଭ୍ର ରାଜହଂସମାନଙ୍କ ଭିତରେ ବଗପକ୍ଷୀଟିଏ ଯେପରି ଖୁବ୍ ହୀନିମାନିଆ ଦିଶେ ବା ମନେହୁଏ, ସେହି ମୂର୍ଖ ମଧ୍ୟ ସେହିପରି ଜ୍ଞାନୀ ପଣ୍ଡିତ ପାଠୁଆଙ୍କ ମେଳରେ ଖୁବ୍ ହୀନିମାନିଆ ଦିଶେ ଓ ସେ ମଧ୍ୟ ସେମାନଙ୍କ ମେଳରେ ନିଜକୁ ଖୁବ୍ ଦୀନହୀନ ମନେକରେ ।

ପାଠକେ ! ଗୋଟିଏ କଥା ବୁଝି ରଖନ୍ତୁ, ମହାମତି ଚାଣକ୍ୟ ବିଦ୍ୟା ଓ ଜ୍ଞାନକୁ କେତେ ମୂଲ୍ୟ ଦେଇଥିଲେ ! ସେ କାଳରେ ମଧ୍ୟ ସେ ନିଜେ ଜଣେ ବଡ଼ ଜ୍ଞାନୀ ଥିବାରୁ ସର୍ବସାଧାରଣଙ୍କୁ ଜ୍ଞାନଅର୍ଜନ କରିବାପାଇଁ ଖୁବ୍ ପ୍ରଣୋଦିତ କରୁଥିଲେ; ଏବଂ ସେଥିପାଇଁ ମାତାପିତା ଓ ଅଭିଭାବକମାନଙ୍କୁ ଚେତାବନୀ ଶୁଣାଉଥିଲେ । ଏହା ପରେ ଚାଣକ୍ୟ ପଣ୍ଡିତେ ସେହି ଅଭିଭାବକ ମାତାପିତାଙ୍କୁ ସେମାନଙ୍କ ସନ୍ତାନସନ୍ତତିଙ୍କୁ କିପରି ଉପଯୁକ୍ତ ମଣିଷ କରି ଗଢ଼ିବେ, ସେ ସମ୍ବନ୍ଧେ ଗୋଟିଏ ଉପଦେଶ ଦେଇ କହୁଛନ୍ତି,

**ଲାଳନାଦ୍ ବହବୋ ଦୋଷା ସ୍ତାଡ଼ନାତ୍ ବହବୋ ଗୁଣାଃ ।**
**ତସ୍ମାଦ୍ ପୁତ୍ରଂ ଚ ଶିଷ୍ୟଂ ଚ ତାଡ଼ୟେତ୍ ନତୁ ଲାଳୟେତ୍ ॥ (୨/୧୨)**

ଅର୍ଥାତ୍, ପିଲାଙ୍କୁ ସବୁବେଳେ କେବଳ ଲାଳନ ବା ଗେଲବସର କରିବାରେ ବହୁତ ଦୋଷ ହୁଏ । କିନ୍ତୁ ସେମାନଙ୍କୁ ଶାସନ କରିବା ବା ତାଡ଼ନା କରିବାରେ ବହୁତ ଗୁଣ ଥାଏ ।

ଚାଣକ୍ୟ ପଣ୍ଡିତଙ୍କର ଏହି ଶ୍ଳୋକଟିର ମର୍ମହେଲା ମାତାପିତା ଓ ଶିକ୍ଷକ, ଅଭିଭାବକମାନେ ପିଲାମାନଙ୍କୁ ଏକ ନିର୍ଦ୍ଦିଷ୍ଟ ବୟସପର୍ଯ୍ୟନ୍ତ ଲାଳନକରିବେ । ସେମାନଙ୍କୁ ଖୁବ୍ ଗେହ୍ଲା କରିବେ । ଖୁବ୍ କୋମଳ ବ୍ୟବହାର କରିବେ । କିନ୍ତୁ ସେହି ଶୈଶବକାଳ ଅତିବାହିତ ହେଲାପରେ ସେମାନଙ୍କୁ ଉତ୍ତମରୂପେ ଶାସନ କରିବା ଉଚିତ ।

ଶାସନ କରିବା ଅର୍ଥ ପିଲାମାନଙ୍କୁ ସବୁବେଳେ ମାଡ଼ ମାରିବା ବା ଧମକ ଦେବା ନୁହଁ, କିନ୍ତୁ ସେମାନଙ୍କୁ ଠିକ୍ ମାର୍ଗରେ ପରିଚାଳିତ କରିବା ଉଚିତ । ସେମାନଙ୍କୁ କେତେ ନୀତିନିୟମ ଶିକ୍ଷା ଦେବାକୁ ହେବ । ଉଚିତ କ'ଣ ଓ ଅନୁଚିତ କ'ଣ- ତାହା ବୁଝାଇବାକୁ ହେବ । ବିଭିନ୍ନ ପ୍ରକାର ବିଦ୍ୟା ଶିକ୍ଷା ଦେବାକୁ ହେବ, ଯେପରିକି ସେମାନେ ବଡ଼ହେଲେ ନିଜର ଜୀବିକା ଅର୍ଜନ କରିବାରେ ସମର୍ଥ ହେବେ ଏବଂ

ମଣିଷ ପରି ମଣିଷ ହେବେ । ସେହି ବାଲ୍ୟକାଳରୁ ବି ପିଲାମାନଙ୍କୁ ଶିକ୍ଷାଦେବାକୁ ହେବ- କିପରି କୌଣସି କଥା ହାସଲ କରିବାକୁହେଲେ ବା ଅର୍ଜନ କରିବାକୁ ହେଲେ ଖୁବ୍ କଷ୍ଟ କରିବାକୁ ହୁଏ- ଖୁବ୍ ପରିଶ୍ରମ କରିବାକୁ ହୁଏ । ଯଦି ଦରକାର ପଡ଼େ ତେବେ ଅବାଧ୍ୟ ପିଲାଙ୍କୁ ସାମାନ୍ୟ ଦଣ୍ଡ ମଧ ଦିଆଯାଇପାରେ । ମାତ୍ର ସର୍ବଦା ପିଲାଙ୍କୁ ଡରାଇକରି ଶାସନ କରିବା ଉଚିତ ନୁହଁ । ତଦ୍ୱାରା ବିପରୀତ ଫଳ ହୋଇପାରେ ।



## ୬୩. ସାର୍ଥକ ଦିବସ ଓ ବ୍ୟର୍ଥ ଦିବସ

ପାଠକେ ! ଆମେ ନିଜକୁ ଆସନ୍ତୁ ପଚାରିବା, ଏଇ ମୁହୂର୍ତ୍ତ ପର୍ଯ୍ୟନ୍ତ ଆମେ ଈଶ୍ୱରଙ୍କ କୃପାରୁ ଅବଶ୍ୟ ବଞ୍ଚିଛୁ । କିନ୍ତୁ ଆମେ ସାର୍ଥକ ଜୀବନଟିଏ ବଞ୍ଚିଛୁ କି ? ପ୍ରତିଦିନ ଅବଶ୍ୟ ଆମେ ଜୀବନ ସଂଗ୍ରାମରେ ମାତିଛୁ । ଅନ୍ନ, ବସ୍ତ୍ର ଓ ବାସ ପାଇଁ ଆମେ ପ୍ରତିଦିନ କିଛି କର୍ମ ମଧ କରୁଛୁ । ଆମ ଭିତରୁ କେହି ବେଶି ରୋଜଗାର କରୁଛନ୍ତି, କେହି ବା କମ୍ ରୋଜଗାର କରୁଛନ୍ତି । କିଏ ବା ବହୁତ କ୍ଷମତାଶାଳୀ, କିଏ ବା ସାଧାରଣ ମଣିଷଟିଏ । କିନ୍ତୁ ଏସବୁ କଥାରେ ବଞ୍ଚିବାର ସାର୍ଥକତା ନ ଥାଏ । କେହି କମ୍ ଦିନ ବଞ୍ଚୁଛି, କେହି ବା ବହୁତ ବର୍ଷ ବଞ୍ଚୁଛି । କିନ୍ତୁ ଏଇ ବେଶିଗୁଡ଼ାଏ ବର୍ଷ ବଞ୍ଚିବାରେ କ'ଣ ଜୀବନର ସାର୍ଥକତା ଅଛି ?

ଉତ୍କଳମଣି ଗୋପବନ୍ଧୁଙ୍କ କଥା ମନେପଡୁଛି । ଗୋପବନ୍ଧୁଙ୍କ ଭାଷାରେ 'ମାନବ ଜୀବନ ନୁହଇ କେବଳ ବର୍ଷ ମାସ ଦିନ ଦଣ୍ଡ । କର୍ମେ ଜିଏଁ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ ।' ଗୋପବନ୍ଧୁଙ୍କ ଏଇ କଥାର ଖୁବ୍ ମୂଲ୍ୟ ରହିଛି । ଅବଶ୍ୟ ଗୋପବନ୍ଧୁ ଏଠାରେ କର୍ମକୁ ଜୀବନର ସାର୍ଥକତା ପାଇଁ ବଡ଼ସ୍ଥାନ ଦେଇଛନ୍ତି । କିନ୍ତୁ ଏଇ କର୍ମକୁ କେବଳ ପେଟପୋଷିବା ବା ଟଙ୍କାରୋଜଗାର କରିବା ଭିତରେ ଗୋପବନ୍ଧୁ ଆବଦ୍ଧ କରିନାହାନ୍ତି । ସେ ପେଟ ପୋଷିବା ପାଇଁ କର୍ମକରିବା ସହିତ ଜୀବନରେ ଆଉ କିଛି ମହତ୍ କର୍ମକରିବା ଉପରେ ବେଶି ଜୋର ଦେଇଛନ୍ତି । କେବଳ ନିଜ ସୁଖପାଇଁ କର୍ମ ନ କରି ଅନ୍ୟକୁ ସୁଖ ଦେବାପାଇଁ, ଅନ୍ୟର ଦୁଃଖ ଦୂର କରିବାପାଇଁ ମଧ ମଣିଷର କର୍ମ କରିବା ଉଚିତ । ତା' ହେଲେ ଯାଇ ମଣିଷର ଜୀବନ ସାର୍ଥକ ହେବ । ପ୍ରତିଟି ଦିବସ ହେବ ତା' ଜୀବନରେ ସାର୍ଥକ ଦିବସ ।

କିନ୍ତୁ ଚାଣକ୍ୟ ପଣ୍ଡିତେ କହୁଛନ୍ତି-କେବଳ ବଞ୍ଚିବା ପାଇଁ କର୍ମ କରନାହିଁ । ସେ କଥା ତ ଇତର ପ୍ରାଣୀମାନେ ମଧ କରୁଛନ୍ତି । ମଣିଷ ଜୀବନର ପ୍ରତିଟି ଦିନ କିପରି ସାର୍ଥକ ହୁଏ ? ଜ୍ଞାନ ଅର୍ଜନ ଦ୍ୱାରା ନିଶ୍ଚୟ । ମଣିଷ କିପରି ସେ ଜ୍ଞାନ ଅର୍ଜନ କରିପାରିବ ? ପ୍ରତ୍ୟକ୍ଷ ଜ୍ଞାନ ଓ ପରୋକ୍ଷ ଜ୍ଞାନ-ଏହିପରି ଦୁଇ ପ୍ରକାରେ ଜ୍ଞାନ ଅର୍ଜନ କରିବାକୁ ହୁଏ । ପ୍ରତ୍ୟକ୍ଷ ଜ୍ଞାନଲାଭହୁଏ ଆମର ଅଭିଜ୍ଞତାରୁ । କିନ୍ତୁ ଆମେ କ'ଣ ସବୁକଥା ଆମ ଅଭିଜ୍ଞତାରୁ ଜାଣିପାରିବା ? ସେଥିପାଇଁ ପରୋକ୍ଷ ଜ୍ଞାନ ଆବଶ୍ୟକ । ଏଇ ପରୋକ୍ଷ ଜ୍ଞାନ ଆସେ ଗ୍ରନ୍ଥ ପଠନରୁ । ଚାଣକ୍ୟ ପଣ୍ଡିତେ କହୁଛନ୍ତି-

**ଶ୍ଳୋକେନ ବା ତଦର୍ଦ୍ଧେନ ପାଦେନୈକା କ୍ଷରେଣ ବା ।**
**ଅବନ୍ଧ୍ୟଂ ଦିବସଂ କୁର୍ଯାଦ୍ ଦାନାଧ୍ୟୟନ କର୍ମଭିଃ ।। (୨/୧୩)**

ଏହାର ଅର୍ଥ ହେଲା, ପ୍ରତିଦିନ ଅନ୍ତତଃ ଗୋଟିଏ ଶ୍ଳୋକ, କିମ୍ବା ଅଧା ଶ୍ଳୋକ, ଅଥବା ଏକଚତୁର୍ଥାଂଶ ଶ୍ଳୋକ ପଢ଼ିବା ଉଚିତ । କାରଣତୁମେ ଯଦି କୌଣସି ଦିନ ଶାସ୍ତ୍ର ଅଧ୍ୟୟନ ନ କର, ଦାନାଦି କର୍ମ ନ କର, ତେବେ ତୁମର ସେ ଦିନଟି ନିଶ୍ଚୟ ସାର୍ଥକ ହେଲା ନାହିଁ । ବୃଥା ହେଲା ବୋଲି ଜାଣିବ ।

ପାଠକେ ! ମଣିଷ ଜୀବନ କେଉଁ ଭାବରେ ସାର୍ଥକ ହେବ, ଆମର ପ୍ରତିଟି ଦିବସ କିପରି ବୃଥାରେ ଯିବ ନାହିଁ, ତା'ର ଉପାୟ ଆମକୁ କହୁଛନ୍ତି ଚାଣକ୍ୟ ପଣ୍ଡିତେ । ସେ ଯଦିଓ ଜ୍ଞାନାର୍ଜନ ଉପରେ ଜୋର ଦେଇଛନ୍ତି, ଉତ୍ତମ କର୍ମ ଉପରେ ମଧ ସେମିତି ଜୋର ଦେଇଛନ୍ତି ।

ଚାଣକ୍ୟଙ୍କ ଏଇ ଶ୍ଳୋକଟିର ମର୍ମ ହେଲା, ପ୍ରତିଦିନ ପୃଷ୍ଠାଟିଏ ହେଉ ପଛେ, ବା ଗୋଟିଏ ପୃଷ୍ଠାର ଧାଡ଼ିଟିଏ ହେଉ ପଛେ, ଭଲ ବହିଟିଏ ପଢ଼ । ସେହିପରି ବହିଟିଏ ପ୍ରତିଦିନ ପଢ଼, ଯାହା ପଢ଼ି ତୁମେ ନୂଆ ଜ୍ଞାନଟିଏ ପାଇଲ, ନୂଆ ତଥ୍ୟଟିଏ ଜାଣିଲ, ନୂଆ ତତ୍ତ୍ୱଟିଏ ବୁଝିଲ, କିମ୍ବା ଏକ ମହତ୍ ଅନୁଭବ ପାଇଲ, କିମ୍ବା କିଛି ଏକ ମହତ୍ ଉପଲବ୍ଧି ତୁମର ହେଲା, ସେହିପରି ଏକ ପୁସ୍ତକ ପ୍ରତଦିନ ପାଠ କଲେ ତୁମର ସେ ଦିନଟି ନିଶ୍ଚୟ ସାର୍ଥକ ହେବ । କାରଣ ଇତର ପ୍ରାଣୀମାନଙ୍କର ବଞ୍ଚିବା ପାଇଁ ସ୍ୱଳ୍ପଜ୍ଞାନ ଦରକାର । ତାହା ସେମାନେ ପ୍ରକୃତି ମାତାଙ୍କଠାରୁ ସ୍ୱତଃ ପାଇଛନ୍ତି । ମାତ୍ର ଆମ ମଣିଷମାନଙ୍କୁ ପ୍ରକୃତିମାତା ଜ୍ଞାନ ସ୍ପୃହା ଦେଇଛନ୍ତି ଏବଂ ଏକ ଅନୁସନ୍ଧିତ୍ସା ଦେଇଛନ୍ତି । ଆମର ଜ୍ଞାନ ଅନ୍ୱେଷଣ କରିବା ଉଚିତ । ତେଣୁ ଗ୍ରନ୍ଥପଠନ ନିତାନ୍ତ ଆବଶ୍ୟକ । ସଦ୍‌ଗ୍ରନ୍ଥ, ଧର୍ମଗ୍ରନ୍ଥ, ଜ୍ଞାନବିଜ୍ଞାନତତ୍ତ୍ୱ ତଥ୍ୟ ସମ୍ବଳିତ ଗ୍ରନ୍ଥ ପ୍ରତିଦିନ ପାଠ ନ କଲେ ଆମର ସେ ଦିନଟି ବୃଥାଗଲାବୋଲି ଜାଣିବ ।

ସେହିପରି ପ୍ରତିଦିନ ତୁମକୁ ଅନ୍ୟ ଲାଗି କିଛି କାର୍ଯ୍ୟ କରିବାକୁ ହେବ । ଦରିଦ୍ର ବ୍ୟକ୍ତିଙ୍କୁ ଦାନ କରିବା, ଅସହାୟକୁ ସହାୟ ହେବା, କାହାର କିଛି ଉପକାର କରିବା, ମଣିଷ ବ୍ୟତୀତ ଅନ୍ୟ ଜୀବଜନ୍ତୁମାନଙ୍କର ମଧ କିଛି ଉପକାର କରିବା, ରୁଗ୍ଣ ପୀଡ଼ିତ ବ୍ୟକ୍ତିଙ୍କ ସେବା କରିବା, ପ୍ରତିଦିନ ଦେବ ପୂଜା କରିବା, ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଧ୍ୟାନ ପ୍ରାର୍ଥନାଦି କରିବା ହେଲା ମହତ୍ କର୍ମ ଏବଂ ଏଗୁଡ଼ିକ ହିଁ ମାନବୀୟ ଧାର୍ମିକ କର୍ତ୍ତବ୍ୟ । ଏଭଳି କାର୍ଯ୍ୟ ପ୍ରତିଦିନ କିଛି କିଛି କରିବା ଉଚିତ । ତା' ନ କରିଥିଲେ ଚାଣକ୍ୟ ପଣ୍ଡିତଙ୍କ ମତରେ ଆମର ସେ ଦିନଟି ବୃଥା ଗଲା ବୋଲି ଜାଣିବ ।



## ୬୪. ଅଗ୍ନି ନୁହେଁ ସେ ତ କରେ ଦହନ

ପାଠକେ ! ଆପଣମାନଙ୍କ ଭିତରୁ କେହି କେହି ବୈଷ୍ଣବ କବି ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ବିଦଗ୍ଧ ଚିନ୍ତାମଣି' କାବ୍ୟ ପଢ଼ିଥିବେ । ସେହି କାବ୍ୟରେ ଦିବ୍ୟପ୍ରେମଭକ୍ତିର ବିଦଗ୍ଧ କବି ଅଭିମନ୍ୟୁ ଶୁଦ୍ଧ, ଗଭୀର, ପ୍ରଗାଢ଼ ପ୍ରେମର ଲକ୍ଷଣ କ'ଣ ତାହା ବହୁ ସୁନ୍ଦର ଉପମା ଦେଇ ବୁଝାଇଛନ୍ତି । ଶ୍ରୀମତୀ ରାଧାରାଣୀ ଭଗବାନ୍ କୃଷ୍ଣଙ୍କ ପ୍ରେମରେ ଆତୁରାହୋଇ ଓ ତାଙ୍କ ବିରହାଗ୍ନିରେ ଦଗ୍ଧହୋଇ ସଖୀ ଲଳିତାଙ୍କୁ ପଚାରିଲେ, "ସଖୀ ଲଳିତେ ! ଏଇ ପ୍ରେମ ଅନୁଭୂତିଟା ପ୍ରକୃତରେକ'ଣ ? ପ୍ରେମରେ ପଡ଼ିଲେ କ'ଣ ସମସ୍ତେ ମୋ ଭଳି ଏମିତି ଛଟପଟ ହେଉଥାନ୍ତି ?" ସଖୀ ଲଳିତା ହସି ହସି କହିଲେ, "ରାଧିକେ ! ପ୍ରେମ କ'ଣ, ତା'ର ଠିକ୍ ସଂଜ୍ଞା ଦେବା ଅସମ୍ଭବ । ତେବେ ମୋର ମନେହୁଏ, ପ୍ରେମର ଲକ୍ଷଣ ହେଲା, ଅନଳ ନୁହଁଇ ଦେହ ଦହଇ, ଶସ୍ତ୍ର ନୁହଁଇ ମରମେ ଭେଦଇ, ନୁହଁଇ ତ ଜଳ ବୁଡ଼ାଏ କୂଳ, ନୁହଁଇ ମାଦକ କରେ ବିହ୍ୱଳ । ନୁହଁଇ ବଡ଼ଶୀ, ବଳେ ମନ ମୀନ ନିଏ ଆକର୍ଷି । ଅର୍ଥାତ୍, ପ୍ରେମ ନିଆଁ ନୁହଁ, କିନ୍ତୁ ମନରେ ପ୍ରେମର ନିଆଁ ଲାଗିଲେ ଦେହ ମଧ ନିଆଁରେ ପୋଡି ଯାଉଥାଏ । ପ୍ରେମ କଟୁରୀ, ଖଣ୍ଡା, ତ୍ରିଶୂଳ କି ଶର ସଦୃଶ ଶସ୍ତ୍ର ନୁହଁ । କିନ୍ତୁ ମନରେ ପ୍ରେମର ସ୍ପର୍ଶ ଲାଗିଲେ ତାହା ହୃଦୟକୁ ବିଦ୍ଧ କରେ, ଆହତ କରେ ଓ ରକ୍ତାକ୍ତ ମଧ କରେ । ପ୍ରେମ ଜଳ ନୁହଁ, କିନ୍ତୁ ପ୍ରେମ ମନକୁ ଆର୍ଦ୍ର କରିବା ମାତ୍ରେ ତାହା ଏକ ବନ୍ୟାପ୍ଲାବନ ପରି ନିଜର କୂଳ, ବଂଶ, ଜାତି, ବର୍ଣ୍ଣ ସବୁ କିଛି ବନ୍ଧ ଭାଙ୍ଗିଦେଇ କୂଳ ଲଂଘନ କରେ ।"

ଲଳିତା ପୁଣି କହିଚାଲିଲେ, ରାଧେ! ପ୍ରେମର ଦୁର୍ଗୁଣ କେତେ ବର୍ଣ୍ଣିବି ? ପ୍ରେମ ମଣିଷକୁ କି କଷ୍ଟ ଦିଏ-ତାହା କେବଳ ପ୍ରେମରେ ପଡ଼ିଥିବା ଲୋକ ଜାଣେ । ଗଞ୍ଜେଇ, କୋକେନ, ମଦ ପ୍ରଭୃତି ନିଶାଦ୍ରବ୍ୟ ଭଳି ପ୍ରେମ ଏକ ମାଦକଦ୍ରବ୍ୟ ନୁହଁ । କିନ୍ତୁ ପ୍ରେମ ଯେତେବେଳେ ମନକୁ ସ୍ପର୍ଶ କରେ-ସେତେବେଳେ ସେ ଲୋକର ଆଉ ଚେତା ରହେ ନାହିଁ । ସେ ନିଶା ଖାଇଲା ଭଳି ବିହ୍ୱଳ ହୋଇଯାଏ । ତା'ର ମନ ଓ ହୃଦୟ ପ୍ରଣୟ ନିଶାରେ ନିମଗ୍ନ ହୋଇଯାଏ । ରାଧିକେ! ତୁମର ଅବସ୍ଥା ଯାହା ମୁଁ ଦେଖୁଛି, ଏହିଭଳି ହୋଇଗଲାଣି । ଶ୍ରୀକୃଷ୍ଣଙ୍କ ପ୍ରେମ-ଅଗ୍ନିଭଳି ତୁମର ଦେହ ପ୍ରାଣ ମନକୁ ନିତ୍ୟ ଦଗ୍ଧକରୁଛି ଏବଂ ତୁମେ ଛଟପଟ ହେଉଛ।

ପାଠକେ! ଏ ପର୍ଯ୍ୟନ୍ତ ଆପଣ ପ୍ରେମ ସମ୍ବନ୍ଧେ ଯାହା ସବୁ ଶୁଣିଲେ, ତାହା ଖୁବ୍ ଚମତ୍କାର ଲାଗୁଥିବ ନିଶ୍ଚୟ । ଏପରିକି ପ୍ରେମ ଏକ ଅଗ୍ନିଭଳି ଦଗ୍ଧକରେ ଓ ଛଟପଟ କରେ, ତାହା ମଧ ବଡ଼ ଆନନ୍ଦର ବିଷୟ । କିନ୍ତୁ ଆମ ଚାଣକ୍ୟ ପଣ୍ଡିତେ ଯୋଉ ଅଗ୍ନି କଥା କହୁଛନ୍ତି ତାହା ଶୁଣନ୍ତୁ । ପ୍ରେମାଗ୍ନିରେ ଦଗ୍ଧହେଲେ ଦେହ ମନ ମଧ ପବିତ୍ର ହୋଇଯାଏ । କାରଣ ପ୍ରେମ ଏକ ଦିବ୍ୟ ଅନୁଭୂତି । କିନ୍ତୁ ଚାଣକ୍ୟ ପଣ୍ଡିତେ କୋଉ ଅଗ୍ନି କଥା କହୁଛନ୍ତି ଶୁଣନ୍ତୁ,

**କାନ୍ତାବିୟୋଗଃ ସ୍ୱଜନାପଶାନଃ**
**ଋଣସ୍ୟ ଶେଷଃ କୁନୃପସ୍ୟ ସେବା ।**
**ଦରିଦ୍ରଭାବୋ ବିଷମା ସଭାଚ**
**ବିନାଗ୍ନିନୈତେ ପ୍ରଦହନ୍ତି କାୟମ୍ ।।** (୨/୧୬)

ଏହି ଶ୍ଳୋକର ଅର୍ଥ ହେଲା, ପତ୍ନୀ ବିୟୋଗ, ସ୍ୱଜନାଦି ବନ୍ଧୁବାନ୍ଧବଙ୍କଠାରୁ ହତାଦର, ଯୁଦ୍ଧର ବିଭୀଷିକା ସମାପ୍ତି ପର ଅବସ୍ଥା, କୁତ୍ସିତ, ନୀଚମନା ରାଜା ବା ଶାସକଙ୍କ ଅଧୀନରେ ଚାକିରି କରିବା, ଦାରିଦ୍ର୍ୟ ଥାଉ କି ନ ଥାଉ ମନରେ କୌଣସି କାରଣରୁ ଦୀନଭାବର ସଂଚାର; ଏବଂ ମୂର୍ଖ ଓ ଅବିବେକୀ ଲୋକମାନଙ୍କ ସଭାରେ ସଭ୍ୟ ବା ବକ୍ତା ରୂପେ ଯୋଗଦାନ, ଏସବୁ ବିନାଅଗ୍ନିରେ ଆମ ଦେହ ଓ ମନକୁ ପୋଡ଼ିପକାନ୍ତି ।

ପାଠକେ! ମହାଭିଜ୍ଞ ଚାଣକ୍ୟଙ୍କର ଏହି ଉକ୍ତିଗୁଡ଼ିକ କେତେ ସତ୍ୟ ଆଉ ବାସ୍ତବ ଭାବନ୍ତୁ ତ! ଅଗ୍ନି ହେଉଛନ୍ତି ଜଣେ ମୁଖ୍ୟ ଦେବତା। ଅଗ୍ନି ମଧ ଉତ୍ତାପ ଦିଏ, ଆଲୋକ ଦିଏ ଓ ଜୀବନୀଶକ୍ତିକୁ ବଞ୍ଚାଇ ରଖେ । ସେହି ଅଗ୍ନି ଭିତରେ ପଡ଼ିଲେ ସବୁକିଛି ଭସ୍ମ ହୋଇଯାଏ । ମାତ୍ର ସେହି ଅଗ୍ନି ଭିତରେ ଇ ସବୁକିଛି ସୂକ୍ଷ୍ମ

ରୂପରେ ଚିରଞ୍ଜୀବୀ ହୋଇ ରହିଥାଏ । କିନ୍ତୁ ସବୁ ଅଗ୍ନି କ'ଣ ସମାନ? ହୋମାଗ୍ନି ଓ ଚିତାଗ୍ନି କ'ଣ ସମାନ? ପେଟରେ ଜଳୁଥିବା ନିଆଁ, ଆଉ ମନରେ ଜଳୁଥିବା ନିଆଁ ଓ ଦେହରେ ଜଳୁଥିବା ନିଆଁ କ'ଣ ସମାନ? ସୂର୍ଯ୍ୟଙ୍କ ଅଗ୍ନି ଓ ବିଦ୍ୟୁତ୍ ଅଗ୍ନି କ'ଣ ସମାନ? ସବୁ ଅଗ୍ନିର ପ୍ରତିକ୍ରିୟା କ'ଣ ସମସ୍ତଙ୍କ ପାଇଁ ସବୁସମୟରେ ସମଭାବରେ ସମାନ?

ଆଦୌ ନୁହଁ । ପ୍ରାଣପ୍ରିୟା ପତ୍ନୀ କିଛିଦିନ ପାଇଁ ବାପଘର ଯାଇଛନ୍ତି, ବା ତାଙ୍କ ପୁଅ କି ଝିଅ ପାଖକୁ ଯାଇଛନ୍ତି, କି ତୀର୍ଥ କରି ଯାଇଛନ୍ତି, ସେ ବିରହ କଷ୍ଟ ଲାଗିବ, କିନ୍ତୁ ଦେହକୁ ଓ ମନ ହୃଦୟକୁ ଅଗ୍ନି ଭଳି ଜାଳିଦେଇ ଛଟପଟ କରିବ ନାହିଁ । ବିରହ ଓ ବିଚ୍ଛେଦ ବା ବିୟୋଗ ଏକା କଥା ନୁହଁ । ପ୍ରାଣପ୍ରିୟା ପତ୍ନୀର ବିୟୋଗ ସାରାଜୀବନ ତା'ର ପ୍ରେମିକ ସ୍ୱାମୀଟିକୁ ବିଚ୍ଛେଦ ନିଆଁରେ ଦଗ୍ଧ କରି ମରଣାନ୍ତକ କଷ୍ଟ ଦେଇଥାଏ ।

ସେହିପରି ଆଉ ଗୋଟିଏ ଅଗ୍ନି ହେଲା, ଭାଇ, ଭଉଣୀ, ପଡ଼ୋଶୀ, ବନ୍ଧୁ ବା ସେହିପରି ସ୍ୱଜନମାନଙ୍କଠାରୁ ବିନା କାରଣରେ ଅପମାନ ପାଇବା । ତାହା ମଧ ଆମର ଦେହ ମନକୁ ଦଗ୍ଧ କରୁଥାଏ । ଆଉ ଗୋଟିଏ ଅଗ୍ନି ହେଲା, ଯୁଦ୍ଧର ଶେଷ ଅବସ୍ଥା । ଯୁଦ୍ଧ ଶେଷ ହୋଇଗଲା । କିନ୍ତୁ ସେଥିରେ ତୁମର ଯୋଉ ଧନ, ଜନ ନଷ୍ଟ ହୋଇଗଲା-ତାହା ତ ଆଉ ତୁମେ ଫେରିପାଇବ ନାହିଁ । ସେହି ଦୁଃଖ ଜ୍ୱାଳାରେ ଜୀବନ ସାରା ଦଗ୍ଧ ହେଉଥିବ ।

ଆଉ ଗୋଟିଏ ଅଗ୍ନି ହେଲା, ଦୁଶ୍ଚରିତ୍ର ଖିଆଲବାଜ୍ ରାଜା ବା ଅନୀତିଗ୍ରସ୍ତ ଉଦ୍ଧତ ଶାସକ ପ୍ରଶାସକଙ୍କ ପାଖରେ ନୌକରୀ । ଏଭଳି ରାଜା ବା ଶାସକଙ୍କ ପାଖେ ଯଦି ନିରୁପାୟ ଭାବେ ଜଣେ ଚାକିରି କରେ, ତେବେ ସେ ଦିନରାତି ଦୁଃଖ ଓ ଅପମାନରେ ଦଗ୍ଧ ହେବ ହ ହେବ ।

ଆଉ ଗୋଟିଏ ଅଗ୍ନି ହେଲା, ଧନର ଦାରିଦ୍ର୍ୟ ଓ ତା' ଅପେକ୍ଷା ମନର ଦାରିଦ୍ର୍ୟ । ଧନରେ ଦରିଦ୍ର ଲୋକ ବଞ୍ଚିବା ପାଇଁ କଷ୍ଟ ଭୋଗୁଥାଏ । ଉଦର ଜ୍ୱାଳାରେ ଦଗ୍ଧ ହେଉଥାଏ । ମାତ୍ର ମନରେ ଦରିଦ୍ର ମଣିଷ ସର୍ବଦା ହୀନମ୍ମନ୍ୟତାର ଅଗ୍ନିରେ ଜଳିପୋଡ଼ି ମରୁଥାଏ । ସେହିପରି ଯୋଉ ସଭାରେ ବା ସମାଜରେ ମୂର୍ଖ୍ୟ ଅବିବେକୀ ଲୋକଙ୍କ ସଂଖ୍ୟା ବେଶି, ସେଠି ଭଦ୍ରଲୋକଟିଏ ନିତ୍ୟ ଅଗ୍ନିରେ ଦଗ୍ଧ ହେଉଥାଏ ।



# ୬୫. ଦୁଷ୍ଟା ଭାର୍ଯ୍ୟା, ମୂର୍ଖ ଚାଟ ଓ ଦୁଃଖୀ ବନ୍ଧୁ ପ୍ରସଙ୍ଗ

ପ୍ରିୟ ପାଠକେ! ଆପଣମାନେ ଜାଣନ୍ତି ମହାପଣ୍ଡିତ ଓ ପ୍ରଜ୍ଞାବାନ୍ ବ୍ରାହ୍ମଣ ଚାଣକ୍ୟ ଥିଲେ ସମ୍ରାଟ୍ ଚନ୍ଦ୍ରଗୁପ୍ତଙ୍କର ଜଣେ ଶୁଭକାମୀ ନିକଟତମ ବନ୍ଧୁ ଓ ରାଜନୈତିକ ପରାମର୍ଶଦାତା । ମହାପରାକ୍ରମଶାଳୀ ନନ୍ଦବଂଶକୁ ଏହି ଅଗ୍ନିତେଜା ବ୍ରାହ୍ମଣ ନିଜ କୂଟବୁଦ୍ଧିବଳରେ ଧ୍ୱଂସ କରି ଗୁପ୍ତ ସାମ୍ରାଜ୍ୟର ଭିତ୍ତି ସ୍ଥାପନକରିଥିଲେ । ଚାଣକ୍ୟ ଥିଲେ ମଧ୍ୟଯୁଗୀୟ ଭାରତବର୍ଷର ଜଣେ ଖୁବ୍ ବିଜ୍ଞ ଓ ପ୍ରାଜ୍ଞ ବ୍ୟକ୍ତି । ଜୀବନ ସମ୍ପର୍କରେ ଥିଲା ତାଙ୍କର ଗଭୀର ଜ୍ଞାନ । ତାଙ୍କର ନୀତି-ଶ୍ଳୋକ ଉପରେ କ୍ରମଶଃ ଆଲୋଚନା କରୁଛେ । ଶୁଣନ୍ତୁ ତାହେଲେ !!

**ମୂର୍ଖଶିଷ୍ୟୋପଦେଶେନ ଦୁଷ୍ଟାସ୍ତ୍ରୀଭରଣେନ ଚ ।**
**ଦୁଃଖିତୈଃ ସଂପ୍ରୟୋଗେଣ ପଣ୍ଡିତୋଽପ୍ୟବସୀଦତି ॥ (୧/୪)**

ଏହାର ଅର୍ଥ ହେଲା, ତୁମେ ଯେତେ ବଡ଼ ଜ୍ଞାନୀ ବା ପଣ୍ଡିତ ହୋଇଥାଅ ପଛକେ, କିନ୍ତୁ ଯଦି ମୂର୍ଖଶିଷ୍ୟକୁ ଉପଦେଶଦେବାଲାଗି ତୁମକୁ ପଡୁଥାଏ, କିମ୍ୱା ଗୋଟାଏ ଦୁଷ୍ଟାଭାର୍ଯ୍ୟାକୁ ଭରଣପୋଷଣ କରିବା ପାଇଁ ତୁମେ ବାଧ ହେଉଥାଅ, କିମ୍ୱା ତୁମ ଦୁର୍ଭାଗ୍ୟକୁ ତୁମର ବନ୍ଧୁବାନ୍ଧବମାନେ ଦୁଃଖୀ ହୋଇଥାଆନ୍ତି, ତେବେ ତୁମଠାରୁ ବଳି କଷ୍ଟଭୋଗୀ ହତଭାଗ୍ୟ ଆଉ କିଏ ଅଛି ?

ପାଠକେ! ଏହି ଶ୍ଳୋକର ଅର୍ଥ ନିତାନ୍ତ ସତ କଥା । କିନ୍ତୁ କଥାହେଲା, ଜଣେ ଶିକ୍ଷକ କୌଣସି ନିର୍ବୁଦ୍ଧିଆ ଛାତ୍ରୀ ବା ଛାତ୍ରକୁ କିଛି ଜ୍ଞାନଦେବାକୁ ଚେଷ୍ଟା କରିବ କି ନାହିଁ? ମୋ ମତରେ ଏହି କାର୍ଯ୍ୟଟି ଯେତେ କଷ୍ଟକର ହେଲେ ବି ଜଣେ ଯଥାର୍ଥ ଶିକ୍ଷକ ଚାହେଁ, ସେ ଏପରି ଭାବେ ତା'ର ଶିଷ୍ୟା ଓ ଶିଷ୍ୟଙ୍କୁ ପାଠ ପଢ଼େଇବ ଯେ, ଗୋଟେ ନିର୍ବୁଦ୍ଧିଆ ପିଲା ଅନ୍ତତଃ କିଛିହେଲେ ଜ୍ଞାନଅର୍ଜନ କରିବ ଓ ଜଣେ ବୁଦ୍ଧିମତୀ ବା ବୁଦ୍ଧିମାନ୍ ଛାତ୍ରୀ କି ଛାତ୍ର ଜ୍ଞାନ ବିଜ୍ଞାନର ସର୍ବୋଚ୍ଚ ଶିଖରରେ ଉପନୀତ ହେବାଲାଗି ସକ୍ଷମ ହୋଇପାରିବ । ଉତ୍ତମ ଚାଷୀ ଉର୍ବରଜମିରୁ ପ୍ରଚୁର ଶସ୍ୟ ଉତ୍ପାଦନ କରେ, ଏବଂ ଅନୁର୍ବର ଜମିକୁ ମଧ ନାନାଦି ଚେଷ୍ଟାକରି କିଛି ମାତ୍ରାରେ ଉର୍ବର କରିଥାଏ । ଉତ୍ତମ ଚାଷୀ ଜମିକୁ ଦୋଷ ଦେଇ ଛାଡ଼ିଦିଏ ନାହିଁ । ଉତ୍ତମ ଶିକ୍ଷକ ମଧ ସେହିପରି ପିଲାର ଦୋଷ ଦେଇ ତା' ପିଛା ନ ଲାଗି ତାକୁ କିଛି ମାତ୍ରାରେ ଜ୍ଞାନ ନ ଦେଇ ତାକୁ ଛାଡ଼େ ନାହିଁ ।

ପାଠକେ! ଅନ୍ୟ କଥାଟି ହେଲା, ଦୁଷ୍ଟା ଭାର୍ଯ୍ୟା ସମସ୍ୟା । ଏକଥା ସତ୍ୟ ଯେ, ଭାର୍ଯ୍ୟାଟି ଯଦି ଦୁଷ୍ଟ ସ୍ୱଭାବର ହୁଏ କି ଅର୍ଦ୍ଧପାଗଳୀ ହୁଏ, କି ଦାୟିତ୍ୱହୀନା,

କଳହପରାୟଣା, କାଣ୍ଡଜ୍ଞାନବିବର୍ଜିତା, କର୍ମକୁଣ୍ଠିତା, କଟୁଭାଷିଣୀ, ଦାୟିତ୍ୱ ଜ୍ଞାନହୀନା ହୁଏ, ଏବଂ ସର୍ବଦା ରୁଷ୍ଟ ସ୍ୱଭାବା ଓ ଅଭିଯୋଗପ୍ରବଣା ହୁଏ, ତେବେ ଜଣେ ଶାନ୍ତ ସୁଶୀଳ, ଭଦ୍ର ସ୍ୱାମୀ ପକ୍ଷରେ ସେଭଳି ଭାର୍ଯ୍ୟାକୁ ସମ୍ଭାଳିବା ପ୍ରକୃତରେ ମହାକଷ୍ଟକର ବ୍ୟାପାର । ତା' ସହିତ ଚବିଶଘଣ୍ଟା ଅତିବାହିତ କରିବା ମୃତ୍ୟୁ-ଯନ୍ତ୍ରଣାଠାରୁ ମଧ୍ୟ କଷ୍ଟକର ହୋଇଥାଏ । ଚାଣକ୍ୟ ପଣ୍ଡିତ ଯାହା କହିଛନ୍ତି, ସେଥିରେ ସାମାନ୍ୟ ଭୁଲ ନାହିଁ । କିନ୍ତୁ ଏଭଳି ଦୁର୍ଗୁଣପରାୟଣା ନାରୀ କେବଳ ଭାର୍ଯ୍ୟା ଭୂମିକାରେ ଥାଇ ପୁରୁଷକୁ କଷ୍ଟ ଦିଅନ୍ତି ନାହିଁ । ଏଭଳି ଦୁଷ୍ଟା ନାରୀ ଦୁର୍ଭାଗ୍ୟକୁ ଆମ ଜୀବନରେ ମା' ଭୂମିକାରେ ବି ଆସିପାରେ । ଭଉଣୀ ଭୂମିକାରେ ବି ଆସିପାରେ । ତେବେ ଭାର୍ଯ୍ୟା ସହିତ ସାରା ଜୀବନ ଓ ସମଗ୍ର ଜୀବନ ବଞ୍ଚିବାକୁ ପଡ଼େ ବୋଲି ଚାଣକ୍ୟ ପଣ୍ଡିତେ ଦୁଷ୍ଟାଭାର୍ଯ୍ୟାର ଉଦାହରଣ ଦେଇଛନ୍ତି । କଥାଟା ନିଶ୍ଚୟ ସତ୍ୟ । କିନ୍ତୁ ପାଠକେ ! ମୁଁ ଦେଖିଛି ଓ ଜାଣିଛି, ଆପଣ ମଧ୍ୟ ଦେଖିଥିବେ ଓ ଜାଣିଥିବେ ଅନେକ ଜାଗାରେ ଖୁବ୍ ଭଦ୍ର ଭବ୍ୟ, ସୁକୁମାର, ସୁଶୀଳ ସ୍ୱାମୀ ସାରା ଜୀବନ ତାଙ୍କ ଦୁଷ୍ଟାଭାର୍ଯ୍ୟାର ଅତ୍ୟାଚାର ହସି ହସି ବା ନୀରବରେ ସହ୍ୟ କରିଛନ୍ତି । ସେଭଳି ଭାର୍ଯ୍ୟାକୁ ଛାଡ଼ପତ୍ର ନ ଦେଇ (ତା'ର ସୁଯୋଗ ଥାଇ ମଧ୍ୟ) କିମ୍ବା ତାକୁ ଧମକ ଚମକ ନ ଦେଇ ଖୁବ୍ ସ୍ନେହ, କରୁଣା, ସହାନୁଭୂତିର ସହିତ ଏଭଳି ଦୁଷ୍ଟା ଭାର୍ଯ୍ୟାକୁ ଆଜୀବନ ସହ୍ୟ କରି ଆସିଛନ୍ତି । କେବଳ ସହ୍ୟ ନୁହଁ, ସ୍ନେହ କରୁଣାରେ ପ୍ରତିପାଳନ ମଧ୍ୟ କରି ଆସିଛନ୍ତି । ଆମେରିକାର ପୂର୍ବତନ ପ୍ରେସିଡେଣ୍ଟ ବିଶ୍ୱବିଖ୍ୟାତ ଆବ୍ରାହମ ଲିଙ୍କନ୍‌ଙ୍କ ଭାର୍ଯ୍ୟା ମଧ୍ୟ ଏମିତି ଦୁଷ୍ଟା ଥିଲେ । କିନ୍ତୁ ଲିଙ୍କନ୍ ତାଙ୍କୁ ଦୁଷ୍ଟା କନ୍ୟାଟିଏ ଭଳି ସାରାଜୀବନ ପାଳି ଆସିଥିଲେ ।

ପାଠକେ ! ଦାମ୍ପତ୍ୟପ୍ରେମ ସମ୍ବନ୍ଧେ ଶେଷକଥା ଠିକ୍‌ଭାବେ କହିହେବ ନାହିଁ । ସଫଳ ଦାମ୍ପତ୍ୟ ଜୀବନରେ ଦୁଷ୍ଟାଭାର୍ଯ୍ୟାକୁ ପ୍ରେମିକ ସ୍ୱାମୀ ଖୁବ୍ ବାତ୍ସଲ୍ୟ ପ୍ରେମ ଦେଖାଇ ପାଳିଥାଏ । ବିପରୀତରେ ପ୍ରେମିକା ଭାର୍ଯ୍ୟାଟିଏ ବି ତା'ର ଦୁଷ୍ଟ ବଦ୍‌ମାସ ସ୍ୱାମୀକୁ ବାତ୍ସଲ୍ୟ ପ୍ରେମରେ ପୁତ୍ରଭଳି ସାରା ଜୀବନ ପାଳି ଆସିଥାଏ ।

ଶେଷକଥା ହେଲା, ଦୁଃଖ ପାଉଥିବା ବା ନାନାଦି ଆପଦବିପଦରେ ପଡ଼ି ହଇରାଣ ହେଉଥିବା ବନ୍ଧୁବାନ୍ଧବମାନେ ମଧ୍ୟ ଆମର ବହୁ କଷ୍ଟର କାରଣ ହୋଇଥାନ୍ତି । କିନ୍ତୁ ପାଠକେ ! ଏ ସଂସାରର ରୀତି ଏହିପରି । ସୁଖ ଦୁଃଖ କାହାକୁ ବା ଛାଡ଼ିଛି ? ତା' ଛଡ଼ା ଆପଦବିପଦ ବେଳେ, ଦୁଃଖକଷ୍ଟ ପାଉଥିଲା ବେଳେ ବନ୍ଧୁବାନ୍ଧବ ତ ଏକମାତ୍ର ସାହା । ସେତିକିବେଳେ ତ ଅସଲ ବନ୍ଧୁ କିଏ ଅସଲ ମିତ୍ର କିଏ ଜଣାପଡ଼େ । ଦୁଃଖ ବେଳେ ବନ୍ଧୁ ପାଖେ ଛିଡ଼ା ନ ହେଲେ, ସାହାଯ୍ୟ ନ କଲେ ତୁମେ କି ବନ୍ଧୁ

ହେ ? ଆଜି ତୁମେ ତୁମ ବନ୍ଧୁର ଦୁଃଖ କଷ୍ଟ ବେଳେ ଛିଡ଼ା ହୋଇଛ । ଆସନ୍ତାକାଲି ସେ ମଧ୍ୟ ତୁମର ଦୁଃଖ ବିପଦ ବେଳେ ତୁମ ପାଖେ ଠିଆ ହେବେ । ଏହାହିଁ ତ ଅସଲ ବନ୍ଧୁ-ପ୍ରୀତି । ଯେଉଁ ବନ୍ଧୁ ସୁଖ ବେଳେ, ଦୁଃଖ ବେଳେ, ଆପଦ ବିପଦ ବେଳେ ତୁମ ପାଖେ ଛିଡ଼ା ନ ହୁଏ ସେ କି ବନ୍ଧୁରେ ଗଣା ହୁଏ ?

ପାଠକେ ! ଚାଣକ୍ୟ ପଣ୍ଡିତେ ଯାହା କହିବାର କହନ୍ତୁ, ଆମେ କିନ୍ତୁ ଏଇ ସବୁ ମୂର୍ଖ ଛାତ୍ରୀଛାତ୍ର, ଦୁଷ୍ଟା ଭାର୍ଯ୍ୟା ଓ ଦୁଃଖୀ ବନ୍ଧୁମାନଙ୍କୁ ନେଇ ଏଇ କ୍ଷଣସ୍ଥାୟୀ ଜୀବନରେ ଆତଯାତ ହେଉଛୁ ।



## ୬୬. ...ମୃତ୍ୟୁରେବ ନ ସଂଶୟଃ

**ଦୁଷ୍ଟା ଭାର୍ଯ୍ୟା ଶଠଂ ମିତ୍ରଂ ଭୃତ୍ୟଶ୍ଚୋତ୍ତରଦାୟକଃ ।**
**ସସର୍ପେ ଚ ଗୃହେ ବାସୋ ମୃତ୍ୟୁରେବ ନ ସଂଶୟଃ ।। (୧/୫)**

ଏହି ଶ୍ଳୋକରେ ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଦୁଷ୍ଟା ଭାର୍ଯ୍ୟା ସହିତ ଶଠ ବା ପ୍ରତାରକ ବନ୍ଧୁ ସହିତ; ଏବଂ ଯେଉଁ ଭୃତ୍ୟ ବା ବେତନଭୋଗୀ ସେବକ ତୁମର ଆଦେଶକୁ ଅବମାନନା କରେ ତୁମେ ତା'ର ତ୍ରୁଟି ଲାଗି ଭର୍ତ୍ସନା କଲେ, ସେ ତୁମକୁ ପ୍ରତି-ଭର୍ତ୍ସନା କରେ, ତା' ସହିତ ଓ ବିଷଧର ସର୍ପ ସହିତ ଏକାଘରେ ବାସ କରିବା ଉଚିତ ନୁହେଁ । କାରଣ ଏମାନଙ୍କ ସହ ଗୋଟିଏ ଘରେ ରହିଲେ କେତେବେଳେ ଯେ ତୁମ ଅଜାଣତରେ ସେମାନେ ତୁମର ପ୍ରାଣନାଶ କରିବେ, ତାହା କହିହେବ ନାହିଁ ।

ପାଠକେ ! ଏ ଶ୍ଳୋକଟିରେ ଚାଣକ୍ୟ ଆମକୁ ସାବଧାନବାଣୀ ଶୁଣାଇଛନ୍ତି, ଦୁଷ୍ଟା ଭାର୍ଯ୍ୟା, ଶଠ ମିତ୍ର, ଅବାଧ୍ୟ ଭୃତ୍ୟ ଓ ବିଷଧର ସର୍ପ-ଏମାନଙ୍କୁ କେବେ ବିଶ୍ୱାସ କରିବା ଉଚିତ ନୁହଁ । ଏମାନଙ୍କ ପ୍ରତି ସର୍ବଦା ସତର୍କ ରହିବା ଉଚିତ ଏମାନଙ୍କ ସହିତ ଗୋଟିଏ ଘରେ ମଧ୍ୟ ରହିବା ନିରାପଦ ନୁହେଁ । କିନ୍ତୁ ଦୁର୍ଭାଗ୍ୟକୁ ଯଦି ଜୀବନରେ ଦୁଷ୍ଟା ଭାର୍ଯ୍ୟାଟିଏ ତୁମେ ବିବାହ, କରିଛ ତେବେ ତା' ସହିତ ଏକା ପ୍ରକୋଷ୍ଠରେ ଦିନ ରାତି ନ ରହିବ କିପରି ? ଦୁଷ୍ଟା ଭାର୍ଯ୍ୟାକୁ ଛାଡ଼ପତ୍ର ଦିଆଯାଇପାରେ । ମାତ୍ର ଯଦି ଛାଡ଼ପତ୍ର ନ ଦେଇଛ, ତେବେ ସେ ଓ ତୁମେ ଏକା ଘରେ ରହିବାକୁ ବାଧ୍ୟ ନୁହେଁ କି ? କିନ୍ତୁ ଚାଣକ୍ୟ ଏଠାରେ ଦୁଷ୍ଟା ଭାର୍ଯ୍ୟାକୁ କୋଉ ଅର୍ଥରେ 'ଦୁଷ୍ଟା'

କହିଛନ୍ତି ତାହା ଦେଖାଯାଉ । ଏଠି ଦୁଷ୍ଟା ଶବ୍ଦକୁ ସାଧାରଣ ଦୁଷ୍ଟାମି ଅର୍ଥରେ କୁହାଯାଇ ନାହିଁ । କଳହପ୍ରିୟା, ସଦା ଅଭିଯୋଗପରାୟଣା-ଈର୍ଷାକାତରା-ମହାଅଭିମାନିନୀ-ସଦାରୁଷ୍ଟା-କ୍ଷଣକୋପିନୀ-କଟୁବଚନା ଇତ୍ୟାଦି ସାଧାରଣ ଦୁଷ୍ଟାମି ପ୍ରାୟ ଅଳ୍ପବହୁତେ ବହୁ ଭାର୍ଯ୍ୟାଙ୍କର ଥାଏ । କିନ୍ତୁ ଏଇସବୁ ଦୁର୍ଗୁଣସଂପନ୍ନା ନାରୀକୁ ଏଠାରେ ଦୁଷ୍ଟା ଭାର୍ଯ୍ୟା କହୁ ନାହାନ୍ତି । ବିଷଧର ସର୍ପ ପରି ପ୍ରାଣଘାତିନୀ ଓ ଘୋର ଶଠତା ଓ ପ୍ରତାରଣାରେ ପରିପୂର୍ଣ୍ଣା ଭାର୍ଯ୍ୟାକୁ ଚାଣକ୍ୟ ଏଠାରେ ଦୁଷ୍ଟା ନାରୀ ବୋଲି ଅଭିହିତ କରିଛନ୍ତି । ଏଭଳି ଭାର୍ଯ୍ୟା ସ୍ୱାମୀର ଗୁପ୍ତଧନ କରଗତ କରିବା ପାଇଁ; କିମ୍ବା ପରପୁରୁଷ ସହିତ ପାପ ପ୍ରଣୟରେ ନିର୍ବିଘ୍ନରେ ରତ ହେବା ପାଇଁ; କିମ୍ବା ସ୍ୱାମୀର କୌଣସି ଗୁପ୍ତ ପ୍ରେମିକା ଉପରେ ପ୍ରତିଶୋଧ ନେବା ପାଇଁ; ବା ପିଲାଦିନୁ ନାନାଦି ମାନସିକ ରୋଗରେ ପୀଡ଼ିତା ଅଧାପାଗଲୀ ପତ୍ନୀଟି ସହିତ ଏକାଠି ରହିବା ଆଦୌ ନିରାପଦ ନୁହେଁ । ଏମିତି କେତେ ଉଦାହରଣ ରହିଛି ଏବଂ ବିଧା ଦୁଷ୍ଟା ସ୍ତ୍ରୀ ତା' ସ୍ୱାମୀର ଅସତର୍କ ଅବସ୍ଥାରେ ତା' ଜୀବନ ନେଇଛି । ସେହିଭଳି ଅମାନିଆ ଭୃତ୍ୟ ବା ଉତ୍ତରଦାୟୀ ଭୃତ୍ୟକୁ ମଧ୍ୟ ଏକ ଶଠ, ଚୋର ପ୍ରତାରକ ଭୃତ୍ୟ ଅର୍ଥରେ ବୁଝିବାକୁ ହେବ । ଆଜିକାଲି ଦିଲ୍ଲୀ, ବମ୍ବେ, କଲିକତା ପ୍ରଭୃତି ବଡ଼ ବଡ଼ ନଗରରେ ବେତନଭୋଗୀ ଭୃତ୍ୟମାନେ କିପରି ଗୃହସ୍ୱାମୀ ବା ପରିବାରର ଲୋକଙ୍କର ଅସହାୟ ଅବସ୍ଥାର ସୁଯୋଗ ନେଇ ସେମାନଙ୍କୁ ଜୀବନରେ ମାରି ସେମାନଙ୍କ ଧନସମ୍ପତ୍ତି ନେଇ ଚମ୍ପଟ ମାରୁଛନ୍ତି ସେ କଥା ପ୍ରତିଦିନ ଖବରକାଗଜରେ ପଢ଼ିବାକୁ ମିଳେ । ସେହିପରି ଯେଉଁ ଲୋକ ତୁମ ସହିତ କପଟ ବନ୍ଧୁତା କରି, ତୁମକୁ ଭୁଲାଇ, ବିଶ୍ୱାସ ଜନ୍ମାଇ ଶେଷରେ ଦିନେ ତୁମ ଅସତର୍କ ମୁହୂର୍ତ୍ତରେ ତୁମକୁ ନିଜେ ହତ୍ୟା କରି ବା ଅନ୍ୟ ଦ୍ୱାରା ହତ୍ୟା କରାଇ ତୁମର ଧନସମ୍ପତ୍ତି ଲୁଟି ନିଏ, ସେପରି ଦୁଷ୍ଟ ଶଠ ବନ୍ଧୁ ସହ କେବେବି ଏକତ୍ର ରହିବା ଉଚିତ ନୁହେଁ । ଏବଂ ଶେଷ କଥାଟି ହେଲା, ବିଷଧର ସର୍ପ ଯଦି କୌଣସି ଉପାୟରେ ତୁମ ଘରେ ପଶି କୋଉ ଗାତରେ ଲୁଚିକରି ରହିଥାଏ, ତେବେ ତାକୁ ସେ ଘରୁ ନ ତଡ଼ି ସେ ଘରେ ରହିବା ଉଚିତ ନୁହେଁ । ସୁତରାଂ, ଶଠ ମିତ୍ର, ଶଠ ଭୃତ୍ୟ, ଶଠ ଭାର୍ଯ୍ୟା ଓ ବିଷଧର ସର୍ପ, ଏମାନେ ହେଲେ ଗୋଟିଏ ଶ୍ରେଣୀର । ଏମାନେ ସମସ୍ତେ ପ୍ରାଣଘାତକ। । ଏମାନଙ୍କ ଦ୍ୱାରା କେତେବେଳେ ତୁମର ପ୍ରାଣ ଯିବ, ତା'ର ଠିକଣା ନାହିଁ ।

କିନ୍ତୁ ପାଠକେ ! ଏଠାରେ ଆମେ କେବଳ ଗୋଟିଏ ପଟର କଥା କହୁଥାଉଁ । ଆଚ୍ଛା ! ଦୁଷ୍ଟା ସ୍ତ୍ରୀ କ'ଣ କେବଳ ପ୍ରାଣଘାତିନୀ ହୋଇଥାଏ । ଦୁଷ୍ଟ ଓ ଶଠ ସ୍ୱାମୀ କ'ଣ ପ୍ରାଣଘାତକ ହୁଏ ନା ? ଏପରି ବହୁ ଉଦାହରଣ ମଧ୍ୟ ରହିଛି, ଯୋଉଠି ବିଚାରି ଲକ୍ଷ୍ମୀସଦୃଶା ସ୍ତ୍ରୀ ଲୋକଟିଏ ବା ସରସ୍ୱତୀସଦୃଶା ସ୍ତ୍ରୀ ଲୋକଟିଏ ଗୋଟିଏ

ଦୁଷ୍ଟ, ଶଠ, ପ୍ରତାରକ, କାମୁକ ଓ ଭ୍ରଷ୍ଟ ସ୍ୱାମୀ ହାତରେ ପଡ଼ି ସାରାଜୀବନ କି କଲବଲ ହୋଇ ବଞ୍ଚିଛି ବା ମରିଛି ! ତେଣୁ କେବଳ ଦୁଷ୍ଟା ଭାର୍ଯ୍ୟାଙ୍କ କଥା ଉଦାହରଣ ଦେବା ଠିକ୍ ନୁହେଁ, ଦୁଷ୍ଟ ସ୍ୱାମୀ ମଧ୍ୟ କମ୍ ଭୟଙ୍କର ନୁହନ୍ତି !

ଆଉ ମଧ୍ୟ, ସବୁବେଳେ ଭୃତ୍ୟମାନେ ଶଠ, ଦୁଷ୍ଟ, ବଦମାସ୍ ହୋଇ ନ ଥାନ୍ତି । ପ୍ରଭୁମାନେ, ମାଲିକମାନେ, ଭର୍ତ୍ତାମାନେ ମଧ୍ୟ କମ୍ ଦୁଷ୍ଟ ଓ ଶଠ ହୋଇ ନ ଥାନ୍ତି । ଅନେକ ମାଲିକ ଅଛନ୍ତି ଯେଉଁମାନେ ସେମାନଙ୍କ ବେତନଭୋଗୀ ସେବାକାରୀମାନଙ୍କ ପ୍ରତି ଅତି ନିଷ୍ଠୁର, ନିର୍ଦ୍ଦୟ ଓ ନୃଶଂସ ଆଚରଣ କରନ୍ତି । ଅନେକ ଭୃତ୍ୟ ଯେତିକି ଅନୁକମ୍ପା, ସହାନୁଭୂତି ତାଙ୍କ ମାଲିକଠାରୁ ପାଇବା କଥା ତାହା ପାଆନ୍ତି ନାହିଁ । ଯେତିକି ନ୍ୟାୟ ପାଇବା କଥା ପାଆନ୍ତି ନାହିଁ । ଯେତିକି ଆସ୍ଥା ଓ ବିଶ୍ୱାସ ତାଙ୍କର ମାଲିକଠାରୁ ପାଇବା କଥା, ସେତିକି ପାଆନ୍ତି ନାହିଁ, ଅନେକ ନୃଶଂସ ମାଲିକ ସେମାନଙ୍କ ଭୃତ୍ୟମାନଙ୍କ ଜୀବନ ନାଶର କାରଣ ମଧ୍ୟ ହୋଇଥାନ୍ତି । ତେଣୁ କେବଳ ଦୁଷ୍ଟ ଭୃତ୍ୟ ସହିତ ଏକା ଘରେ ରହିବା ଅନୁଚିତ କାହିଁକି ? ଦୁଷ୍ଟ ମାଲିକ ସହିତ ମଧ୍ୟ ଏକତ୍ର ରହିବା ନିରାପଦ ନୁହେଁ ।

ଶେଷରେ ଚାଣକ୍ୟ ପଣ୍ଡିତେ ବିଷଧର ସର୍ପ କଥା କହିଛନ୍ତି । ବିଷଧର ସର୍ପ ସହିତ ଏକାଘରେ ରହିବା ନିଶ୍ଚୟ ବିପଜ୍ଜନକ । କିନ୍ତୁ ଅନ୍ୟପକ୍ଷରୁ ଦେଖିଲେ, ବିଷଧର ସର୍ପ କେବଳ ମଣିଷର ପ୍ରାଣ ନିଏ ନାହିଁ । ମଣିଷ ମଧ୍ୟ ବିଷଧର ସର୍ପ ଦେଖିଲେ ତାକୁ ହତ୍ୟା କରେ । ସେ ସର୍ପଟି ମଣିଷର ଅନିଷ୍ଟ କରୁ ନ କରୁ ମଣିଷ ତାକୁ ଦେଖିଲେ ପିଟେ । ତେଣୁ ସର୍ପ ପାଇଁ ମଣିଷ ମଧ୍ୟ କମ୍ ଦୁଷ୍ଟ ନୁହେଁ । ଶଠ ନୁହଁ । ଅପରପକ୍ଷରେ, ଏବେ ମଧ୍ୟ ଦେଖାଯାଇଛି ଯେ, ମଣିଷଟିଏ ବିଷଧର ସର୍ପମାନଙ୍କ ମେଳରେ ଦିନ ରାତି ସବୁବେଳେ ରହୁଛି । କିନ୍ତୁ ସାପମାନେ ସେ ମଣିଷର କିଛି କ୍ଷତି କରୁ ନାହାନ୍ତି । ଏ କ୍ଷେତ୍ରରେ ମନୁଷ୍ୟ ଓ ସର୍ପ ମଧ୍ୟରେ ଏକ ପରମ ବିଶ୍ୱାସ, ଆଶ୍ୱାସ, ଆସ୍ଥା ଓ ପ୍ରୀତିର ସମ୍ପର୍କ ସ୍ଥାପିତ ହୋଇଥାଏ । ଅନେକ ମଣିଷ ହିଂସ୍ର ବ୍ୟାଘ୍ର, ସିଂହଙ୍କ ସହିତ ମଧ୍ୟ ଏକାଠି ଥାଆନ୍ତି ପରମ ପ୍ରୀତି, ସ୍ନେହ ଓ ବିଶ୍ୱାସରେ ।

ପାଠକେ ! ବର୍ତ୍ତମାନ ଆମେ ଦେଖିବା ଯେ, ସତ୍ୟ ଦୁଇ ପଟେ ଅଛି । ଶିଷ୍ଟ ପଣ ଓ ଦୁଷ୍ଟ ପଣ ଉଭୟ ପକ୍ଷରେ ଅଛି । ଦୁଷ୍ଟା ସ୍ତ୍ରୀ, ଦୁଷ୍ଟ ସ୍ୱାମୀ ଅଛନ୍ତି । ଦୁଷ୍ଟ ଭୃତ୍ୟ ଓ ଦୁଷ୍ଟ ମାଲିକ ଅଛନ୍ତି; ଏବଂ ଶେଷରେ ଦୁଷ୍ଟ ପ୍ରାଣୀଙ୍କ ଅପେକ୍ଷା ଦୁଷ୍ଟ ମଣିଷଙ୍କ ସଂଖ୍ୟା ଖୁବ୍ ବେଶି ବୋଲି ପ୍ରମାଣିତ ହୋଇଛି ।



# ୬୭. ଲକ୍ଷ୍ମୀ ତତ୍ର ସ୍ୱୟମାଗତା

ଲକ୍ଷ୍ମୀଙ୍କ ସମ୍ବନ୍ଧେ ଆମ୍ଭମାନଙ୍କର ସାଧାରଣ ଧାରଣା ହେଉଛି ଯାହା ଘରେ ପ୍ରଚୁର ଧନ, ସମ୍ପତ୍ତି, ସୁନାରୁପା, କୋଠାବାଡ଼ି, କାର୍, ଟେଲିଭିଜନ ଇତ୍ୟାଦି ଭରପୂର ହୋଇଅଛି, ଲକ୍ଷ୍ମୀଠାକୁରାଣୀ ନିଶ୍ଚୟ ସେଠାରେ ବିଦ୍ୟମାନା ଅଛନ୍ତି । ମାତ୍ର ଏହା ଆମର ଭୁଲ୍ ଧାରଣା । ମହାଜ୍ଞାନୀ ଚାଣକ୍ୟ ପଣ୍ଡିତେ କହନ୍ତି-

**ମୂର୍ଖା ଯତ୍ର ନ ପୂଜ୍ୟନ୍ତେ ଧାନ୍ୟଂ ଯତ୍ର ସୁସଞ୍ଚିତମ୍ ।**
**ଦମ୍ପତ୍ୟୋ କଳହୋ ନାଽସ୍ତି ତତ୍ର ଶ୍ରୀଃ ସ୍ୱୟମାଗତା ।। (୩/୨୧)**

ଏହି ଶ୍ଲୋକର ବିଶଦ ବ୍ୟାଖ୍ୟା ହେଲା; ଚୋରି ଡକାୟତି କରି ବା ଅନ୍ୟାୟ ଭାବେ ଧନ ରୋଜଗାର କରି ବହୁଧନର ଅଧିକାରୀ ହୋଇଥିବା ଧନୀଲୋକଙ୍କ ଘରେ ଲକ୍ଷ୍ମୀ ନିତ୍ୟ ବିରାଜମାନ ଅଛନ୍ତି ବୋଲି ଆମର ଯେଉଁ ଧାରଣା ତାହା ଅତ୍ୟନ୍ତ ଭୁଲ । ଲକ୍ଷ୍ମୀଠାକୁରାଣୀ ଉପସ୍ଥିତ ଥିଲେ ଧନସମ୍ପତ୍ତି ବୃଦ୍ଧି ହୋଇଥାଏ ଏ କଥା ସତ, ମାତ୍ର ଯେଉଁ ଘରେ ପାପ, ପ୍ରମାଦ, ଅଶାନ୍ତି, ଅପ୍ରେମ, ଅସଙ୍ଗତି ଓ କୁତ୍ସିତ ବାତାବରଣ ଥାଏ ସେଠାରେ ଲକ୍ଷ୍ମୀଠାକୁରାଣୀ ଗୋଟିଏ ମୁହୂର୍ତ୍ତ ମଧ୍ୟ ରହିପାରନ୍ତି ନାହିଁ । ଲକ୍ଷ୍ମୀ ଗୋଟିଏ ପବିତ୍ରମନା, ସେବାପରାୟଣା, ସତ୍ୟବତୀ, ପ୍ରିୟବତୀ, ଶୁଦ୍ଧଚରିତ୍ରା ଚଣ୍ଡାଳୁଣୀର ଘରେ ବରଂ ଖୁବ୍ ଆନନ୍ଦରେ ଥାଆନ୍ତି । ସେଠାରେ ହୁଏତ ବହୁତ ଅନାବଶ୍ୟକ ଅନ୍ୟାୟ-ଅର୍ଜିତ ଧନ ନ ଥାଏ, ମାତ୍ର ଥାଏ ପ୍ରେମ, ଭକ୍ତି, ପରିଚ୍ଛନ୍ନତା ଓ ସତ୍ୟଧର୍ମର ସଙ୍ଗତି ଏବଂ ସୌନ୍ଦର୍ଯ୍ୟ । ସେଠି ଥାଏ ଶାନ୍ତି, ତୃପ୍ତି, ଆନନ୍ଦ ଓ ସମତାର ଭାବ ।

ଚାଣକ୍ୟ ପଣ୍ଡିତେ ସେହି ମର୍ମରେ କହୁଛନ୍ତି, ଯେଉଁ ଘରେ ବା ଗ୍ରାମରେ ବା ରାଜ୍ୟରେ ମୂର୍ଖ ଓ ହୁଣ୍ଡାଗୁଣ୍ଡାମାନଙ୍କର ପ୍ରାଦୁର୍ଭାବ ଥାଏ; ଏବଂ ସେମାନଙ୍କୁ ଭୟ କରି ସେସବୁ ସ୍ଥାନରେ ସେଇସବୁ ମୂର୍ଖମାନଙ୍କୁ ଅନ୍ୟ ଲୋକମାନେ ସମ୍ମାନ ଦେଖାଉଥାନ୍ତି; ସେଠାରେ କେବେ ଲକ୍ଷ୍ମୀ ରହନ୍ତି ନାହିଁ । କାରଣ ଲକ୍ଷ୍ମୀ ସର୍ବଦା ଜ୍ଞାନୀ, ଗୁଣୀ ଓ ସତ୍ କର୍ମୀମାନଙ୍କୁ ଭଲ ପାଆନ୍ତି ଓ ସେମାନଙ୍କୁ ସ୍ୱତଃ ସହାୟତା ବା ଅନୁଗ୍ରହ କରିଥାନ୍ତି । ଆଉ ମଧ୍ୟ ଯେଉଁ ପରିବାରରେ, ଗ୍ରାମରେ ବା ରାଜ୍ୟରେ ଧାନ୍ୟ ବା ଖାଦ୍ୟଦ୍ରବ୍ୟକୁ ଲୋକେ ଉତ୍ପନ୍ନ କରନ୍ତି, ସଂଗ୍ରହ କରନ୍ତି ଓ ସେଗୁଡ଼ିକୁ ବୃଥା ନଷ୍ଟ ବା ଅପଚୟ ନ କରି ପ୍ରଯତ୍ନ ସହକାରେ ସାଇତି ରଖିଥାନ୍ତି, ସେହି ସ୍ଥାନରେ ମଧ୍ୟ ଲକ୍ଷ୍ମୀ ଠାକୁରାଣୀ ବିରାଜମାନ କରିଥାନ୍ତି। ଯେଉଁଠାରେ ଖାଦ୍ୟଦ୍ରବ୍ୟର ବୃଥା ଅପଚୟ ବା ଅବ୍ୟୟ ହୁଏ ସେଠାରୁ ଲକ୍ଷ୍ମୀ ଶୀଘ୍ର ଚାଲିଯାଆନ୍ତି ।

ଆଉ ଗୋଟିଏ କଥା ଚାଣକ୍ୟ ପଣ୍ଡିତେ ଖୁବ୍ ଜୋର୍ ଦେଇ କହୁଛନ୍ତି, ତାହା ହେଲା ଯେଉଁସବୁ ପରିବାରରେ ସ୍ୱାମୀ ଓ ସ୍ତ୍ରୀଙ୍କ ଭିତରେ ମଧୁର ପ୍ରେମସମ୍ପର୍କ ନ ଥାଏ, କେହି କାହାକୁ ଭଦ୍ର ମଧୁର ବ୍ୟବହାର ଦେଖାନ୍ତି ନାହିଁ; ଏବଂ ସର୍ବଦା କଳହରତ ଥାନ୍ତି, ସେ ଘରେ କେବେ ଶାନ୍ତି ଓ ସଙ୍ଗତି ରହିପାରେନା । ସେ ଘରର ପିଲାମାନେ ମଧ ବାଲୁଙ୍ଗା ହୋଇଯାନ୍ତି । ଭୃତ୍ୟ ଓ ସେବାକାରୀମାନେ ସେ ଘରେ ରହିପାରନ୍ତି ନାହିଁ । ପଡ଼ୋଶୀମାନେ ମଧ ସେ ଘରକୁ ଆସନ୍ତି ନାହିଁ କି ସେ ପରିବାର ସହିତ କିଛି ସମ୍ପର୍କ ରଖନ୍ତି ନାହିଁ । ଏଭଳି ଅଶାନ୍ତ, ତିକ୍ତ, ପ୍ରେମପ୍ରୀତିହୀନ ସ୍ଥାନକୁ ଲକ୍ଷ୍ମୀ କିପରି ଆସିବେ ? ଆସିଲେ ବା କିପରି ରହିବେ ?

ଅନ୍ୟ ପକ୍ଷରେ ଯେଉଁ ଘରେ ପତି-ପତ୍ନୀଙ୍କ ଭିତରେ ମଧୁର ପ୍ରେମପ୍ରୀତି ଉଦ୍‌ବେଳନ ଚାଲିଥାଏ, ମଧୁର ବାକ୍ୟ ବିନିମୟ ଚାଲିଥାଏ, ପରସ୍ପର ପରସ୍ପରକୁ ସମ୍ମାନ କରନ୍ତି, ପରସ୍ପର ପରସ୍ପରକୁ ସାହାଯ୍ୟ କରନ୍ତି, ନିଜ ଭିତରେ ଶାନ୍ତ ଭାବେ ସବୁ କଥା ଆଲୋଚନା କରନ୍ତି, ପଡ଼ୋଶୀମାନଙ୍କ ପ୍ରତି ଭଲ ବ୍ୟବହାର ଦେଖାନ୍ତି, ସେ ଘରେ ସନ୍ତାନସନ୍ତତିମାନେ ମଧ ଭଲ ଭାବେ ଲାଳିତପାଳିତ ହୁଅନ୍ତି ଓ ସେମାନଙ୍କ ଜୀବନର ବିକାଶ ହୋଇଥାଏ । ସେ ଘରେ ଧର୍ମଦେବତା ସର୍ବଦା ବିରାଜିତ ଥାଆନ୍ତି । ସେଥିଲାଗି ସେହି ଘରକୁ ଲକ୍ଷ୍ମୀଠାକୁରାଣୀ ସ୍ୱୟଂ ସ୍ୱତଃ ଆଗମନ କରନ୍ତି; ଏବଂ ସେ ଘର ଛାଡ଼ି ଯାଆନ୍ତି ନାହିଁ । ଅର୍ଥାତ୍, ସେ ଘର ପ୍ରତି ଓ ସେ ଘରର ଲୋକମାନଙ୍କ ପ୍ରତି ଲକ୍ଷ୍ମୀଠାକୁରାଣୀଙ୍କର ସର୍ବଦା ଅନୁଗ୍ରହ ଥାଏ । ତାଙ୍କର କରୁଣା ଓ ବରଦାନରୁ ସେ ପରିବାର କେବେବି ବଞ୍ଚିତ ହୁଅନ୍ତି ନାହିଁ ।



## ୬୮. ସାଧୁ ସଙ୍ଗର ଫଳ ...

ଆମ ଓଡ଼ିଆ ଭାଗବତରେ ଭକ୍ତକବି ପରମ ବୈଷ୍ଣବ ଜଗନ୍ନାଥ ଦାସ ଲେଖିଛନ୍ତି-

କେବଳ ସାଧୁସଙ୍ଗ ବିନୁ । ଲଭି ନ ପାରେ ମୋର ତନୁ ॥

ଅର୍ଥାତ୍, ଭଗବାନ୍ ଶ୍ରୀକୃଷ୍ଣ ତାଙ୍କର ଭକ୍ତ ଉଦ୍ଧବଙ୍କୁ କହୁଛନ୍ତି, ହେ ଉଦ୍ଧବ ! ମୋତେ ଯଦି କେହି ପାଇବାକୁ ଚାହେଁ, ଉପଲବ୍ଧି କରିବାକୁ ଚାହେଁ, ତେବେ ତାକୁ ସାଧୁମାନଙ୍କ ସହିତ ସର୍ବଦା ରହିବାକୁ ପଡ଼ିବ । ସାଧୁସଙ୍ଗ ବ୍ୟତୀତ ମୋତେ ପାଇବା ସମ୍ଭବ ନୁହଁ । ମୋର କୃପା ବା ଅନୁଗ୍ରହ ପାଇବା ମଧ୍ୟ ସମ୍ଭବ ନୁହେଁ ।

ଭକ୍ତକବି ସନ୍ଥ ତୁଳସୀ ଦାସ ମଧ୍ୟ ତାଙ୍କର 'ରାମଚରିତ ମାନସ' ଗ୍ରନ୍ଥରେ ସେହି ଏକା କଥା କହିଛନ୍ତି-

ବିନୁ ସତ୍‌ସଙ୍ଗ ବିବେକ ନ ହୋଇ । ରାମକୃପା ବିନୁଁ ସୁଲଭ ନ ସୋଇ ॥

ଅର୍ଥାତ୍, ସାଧୁସଙ୍ଗ ନ କରି କେହି ସେହି ପରମ ପୁରୁଷ ଭଗବାନ୍‌ଙ୍କୁ ସହଜରେ ପାଇପାରିବ ନାହିଁ ଏବଂ ତା'ର ବିବେକ ମଧ୍ୟ ଜାଗ୍ରତ ହେବ ନାହିଁ ।

ଏହି ଭାବକୁ ନେଇ ଚାଣକ୍ୟ ପଣ୍ଡିତେ ମଧ୍ୟ ନୀତିଶ୍ଳୋକଟିଏ କହୁଛନ୍ତି,

**ସାଧୁଭ୍ୟସ୍ତେ ନିବର୍ତ୍ତନ୍ତେ ପୁତ୍ର ମିତ୍ରାଣି ବାନ୍ଧବାଃ।**
**ଯେ ଚ ତୈଃ ସହ ଗନ୍ତାରସ୍ତଦ୍ଧର୍ମାତ୍ ସୁକୃତଂ କୁଳମ୍ ॥** (୪/୨)

ଅର୍ଥାତ୍, ତୁମର ପୁତ୍ର, ପୁତ୍ରୀ, ସଖା, ମିତ୍ର ଓ ବନ୍ଧୁବାନ୍ଧବମାନେ କେହି ଯଦି ସାଧୁସଙ୍ଗ କରନ୍ତି ନାହିଁ କିମ୍ବା ସାଧୁ ସଜ୍ଜନଙ୍କ ଉପଦେଶ ଶୁଣନ୍ତି ନାହିଁ, ତେବେ ସେଥିରେ ତୁମର କିଛି ଯାଏ ଆସେ ନାହିଁ । ତୁମେ ନିଜେ ଯଦି ସାଧୁସଙ୍ଗ କରୁଥାଅ, ଏବଂ ସାଧୁସନ୍ଥଙ୍କ ସଂସ୍ପର୍ଶରେ ଆସୁଥାଅ, ତେବେ କେବଳ ତୁମରି ଦ୍ୱାରା ହିଁ ତୁମର କୁଳ ଉଜ୍ଜ୍ୱଳ ହୋଇଥାଏ, ଏବଂ ତୁମର ବଂଶ ନିଶ୍ଚୟ ଉନ୍ନତି ପଥରେ ଅଗ୍ରସର ହେବ।

ସାଧୁସଙ୍ଗର ସୁଫଳ ସମ୍ପର୍କରେ ମହାଜ୍ଞାନୀ ଚାଣକ୍ୟ ପୁନର୍ବାର ଶ୍ଳୋକଟିଏ କହୁଛନ୍ତି,

**ଦର୍ଶନ-ଧ୍ୟାନ-ସଂସ୍ପର୍ଶୈର୍ମତ୍ସୀ କୂର୍ମୀ ଚ ପକ୍ଷିଣୀ।**
**ଶିଶୁଂ ପାଳୟତେ୍ ନିତ୍ୟଂ ତଥା ସଜ୍ଜନସଙ୍ଗତିଃ ॥** (୪/୩)

ଅର୍ଥାତ୍, ମାଛ, କଇଁଚ ଓ ପକ୍ଷୀମାନେ ସେମାନଙ୍କ ଛୁଆଙ୍କ ଉପରେ ସର୍ବଦା ଦୃଷ୍ଟି ରଖିଥାନ୍ତି, ତାଙ୍କରି କଥା ସବୁବେଳେ ଭାବୁଥାନ୍ତି ଓ ତାଙ୍କୁ ନିଜର ଦେହସ୍ପର୍ଶ ଦେଇ ଲାଳନପାଳନ କରିଥାନ୍ତି । ସେହିପରି ଯେଉଁମାନେ ସାଧୁସଜ୍ଜନଙ୍କ ସହିତ ସଙ୍ଗତି ରଖିଥାନ୍ତି, ସେମାନଙ୍କୁ ସାଧୁ-ସଙ୍ଗତିର ପୁଣ୍ୟ ସର୍ବଦା ଲାଳନପାଳନ କରି ରହିଥାଏ । ତା'ମାନେ ସାଧୁସଙ୍ଗ କରୁଥିବା ବ୍ୟକ୍ତିର ଜୀବନ ନିରାପଦ ଥାଏ ଓ ସର୍ବଦା ସମୃଦ୍ଧି ଓ ବିକାଶ ପଥରେ ଅଗ୍ରସର ହେଉଥାଏ ।

ପାଠକେ ! ଚାଣକ୍ୟ ପଣ୍ଡିତେ ଏହି ଶ୍ଳୋକ ଦୁଇଟିରେ ଯେଉଁ ସାଧୁ ସଜ୍ଜନଙ୍କ କଥା କହୁଛନ୍ତି, ସେମାନେ ପ୍ରକୃତରେ କିଏ ? ବାବାଜି, ବୈଷ୍ଣବ, ଯୋଗୀ, ସନ୍ନ୍ୟାସୀମାନଙ୍କୁ ଆମେ ସାଧାରଣତଃ ସାଧୁ ବୋଲି ଭାବୁ । ସିଦ୍ଧ ପୁରୁଷ ବା ନାରୀଙ୍କୁ ମଧ୍ୟ ଆମେ ସାଧୁ ବୋଲି ମାନ୍ୟ କରୁ । ଏଭଳି ସାଧୁସନ୍ଥ ଯୋଗୀ ସବୁକାଳେ

ଥିଲେ ଓ ଏବେ ମଧ୍ୟ ଅଛନ୍ତି । କିନ୍ତୁ କେବଳ ଏଇ ସୀମିତ ଅର୍ଥରେ 'ସାଧୁ' ଶବ୍ଦଟିକୁ ବ୍ୟବହାର କରାଯାଇ ନାହିଁ ।

ବ୍ୟାପକ ଭାବେ 'ସାଧୁ' ଶବ୍ଦର ଅର୍ଥ ହେଲା, ଯେଉଁ ବ୍ୟକ୍ତିମାନେ ଏ ସଂସାରରେ ଥାଇ ମଧ୍ୟ ଓ ସାଂସାରିକ ଜୀବନ ଯାପନ କରି ମଧ୍ୟ ଈଶ୍ୱରପରାୟଣ ହୋଇଥାନ୍ତି । ଜ୍ଞାନ, ପ୍ରେମ, ଭକ୍ତି ଓ ସତ୍‌କର୍ମ କରି ବଞ୍ଚୁଥାନ୍ତି । ମିଥ୍ୟା, ହିଂସା, କପଟତା ସେମାନଙ୍କୁ ସ୍ପର୍ଶ କରି ନ ଥାଏ, ଯେଉଁମାନେ ପରଦୁଃଖରେ ଦୁଃଖୀ, ସତ୍ୟ ପରାୟଣ, ଦୟା କରୁଣାରେ ଯେଉଁମାନେ ଅନ୍ୟ ପାଇଁ ନିଜର ସ୍ୱାର୍ଥତ୍ୟାଗ କରିଥାନ୍ତି, ଦୁଃଖୀ ଦୁର୍ଗତଙ୍କର ସେବା କରୁଥାନ୍ତି, ଯେଉଁମାନେ ସର୍ବଦା ଅନ୍ୟର ମଙ୍ଗଳ କାମନା କରୁଥାନ୍ତି ସେମାନଙ୍କୁ ଇ ପ୍ରକୃତରେ ସାଧୁ କୁହାଯାଏ । ଆମ ଭଳି ସଂସାରୀ ଲୋକମାନେ ଏଇ ଧରଣର ଲୋକଙ୍କ ସହ ମିଶିବା ଉଚିତ ଓ ସେମାନଙ୍କର ଉପଦେଶାନୁସାରେ ଚଳିବା ଉଚିତ । ଏଇ ପ୍ରକାର ସାଧୁମାନେ ଆମକୁ ଧର୍ମ ଓ ଈଶ୍ୱରଙ୍କ ସହିତ ମିଳାଇ ଦେଇପାରନ୍ତି । ସେହିମାନେ ଇ ଧର୍ମ ଓ ଈଶ୍ୱର ଏବଂ ଆମ୍ଭମାନଙ୍କ ଭିତରେ ସେତୁ ରୂପେ କାର୍ଯ୍ୟ କରିଥାନ୍ତି । ସେହିମାନେ ହିଁ ଯଥାର୍ଥରେ ଆମ ଜୀବନର ପଥ ପ୍ରଦର୍ଶକ ହେବା ଉଚିତ ।



## ୬୯. ... ପ୍ରାଣାନ୍ତେ କିଂ କରିଷ୍ୟତି ?

ପାଠକେ ! ମହାପ୍ରାଜ୍ଞ ଚାଣକ୍ୟଙ୍କ ଏକ ଗୁରୁତ୍ୱପୂର୍ଣ୍ଣ ଉପଦେଶ ଆଜି ଶୁଣନ୍ତୁ । ଶ୍ଳୋକଟି ହେଲା-

**ଯାବତ୍‌ସ୍ୱସ୍ଥୋ ହ୍ୟୟଂ ଦେହୋ ଯାବନ୍ମୃତ୍ୟୁଶ୍ଚ ଦୂରତଃ ।**
**ତାବଦାତ୍ମହିତଂ କୁର୍ଯାତ୍ ପ୍ରାଣାନ୍ତେ କିଂ କରିଷ୍ୟତି ।। (୪/୪)**

ଶ୍ଳୋକଟିର ଅର୍ଥ ହେଲା, ହେ ମନୁଷ୍ୟମାନେ ! ଯେପର୍ଯ୍ୟନ୍ତ ତୁମର ଏହି ଶରୀରଟି ସୁସ୍ଥ ଅଛି, ଏବଂ ଯେପର୍ଯ୍ୟନ୍ତ ମୃତ୍ୟୁକାଳ ତୁମଠାରୁ ବହୁ ଦୂରରେ ଅଛି, ସେ ପର୍ଯ୍ୟନ୍ତ ନିଜ ଲାଗି ହିତକର୍ମ ଓ ପୁଣ୍ୟକର୍ମ ସବୁ କରିଯିବା ଉଚିତ । କାରଣ ଶରୀରର ବୃଦ୍ଧାବସ୍ଥା ବା ରୁଗ୍‌ଣାବସ୍ଥା ଆସିଲେ ତୁମେ ଆଉ କି କାର୍ଯ୍ୟ ବା କରିପାରିବ ? ତା' ପରେ ତୁମର ମୃତ୍ୟୁ ହୋଇଗଲା ପରେ ଆଉଭଲା କ'ଣ ହେବ ?

ଚାଣକ୍ୟଙ୍କର ଏଇ କଥାଟି ଆମ ପାଇଁ ଏକ ଚେତାବନୀ ସଦୃଶ । ବର୍ତ୍ତମାନ ଆମେ ଯୌବନାବସ୍ଥାରେ ଅଛୁ । ଆମର ବଳବୀର୍ଯ୍ୟ ରହିଛି । ସାହସ ମଧ ଅଛି ।

ସବୁକିଛି କରିପାରିବାର ସାମର୍ଥ୍ୟ ବି ରହିଛି । ଏତିକିବେଳେ ହିଁ ଆମେ ଆମର ସଦ୍‌ଗତି ଲାଗି ବହୁ ପୁଣ୍ୟକାର୍ଯ୍ୟ ଓ ଧର୍ମକାର୍ଯ୍ୟ କରିପାରିବା । ତେବେ ଯୌବନ କ୍ଷଣସ୍ଥାୟୀ । ଏହି ଅବସ୍ଥା ଖୁବ୍ ଶୀଘ୍ର ଚାଲିଯିବ ଓ ବୃଦ୍ଧାବସ୍ଥା ଆସିଯିବ । ତେଣୁ ଏହି କାଳରେ ହିଁ ଆମକୁ ବହୁ ସତ୍‌କର୍ମ କରିବାକୁ ହେବ ।

ଏହି ସତ୍‌କର୍ମଗୁଡ଼ିକ ହେଲା, ନିଜର ପ୍ରକୃତି ଭିତରେ ଥିବା ମନ୍ଦ ପ୍ରବୃତ୍ତିଗୁଡ଼ିକୁ ଖୋଜି ବାହାର କରିବା ଓ ସେଗୁଡ଼ିକ ସମ୍ବନ୍ଧେ ସଚେତନ ଏବଂ ସଜାଗ ରହିବା । ଏହି ମନ୍ଦପ୍ରବୃତ୍ତିଗୁଡ଼ିକ ଜାଗାରେ ମହତ୍ ଓ ଶୁଭଙ୍କର ଗୁଣଗୁଡ଼ିକ ଦ୍ୱାରା ନିଜ ଜୀବନକୁ ପରିଚାଳିତ କରିବା । ଅହଂକାର, ସ୍ୱାର୍ଥପରତା, ଈର୍ଷା, ଅସୂୟା, କ୍ରୋଧ, ଲୋଭ ଓ କାମ ପ୍ରଭୃତି ମନ୍ଦ ପ୍ରବେଗଗୁଡ଼ିକ ଆମର ପ୍ରକୃତି ଭିତରେ ରହି ଆମକୁ ଭୁଲ୍‌ମାର୍ଗରେ ପରିଚାଳିତ କରନ୍ତି ଓ ତା' ଫଳରେ ଆମେ ନାନାଦି ପାପକାର୍ଯ୍ୟରେ ଲିପ୍ତ ହୋଇଯାଉ । ତେଣୁ ଆମର ଜୀବନ ଲାଗି ପ୍ରଥମ ହିତକର୍ମଟି ହେଲା ଆମର ନିମ୍ନପ୍ରକୃତି ଓ ପ୍ରବୃତ୍ତିଗୁଡ଼ିକୁ ଉଚ୍ଚ ପ୍ରକୃତିରେ ରୂପାନ୍ତରିତ କରିବା । ପ୍ରେମ, ଅହିଂସା, ଅକ୍ରୋଧ, ସେବା, ସତ୍ୟ, ଭକ୍ତି ପ୍ରଭୃତି ସଦ୍‌ଗୁଣଗୁଡ଼ିକର ଅଧିକାରୀ ହେବାଲାଗି ଅଭୀପ୍ସା କରିବା। ଏହିଗୁଡ଼ିକ ହେଲା ନିଜ ପାଇଁ ହିତକର୍ମ। ଏଗୁଡ଼ିକୁ ଆମକୁ କୈଶୋରାବସ୍ଥାରୁ ହିଁ ଅର୍ଜନ କରିବାକୁ ହେବ । ଭକ୍ତକବି ମଧୁସୂଦନ ରାଓଙ୍କର ଧାଡ଼ିଏ କବିତା ମନେପକାନ୍ତୁ,

ବାଲ୍ୟକାଳୁ ଧର୍ମ-ଧନ ମୁଁ ସଞ୍ଚିବି ଏ ଜୀବନ ଅନିଶ୍ଚିତ।
କେ ଜାଣେ କାହାର ଆଜି ମୃତ୍ୟୁକାଳ ହୋଇଯିବ ଉପସ୍ଥିତ ॥

ସତ କଥା, ଧର୍ମ ଓ ହିତକର କର୍ମ ସବୁ ଆବାଲ୍ୟରୁ ଆରମ୍ଭ କରିବା ଉଚିତ । କାରଣ ଆମେ ଜାଣୁ ନାହୁଁ ଯେ କେତେବେଳେ ହଠାତ୍ ଆମର ମୃତ୍ୟୁ ହୋଇଯାଇପାରେ । ଯେଉଁମାନେ କହନ୍ତି ଯେ, ଧର୍ମକାର୍ଯ୍ୟ ପାଇଁ ଢେର ସମୟ ଅଛି, ସେ ସମୟ ଆସୁ-ଦେଖିବା । ବୃଦ୍ଧକାଳେ ଧର୍ମ ଚିନ୍ତା କରିବା ଉଚିତ । ଯୌବନରେ ଧନ ଅର୍ଜନ କର ଓ ମଉଜ ମଜ୍‌ଲିସ୍‌ରେ କାଳ କାଟ, ଶୈଶବ ଓ କୈଶୋର କାଳରେ ଖେଳକୁଦରେ ମାତ । ବୃଦ୍ଧକାଳରେ ହିଁ ଧର୍ମଚିନ୍ତା କରିବା ଉଚିତ ।

ପାଠକେ ! ଯେଉଁମାନେ ଏକଥା ଭାବି ବା କହି ବୃଥାରେ କାଳକ୍ଷେପଣ କରନ୍ତି, ସେମାନେ ନିଜେ ନିଜକୁ ହିଁ ପ୍ରତାରିତ କରିଥାନ୍ତି। ଚାଣକ୍ୟ ପଣ୍ଡିତେ ଠିକ୍ କହୁଛନ୍ତି। ବର୍ତ୍ତମାନର ଏହି ସୁସ୍ଥଦେହ ଯେ ସବୁବେଳେ ଏମିତି ସୁସ୍ଥ ରହିବ, ସେ କଥା କେହି ନିଶ୍ଚିତଭାବେ କହିପାରିବ ନାହିଁ। କୋଉ ମୁହୂର୍ତ୍ତରେ ଯେ କାହାର ମୃତ୍ୟୁକାଳ ଆସି

ପହଞ୍ଚିଯିବ, ସେ କଥା ବା କିଏ କହିବ ? କବିବର ରାଧାନାଥ କହିଲା ଭଳି, "ବଡ଼ କୂର କାଳ ବଡ଼ ଅବିଶ୍ୱାସୀ, ହାବୋଡ଼ି ଯିବ ସେ ଆଚମ୍ବିତେ ଆସି"।

ତେଣୁ ଆମପକ୍ଷରେ ଉଚିତ ହେଲା, ଏହି ମୁହୂର୍ତ୍ତଠାରୁ ଯେତେବେଳେ ଆମର ଦେହ ସୁସ୍ଥ ଅଛି ଓ ଆମେ ବୃଦ୍ଧି କି ଅକର୍ମଣ୍ୟ ହୋଇ ନାହୁଁ, କି ଆମର ଗଳାରେ ଯମଦେବଙ୍କର କାଳଫାଶ ପଡ଼ି ନାହିଁ, ସେଇ ମୁହୂର୍ତ୍ତରୁ ହିଁ ଆମେ ଆମ ଲାଗି ହିତକର୍ମ ସବୁ କରିବା ଉଚିତ ଓ ଧର୍ମକାର୍ଯ୍ୟ ସବୁ ମଧ୍ୟ କରିଯିବା ଉଚିତ।



## ୭୦. ...ନ ଚ ତାରାଃ ସହସ୍ରଶଃ

ମହାପ୍ରାଜ୍ଞ ଚାଣକ୍ୟ କହୁଛନ୍ତି-

**ଏକୋଽପି ଗୁଣବାନ୍ ପୁତ୍ରୋ ନିର୍ଗୁଣୈଶ୍ଚ ଶତୈର୍ବରଃ।**
**ଏକଶ୍ଚନ୍ଦ୍ରସ୍ତମୋହନ୍ତି ନ ଚ ତାରାଃ ସହସ୍ରଶଃ ।। (୪/୬)**

ଶ୍ଳୋକଟିର ବାକ୍ୟାର୍ଥ ହେଲା, ଏକଶତ ଗୁଣହୀନ ପୁତ୍ରପୁତ୍ରୀଙ୍କ ଅପେକ୍ଷା ବରଂ ଗୋଟିଏ ଗୁଣବାନ୍ ପୁତ୍ର ଶ୍ରେଷ୍ଠ। କାରଣ ରାତ୍ରକାଳରେ ହଜାର ହଜାର ତାରା ଆକାଶରେ ଜଳୁଥାନ୍ତି। ମାତ୍ର ସେମାନଙ୍କ ସେଇ ମିଞ୍ଜି ମିଞ୍ଜି ଆଲୋକ କ'ଣ ପୃଥିବୀର ଅନ୍ଧକାର ଦୂରକରେ ? ବରଂ ଶୁକ୍ଳପକ୍ଷର ଆକାଶରେ ଏକମାତ୍ର ଚନ୍ଦ୍ର ହିଁ ତା'ର ତାପହୀନ ଆଲୋକରେ ରାତ୍ରିକୁ ଅନ୍ଧକାରମୁକ୍ତ କରିଥାଏ।

ପାଠକେ! ଏହି ଶ୍ଳୋକଟିରେ ଓ ଏହାର ପରବର୍ତ୍ତୀ ଆଉ କେତୋଟି ଶ୍ଳୋକରେ ଚାଣକ୍ୟ ପଣ୍ଡିତେ, ପରିମାଣ ଅପେକ୍ଷା ଗୁଣଉପରେ ବେଶି ଜୋର୍ ଦେଇଛନ୍ତି। ସତ କଥା। ମହାଭାରତରେ ଆମେ ଧୃତରାଷ୍ଟ୍ରଙ୍କର ଶହେ ପୁତ୍ର ଓ ପଣ୍ଡୁଙ୍କର ମାତ୍ର ପାଞ୍ଚଜଣ ଶିଷ୍ଟ ପୁତ୍ରମାନଙ୍କ କଥା ଭାବିଲେ ଆମେ ଚାଣକ୍ୟ ପଣ୍ଡିତଙ୍କ କଥାର ସତ୍ୟତା ବେଶ୍ ବୁଝିପାରୁ।

ତେବେ ଏ କଥାରୁ ଆମେ କେବେ ବୁଝିବା ନାହିଁ ଯେ, ଚାଣକ୍ୟ ପଣ୍ଡିତେ ସଂଖ୍ୟାଧିକ୍ୟ ଉପରେ ଆଦୌ ଗୁରୁତ୍ୱ ନ ଦେଇ କେବଳ ଗୁଣାଧିକ୍ୟ ଉପରେ ଗୁରୁତ୍ୱ ଦେଉଛନ୍ତି । ପ୍ରକୃତ କଥାଟି ହେଲା, ଯଦି ଗୁଣାତ୍ମକ ବିଶେଷତ୍ୱ ନାହିଁ, ତେବେ କେବଳ ସଂଖ୍ୟାଗରିଷ୍ଠତାରେ ଲାଭ କ'ଣ ? ବରଂ କ୍ଷତି । କେବଳ ପାରିବାରିକ

ଦୃଷ୍ଟିରୁ ଆମେ କଥାଟା ନେବା ନାହିଁ । ଗ୍ରାମ ଓ ଦେଶ କଥା ମଧ୍ୟ ତଦ୍ରୂପ । ଯଦି ଗୋଟିଏ ଗ୍ରାମରେ ବା ଦେଶରେ ଗୁଡ଼ାଏ ଲୋକ ଜନ୍ମ ହୁଅନ୍ତି, ମାତ୍ର ସେମାନେ ଅଧିକାଂଶ ମୂର୍ଖ, ଅଳସୁଆ, ନିଷ୍କର୍ମା, ଚୋର, ଡକାୟତ ଓ ଅଧର୍ମାଚାରୀ ହୁଅନ୍ତି, ତେବେ ସେ ଦେଶର ଏଇ ଲୋକସଂଖ୍ୟାର ମୂଲ୍ୟ କ'ଣ ? ଏଭଳି ଦେଶରେ ସମସ୍ତେ ଦୁଃଖକଷ୍ଟରେ ଜୀବନ ଯାପନ କରନ୍ତି; ଏବଂ ଏଭଳି ପରିବାର, ଗ୍ରାମ ବା ଦେଶ କ୍ରମଶଃ ରସାତଳଗାମୀ ହୋଇଥାଏ । ଗୁଣାତ୍ମକ ବିକାଶ ନ ହୋଇ କେବଳ ସଂଖ୍ୟାତ୍ମକ ବୃଦ୍ଧି ବହୁ ଦୁଃଖ ଓ ଦୁର୍ଭୋଗର କାରଣ ହୋଇଥାଏ ।

ଚାଣକ୍ୟ ପଣ୍ଡିତେ ଏହି ପ୍ରସଙ୍ଗରେ ମୂର୍ଖ ପୁତ୍ର ଓ ପୁତ୍ରୀମାନଙ୍କ ସମ୍ବନ୍ଧେ ଆଉ କେତେକ କଥା ମଧ୍ୟ କହନ୍ତି । ତାଙ୍କ ମତରେ ମୂର୍ଖ ବା ଅଜ୍ଞାନ ବା ଦୁଷ୍ଟ ସନ୍ତାନଟିଏ ଦୀର୍ଘଜୀବୀ ହୋଇଥିଲେ ଲାଭ କ'ଣ ? ବରଂ ଏଭଳି ସନ୍ତାନ ଯେତେ ଦିନ ବଞ୍ଚିଥାଏ ସେତେଦିନ ପିତାମାତା ଓ ପରିବାରକୁ କଷ୍ଟ ଦିଏ; ଏବଂ ଏଭଳି ସନ୍ତାନମାନେ ଗ୍ରାମ ଓ ରାଜ୍ୟ ଲାଗି ମଧ୍ୟ ଅମଙ୍ଗଳ ସୃଷ୍ଟି କରିଥାନ୍ତି । ବରଂ ଗୋଟିଏ ସୁପୁତ୍ର ବା ସୁପୁତ୍ରୀ ଅଳ୍ପଦିନ ବଞ୍ଚିଥିଲେ ବି ତା'ର ସୁଗୁଣ ଦ୍ୱାରା ସେ କୁଳ ଉଜ୍ଜ୍ୱଳ କରିଥାଏ ଓ ରାଜ୍ୟର ମଧ୍ୟ ମଙ୍ଗଳ ସାଧନ କରିଥାଏ ।

ଚାଣକ୍ୟ ପଣ୍ଡିତେ ଏ ସମ୍ପର୍କରେ ଆଉ ଗୋଟିଏ ଶ୍ଳୋକ କହି ତାଙ୍କ କଥାକୁ ଆହୁରି ଦୃଢ଼ ଓ ସର୍ବସମ୍ମତ କରିବାକୁ ଚେଷ୍ଟା କରିଛନ୍ତି । ସେ ଆଉ ଗୋଟିଏ ଉଦାହରଣ ଦେଇ କହୁଅଛନ୍ତି-

**କିଂ ତୟା କ୍ରିୟତେ ଧେନ୍ୱା ଯା ନ ଦୋଗ୍‌ଧ୍ରୀ ନ ଗର୍ଭିଣୀ।**
**କୋଽର୍ଥଃ ପୁତ୍ରେଣ ଜାତେନ ଯୋ ନ ବିଦ୍ୱାନ ନ ଭକ୍ତିମାନ୍ ।।**

ଏହି ଶ୍ଳୋକଟିର ଅର୍ଥ ହେଲା, ଏପରି ଗାଈଟିଏ ଘରେ ରଖି ଲାଭ କ'ଣ, ଯଦି ସେ ଗାଈଟି କେବେ ବି ଗର୍ଭବତୀ ହେଉ ନାହିଁ ଓ ଦୁଗ୍ଧବତୀ ହେଉ ନାହିଁ ?

ସେହିପରି, ଏପରି ପୁତ୍ର ବା ପୁତ୍ରୀ କାହାର କି ଉପକାର କରେ, ଯେ କି ବିଦ୍ୱାନ ନୁହଁ ଅର୍ଥାତ୍ ଯାହାର କିଛି ଜ୍ଞାନ ନାହିଁ, ଯେ କିଛି ପ୍ରକାର ବିଦ୍ୟା ଅର୍ଜନ କରି ନାହିଁ, ଏବଂ ଯେ ମଧ୍ୟ ଧର୍ମାଚାରୀ ନୁହେଁ ?

ପାଠକେ ! ଚାଣକ୍ୟ ପଣ୍ଡିତଙ୍କର ଏହି ସବୁ ଶ୍ଳୋକ ପଢ଼ି କେହି ଯେପରି ନ ଭାବନ୍ତି ଯେ, ଆଚାର୍ଯ୍ୟ ଚାଣକ୍ୟ ଜୀବନକୁ କେବଳ ଲାଭ-କ୍ଷତି ଦୃଷ୍ଟିରୁ ଦେଖୁଛନ୍ତି । ପୁଅ ଝିଅମାନେ ମୂର୍ଖ, ଅଧର୍ମାଚାରୀ ଓ ନିଷ୍କର୍ମା ହେବା ନିଶ୍ଚୟ ଦୁଃଖଦାୟକ । ତା'

ହେଲେ ବି କେହି ପିତାମାତା କ'ଣ ସେମାନଙ୍କର ଏଭଳି ପୁଅଝିଅଙ୍କୁ ଭଲ ନ ପାଇ ସ୍ନେହ ନ କରି ରହିପାରନ୍ତି ?

ଏହା ନିତାନ୍ତ ସତ କଥା ଯେ ମୂର୍ଖ, ନିଷ୍କର୍ମା ଓ ଅଧର୍ମାଚାରୀ ପିଲାଙ୍କ ଉପରେ ପିତାମାତା କେବେ ସନ୍ତୁଷ୍ଟ ନ ଥାନ୍ତି । କିନ୍ତୁ ସେମାନଙ୍କ ସ୍ନେହ କମିଯାଏନା । ବରଂ ଅନ୍ୟ ପକ୍ଷରେ ସେହି ପିତାମାତାଙ୍କର ଏଭଳି ପିଲାଙ୍କ ଉପରେ ସ୍ନେହ, ସେମାନଙ୍କୁ ଗଭୀର ଦୁଃଖ ଦେଇଥାଏ ଓ ସେମାନଙ୍କ ଅନ୍ତରକୁ ନିତ୍ୟ ଦଗ୍ଧ କରୁଥାଏ ।



## ୭୧. ... ବିଦ୍ୟା ଗୁପ୍ତଂ ଧନଂ ସ୍ମୃତମ୍

ଚାଣକ୍ୟ ପଣ୍ଡିତଙ୍କ ଶ୍ଳୋକଟି ହେଲା-

**କାମଧେନୁଗୁଣା ବିଦ୍ୟା ହ୍ୟକାଳେ ଫଳଦାୟିନୀ।**
**ପ୍ରବାସେ ମାତୃସଦୃଶୀ ବିଦ୍ୟା ଗୁପ୍ତଂ ଧନଂ ସ୍ମୃତମ୍ ।। (୪/୫)**

ଅର୍ଥାତ୍, ବିଦ୍ୟା ହେଉଛି କାମଧେନୁ ସଦୃଶ । କାରଣ ଅସମୟରେ ମଧ୍ୟ ଏହା ସୁଫଳ ପ୍ରଦାନ କରିଥାଏ । ଆଉ ମଧ୍ୟ ବିଦେଶରେ ଥିବାବେଳେ ଏହି ବିଦ୍ୟା ହିଁ ମାତାଙ୍କସଦୃଶ ଆମକୁ ରକ୍ଷାକରିଥାଏ । ତେଣୁ ବିଦ୍ୟା ଆପାତତଃ ଧନସଦୃଶ ମନେ ନ ହେଲେ ବି, ଏହା ନିଶ୍ଚୟ 'ଗୁପ୍ତଧନ' ରୂପେ ବିବେଚିତ ହେବା ଉଚିତ ।

ବର୍ତ୍ତମାନ ଦେଖାଯାଉ, 'ବିଦ୍ୟା' କ'ଣ ! ଶାସ୍ତ୍ରରେ କୁହାଯାଇଛି- "ସା ବିଦ୍ୟା ଯା ବିମୁକ୍ତୟେ।" ଅର୍ଥାତ୍ ବିଦ୍ୟା ତାକୁଇ କୁହାଯାଏ, ଯାହା ତୁମକୁ ମୁକ୍ତ କରେ । ଏହି 'ମୁକ୍ତ କରିବା' ଅର୍ଥ କ'ଣ ? ଏଠାରେ ମୁକ୍ତହେବା ଅର୍ଥ, ଅଜ୍ଞାନରୁ ମୁକ୍ତ ହେବା, ବିପଦରୁ ମୁକ୍ତ ହେବା, ଅଭାବ ଓ ଦାରିଦ୍ର୍ୟରୁ ମୁକ୍ତ ହେବା ଏବଂ ନାନାବିଧ ପାପ ଓ ଅପକର୍ମରୁ ମୁକ୍ତ ହେବା। ଏହି ଦୃଷ୍ଟିରୁ ଦେଖିଲେ ମନୁଷ୍ୟପକ୍ଷରେ ବିଦ୍ୟା ଅର୍ଜନ କେତେ ଆବଶ୍ୟକ ତାହା କଳନା କରିହେବ ନାହିଁ। ମୋଟାମୋଟି ବିଦ୍ୟା ହେଲା ଜ୍ଞାନ। ଏବଂ ଏହି ଜ୍ଞାନ ହେଲା ଦୁଇ ପ୍ରକାର। ତତ୍ତ୍ୱଜ୍ଞାନ ଏବଂ ବ୍ୟାବହାରିକ ଜ୍ଞାନ। ବଞ୍ଚିବା ପାଇଁ ଏବଂ ଭଲ ଭାବେ ବଞ୍ଚିବା ପାଇଁ ଏହି ଜ୍ଞାନ ନିତାନ୍ତ ଆବଶ୍ୟକ । ଚାଷ କରିବାଠାରୁ ଶାସନ କରିବା ପର୍ଯ୍ୟନ୍ତ, ପୌରୋହିତ୍ୟ କରିବାଠାରୁ ଯୁଦ୍ଧ କରିବା ପର୍ଯ୍ୟନ୍ତ ବିଦ୍ୟାର ଦିଗ୍‌ବଳୟ ଖୁବ୍ ବିସ୍ତୃତ। ଆମର ପାର୍ଥିବ ଜୀବନଟିକୁ ଭଲଭାବେ ବଞ୍ଚିବା ପାଇଁ ଆମକୁ ନାନା ବିଦ୍ୟା ଶିକ୍ଷା କରିବାକୁ ପଡ଼େ। ସେହିପରି ମଧ୍ୟ ଆମର ଆତ୍ମାର ବିକାଶ ପାଇଁ ଆମକୁ ବହୁବିଧ ଧର୍ମଜ୍ଞାନ ଓ ନୀତିଜ୍ଞାନ ଅର୍ଜନ କରିବାକୁ

ପଡ଼େ। ପାଣିରେ ନୌକା ଚଳାଇବା ପାଇଁ ଏକପ୍ରକାର ବିଦ୍ୟା ଦରକାର, ସ୍ଥଳଭାଗରେ କାର, ବସ ଚଳାଇବା ପାଇଁ ଏକପ୍ରକାର ବିଦ୍ୟା ଦରକାର ଓ ଆକାଶରେ ବ୍ୟୋମଯାନ ଚଳାଇବା ପାଇଁ ମଧ୍ୟ ଆଉ ଏକପ୍ରକାର ବିଦ୍ୟା ଶିକ୍ଷା କରିବା ଦରକାର।

ମୋଟ କଥା ହେଲା, ମଣିଷକୁ ବଞ୍ଚିବା ପାଇଁ ଧନ ଅର୍ଜନ କରିବାକୁ ପଡ଼ିବ । ଏବଂ ସେହି ଧନ ଅର୍ଜନ ପାଇଁ ବିବିଧ ବିଦ୍ୟା ମଧ୍ୟ ଶିକ୍ଷାକରିବାକୁ ପଡ଼ିବ। ସେହିପରି ମନୁଷ୍ୟକୁ ମଣିଷଭଳି ବଞ୍ଚିବା ପାଇଁ ଧର୍ମ ଅର୍ଜନ କରିବାକୁ ପଡ଼ିବ ଏବଂ ସେହି ଧର୍ମ ଅର୍ଜନ ପାଇଁ ମଧ୍ୟ ତାକୁ ବହୁ ବିଦ୍ୟା ଅଧ୍ୟୟନ କରିବାକୁ ପଡ଼ିବ। ସେ ଦୃଷ୍ଟିରୁ ମଣିଷ ଜୀବନରେ ବିଦ୍ୟା ହେଲା ମହାଧନସଦୃଶ। ଯେଉଁ ବ୍ୟକ୍ତି ଯେକୌଣସି ବିଦ୍ୟା ଜାଣିଛି, ତାକୁ ଧନ ଅର୍ଜନ କରବାକୁ କଷ୍ଟ ହୁଏ ନାହିଁ। ସେଥିପାଇଁ ଆମର ଭକ୍ତକବି ମଧୁସୂଦନ ରାଓ ଆମକୁ ବାଲ୍ୟକାଳରୁ ବିଦ୍ୟାକୁ ମହାଧନ ଅର୍ଜନ କରିବା ଭଳି କଠିନ ପରିଶ୍ରମ କରି ଅର୍ଜନ କରିବାକୁ କହିଛନ୍ତି : "ବିଦ୍ୟା ଅଟଇ ମହାଧନ-ବାଳକେ କର ଉପାର୍ଜନ ।"

ଚାଣକ୍ୟ ପଣ୍ଡିତେ ଏହି ବିଦ୍ୟାକୁ 'ଗୁପ୍ତଧନ' ବୋଲି କହୁଛନ୍ତି ଓ ଏହା କାମଧେନୁସଦୃଶ ଓ ମାତାସଦୃଶ ବୋଲି ମଧ୍ୟ କହୁଛନ୍ତି। କାମଧେନୁ ହେଲା ସେହି ସ୍ୱର୍ଗୀୟ ଧେନୁ ବା ଗାଇ ଯେ କି ତା'ର ସେବାକାରୀର ସବୁପ୍ରକାର ମନୋବାଞ୍ଛା ପୂରଣ କରେ। ବିଦ୍ୟା ମଧ୍ୟ ସେହିପରି ଆମର ମନସ୍କାମନା ପୂର୍ଣ୍ଣ କରିଥାଏ। କୌଣସି ବିଦ୍ୟା ଜାଣି ନ ଥିବା ବ୍ୟକ୍ତି ଜୀବନରେ କିଛି ଲାଭ କରିପାରେ ନାହିଁ। ଯାହା ପାଖେ କିଛି ନା କିଛି ବିଦ୍ୟା ଅଛି ବା ତାକୁ ଜଣା ଅଛି, ସେହି ବିଦ୍ୟା ତାକୁ ଅସମୟରେ ରକ୍ଷା କରେ। ଅଭାବରୁ ରକ୍ଷା କରେ ଓ ବିପଦରୁ ମଧ୍ୟ ରକ୍ଷା କରେ।

ଆଉ ମଧ୍ୟ ଆମର ଜନ୍ମଦାୟିନୀ ମାତା ଯେପରି ଆମକୁ ବାଲ୍ୟକାଳରେ ପାଳନ କରିଥାଏ ଏବଂ ଖାଦ୍ୟ ଖୁଆଇ ଆମକୁ ନିରାପଦରେ ରଖେ, ଏହି ବିଦ୍ୟା ମଧ୍ୟ ସେହିପରି ଆମକୁ ଦେଶବିଦେଶରେ ସବୁପ୍ରକାରେ ରକ୍ଷା କରିଥାଏ ।

ଏହିସବୁ କାରଣରୁ ଚାଣକ୍ୟ ପଣ୍ଡିତେ ବିଦ୍ୟାକୁ 'ଗୁପ୍ତଧନ' ବୋଲି କହୁଛନ୍ତି । ଗୁପ୍ତଧନ ହେଲା, ଯେଉଁ ଧନକୁ ମାଟି ତଳେ ବା ଆଉ ଯେଉଁଠି ଲୁଚାଇ ରଖାଯାଇଥାଏ । ଆବଶ୍ୟକବେଳେ ତାହା ଆମକୁ ସାହାଯ୍ୟ କରେ-ବିଦ୍ୟା ମଧ୍ୟ ସେହିପରି ଆମ ମନ ଭିତରେ ଗୁପ୍ତ ଭାବରେ ଥାଏ ଓ ଆବଶ୍ୟକବେଳେ ସାହାଯ୍ୟ କରେ । ତେଣୁ ବିଦ୍ୟା ଅବଶ୍ୟ ସମସ୍ତଙ୍କ ପକ୍ଷରେ ଅର୍ଜନୀୟ ।



# ୭୨. ଏକରୁ ପାଞ୍ଚ ପର୍ଯ୍ୟନ୍ତ

ମହାମତି ଚାଣକ୍ୟ ଗୋଟିଏ ଶ୍ଳୋକରେ ଏକରୁ ପାଞ୍ଚଜଣ ପର୍ଯ୍ୟନ୍ତ ମଣିଷ କ'ଣ କରିଥାନ୍ତି, ତାହା ଅଳ୍ପକରେ କହୁଛନ୍ତି ।

ଶ୍ଳୋକଟି ହେଲା-

**ଏକାକିନା ତପୋ ଦ୍ୱାଭ୍ୟାଂ ପଠନଂ ଗାୟନଂ ତ୍ରିଭିଃ ।**
**ଚତୁର୍ଭିର୍ଗମନଂ କ୍ଷେତ୍ରଂ ପଞ୍ଚଭିର୍ବହୁଭିର୍ରଣଃ ।। (୪/୧୨)**

ଅର୍ଥାତ୍, ଜଣେ ବ୍ୟକ୍ତି ଯଦି ତପ ଆଚରଣ କରିବାକୁ ଚାହେଁ, ତେବେ ତାକୁ ଏକୁଟିଆ ସେହି କର୍ମରେ ନିୟୋଜିତ ହେବାକୁ ହେବ। କାରଣ ତପ ଏକ ନିର୍ଜନ ସ୍ଥାନରେ ଏକାକୀ ନୀରବରେ କରିବାକୁ ହୁଏ। ଏକରୁ ଅଧିକ ହେଲେ ତପସ୍ୟାରେ ବିଘ୍ନ ଆସେ ଓ ତହିଁରେ ଆଦୌ ଏକାଗ୍ରତା ଆସେ ନାହିଁ। ତେଣୁ ତପସ୍ୱୀମାନେ ଏକାକୀ ଅରଣ୍ୟରେ କୁଟୀର ରଚନା କରି ତପସ୍ୟା କରିଥାନ୍ତି।

ସେହିପରି କୌଣସି ପଠନ, ଅଧ୍ୟୟନ ଓ ଗବେଷଣାଦି କରିବାକୁ ହେଲେ ଦୁଇଜଣ ମିଶି ଏକାଠି ତାହା କରିବା ଉଚିତ । ଦୁଇଜଣରୁ କମ୍ ହେଲେ ଏକୁଟିଆ ଜଣେ ପଠନ କରିପାରେ । ମାତ୍ର ଦୁଇଜଣ ହେଲେ ଦୁହେଁ ମିଶି ସେହି ପାଠ୍ୟ ବିଷୟଟି ସମ୍ବନ୍ଧେ ଆଲୋଚନା କରିଥାନ୍ତି । ତା' ଫଳରେ ପଠନ କ୍ରିୟାଟି ସୁସମ୍ପନ୍ନ ହୁଏ ।

ସଙ୍ଗୀତ ଗାନ କରିବାକୁ ହେଲେ ଅନ୍ତତଃ ତିନିଜଣ ଏକତ୍ର ହେବା ଉଚିତ । କାରଣ ସଙ୍ଗୀତରେ ଜଣେ ଗାନ କଲେ ଅନ୍ୟ ଦୁଇଜଣ ବାଦ୍ୟ ବାଦନ କରିଥାନ୍ତି । ଜଣେ ନିଜ କଣ୍ଠସ୍ୱରରେ ଗୀତଟି ଗାନ କରେ, ଆଉ ଜଣେ ମର୍ଦ୍ଦଳ, ଗିନି ଇତ୍ୟାଦି ଦ୍ୱାରା ତାଳ ରକ୍ଷାକରନ୍ତି ଓ ତୃତୀୟଜଣକ ବୀଣା ବା କୌଣସି ତାରଯନ୍ତ୍ର ଦ୍ୱାରା ଗାୟକର ସ୍ୱରକୁ ଅନୁସରଣ କରି ସହାୟତା କରେ । ତେବେ ଚାଣକ୍ୟ ଏଠାରେ ସଙ୍ଗୀତରେ ତିନିଲୋକରୁ ବେଶି ହେବାକୁ ମନା କରୁ ନାହାନ୍ତି । ସେ କହୁଛନ୍ତି ସଙ୍ଗୀତ ପାଇଁ ଅନ୍ତତଃ ତିନିଜଣ ଲୋକ ଆବଶ୍ୟକ । ଗାନକାରୀ ଓ ଦୁଇଜଣ ବାଦକ । କୌଣସି ପବିତ୍ର ସ୍ଥାନକୁ ବା ତୀର୍ଥ ସ୍ଥାନକୁ ବା ଦେବକ୍ଷେତ୍ରକୁ ଯିବାକୁ ହେଲେ ଅନ୍ତତଃ ଚାରିଜଣ ଲୋକ ଏକତ୍ର ହୋଇ ଯିବା ଉଚିତ । କାରଣ କ୍ଷେତ୍ର ବା ତୀର୍ଥସ୍ଥଳୀ ବହୁତ ଦୂରରେ ଥାଏ । ସେଠାକୁ ସନ୍ନ୍ୟାସୀମାନେ ମଧ୍ୟ ଏକୁଟିଆ ଯାଆନ୍ତି ନାହିଁ । ବାଟରେ ଆପଦବିପଦ ମଧ୍ୟ ଥାଏ । କିନ୍ତୁ ଚାରିଜଣ-ବ୍ୟକ୍ତି ଯଦି ଭକ୍ତିଭାବ ନେଇ ତୀର୍ଥଗମନ କରନ୍ତି, ତେବେ ସେମାନଙ୍କ ଭିତରେ ଭଜନ କୀର୍ତ୍ତନ କରି କରି ଯିବା ମଧ୍ୟ ସମ୍ଭବ ହୁଏ ।

ଅବଶ୍ୟ, ଆମ ଓଡ଼ିଆରେ ଗୋଟିଏ ଭଜନ ଅଛି- "ଶ୍ରୀପୁରୁଷୋତ୍ତମ ଯିବା ମନ, ସାଙ୍ଗହୋଇ ଯିବା ପାଞ୍ଚଜଣ ।"

ମାତ୍ର ଚାଣକ୍ୟ ପଣ୍ଡିତେ ଏହି ସଂଖ୍ୟା ସମ୍ବନ୍ଧେ ଠିକ୍ ବିପରୀତ କଥା କହୁଛନ୍ତି । ତାଙ୍କ ମତରେ ପାଞ୍ଚଜଣ ମଣିଷ ଏକତ୍ର ହେଲେ, ସେମାନଙ୍କ ଭିତରେ କଳିକଜିଆ ଓ ମାଡ଼ଗୋଳ ଆରମ୍ଭ ହୋଇଯିବାର ଆଶଙ୍କା ଥାଏ ।

ଏ କଥା ସତ ଯେ ବହୁ ଲୋକ ଏକତ୍ର ହେଲେ ସେମାନଙ୍କ ମଧ୍ୟରେ ନାନାଦି କଥାରେ ମତଭେଦ ହୁଏ, ମତଭେଦ ହେଉ ହେଉ ମନାନ୍ତର ହୋଇଯାଏ ଏବଂ ମନାନ୍ତର ଶେଷ ପର୍ଯ୍ୟନ୍ତ ମରାମରି ହଣାହଣି ପର୍ଯ୍ୟନ୍ତ ଯାଏ । ଭାଗବତରେ ମଧ୍ୟ ଅଛି, 'ଯହିଁ ବହୁତ ଜନ ମିଳି। ଅବଶ୍ୟ ଉପୁଜଇ କଳି ॥'

ବହୁତ ଲୋକ ଏକାଠି ହେଲେ ଅନର୍ଥ ହୁଏ, ଏକଥା ନ କହି ଚାଣକ୍ୟ ପଣ୍ଡିତେ ପାଞ୍ଚଜଣ ଏକାଠି ହେଲେ କଳହ ଓ ମରାମରି ହେବା ନିଶ୍ଚିତ ବୋଲି କାହିଁକି କହିଲେ ?

ଅନ୍ୟପକ୍ଷରେ ପାଞ୍ଚଜଣ ବିଶିଷ୍ଟ ଓ ସଜ୍ଜନଙ୍କୁ ନେଇ ପଞ୍ଚାୟତ ଗଠିତ ହୁଏ । ପଞ୍ଚାୟତରେ ନ୍ୟାୟ ଅନ୍ୟାୟ ବିଚାର କରୁଥିବା ପାଞ୍ଚଜଣ ବ୍ୟକ୍ତିଙ୍କୁ 'ପଞ୍ଚପରମେଶ୍ୱର' ବୋଲି ମଧ୍ୟ ମାନ୍ୟ କରାଯାଏ । ଆଉ ମଧ୍ୟ ଆମର ସନାତନ ଧର୍ମରେ ଗଣେଶ, ବିଷ୍ଣୁ, ଶିବ, ଦୁର୍ଗା ଓ ସୂର୍ଯ୍ୟ ବା ଧର୍ମଦେବଙ୍କୁ ଏକ ପରମେଶ୍ୱର ବୋଲି ମାନ୍ୟତା ଦିଆଯାଇଛି । ତେଣୁ ଆମ ସଂସ୍କୃତିରେ ପାଞ୍ଚ ସଂଖ୍ୟାଟି ଖରାପ ନୁହଁ । ତେବେ ବୁଦ୍ଧିମାନ୍ ଚାଣକ୍ୟ ପାଞ୍ଚ ସଂଖ୍ୟାଟିକୁ ଖରାପ ବୋଲି କିପରି କହୁଛନ୍ତି ? ବୋଧହୁଏ ଚାଣକ୍ୟ ପାଞ୍ଚ ସଂଖ୍ୟାଟିକୁ 'ବହୁଜନ' ଅର୍ଥରେ ବ୍ୟବହାର କରିଛନ୍ତି ।



## ୭୩. ... ଅଗ୍ନି ନ ହେଲେ ବି କରେ ଦହନ

ଏ ପୃଥିବୀରେ ଜନ୍ମ ହେଲେ ମଣିଷକୁ ସୁଖ ଦୁଃଖ ଉଭୟ ଭୋଗିବାକୁ ପଡ଼େ । ଯଦି ଜୀବନରେ କିଛିମାତ୍ରାରେ ସୁଖ ନ ଥା'ନ୍ତା, ତେବେ ମଣିଷ ବଞ୍ଚିବାକୁ ଇଚ୍ଛା କରନ୍ତା ନାହିଁ । ତେବେ ସୁଖ ସଙ୍ଗେ ସଙ୍ଗେ ଦୁଃଖ ଅଛି ଓ ଦୁଃଖ ସଙ୍ଗେ ସଙ୍ଗେ ସୁଖ ମଧ୍ୟ ଅଛି । ମଣିଷ ଜୀବନରେ ଏହା ଦିନ ରାତି ଭଳି ଆସୁଥାଏ, ଯାଉଥାଏ । ଚକ ଭଳି ଘୂରୁଥାନ୍ତି ସୁଖ ଆଉ ଦୁଃଖ ।

କିନ୍ତୁ ଜଣେ ଜଣେ ଦୁର୍ଭାଗା ମଣିଷ ଥାଆନ୍ତି ଯେଉଁମାନେ ସାରାଜୀବନ ଦୁଃଖ ଭୋଗନ୍ତି ଅଧିକ । ତଥାପି ବଞ୍ଚିବାର ମୋହ ଅନ୍ୟମାନଙ୍କ ଭଳି ସେମାନଙ୍କୁ ଲାଗିଥାଏ ।

ମହାଜ୍ଞାନୀ ଚାଣକ୍ୟ କହୁଛନ୍ତି-କାହା କାହାର ଦୁର୍ଭାଗ୍ୟ ତାକୁ ମହାଦୁଃଖରେ ପକାଇଥାଏ । ସେ ଦୁଃଖ ଅଗ୍ନିଭଳି ସେଇ ଦୁର୍ଭାଗା ମଣିଷକୁ ଦଗ୍ଧକରୁଥାଏ । ସାଧାରଣତଃ ଦୁଃଖ ତିନି ପ୍ରକାର । ଶାରୀରିକ ଦୁଃଖ, ରୋଗ ଓ ବାର୍ଦ୍ଧକ୍ୟ ଯୋଗୁଁ ଭୋଗିବାକୁ ପଡ଼ିଥାଏ । ଜ୍ଞାତି ବନ୍ଧୁର ବିୟୋଗ, ଧନହାନି, ମାନହାନି ପ୍ରଭୃତି ମାନସିକ ଦୁଃଖ ମଧ୍ୟ ରହିଛି । କିନ୍ତୁ ଏପରି ସବୁ ଦୁଃଖ ଅଛି ଯାହା ଦୁର୍ଭାଗା ବ୍ୟକ୍ତିର ମନକୁ ତ ଦଗ୍ଧ କରୁଥାଏ, ତା'ର ଶରୀରକୁ ମଧ୍ୟ ଅଗ୍ନିଭଳି ଦଗ୍ଧ ବା ଦହନ କରୁଥାଏ । ସେଗୁଡ଼ିକ ହେଲେ, ଯଦି ଜଣକର ଗ୍ରାମବାସୀମାନେ ମୂର୍ଖ, ଚୋର, ଡକାୟତ, ଅଧର୍ମ ଚାରୀ, ହିଂସୁକ ଓ ବଦମାସ ହୋଇଥାନ୍ତି, ସେପରି ଗ୍ରାମବାସୀଙ୍କ ସହିତ ଶିଷ୍ଟ, ଭଦ୍ର ଓ ଜ୍ଞାନୀ ଲୋକଟିଏ କେବେ ଶାନ୍ତିରେ ରହିପାରନ୍ତି ନାହିଁ । ଅନେକ ସାଧୁ ବ୍ୟକ୍ତି ଏପରି ଗ୍ରାମରୁ ଭିଟାମାଟିର ମୋହ ତୁଟାଇ ପଳାଇଯାନ୍ତି ଓ ଅନ୍ୟ ଗ୍ରାମରେ ବାସ କରନ୍ତି । ତା' ନ ହେଲେ ଯେତେଦିନ ସେମାନେ ସେ ଗ୍ରାମରେ ଥାଆନ୍ତି ସେତେ ଦିନ ସେମାନେ ଦୈହିକ ଦହନର ଯନ୍ତ୍ରଣା ଭୋଗୁଥାନ୍ତି ।

ଦ୍ୱିତୀୟ ଦହନକାରୀ ଦୁଃଖଟି ହେଲା, ଜଣେ ମର୍ଯ୍ୟାଦାସମ୍ପନ୍ନ ଲୋକକୁ ଯଦି ନୀଚକୁଳରେ ଜାତ ଅମଣିଷମାନଙ୍କର ସେବା କରିବାକୁ ପଡ଼େ ବା ସେମାନଙ୍କ ପାଖେ ଚାକିରି କରିବାକୁ ପଡ଼େ, ନୀଚମନା ଲୋକମାନଙ୍କ କଦର୍ଯ୍ୟ ବ୍ୟବହାର ମର୍ଯ୍ୟାଦାବୋଧ ଥିବା ମଣିଷର ମନକୁ କେବଳ ଦଗ୍ଧ କରେ ନାହିଁ, ତା'ର ଦେହକୁ ମଧ୍ୟ ଦଗ୍ଧ କରିଥାଏ । ଧର୍ମାତ୍ମା ଓ ଅଭିଜାତ ବଂଶରେ ଜନ୍ମହୋଇଥିବା ପାଣ୍ଡବମାନେ ପତ୍ନୀ ଦ୍ରୌପଦୀଙ୍କ ସହିତ ଛଦ୍ମବେଶରେ ବିରାଟ ରାଜାଙ୍କ ଘରେ ଚାକିରି କରିବାକୁ ବାଧ୍ୟ ହୋଇଥିଲେ । ସେହି କେତେଦିନ ବିରାଟ ରାଜାଙ୍କ ଶାଳକ କୀଚକ ସେମାନଙ୍କ ସହ କିପରି ଦୁର୍ବ୍ୟବହାର କରିଥିଲା ତାହା ସମସ୍ତେ ଜାଣନ୍ତି । ସେମାନେ ମଧ୍ୟ ସେଇ କେତେଦିନ ଅଗ୍ନିଦହନର ଜ୍ୱାଳା ଅନୁଭବ କରୁଥିଲେ । ଆଜିକାଲି ମଧ୍ୟ ଆତ୍ମମର୍ଯ୍ୟାଦାସମ୍ପନ୍ନ ଅନେକ ସାଧୁ, କର୍ତ୍ତବ୍ୟନିଷ୍ଠ ସରକାରୀ କର୍ମଚାରୀ ସେମାନଙ୍କ ଉପରିସ୍ଥ ନୀଚମନା ହାକିମ ବା ମନ୍ତ୍ରୀଙ୍କ ଅଧୀନରେ କାମ କଲାବେଳେ ସେହି ଦହନ ଅନୁଭବ କରନ୍ତି ।

ସେହିପରି କଦର୍ଯ୍ୟ ଭୋଜନ ବା ବିଷାକ୍ତ ଖାଦ୍ୟ ମଧ୍ୟ ମଣିଷର ଦେହକୁ ରୋଗଗ୍ରସ୍ତ କରି ଦଗ୍ଧ କରିଥାଏ ଏବଂ ନିଜର ବିବାହିତା ଭାର୍ଯ୍ୟା ମଧ୍ୟ ଯଦି କ୍ରୋଧମୁଖୀ ହୋଇଥାନ୍ତି ଓ ସର୍ବଦା ସ୍ୱାମୀ ସଙ୍ଗେ ଓ ପରିବାରର ଅନ୍ୟମାନଙ୍କ ସଙ୍ଗେ କଳିକଜିଆ

କରୁଥାନ୍ତି, ତେବେ ସେ ସ୍ୱାମୀ ବା ଗୃହସ୍ଥର ମଧ ମନ ପୋଡ଼ିଯିବା ସହିତ ଦେହ ମଧ ସନ୍ତାପର ଅଗ୍ନିରେ ନିତ୍ୟ ଜଳୁଥାଏ ।

ସେହିପରି ଯେଉଁମାନଙ୍କର ପୁତ୍ରମାନେ ମୂର୍ଖ ଓ ହୁଣ୍ଡାଗୁଣ୍ଡା ହୋଇଥାନ୍ତି ଏବଂ କନ୍ୟା ବିବାହର ବର୍ଷଟିଏ ନ ପୂରୁଣୁ ବିଧବା ହୋଇ ଆସି ବାପଘରେ ରହିଥାଏ- ତେବେ ସେଇ ପିତାମାତାଙ୍କର ମନ ତ ନିତ୍ୟ ସନ୍ତାପର ଅଗ୍ନିରେ ପୋଡ଼ିଯାଉଥାଏ- ସେମାନଙ୍କ ଦେହ ମଧ ବିନା ଅଗ୍ନିରେ ନିତ୍ୟ ଦଗ୍ଧ ହେଲାଭଳି ଲାଗୁଥାଏ ।

ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଏହି ଛଅ ପ୍ରକାର ଦୁର୍ଭାଗ୍ୟ ଅଗ୍ନି ନ ହେଲେ ମଧ ଦୁର୍ଭାଗା ଲୋକର ଶରୀରକୁ ନିତ୍ୟ ଦଗ୍ଧ କରୁଥାଏ ।

ଶ୍ଳୋକଟି ହେଲା-

କୁଗ୍ରାମବାସଃ କୁଳହୀନସେବା
କୁଭୋଜନଂ କ୍ରୋଧମୁଖୀ ଚ ଭାର୍ଯ୍ୟା ।
ପୁତ୍ରଶ୍ଚ ମୂର୍ଖୋ ବିଧବା ଚ କନ୍ୟା
ବିନାଽଗ୍ନିନା ଷଟ୍ ପ୍ରଦହନ୍ତି କାୟମ୍ ।। (୪/୮)



## ୭୪. କିଏ କାହାକୁ ଈର୍ଷା କରେ ?

ମୂର୍ଖାଣାଂ ପଣ୍ଡିତା ଦ୍ୱେଷ୍ୟା ଅଧନାନାଂ ମହାଧନାଃ ।
ବାରାଽଙ୍ଗନାନାଃ କୁଳସ୍ତ୍ରୀଣାଂ ଦୁର୍ଭଗାନାଂ ଚ ସୁର୍ଭଗାଃ ।।

ଏହି ଶ୍ଳୋକରେ ଚାଣକ୍ୟ ପଣ୍ଡିତେ ଗୋଟିଏ ମନସ୍ତାତ୍ତ୍ୱିକ ସତ୍ୟକୁ କେତୋଟି ଉଦାହରଣ ଦେଇ ତା'ର ବାସ୍ତବତା ପ୍ରମାଣିତ କରିଛନ୍ତି । ପ୍ରଥମଟି ହେଲା, ମୂର୍ଖ ବ୍ୟକ୍ତିମାନେ ଜ୍ଞାନୀ ଓ ପଣ୍ଡିତ ଲୋକଙ୍କୁ ଈର୍ଷା କରନ୍ତି । ଧନହୀନ ବ୍ୟକ୍ତିମାନେ ଧନବନ୍ତ ଲୋକଙ୍କୁ ଈର୍ଷା କରନ୍ତି । ବେଶ୍ୟା ବା ପରପୁରୁଷବିଳାସିନୀମାନେ କୁଳବତୀ ପତିପରାୟଣା ସତୀ ସ୍ତ୍ରୀ ଲୋକମାନଙ୍କୁ ଈର୍ଷା କରନ୍ତି, ଏବଂ ଦୁର୍ଭଗା ବା ଭାଗ୍ୟହୀନ ଲୋକେ ଭାଗ୍ୟବାନ୍ ଲୋକଙ୍କୁ ଈର୍ଷା କରନ୍ତି ।

ମହାପ୍ରାଜ୍ଞ ଚାଣକ୍ୟଙ୍କର ଏହି ଉଦାହରଣଗୁଡ଼ିକ ଖୁବ୍ ବାସ୍ତବ । କିନ୍ତୁ ସେ 'ଈର୍ଷା' ଶବ୍ଦ ବ୍ୟବହାର ନ କରି 'ଦ୍ୱେଷ' ଶବ୍ଦ ବ୍ୟବହାର କରିଛନ୍ତି । ବର୍ତ୍ତମାନ

ଆମକୁ 'ଈର୍ଷା' ଓ 'ଦ୍ୱେଷ' ଭିତରେ ପ୍ରଭେଦ ଓ ସାମ୍ୟ କ'ଣ ଅଛି ତାହା ଆଲୋଚନା କରିବାକୁ ପଡ଼ିବ । ଆମର ଧାର୍ମିକ ବା ନୈତିକ ମନସ୍ତତ୍ତ୍ୱ ଦୃଷ୍ଟିରୁ ପ୍ରତି ମଣିଷର ଜୀବନ ପଥରେ ଛଅଟି ରିପୁ ବା ଶତ୍ରୁ ଆବିର୍ଭୂତ ହୁଅନ୍ତି । ସେମାନେ ହେଲେ, କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ । ଏଇ ଛଅଟି ଶତ୍ରୁ ଆମ ବାହାରେ ନ ଥାଆନ୍ତି । ସେମାନେ ଆମ ନିଜ ଭିତରେ ଥାଆନ୍ତି । ଆମ ପ୍ରକୃତି ଭିତରେ ଅବଚେତନ ମନରେ ଲୁଚିକରି ରହିଥାନ୍ତି । ଆମେ ଯଦି ଆମ ପ୍ରକୃତି ଅନ୍ତର୍ଗତ ଏହି ଶତ୍ରୁମାନଙ୍କୁ ମୁକାବିଲା ନ କରି ସେମାନଙ୍କ ଦ୍ୱାରା ଆକ୍ରାନ୍ତ ହେବାପାଇଁ ନିଜକୁ ଛାଡ଼ିଦେଉ, ତେବେ ଆମର ମନୁଷ୍ୟ ଜୀବନ ନଷ୍ଟ ହୋଇଯିବ । ଆମେ ମାନବ ନ ହୋଇ ଦାନବ ହୋଇଯିବା । ଖ୍ରୀଷ୍ଟିଆନ୍ ଓ ଇସ୍‌ଲାମ୍ ଧର୍ମରେ ଯେଉଁ ଶଇତାନ କଥା କୁହାଯାଇଛି ଓ ବୌଦ୍ଧ ଧର୍ମରେ ଯେଉଁ 'ମାର'ମାନଙ୍କ କଥା କୁହାଯାଇଛି ସେମାନେ ଏଇ ଷଡ଼ରିପୁଙ୍କର ମହାବଳଶାଳୀ ପିତୃପୁରୁଷ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ମଣିଷର ଧର୍ମପଥରେ ଏଇସବୁ ରିପୁ ମହାବିଘ୍ନ ଘଟାଇଥାନ୍ତି । ଚାଣକ୍ୟ ପଣ୍ଡିତଙ୍କ କଥିତ ଏଇ 'ଦ୍ୱେଷ' ଭାବଟି ସ୍ନେହ, ପ୍ରେମ ଓ କରୁଣା ଭାବର ବିକୃତି ବା ବିପରୀତ । ମନ୍ଦ ପ୍ରକୃତିର ଲୋକମାନେ ଏଇ କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟରେ ବୁଡ଼ିକରି ଥାଆନ୍ତି । 'ଦ୍ୱେଷ' ଭାବର ମୂଳରେ ଥାଏ ହୀନମ୍ମନ୍ୟତା ଓ ଈର୍ଷା । ନିଜଠାରୁ ଗୁଣବାନ୍, ରୂପବାନ୍, ସମୃଦ୍ଧିବନ୍ତ ଲୋକମାନଙ୍କୁ ପ୍ରଶଂସା ଓ ସମ୍ମାନ ନ ଦେଖାଇ ଯେଉଁ ଲୋକ ସେମାନଙ୍କୁ ଈର୍ଷା କରେ ସେ ଗୋଟାଏ ନୀଚ ଓ ଅଧମ ବ୍ୟକ୍ତି । କିନ୍ତୁ ଯେଉଁ ବ୍ୟକ୍ତି ଈର୍ଷା କରୁ କରୁ ଦ୍ୱେଷ କରିପକାଏ ସେ କେବଳ ଅଧମ ନୁହଁ, ସେ ଗୋଟାଏ ଅସୁର, ରାକ୍ଷସ ବା ପିଶାଚରେ ପରିଣତ ହୋଇଯାଏ । 'ଦ୍ୱେଷ' ଅର୍ଥ ଅନ୍ୟ ପ୍ରତି ଈର୍ଷାତୁର ବା ଅସହିଷ୍ଣୁ ହୋଇ ତା'ର ଅନିଷ୍ଟ କରିବା କିମ୍ବା; ତା'ର ଅନିଷ୍ଟ କାମନା କରିବା । ଈର୍ଷାରେ ହିଂସାଭାବ ନ ଥାଏ । କିନ୍ତୁ ଦ୍ୱେଷରେ ହିଂସାଭାବ ଆସିଯାଏ । ଦ୍ୱେଷ ଭାବରେ ଆକ୍ରାନ୍ତ ମଣିଷ ହତ୍ୟା ବି କରିପାରେ ଓ ନାନାଦି ବୀଭତ୍ସ କାଣ୍ଡକାରଖାନା ମଧ୍ୟ କରିପାରେ ।

ମହାଭାରତର ଖଳନାୟକ ଦୁର୍ଯ୍ୟୋଧନ ଏହି ନାରକୀୟ ଦ୍ୱେଷ ଭାବର ଏକ ମୂର୍ତ୍ତିମନ୍ତ ପ୍ରତୀକ ଚରିତ୍ର । ଧର୍ମପ୍ରାଣ, ନୀତିବାନ୍, କୀର୍ତ୍ତିମାନ୍ ଓ ସମସ୍ତଙ୍କର ପ୍ରିୟ ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ, ସହଦେବାଦି ପାଞ୍ଚଭାଇଙ୍କ ସୁନାମ ଓ ବଳବୀର୍ଯ୍ୟ ଦେଖି ସେମାନଙ୍କ ପ୍ରତି ସର୍ବଦା ଈର୍ଷାକାତର ହେଉଥିଲା । ଏଇ ଈର୍ଷା ତା'ର ମନରେ ବଢ଼ି ବଢ଼ି ଶେଷରେ ଏଇ ପୈଶାଚିକ ଦ୍ୱେଷ ଭାବରେ ପରିଣତ ହେଲା । ଫଳରେ

ତା'ର ପରିଣତିସ୍ୱରୂପ କି ଭୟଙ୍କର କାଣ୍ଡ ସବୁ ଘଟିଲା ତାହା ସମସ୍ତେ ଜାଣନ୍ତି । ଏଇ ଦ୍ୱେଷଭାବ କେବଳ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ହୋଇ ନ ଥାଏ । ଏହା ମଧ୍ୟ ଗ୍ରାମ ଗ୍ରାମ ମଧ୍ୟରେ, ଜାତି ଜାତି ମଧ୍ୟରେ, ସମ୍ପ୍ରଦାୟ ସମ୍ପ୍ରଦାୟ ଭିତରେ, ଏପରିକି ଦେଶ ଦେଶ ଭିତରେ ବି ହୋଇଥାଏ। ଏଇ ଦ୍ୱେଷଭାବରୁ ମହା ଅନର୍ଥ ସବୁ ଘଟିଥାଏ । କଳିକଜିଆ, ଦଙ୍ଗାହଙ୍ଗାମାଠାରୁ ଆରମ୍ଭ କରି ଯୁଦ୍ଧ ମହାଯୁଦ୍ଧ ମଧ୍ୟ ଏଇ ଦ୍ୱେଷଭାବରୁ ଘଟିଯାଏ । ତେଣୁ ସବୁ ଧର୍ମଶାସ୍ତ୍ରରେ ଓ ନୀତିଶାସ୍ତ୍ରରେ ଏହି ଦ୍ୱେଷରୂପୀ ମତ୍ସରୀ ଭାବକୁ ନିନ୍ଦା କରାଯାଇଛି ।

ପାଠକେ ! ଏଠି ଆହୁରି ଗୋଟିଏ କଥା ମଧ୍ୟ ଜାଣିବାକୁ ଅଛି। ଦ୍ୱେଷ କରୁଥିବା ବ୍ୟକ୍ତି କେବଳ ଅନ୍ୟର ଅନିଷ୍ଟ କରେ ନାହିଁ, ସେ ମଧ୍ୟ ନିଜର ଅନିଷ୍ଟ କରିବସେ। ତା'ର ଏଇ ବ୍ୟକ୍ତିଗତ ଦ୍ୱେଷଭାବ ଯୋଗୁଁ ତା'ର ବଂଶ ବୁଡ଼ିଯାଏ। ତା'ର ଦେଶ ବୁଡ଼ିଯାଏ। ତା'ର ସମାଜ ବୁଡ଼ିଯାଏ ଏବଂ ଶେଷରେ ସେ ନିଜେ ବି ବୁଡ଼ିଯାଏ।

ଦ୍ୱେଷକାରୀ ମଣିଷ ଶାନ୍ତିରେ ଖାଇପାରେ ନାହିଁ, ଶାନ୍ତିରେ ଶୋଇପାରେ ନାହିଁ ଏବଂ ତା'ର ସାରାଜୀବନ ତା' ଭିତରୁ ଉଦ୍‌ଭୂତ ଏଇ ଦ୍ୱେଷର ଅଗ୍ନିରେ ସର୍ବଦା ଦଗ୍ଧ ହେଉଥାଏ। ସେ ବଞ୍ଚିଥିଲେ ବି ରୋଗଗ୍ରସ୍ତ ମଣିଷର ଜ୍ୱାଳାଯନ୍ତ୍ରଣାକୁ ନେଇ ବଞ୍ଚିଥାଏ।



## ୭୫. ... ଇତି ଚିନ୍ତ୍ୟଂ ମୁହୁର୍ମୁହୁଃ

ଆମେ ଜାଣୁ ଯେ ମନୁଷ୍ୟ ଗୋଟିଏ ବୁଦ୍ଧିମାନ୍ ପ୍ରାଣୀ । ଅବଶ୍ୟ ମନୁଷ୍ୟ ବ୍ୟତୀତ ଅନ୍ୟ ପ୍ରାଣୀମାନଙ୍କ ମଧରେ ବି ବୁଦ୍ଧିମାନ୍ ପ୍ରାଣୀ ଅଛନ୍ତି, ଯଦିଓ ମନୁଷ୍ୟ ତୁଳନାରେ ତାହା କମ୍ । ସେହିପରି ମନୁଷ୍ୟମାନଙ୍କ ମଧରେ ବି ଅନେକ ମଣିଷ ଅଛନ୍ତି, ଯେଉଁମାନଙ୍କର ବୁଦ୍ଧି ଇତର ଶ୍ରେଣୀର ବୁଦ୍ଧିମାନ୍ ପ୍ରାଣୀଙ୍କ ବୁଦ୍ଧି ସହିତ ସମାନ ସ୍ତରୀୟ ବା ଟିକିଏ ଉଚ୍ଚରେ । ତେବେ ପ୍ରାଣୀମାନେ ଯେଉଁ ବୁଦ୍ଧିର ଅଧିକାରୀ ତାହା ତାଙ୍କର ବୋଧଶକ୍ତିରୁ ଜାତ ହୋଇଥାଏ । ପ୍ରାଣୀମାନେ ଚିନ୍ତା କରିପାରନ୍ତି ନାହିଁ। ସେମାନଙ୍କ ବୋଧଶକ୍ତି କିନ୍ତୁ ସବୁବେଳେ ସଜାଗ ଓ ଗ୍ରହଣଶୀଳ ଥାଏ। ଚବିଶ ଘଣ୍ଟା ପୂର୍ବରୁ ଘୋର ବର୍ଷା ବା ବାତ୍ୟା ପବନ ଆସୁଛି ବୋଲି ସେମାନେ ତାଙ୍କର ଦୈହିକ ବୋଧଶକ୍ତିରୁ ଜାଣିପାରନ୍ତି। କେତେକ ମଣିଷ ବି ଏହି ଦୈହିକ

ବୋଧଶକ୍ତି ପାଇଥାନ୍ତି । କେତେକ ମଣିଷ ଅଛନ୍ତି ଯେଉଁମାନେ ଝଡ଼ବାତ୍ୟା ଆସିବାପୂର୍ବରୁ ସେମାନଙ୍କ ବାମପଟ ମସ୍ତକରେ ଯନ୍ତ୍ରଣା ବୋଧ କରନ୍ତି ।

କିନ୍ତୁ ଚିନ୍ତା କରିବା ବା ମନନଶୀଳ ହେବା ଅଥବା ପ୍ରତ୍ୟେକ ବିଷୟକୁ ବିଶ୍ଳେଷଣ କରିବା ବା ସଂଶ୍ଳେଷଣ କରିବା ଏବଂ ବସ୍ତୁ ବସ୍ତୁ ମଧ୍ୟରେ ସାମ୍ୟ ବୈଷମ୍ୟ ବୁଝିପାରିବା ବା ବସ୍ତୁର ବିଭିନ୍ନ ବ୍ୟବହାର ଜାଣିବା ମନୁଷ୍ୟର ମନ ବୁଦ୍ଧିର ମନନଶୀଳତା ଭିତରୁ ଆସେ । ମଣିଷମାନେ କବିତା ଲେଖନ୍ତି, ସଙ୍ଗୀତ ଗାନ କରନ୍ତି, ନାଟକ କରନ୍ତି, ରାଜନୀତି କରନ୍ତି, ଦର୍ଶନ, ବିଜ୍ଞାନ, କଳା ଓ ଧର୍ମାଦି ବିଷୟ ଉପରେ ବୌଦ୍ଧିକ ଆଲୋଚନା ବା ଚିନ୍ତନ କରି ସେସବୁ ମଧ୍ୟରୁ ନୂତନ ସତ୍ୟ, ତତ୍ତ୍ୱ ଓ ତଥ୍ୟ ଆବିଷ୍କାର କରନ୍ତି । ଅନ୍ୟ ପ୍ରାଣୀଙ୍କ ସୀମିତ ବୁଦ୍ଧିପକ୍ଷରେ ଏହା ସମ୍ଭବ ନୁହେଁ । କିନ୍ତୁ ଇତର ପ୍ରାଣୀମାନଙ୍କ ଜୀବନ ମନୁଷ୍ୟର ଜୀବନ ପରି ଏତେ ଜଟିଳ ନୁହେଁ । ଏକ ପଶୁ ଜୀବନ ବଞ୍ଚିବା ପାଇଁ ମଧ୍ୟ ଏତେ ବୁଦ୍ଧିର ଆବଶ୍ୟକତା ନାହିଁ । ମାତ୍ର ମନୁଷ୍ୟର ଜୀବନ ସୀମିତ ନୁହେଁ । ସେ ପ୍ରକୃତିର ରହସ୍ୟ ଉଦ୍‌ଘାଟନ କରିବାକୁ ଚାହେଁ, ଭଗବାନ୍‌ଙ୍କୁ ଉପଲବ୍ଧି କରିବାକୁ ଚାହେଁ ଏବଂ ନିଜକୁ ମଧ୍ୟ ଜାଣିବାକୁ ଚାହେଁ । ତେଣୁ ମନୁଷ୍ୟକୁ ବହୁ ବିଷୟରେ ବହୁ ସମୟ ଚିନ୍ତାଶୀଳ ଓ ମନନଶୀଳ ହୋଇ ରହିବାକୁ ପଡ଼େ ।

ପାଠକେ ! ମହାପ୍ରାଜ୍ଞ ଚାଣକ୍ୟ ପଣ୍ଡିତଙ୍କର ଏ ସମ୍ବନ୍ଧେ ଉପାଦେୟ ଶ୍ଳୋକଟିଏ ଶୁଣନ୍ତୁ ।

**କଃ କାଳଃ କାନି ମିତ୍ରାଣି କୋ ଦେଶଃ କୌ ବ୍ୟୟାଽଽଗମୌ ।**
**କଶ୍ଚାଽହଂ କା ଚ ମେ ଶକ୍ତିରିତି ଚିନ୍ତ୍ୟଂ ମୁହୁର୍ମୁହୁଃ ।। (୪/୧୮)**

ଏ ଶ୍ଳୋକଟିର ଅର୍ଥ ହେଲା, କାଳ କ'ଣ ? ମିତ୍ର କିଏ ? ଦେଶ କିଏ ? ମୋର ଆୟ କେତେ ? ବ୍ୟୟ ମଧ୍ୟ କେତେ ? ମୁଁ ନିଜେ କ'ଣ ? ଏବଂ ମୋର ନିଜର ଶକ୍ତିସାମର୍ଥ୍ୟ କେତେ ? ଏସବୁ ବିଷୟରେ ମନୁଷ୍ୟ ବାରମ୍ବାର ଚିନ୍ତା କରିବା ଉଚିତ ।

ସତ କଥା । ପ୍ରତ୍ୟେକ ମଣିଷର ସ୍ଥାନ, କାଳ ଓ ପାତ୍ର ସମ୍ବନ୍ଧେ ସମ୍ୟକ୍ ଜ୍ଞାନ ରହିବା ଉଚିତ । ଜଣେ ଯୋଉ ସମୟରେ ଯାହା କରିବା କଥା କରିବା ଉଚିତ । ଅତୀତର ସବୁ କଥା ବର୍ତ୍ତମାନ ଚଳିବ ନାହିଁ । ବର୍ତ୍ତମାନ କାଳକୁ ଏମିତି ଭାବେ ବଞ୍ଚିବାକୁ ହେବ ଯେପରିକି ଆମର ଭବିଷ୍ୟତ୍ ମଙ୍ଗଳମୟ ହେବ । ଆଉ ଗୋଟିଏ କଥା ହେଲା, ତୁମେ ଯେଉଁ ସମୟରେ ବଞ୍ଚିଛ, ସେହି ସମୟର ରୀତି, ନୀତି,

ବ୍ୟବସ୍ଥା ଓ ଆବଶ୍ୟକତା କ'ଣ ତାହା ବୁଝିବା ଉଚିତ । ସେ ବିଷୟରେ ବାରମ୍ବାର ଚିନ୍ତା କରିବା ଉଚିତ । କୋଉ ସମୟରେ ଆମର କ'ଣ କରିବା ଉଚିତ, ସେ ସମ୍ବନ୍ଧେ ଠିକ୍ ଭାବେ ଚିନ୍ତା ନ କଲେ ଆମେ ଆମର ଜୀବନକୁ ଠିକ୍ ଭାବେ ବଞ୍ଚିପାରିବା ନାହିଁ ।

ସେହିପରି ଆମେ ଆମ ଜୀବନରେ ପ୍ରକୃତ ବନ୍ଧୁ କିଏ ଓ ପ୍ରକୃତ ଶତ୍ରୁ କିଏ, ତାହା ଠିକ୍ ଭାବେ ବୁଝିବା ଉଚିତ । ପ୍ରତି ମୁହୂର୍ତ୍ତରେ ଆମର ସେ ସମ୍ବନ୍ଧେ ସଚେତନ ହେବା ଉଚିତ । କାରଣ ବହୁବେଳେ ଆମର ଅନ୍ୟମନସ୍କତା ବା ଭୁଲମନସ୍କତା ଯୋଗୁଁ ଆମେ ଠିକ୍ ମିତ୍ର କିଏ ଜାଣି ନ ପାରି ଭୁଲ ମଣିଷଟିକୁ ମିତ୍ର ବୋଲି ଗ୍ରହଣ କରୁ ଏବଂ ସେହି ଦୁଷ୍ଟ ଆମର ଅନିଷ୍ଟ କରିଥାଏ ।

ଆଉ ଗୋଟିଏ କଥା ହେଲା, ଯୋଉ ଦେଶରେ ଆମେ ଅଛୁ ସେ ଦେଶଟିକୁ ଭଲ ଭାବେ ଚିହ୍ନିବା । ସେ ଦେଶର ଇତିହାସ, ଭୂଗୋଳ ଜାଣିବା, ସେ ଦେଶର ଭଲ ମଣିଷମାନଙ୍କୁ ଓ ମହାନ୍ ପ୍ରତିଭାଶାଳୀ ନରନାରୀଙ୍କୁ ଚିହ୍ନିବା, ସେ ଦେଶର ଖଳ ଲୋକଙ୍କୁ ମଧ୍ୟ ଚିହ୍ନି ରଖିବା, ସେ ଦେଶର ସଂସ୍କୃତିକୁ ବୁଝିବା, ସେ ଦେଶର ରାଷ୍ଟ୍ରନୀତିଗୁଡ଼ିକୁ ବୁଝିବା ଓ ପାଳନ କରିବା । ଏସବୁ ବିଷୟରେ ମଧ୍ୟ ଆମକୁ ସର୍ବଦା ସଚେତନ ରହିବାକୁ ହେବ, ଭାବିବାକୁ ଚିନ୍ତିବାକୁ ହେବ ।

ତା' ପରକଥା ହେଲା, ନିଜର ଆର୍ଥିକ ଆୟବ୍ୟୟ ଉପରେ ମଧ୍ୟ ସଚେତନ ରହିବା ଉଚିତ । ସେ ସମ୍ବନ୍ଧରେ ସବୁ ମୁହୂର୍ତ୍ତରେ ସତର୍କ ନ ରହିଲେ ଆମର ଆୟଠାରୁ ବ୍ୟୟ ଅଧିକ ହୋଇଯିବ ଓ ଆମେ କଷ୍ଟ ପାଇବା ।

ଶେଷରେ ମହାମତି ଚାଣକ୍ୟ କହୁଛନ୍ତି, ପ୍ରତ୍ୟେକ ମଣିଷର ନିଜ ସମ୍ବନ୍ଧେ ମଧ୍ୟ ଚିନ୍ତା କରିବା ଉଚିତ । ଏଠାରେ ନିଜ ସମ୍ବନ୍ଧେ ଚିନ୍ତା ଅର୍ଥ, ନିଜକୁ ବୁଝିବା, ନିଜର ଶରୀର-ହୃଦୟ ଓ ମନକୁ ବୁଝିବା ଏବଂ ଶେଷରେ ନିଜର ଅନ୍ତରାତ୍ମାକୁ ବୁଝିବା । ମଣିଷ ଭାବିବା ଉଚିତ, ସେ କାହିଁକି ଏ ପୃଥିବୀରେ ଜନ୍ମ ହୋଇଛି । ସେ କିଏ ? ତା' ଜୀବନର ଲକ୍ଷ୍ୟ କ'ଣ ? ତା'ର କର୍ତ୍ତବ୍ୟ କ'ଣ ? ସେ କ'ଣ ଅନ୍ୟ ପ୍ରାଣୀମାନଙ୍କ ଭଳି ଗୋଟିଏ ପ୍ରାଣୀ ? ନା' ତା'ର କିଛି ବିଶେଷତ୍ୱ ଅଛି ? ଏହା ସଙ୍ଗେ ପ୍ରତ୍ୟେକ ମଣିଷ ନିଜର ଦୈହିକ ଶକ୍ତି, ବୌଦ୍ଧିକ ଶକ୍ତି, ଅର୍ଥଶକ୍ତି, ଜନଶକ୍ତି କେତେ, ସେ ସମ୍ବନ୍ଧେ ମଧ୍ୟ ପ୍ରତି ମୁହୂର୍ତ୍ତରେ ସଚେତନ ରହିବା ଉଚିତ । ଯେ ନିଜର ଏହିସବୁ ଶକ୍ତି କଳନା କରି ନ ଥାଏ, ସେ ବାରମ୍ବାର ତା' ଜୀବନରେ ନାନା ଦିଗରୁ ଅପଦସ୍ଥ

ହୋଇଥାଏ। ଅସଲ କଥା ହେଲା, ଏ ପୃଥିବୀରେ ଓ ଜୀବନରେ ଜୀବଜନ୍ତୁଙ୍କଠାରୁ ଆରମ୍ଭ କରି ମଣିଷ ପର୍ଯ୍ୟନ୍ତ ସମସ୍ତେ ଯେଝା ଶକ୍ତିକୁ ଚାହିଁ ବ୍ୟବହାର କରିଥାନ୍ତି। ତେଣୁ ବୁଦ୍ଧିମାନ୍ ଓ ସତର୍କ ବ୍ୟକ୍ତି ସର୍ବଦା ନିଜର ଶକ୍ତି ଉପରେ ସଚେତନ ରହିବା ଉଚିତ।



## ୭୬. ପୁରୁଷର ଚାରି ଗୁଣ

ଆମ ସାଧାରଣ ବିଚାରରେ ଆମେ ନାରୀ ଓ ପୁରୁଷକୁ ଜୈବିକ ବା ପ୍ରାଣିକ ଦୃଷ୍ଟିରୁ ବିଚାର କରିଥାଉ। ଆଉ ମଧ୍ୟ ଦୈହିକ ଦୃଷ୍ଟିରୁ ବିଚାର କରିଥାଉ। ସେପରି ଦେଖିଲେ- ଅଣ୍ଡିରା ମାଙ୍କଡ଼ ବା ଅଣ୍ଡିରା ବିଲୁଆ ବା ଅଣ୍ଡିରା ବାଘ ଯାହା-ଅଣ୍ଡିରା ମଣିଷଟିଏ ମଧ୍ୟ ତାହାହିଁ ବୁଝାଯିବ। କିନ୍ତୁ 'ପୁରୁଷ' କହିଲେ କେବଳ ଅଣ୍ଡିରା ମଣିଷଟିକୁ ବୁଝାଏ ନାହିଁ। ପୁରୁଷର କି କି ଗୁଣ ଥିଲେ ଆମେ ତାକୁ ପୁରୁଷ କହିବା ସେ ସମ୍ବନ୍ଧେ ମହାପ୍ରାଜ୍ଞ ଚାଣକ୍ୟ କହୁଛନ୍ତି-

**ଯଥା ଚତୁର୍ଭିଃ କନକଂ ପରୀକ୍ଷ୍ୟତେ**
**ନିଘର୍ଷଣ-ଛେଦନ-ତାପ-ତାଡ଼ନୈଃ।**
**ତଥା ଚତୁର୍ଭିଃ ପୁରୁଷଃ ପରୀକ୍ଷ୍ୟତେ**
**ତ୍ୟାଗେନ ଶୀଳେନ ଗୁଣେନ କର୍ମଣା ॥ (୫/୨)**

ଅର୍ଥାତ୍, ସୁନାକୁ ଖାଣ୍ଟି ବା ଭେଜାଲ୍ ଜାଣିବା ପାଇଁ ତାକୁ ବାରମ୍ବାର ଘର୍ଷଣ, ଛେଦନ, ତାପନ ଏବଂ ଆଘାତ ପ୍ରଦାନ, ଏହିପରି ଚାରୋଟି ପ୍ରକ୍ରିୟା ଦ୍ୱାରା ପରୀକ୍ଷା କରାଯାଏ । ସେହିପରି ଶୀଳ (ଉତ୍ତମ ସ୍ୱଭାବ), ତ୍ୟାଗ, ଅନ୍ୟାନ୍ୟ ପୁରୁଷୋଚିତ ଗୁଣ ଓ ଉତ୍ତମ କର୍ମ ଦ୍ୱାରା ଜଣେ ପୁରୁଷର ପୌରୁଷକୁ ପରୀକ୍ଷା କରାଯାଏ ।

ପାଠକେ! ଚାଣକ୍ୟ ପଣ୍ଡିତେ ପୁରୁଷର ପୁରୁଷତ୍ୱ କେଉଁଠାରେ ନିହିତ ଅଛି, ତାହା ଆମକୁ ଦର୍ଶାଇ ଦେଇଛନ୍ତି । ଜଣେ ପୁରୁଷ କେବଳ ତା'ର ଲିଙ୍ଗ ଓ ପ୍ରଜନନ ଶକ୍ତି ଦ୍ୱାରା ମାନବୀୟ ପୌରୁଷ ଦେଖାଇପାରେ ନାହିଁ । ଏ କଥା ସତ ଯେ ଆମ ଭିତରୁ ଅଧିକାଂଶ ମଣିଷ ହେଉଛନ୍ତି ପ୍ରାଣିକ ଦୃଷ୍ଟିରୁ ଅଣ୍ଡିରା ମଣିଷ । ପୁରୁଷ ଶବ୍ଦର ମାନବୀୟ ଦାର୍ଶନିକ ଅର୍ଥ ହେଲା ଏକ ଉଚ୍ଚ ଚେତନାବନ୍ତ ମାନୁଷୀ ବିଗ୍ରହ, ଯେ

ଏହି ସୃଷ୍ଟିକୁ ରକ୍ଷା କରେ, ଆଶ୍ରୟ ପ୍ରଦାନ କରେ, ତା'ର ଚିନ୍ତନ, ମନନ, ସ୍ୱଭାବ ଓ କ୍ରିୟା ଦ୍ୱାରା ଏ ସୃଷ୍ଟିରେ ଏକ ମହତ୍ତ୍ୱ ପ୍ରତିଷ୍ଠା କରେ ଓ ସୁରକ୍ଷିତ କରାଏ । ଏ ଦୃଷ୍ଟିରୁ ଦେଖିଲେ ଜଣେ ଯଥାର୍ଥ ପୁରୁଷର କି କି ଗୁଣ ରହିବା ଦରକାର ?

ଚାଣକ୍ୟ ପଣ୍ଡିତେ କହୁଛନ୍ତି, ସୁନା ଖାଣ୍ଟି କି ଅନ୍ୟ ଧାତୁ ସହ ମିଶ୍ରିତ କିମ୍ବା ଅନ୍ୟ ଧାତୁକୁ କୃତ୍ରିମ ଉପାୟରେ ଚକ୍ ଚକ୍ କରି ସୁନାଭଳିଆ କରାଯାଇଛି, ତାହା ଜାଣିବା ପାଇଁ ସୁନା ଚିହ୍ନାଳି ଅଭିଜ୍ଞ ବଣିଆମାନେ ସୁନାକୁ କଷଟି ପଥରରେ ବାରମ୍ବାର ଘର୍ଷଣ କରି ଜାଣନ୍ତି, ତା'ର ଔଜ୍ଜଲ୍ୟ ପରୀକ୍ଷା କରନ୍ତି ଏବଂ ସୁନାକୁ ବାରମ୍ବାର ଅଗ୍ନିରେ ପୋଡ଼ି ତା'ର ଖାଣ୍ଟିତ୍ୱ ପରୀକ୍ଷା କରନ୍ତି । ଏବଂ ସୁନାକୁ ବାରମ୍ବାର ପିଟାପିଟି କରି ତା'ର ଶକ୍ତି ପରୀକ୍ଷା କରନ୍ତି । ସେହିପରି ପୁରୁଷର କି କି ଗୁଣ ଥିଲେ ଆମେ ତାକୁ ଉତ୍ତମ ପୁରୁଷ କହିବା ? ଯେଉଁ ବ୍ୟକ୍ତିର ବ୍ୟବହାର ଭଦ୍ର ଓ ପରିଶୀଳିତ, ଯେ ଅନ୍ୟକୁ ରକ୍ଷା କରିବା ପାଇଁ ବା ସାହାଯ୍ୟ କରିବା ପାଇଁ ସବୁବେଳେ ପ୍ରସ୍ତୁତ ଥାଏ, ଯେ ଦରିଦ୍ର, ଗୁଣୀବ୍ୟକ୍ତି ଓ ସତ୍ ଅନୁଷ୍ଠାନଗୁଡ଼ିକୁ ଦାନ କରିବାରେ ମୁକ୍ତହସ୍ତ, ସେପରି ବ୍ୟକ୍ତିକୁ ହିଁ ଆମେ ଯଥାର୍ଥ ପୁରୁଷ କହିବା ।

ପୁରାଣ ଓ ଇତିହାସରେ ଆମେ ବହୁ ବିଖ୍ୟାତ ଗୁଣବନ୍ତ ପୁରୁଷଙ୍କର କୀର୍ତ୍ତିକଳାପ ପଢ଼ିଥାଉ । ଆମ ଭାରତୀୟ ପୁରାଣ ଇତିହାସରେ ମଧ ରାଜା ପୃଥୁ, ରାଜା ହରିଶ୍ଚନ୍ଦ୍ର, ରାଜା ଶିବି, ରାଜା ରଘୁ, ରାଜା ଦିଲୀପ, ରାଜା ଦଶରଥ, ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ର, ଲକ୍ଷ୍ମଣ, ଭରତ, ବିଭୀଷଣ ପ୍ରମୁଖ ମହାନ୍ ପୁରୁଷମାନଙ୍କ ଚରିତ ସମ୍ବନ୍ଧେ ଜାଣିଛୁ । ସେହିପରି ମହାଭାରତ ଯୁଗର ଲୀଳା ପୁରୁଷୋତ୍ତମ ଶ୍ରୀକୃଷ୍ଣ, ଧର୍ମବନ୍ତ ରାଜା ଯୁଧିଷ୍ଠିର, ମହାବୀର ଅର୍ଜୁନ, ମହାବୀର ଭୀମସେନ, ମହାଭକ୍ତ ଦରିଦ୍ର ବ୍ରାହ୍ମଣ ସୁଦାମା, ନ୍ୟାୟନିଷ୍ଠ ବିଦୁର, ମହାମତି ଭୀଷ୍ମ ପ୍ରମୁଖ ପୁରୁଷମାନଙ୍କର ମହିମାବନ୍ତ ପୌରୁଷ ସମ୍ବନ୍ଧେ ଅବଗତ ଅଛୁ । ଭାରତ ଇତିହାସରେ ମହାତ୍ମା ବୁଦ୍ଧଙ୍କଠାରୁ ଆରମ୍ଭ କରି ସମ୍ରାଟ୍ ଆକବର, ମହାନବୀର ସନ୍ଥ ପୁରୁଷ ତେଗ୍ ବାହାଦୁର, ମହାନ୍ ସନ୍ଥ ଗୁରୁଗୋବିନ୍ଦ ସିଂ, ସ୍ୱାମୀ ବିବେକାନନ୍ଦ, ମହାକବି ରବୀନ୍ଦ୍ରନାଥ, ମହାଯୋଗୀ ଶ୍ରୀଅରବିନ୍ଦ, ମହାନ୍ ସମାଜସେବୀ ବିନୋବା ଭାବେ, ମହାତ୍ମା ଗାନ୍ଧୀ, ଜବାହରଲାଲ ନେହେରୁ, ଲାଲବାହାଦୁର ଶାସ୍ତ୍ରୀ, ସୁଭାଷ ବୋଷ, ଉତ୍କଳଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ ପ୍ରମୁଖ ମହାନ୍ ପୁରୁଷମାନେ ଆମ ପୁରୁଷ ସମାଜ ଆଗରେ ମହାଦୀପ ସଦୃଶ, ସେମାନଙ୍କ ମୃତ୍ୟୁ ପରେ ମଧ ପ୍ରଜ୍ୱଳିତ ହେଉଛନ୍ତି ।

ଏସବୁ ଆଲୋଚନା ପରେ ଆମେ ବର୍ତ୍ତମାନ ପ୍ରକୃତ ପୁରୁଷ କିଏ ଓ ପ୍ରକୃତ ପୌରୁଷ କାହାକୁ କହନ୍ତି ତାହା ନିଶ୍ଚୟ ଭଲଭାବେ ବୁଝିପାରିବା । ଏକଥା ସତ ଯେ ପୃଥିବୀରେ ଓ ଆମ ସମାଜରେ ଆମ ଭଳି ପୁରୁଷ ହୋଇ ଜନ୍ମିଥିବା ଶତକଡ଼ା ଅଶୀ ନବେ ଭାଗ ପୁରୁଷଙ୍କୁ ଆମେ କିଂପୁରୁଷ ବା କାପୁରୁଷ ବୋଲି କହିବାନି କି ?



## ୭୭. ... ଯଥା ବଦରିକଣ୍ଟକାଃ

ଆମ ଓଡ଼ିଆରେ ଗୋଟିଏ ଢଗ ଅଛି, "ଏକା ଲାଉର ମଞ୍ଜି" । ତା' ଅର୍ଥ, ଦୁଇ ପ୍ରକାର ଲାଉ ଅଛି । ଗୋଲ ଲାଉ ଓ ଲମ୍ବା ଲାଉ । ଦୁହେଁଯାକ ଆକାରରେ ପୃଥକ୍‌ହେଲେବି ଦୁଇଲାଉର ସ୍ୱାଦ ପ୍ରାୟ ସମାନ ହୋଇଥାଏ । ଗୋଲଲାଉର ମଞ୍ଜିରୁ ଯୋଉ ଫଳ ବାହାରିବ, ତାହା ନିଶ୍ଚୟ ଗୋଲ ହେବ । ଲମ୍ବା ଲାଉର ମଞ୍ଜିରୁ ଯୋଉ ଫଳ ବାହାରିବ ତାହା ନିଶ୍ଚୟ ଲମ୍ବା ହେବ । କେବେବି ଗୋଲ ହେବ ନାହିଁ । ସେଥିପାଇଁ କୁହାଯାଇଛି, ଏକା ଲାଉର ମଞ୍ଜି ।

କିନ୍ତୁ ଏ ଢଗଟିର ଅର୍ଥ ସର୍ବତୋଭାବେ ଠିକ୍ ନୁହେଁ । ଏକା ସ୍ଥାନରୁ ଉତ୍ପନ୍ନ ବା ଉଦ୍‌ଭବ ହୋଇଥିଲେ ବି ସବୁ ପଦାର୍ଥ ବା ମଣିଷ ସର୍ବତୋଭାବେ ସମାନ ହୋଇ ନ ପାରନ୍ତି । ଏକ ପିତାମାତାଙ୍କଠାରୁ ବା ଏକ ବଂଶରୁ ଜନ୍ମ ହୋଇଥିବା ସନ୍ତାସନ୍ତତିମାନେ କ'ଣ ଆକୃତିରେ ଓ ପ୍ରକୃତିରେ ସର୍ବତୋଭାବେ ସମାନ ହୋଇଥାନ୍ତି ? ଅବଶ୍ୟ ଏକ ଏକ ବଂଶର ଏକ ଏକ ନିର୍ଦ୍ଦିଷ୍ଟ ଗୁଣ ବା ଦୁର୍ଗୁଣ, ସେ ବଂଶଜାତ ସମସ୍ତଙ୍କ ଭିତରେ ଊଣାଅଧିକେ ଥାଏ । ଏକ ପିତାମାତାଙ୍କଠାରୁ ଜନ୍ମ ହୋଇଥିବା ପୁଅଝିଅମାନଙ୍କ ଚେହେରାରେ ବା ଗୁଣରେ କେତେକ ସାମଞ୍ଜସ୍ୟ ରହିଥାଏ । କିନ୍ତୁ ସର୍ବତୋଭାବେ ସମାନତା ରହି ନ ପାରେ । ଏହି ପ୍ରସଙ୍ଗକୁ ନେଇ ମହାପ୍ରାଜ୍ଞ ଚାଣକ୍ୟ ଗୋଟିଏ ଶ୍ଳୋକ ରଚନା କରିଛନ୍ତି-

**ଏକୋଦରସମୁଦ୍‌ଭୂତା ଏକ ନକ୍ଷତ୍ରଜାତକାଃ ।**
**ନ ଭବନ୍ତି ସମାଃ ଶୀଳେ ଯଥା ବଦରିକଣ୍ଟକାଃ ।। (୫/୪)**

ଶ୍ଳୋକଟିର ଅର୍ଥ ହେଲା, ଗୋଟିଏ ଗର୍ଭରୁ ଜନ୍ମ ପାଇଥିବା ଏବଂ ଏକ ରାଶିନକ୍ଷତ୍ରସ୍ଥିତ ମୁହୂର୍ତ୍ତରେ, ଜନ୍ମ ହୋଇଥିବା ସମସ୍ତେ ଆଚରଣରେ ବ୍ୟବହାରରେ ବା ପ୍ରକୃତିରେ ବା ବୁଦ୍ଧିବିବେକ ବିଚାରରେ ସମାନ ହୋଇ ନ ପାରନ୍ତି । ବରକୋଳି

ଗଛର ଉଦାହରଣ ଦେଇ ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଗୋଟିଏ ବରକୋଳି ଗଛ ଦେହରେ ଏକା ସମୟରେ ଏକା ରାଶିନକ୍ଷତ୍ରରେ କୋଳି ଫଳିଥାଏ, ତା' ଦେହରେ କଣ୍ଟା ବି ଉଦ୍‌ଗତ ହୁଏ । କିନ୍ତୁ ପାର୍ଥକ୍ୟଟି ଦେଖ, ବରକୋଳି କେତେ ସୁସ୍ୱାଦୁ ଓ ଦେଖିବାକୁ କେତେ ସୁନ୍ଦର । ମାତ୍ର କଣ୍ଟାଟି କେତେ ତୀକ୍ଷ୍ଣ ଓ ତାହା ଅନ୍ୟ ଦେହରେ ଫୋଡ଼ି ହୋଇଯାଏ ଏବଂ କଷ୍ଟ ଦିଏ । କିନ୍ତୁ ଦୁହେଁଯାକ ସେଇ ଗୋଟିଏ ଗଛରୁ ଏକା ସମୟରେ ଜନ୍ମ ହୋଇଥାନ୍ତି ।

ସେହିପରି ଏକା ବାପାମାଆଙ୍କ ଔରସରୁ ଜନ୍ମ ହୋଇଥିବା ଓ ଗୋଟିଏ ନକ୍ଷତ୍ର ଓ ରାଶିରେ ଜନ୍ମ ହୋଇଥିବା ସନ୍ତାନସନ୍ତତିଙ୍କ ଭିତରୁ କିଏ ଚୋର ଖଣ୍ଡ ଡକାୟତ ହୋଇପାରେ, କିଏ ପୁଣି ଅତି ସାଧୁସନ୍ଥ ହୋଇପାରେ । କିଏ ଗଣ୍ଡମୂର୍ଖ ହୋଇପାରେ, କିଏ ପୁଣି ମହାଜ୍ଞାନୀ ବିଜ୍ଞାନୀ ପଣ୍ଡିତ ହୋଇପାରେ । ଏକାବଂଶରେ ଜନ୍ମ ହୋଇଥିବା ଲୋକଙ୍କ ଭିତରେ ବି ବହୁ ପାର୍ଥକ୍ୟ ଦେଖାଯାଇଥାଏ ।

ପାଠକେ ! ଆଧୁନିକ କାଳରେ ବୈଜ୍ଞାନିକମାନେ ଜିନ୍ ଓ ଡିଏନ୍‌ଏ ତତ୍ତ୍ୱ ଭଳି ଅଭିନବ କଥା ଆବିଷ୍କାର କରିଛନ୍ତି। ତା' ହେଲା ତୁମର ପିତା ବା ମାତାଙ୍କର ଚଉଦ ପୁରୁଷଙ୍କର ଜୀବକୋଷରେ ରହି ତାଙ୍କ ପ୍ରକୃତିରେ ପ୍ରସ୍ଫୁଟିତ ହୋଇଥିବା ଜିନ୍ ପରମ୍ପରାରେ ବାହିତ ହୋଇ ଆସି ତୁମ ପ୍ରକୃତି ଓ ଆକୃତିରେ ମଧ୍ୟ ପ୍ରକାଶ ପାଇପାରେ। ତୁମେ ମାଆ ବା ପିତାଙ୍କ ପୂର୍ବପୁରୁଷରେ କେହି ଜଣେ ନୃଶଂସ ଡକାୟତ ଥିଲା, ବା କେହି ଜଣେ ବଡ଼କବି କି ଦାର୍ଶନିକ ଥିଲା, ବା କାହାର ଆକୃତି ଦେବତାର ଶରୀର ପରି ଥିଲା ବା ଅସୁରର ଶରୀର ପରି ଥିଲା, ସେହିସବୁ ଗୁଣ ଦୁର୍ଗୁଣର ଜିନ୍ ତୁମ ନାତିର ଜୀବକୋଷ ଭିତରକୁ ମଧ୍ୟ ପଶି ଆସିପାରେ ଏବଂ ତା'ର ଆକୃତି ପ୍ରକୃତିରେ ପ୍ରକାଶ ପାଇପାରେ।

ଅବଶ୍ୟ ଏହି ତତ୍ତ୍ୱକୁ ସ୍ୱୀକାର କରି ଯୁଗପୁରୁଷ ମହାଯୋଗୀ ଶ୍ରୀଅରବିନ୍ଦଙ୍କ ଯୋଗଦର୍ଶନର ମତ ହେଲା, ଆମେ ଆମ ଜୀବକୋଷରେ ଧାରଣ କରିଥିବା ପୂର୍ବପୁରୁଷଙ୍କ ଜିନ୍‌ର ନିର୍ଦ୍ଦେଶ ବା ପ୍ରବୋଦନାକୁ ଗ୍ରହଣ କରି ନ ପାରୁ । ଆମ ମନର ଇଚ୍ଛାଶକ୍ତି, ଆତ୍ମାର ଅଭୀପ୍ସା ଓ ଯୋଗଶକ୍ତି ବଳରେ ଆମେ ପୂର୍ବପୁରୁଷଙ୍କଠାରୁ ଆନୀତ ଜିନ୍‌ର କ୍ରିୟାକୁ ବାତିଲ କରିଦେଇପାରୁ । କ୍ରମବିକାଶର ଅଗ୍ରଗତିରେ ମନୁଷ୍ୟ ସ୍ୱାଧୀନ ଭାବେ ନିଜର ଅଭୀପ୍ସା ଓ ଯୋଗୋଦ୍ୟମ ବଳରେ ନିଜର ଅତୀତକୁ ନିଜ ପ୍ରକୃତିରୁ ଓହ୍ଲାଇଦେଇ ଏକ ଦିବ୍ୟ ପ୍ରକୃତିକୁ ନିଜ ଭିତରକୁ ଆବାହନ କରିପାରେ ଓ ତାକୁ ସକ୍ରିୟ କରି ମାନବରୁ ଦିବ୍ୟମାନବକୁ ଉନ୍ନୀତ ହୋଇପାରେ ।



# ୭୮. କୋଉଠି ଥାଏ କା' ସୁନ୍ଦର ପଣ ?

ଏହି ଜଗତର ସ୍ରଷ୍ଟା ପରମେଶ୍ୱରଙ୍କୁ ଆମ ଉପନିଷଦରେ କୁହାଯାଇଛି, "ସତ୍ୟ ଶିବ ଓ ସୁନ୍ଦର ବା ସତ୍, ଚିତ୍, ଆନନ୍ଦ। ତା' ଅର୍ଥ ସ୍ୱୟଂ ଭଗବାନ୍ ହେଉଛନ୍ତି, ସତ୍ୟ, ମଙ୍ଗଳ ଓ ସୌନ୍ଦର୍ଯ୍ୟର ଉତ୍ସ ଏବଂ ସେ ମଧ୍ୟ ସତ୍, ଜ୍ଞାନ ବା ଚେତନା ଓ ଆନନ୍ଦର ଉତ୍ସ । ଯେଉଁମାନେ ଈଶ୍ୱରଙ୍କ ଭକ୍ତ, ସେମାନେ ଏହି ପୃଥିବୀରେ ସତ୍ୟକୁ, ମଙ୍ଗଳକୁ ଓ ସୁନ୍ଦରକୁ ଅନ୍ୱେଷଣ କରୁଥାନ୍ତି। ଯେଉଁଠି ସତ୍ୟ ଥାଏ ବା ମଙ୍ଗଳ ଥାଏ ବା ସୁନ୍ଦର ଥାଏ, ସେଠାରେ ଭଗବାନ୍‌ଙ୍କର ସେହି ସେହି ଗୁଣ ପ୍ରକାଶ ପାଉଥାଏ । ଆମେ ମଧ୍ୟ ଆମର କଥାରେ, କର୍ମରେ ଓ ଆଚାର ବ୍ୟବହାରରେ ଭଗବାନ୍‌ଙ୍କର ଏହି ସତ୍ୟ, ମଙ୍ଗଳ ଓ ସୁନ୍ଦରଗୁଣକୁ ପ୍ରକାଶ କରିବା ଉଚିତ। କେବଳ ମଠ ମନ୍ଦିରକୁ ଯାଇ ଦିଅଁ ଦେବତାଙ୍କୁ ପୂଜା ଉପାସନା କଲେ କେହି ଭଗବାନ୍‌ଙ୍କୁ ଉପଲବ୍ଧି କରିପାରେ ନାହିଁ । ଜଣେ ରାମଙ୍କୁ ପୂଜା କରୁ ବା କୃଷ୍ଣଙ୍କୁ ପୂଜା କରୁ, ଶିବଙ୍କୁ ପୂଜା କରୁ ବା ଦୁର୍ଗାଙ୍କୁ ପୂଜା କରୁ ବା ଗଣେଶଙ୍କୁ ପୂଜା କରୁ-କେବଳ ସେଇ ପୂଜା ଉପାସନାରେ କିଛି ଲାଭ ହୁଏନାହିଁ। ଜଣେ ଈଶ୍ୱର ଭକ୍ତ ନିଜ ପ୍ରକୃତିରେ ଏଇ ଐଶ୍ୱରିକ ଭାବ ପ୍ରତିଷ୍ଠା କରିବା ଉଚିତ । ଆମେ ବୁଝିବା ଉଚିତ ଯେ, ଏ ପୃଥିବୀ ଭିତରେ ସର୍ବତ୍ର ଏଇ ସତ୍ୟ, ମଙ୍ଗଳ ଓ ସୌନ୍ଦର୍ଯ୍ୟ ରହିଛି । ତେବେ ଏଇ ସତ୍ୟ, ମଙ୍ଗଳ ଓ ସୌନ୍ଦର୍ଯ୍ୟ କାହା ଭିତରେ କିପରି ରହିଛି-ତାହା ଆମର ଦେଖିବା ଉଚିତ । ଧରାଯାଉ-ପ୍ରକୃତରେ ଏହି ଦିବ୍ୟ ସୌନ୍ଦର୍ଯ୍ୟ କୋଉଠି କିପରି ଅଛି-ତା'ର ଗୋଟିଏ ଛୋଟ ଦୃଷ୍ଟାନ୍ତ ଚାଣକ୍ୟ ପଣ୍ଡିତେ ଦେଇଛନ୍ତି । ଶ୍ଳୋକଟି ଶୁଣନ୍ତୁ-

**କୋକିଳାନାଂ ସ୍ୱରୋ ରୂପଂ ସ୍ତ୍ରୀଣାଂ ରୂପଂ ପତିବ୍ରତମ୍ ।**
**ବିଦ୍ୟା ରୂପଂ କୁରୂପାଣାଂ କ୍ଷମା ରୂପଂ ତପସ୍ୱିନାମ୍ ॥** (୩/୯)

ଏ ଶ୍ଳୋକଟିର ଅର୍ଥ ହେଲା-କୋକିଳ ବା କୋଇଲି ଦେଖିବାକୁ କୁଆଭଳି କଳା। ତେଣୁ ତା'ର ରୂପ ବା ସୌନ୍ଦର୍ଯ୍ୟକୁ ଆମେ ତା'ର ଚେହେରାରେ ପାଇବା ନାହିଁ। ତା'ର ସୌନ୍ଦର୍ଯ୍ୟ ରହିଛି ତା'ର ମଧୁର କୁହୁକୁହୁ ଧ୍ୱନିରେ। ଆମ ମଣିଷଙ୍କ ଭିତରେ ବି ବହୁ କୁତ୍ସିତ ଦର୍ଶନ ନରନାରୀ ଅଛନ୍ତି। କିନ୍ତୁ ସେମାନଙ୍କ ଭିତରୁ ଯେଉଁମାନଙ୍କଠାରେ ବିଶେଷ କିଛି ଗୁଣ ଥାଏ ବା ଜ୍ଞାନ ଥାଏ, ତେବେ ତାଙ୍କର

ସୌନ୍ଦର୍ଯ୍ୟ ଆମେ ତାଙ୍କର ସେହି ସୁଗୁଣରୁ ପାଇବା। ମହାଭାରତର ରଚୟିତା ମହାକବି ବ୍ୟାସଦେବ ଦେଖିବାକୁ ଖୁବ୍ କୁତ୍ସିତ ଥିଲେ। ମାତ୍ର ତାଙ୍କର ସୌନ୍ଦର୍ଯ୍ୟ ଥିଲା ତାଙ୍କର କାବ୍ୟ-ରଚନାରେ। ଜଣେ ବଡ଼ ବୈଜ୍ଞାନିକ ଶରୀରର ସୌନ୍ଦର୍ଯ୍ୟରୁ ବଞ୍ଚିତ ହୋଇପାରିଥାନ୍ତି; ମାତ୍ର ତାଙ୍କର ବିଦ୍ୟା, ଜ୍ଞାନ ଓ ଉଦ୍ଭାବନ ଭିତରେ ରହିଥାଏ ତାଙ୍କର ସୌନ୍ଦର୍ଯ୍ୟ । ସେହିପରି ଜଣେ ଗାୟକ ବା ଗାୟିକା ଶରୀରରେ ସୁନ୍ଦର ହୋଇ ନ ପାରନ୍ତି; ମାତ୍ର ତାଙ୍କର କଣ୍ଠସ୍ୱର ଯଦି ମଧୁର ଓ ଭାବସଂଚାରୀ ହୋଇଥାଏ ତେବେ ତାଙ୍କର ସେହି କଣ୍ଠସ୍ୱର ଭିତରେ ହିଁ ଆମେ ତାଙ୍କର ପ୍ରକୃତ ସୌନ୍ଦର୍ଯ୍ୟକୁ ଅନୁଭବ କରିପାରିବା । ଏପରିକି ଜଣେ ମହାତ୍ମା ମଧ୍ୟ ଜଣେ ସିନେମାଷ୍ଟାର ଭଳି ସୁନ୍ଦର ନ ହୋଇପାରନ୍ତି, ମାତ୍ର ତାଙ୍କ ଭିତରେ ଓ ଆଚରଣରେ ଯଦି କ୍ଷମା ଓ ସତ୍ୟ, ଅହିଂସା ଦୟାଦି ସୁଗୁଣ ପ୍ରକାଶ ପାଉଥାଏ, ତେବେ ତାଙ୍କର ସୁନ୍ଦରପଣକୁ ଆମେ ସେଇଠାରେ ହିଁ ଅନୁଭବ କରିପାରିବା । ସେହିପରି ଜଣେ ନାରୀର ଦୈହିକ ସୌନ୍ଦର୍ଯ୍ୟ ବା ରୂପ ନ ଥାଇପାରେ । ଏପରିକି ସେ କୁତ୍ସିତଦର୍ଶନା ମଧ୍ୟ ହୋଇପାରେ । କିନ୍ତୁ ସେ ଯଦି ତା'ର ସ୍ୱାମୀକୁ ଆନ୍ତରିକ ଭାବେ ପ୍ରେମ କରୁଥାଏ, ତେବେ ତା'ର ସୌନ୍ଦର୍ଯ୍ୟ ସେହି ପତି ପ୍ରେମ ଭିତରେ ହିଁ ଅନୁଭବ କରିହୁଏ । ପାଠକେ! ଆମେ ଅନେକ କୁତ୍ସିତଦର୍ଶନା ନାରୀ ଓ ଅସୁନ୍ଦର ପୁରୁଷ ଦେଖିଥାଉଁ । କିନ୍ତୁ ସେମାନଙ୍କ ଭିତରୁ ଯେଉଁମାନଙ୍କର ଚରିତ୍ର ଶୁଦ୍ଧ, ଯେଉଁମାନଙ୍କର ହୃଦୟ ସମସ୍ତଙ୍କ ପ୍ରତି ସ୍ନେହ ପ୍ରେମରେ ପୂରି ରହିଥାଏ, ଯେଉଁମାନେ ବିବାହ କଲା ପରେ ସେମାନଙ୍କର ଦାମ୍ପତ୍ୟ ଜୀବନକୁ ଖୁବ୍ ନିଷ୍ଠାର ସହିତ ପ୍ରେମ ଓ ସେବା ପରାୟଣତାରେ, ତ୍ୟାଗ ଓ ତିତିକ୍ଷାରେ-ସେବା ଓ ସହାନୁଭୂତିରେ ଗଠନ କରିଥାନ୍ତି, ସେମାନଙ୍କ ବାହ୍ୟରୂପର କୁତ୍ସିତତା ଆଉ ଆମ ଆଖିକୁ ପୀଡ଼ା ଦିଏ ନାହିଁ । ଆମେ ସେମାନଙ୍କର ମହତ୍ ପ୍ରେମମୟ ଜୀବନକୁ ଦେଖି ଖୁସି ହେଉ । ବିଶେଷତଃ, ଜଣେ ନାରୀ ସେ ବାହ୍ୟ ସୌନ୍ଦର୍ଯ୍ୟରେ ରୂପବତୀ ନ ହୋଇଥିଲେ ବି ତା'ର ଅନ୍ତରର ସୌନ୍ଦର୍ଯ୍ୟରେ ସମସ୍ତଙ୍କୁ ମୁଗ୍ଧ ରଖିପାରେ ଓ ପ୍ରେମଡୋରିରେ ସମସ୍ତଙ୍କୁ ବାନ୍ଧି ରଖିପାରେ । ତେଣୁ ଚାଣକ୍ୟ ପଣ୍ଡିତେ ଆମକୁ ବାହ୍ୟ ସୌନ୍ଦର୍ଯ୍ୟ ଉପରେ ବିଶେଷ ଦୃଷ୍ଟି ନ ଦେଇ ଅନ୍ତରର ସୌନ୍ଦର୍ଯ୍ୟ ଉପରେ ବିଶେଷ ଧ୍ୟାନ ଦେବାକୁ ପ୍ରରୋଚିତ କରିଛନ୍ତି ।



# ୭୯. କିଏ କୋଉଠି ଶୋଭାପାଏ ?

ଏ ଜଗତରେ ବା ଜୀବନରେ ସବୁକଥା ସବୁଠାରେ ଶୋଭାପାଏ ନାହିଁ। ଯଥା ସ୍ଥାନରେ ଯଥା ବିଷୟଟି ଥିଲେ ତାହା ସଙ୍ଗତ ହୁଏ, ତେଣୁ ତାହା ଶୋଭାପାଏ। ତରୁଣୀ ପତ୍ନୀଟି ପାଖରେ ତରୁଣ ସ୍ୱାମୀଟି ଶୋଭାପାଏ। ବୃଦ୍ଧା ପତ୍ନୀଟି ପାଖରେ ବୃଦ୍ଧ ସ୍ୱାମୀଟି ଶୋଭାପାଏ। ମାତ୍ର ତରୁଣୀ ପତ୍ନୀ ପାଖରେ ବୃଦ୍ଧ ସ୍ୱାମୀଟିଏ ଯେପରି ଅସଙ୍ଗତ ଓ ଅଶୋଭନୀୟ ଲାଗେ, ସେହିପରି ବୃଦ୍ଧା ପତ୍ନୀଟି ପାଖରେ ତରୁଣ ସ୍ୱାମୀଟିଏ ଅଶୋଭନୀୟ ଓ ଅସଙ୍ଗତ ବୋଧହୁଏ। ଶୋଇବା ଘରେ ଜୋତାଷ୍ଟାଣ୍ଡ ଯେପରି ଅସଙ୍ଗତ ଓ ଅଶୋଭନୀୟ, ମଠ ବା ମନ୍ଦିର ଆଗରେ କଂସାଇଶାଳାଟିଏ ଥିଲେ ସେହିପରି ଖୁବ୍ ଅସଙ୍ଗତ ଓ ଅପବିତ୍ର ମନେହୁଏ।

ଆମ ଚାଣକ୍ୟ ପଣ୍ଡିତେ ଏଇ କଥା ବୁଝାଇବାକୁ ଯାଇ ଶ୍ଳୋକଟିଏ କହୁଛନ୍ତି,

**ସମାନେ ଶୋଭତେ ପ୍ରୀତିଃ ରାଜ୍ଞି ସେବା ଚ ଶୋଭତେ।**
**ବାଣିଜ୍ୟଂ ବ୍ୟବହାରେଷୁ ଦିବ୍ୟା ସ୍ତ୍ରୀ ଶୋଭତେ ଗୃହେ ॥ (୨/୨୦)**

ଏହି ଶ୍ଳୋକର ଅର୍ଥ ହେଲା, ସମାନ ସ୍ତରର ଲୋକଙ୍କ ଭିତରେ ପ୍ରୀତି ଶୋଭାପାଏ । ରାଜା ବା ପ୍ରଶାସକମାନଙ୍କଠାରେ ସେବା ଶୋଭା ପାଇଥାଏ । ବ୍ୟବହାର ବା କିଣାବିକା ଦ୍ୱାରା ବାଣିଜ୍ୟ ବେପାର ଶୋଭା ପାଏ; ଏବଂ ଦିବ୍ୟସ୍ତ୍ରୀ ଦ୍ୱାରା ଗୃହଟି ଶୋଭମାନ ହୋଇଥାଏ । ପାଠକେ ! ଆମେ ମହାନୀତିଜ୍ଞ ଚାଣକ୍ୟଙ୍କର ଏହି ଶ୍ଳୋକକୁ ଆକ୍ଷରିକ ଅର୍ଥରେ ନ ବୁଝି ଏହାର ବ୍ୟଞ୍ଜନାର୍ଥରେ ବୁଝିବା ଉଚିତ । ପ୍ରଥମ କଥା ହେଲା, ସମାନସ୍ତରର ଲୋକଙ୍କ ଭିତରେ ଇ ପ୍ରୀତି ଶୋଭା ପାଏ । ଚାଣକ୍ୟ ଏଠାରେ ପ୍ରୀତି ଶବ୍ଦକୁ କେବଳ ନାରୀପୁରୁଷ ପ୍ରେମ ଅର୍ଥରେ ନ କହି ବ୍ୟାପକ ଅର୍ଥରେ ନେଇଛନ୍ତି । ସେହିପରି 'ସମାନ' ଶବ୍ଦର ବ୍ୟଞ୍ଜନା ଓ ବ୍ୟାପକତାକୁ ମଧ୍ୟ ବୁଝିବା ଉଚିତ । ପ୍ରୀତି ହେଲା ଏକ ଦିବ୍ୟ ଭାବର ସମ୍ପର୍କ । ଏଥିରେ ସମର୍ପଣ, ଉତ୍ସର୍ଗ, ସେବା, ସହାନୁଭୂତି, ତ୍ୟାଗ ଓ ଗଭୀରତା ସହିତ ରହିଛି ନିଷ୍ଛଳ ନିଷ୍ଠା । ଯଦି ଦୁଇଜଣଙ୍କ ଭିତରେ ଏସବୁ ଗୁଣ ସମାନଭାବେ ନ ଥାଏ ତେବେ ସେଠାରେ ପ୍ରୀତି ଶୋଭା ପାଏ ନାହିଁ । ଏଠାରେ ଧନ, କ୍ଷମତା, ବିଦ୍ୟା ବା ଜାତିର ସମାନତା କଥା ପଡ଼ି ନାହିଁ । ମନ ଓ ହୃଦୟର ପବିତ୍ରତା ଗଭୀରତା ଓ ଉଦାରତାର ସମାନତାକୁ ବୁଝାଉଛି । ପୁରାଣରୁ ଉଦାହରଣମାନ ଦେଖିବା :

ରାମ ଓ ସୁଗ୍ରୀବ ବା ରାମ ଓ ଗୁହକ ଶବର ବା ରାମ ଓ ବିଭୀଷଣଙ୍କ ଭିତରେ ବନ୍ଧୁତ୍ୱ ପ୍ରତିଷ୍ଠିତ ହେବା ଲାଗି କି କି ସମାନତା ଥିଲା ? ପ୍ରଥମେ, ସେମାନେ ସମସ୍ତେ

ଅଭିଜାତ ରାଜକୁଳର ମଣିଷ । ଦ୍ୱିତୀୟତଃ, ସେମାନଙ୍କ ଅନ୍ତର ଥିଲା ଶୁଦ୍ଧ, ମହାତ୍, ଉଦାର ତ୍ୟାଗମୟ ଓ ପ୍ରୀତି-ବିଭୋର । ତେଣୁ ସେମାନଙ୍କ ଭିତରେ ପ୍ରୀତି ଶୋଭା ପାଇଲା ।

କିନ୍ତୁ ଅପର ପକ୍ଷରେ ଶ୍ରୀକୃଷ୍ଣ ଓ ସୁଦାମା ବା ଶ୍ରୀକୃଷ୍ଣ ଓ ବିଦୁରଙ୍କ ଭିତରେ ଯେଉଁ ଗଭୀର ଦିବ୍ୟପ୍ରୀତି ରହିଥିଲା ତାହା ଉଭୟଙ୍କର କୋଉ ସମାନତା ଉପରେ ପ୍ରତିଷ୍ଠିତ ଥିଲା ? କୃଷ୍ଣ ଥିଲେ ରାଜବଂଶୀୟ; ମାତ୍ର ସୁଦାମା ଗରିବ ବ୍ରାହ୍ମଣ ଓ ବିଦୁର ମଧ୍ୟ ନୀଚକୁଳଜାତ ଦରିଦ୍ର ମଣିଷ । ତେବେ ସେମାନଙ୍କ ଭିତରେ କୋଉ ସମାନତାର ଭିତ୍ତି ଉପରେ ଏପରି ଦିବ୍ୟପ୍ରୀତି ପ୍ରତିଷ୍ଠିତ ଓ ଶୋଭମାନ ହୋଇଥିଲା ? ତାହା ହେଲା, ସେମାନଙ୍କ ଭିତରେ ସମାନସ୍ତରୀୟ ପବିତ୍ରତା, ଉଦାରତା, ଦିବ୍ୟତା, ଗଭୀରତା ଓ ସମର୍ପଣମୟତା ସହିତ ଥିଲା ପରସ୍ପରର ମହିମା ପ୍ରତି ବିନମ୍ର ସମ୍ଭ୍ରମବୋଧ । ତେଣୁ ଏଇ ସମାନତାରେ ସେମାନଙ୍କ ଭିତରେ ଥିବା ପ୍ରୀତି ଶୋଭମାନ ହୋଇଥିଲା ।

ସେହିପରି ଯେଉଁମାନେ ରାଜ୍ୟର ଶାସନ ବା ପ୍ରଶାସନର ଦାୟିତ୍ୱ ନେଇଥାନ୍ତି, ସେମାନେ ରାଜା ହୁଅନ୍ତୁ ବା ରାଜ୍ୟପାଳ ହୁଅନ୍ତୁ ବା ମନ୍ତ୍ରୀ କି ପଦସ୍ଥ ସରକାରୀ କର୍ମଚାରୀ ହୁଅନ୍ତୁ, ସେମାନଙ୍କ ପାଖରେ କର୍ମରତ ସେବାକାରୀମାନେ ଶୋଭା ପାନ୍ତି ।

ଆଉ ଗୋଟିଏ ଶୋଭନୀୟତା ହେଲା, ଯେଉଁମାନେ ବାଣିଜ୍ୟ ବ୍ୟବସାୟ କରନ୍ତି, ସେମାନଙ୍କ ପଣ୍ୟଦ୍ରବ୍ୟଗୁଡ଼ିକର ବିକ୍ରୟ ଦ୍ୱାରା, ସଂଗ୍ରହ ଦ୍ୱାରା, କ୍ରୟ ଦ୍ୱାରା ଓ ବିଭିନ୍ନ ସ୍ଥାନକୁ ପ୍ରେରଣ ଦ୍ୱାରା ସେ ବାଣିଜ୍ୟ ଶୋଭମାନ ହୁଏ । ଖୁବ୍ କିଣାବିକା ଗହଳଚହଳ ନ ଥିଲେ ଦୋକାନଟିଏ କେବେ ଶୋଭା ପାଏ ?

ଶେଷରେ ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଗୋଟିଏ ପରିବାର ବା ଗୃହ ଶୋଭମାନ ହୁଏ ଦିବ୍ୟ ଗୁଣ ଓ ରୂପସମ୍ପନ୍ନା ରମଣୀମାନଙ୍କ ଦ୍ୱାରା । ଦିବ୍ୟ ସ୍ତ୍ରୀ କହିଲେ କ'ଣ ବୁଝାଯାଏ ? ଯେଉଁ ରମଣୀମାନେ ରୂପଗୁଣସମ୍ପନ୍ନା-କୋମଳହୃଦୟା-ସେବାପରାୟଣା-କର୍ମକୁଶଳା, ମିଷ୍ଟଭାଷିଣୀ, ସର୍ବ ବିଷୟରେ ସଚେତନ ଓ ସତର୍କ ରହିଥାନ୍ତି, ସେହିମାନେ ହିଁ ଦିବ୍ୟ ସ୍ତ୍ରୀ । ଯେଉଁ ଗୃହରେ ଏଭଳି ସ୍ତ୍ରୀଲୋକମାନେ ନ ଥାନ୍ତି ଏବଂ ଅଦିବ୍ୟ ରମଣୀମାନେ ରହିଥାନ୍ତି, ସେ ଗୃହ ତ ଶୋଭମାନ ହୁଏ ନାହିଁ, ଅନ୍ୟ ପକ୍ଷରେ ତାହା ଶ୍ମଶାନତୁଲ୍ୟ ମନେହୋଇଥାଏ ।

ପାଠକେ ! ଏହି ଶ୍ଲୋକରେ ଚାଣକ୍ୟ ପଣ୍ଡିତେ ଆମକୁ ଜୀବନର ଶୋଭନତା ଉପରେ କିଛି ସୂଚନା ଦେଇଛନ୍ତି ।



# ୮୦. କେଉଁ କାରଣରୁ ଅକାଳେ ନଷ୍ଟ ?

ଏ ପୃଥିବୀରେ ଓ ଏ ଜୀବନରେ ସବୁ କିଛି ଦିନେ ନଷ୍ଟ ହୋଇଯାଏ-ଏଥିରେ ସନ୍ଦେହ ନାହିଁ। କାଳାଗ୍ନି ସବୁକିଛିକୁ ଦିନେ ପୋଡ଼ି ଭସ୍ମ କରିଦେବ। କାଳସ୍ରୋତରେ ସବୁକିଛି ଭାସିଯାଏ। ଏ ସଂସାରରେ ଯାହା କିଛି ସୃଷ୍ଟି ହୋଇଛି-ତାହା ନିଶ୍ଚେ ଦିନେ ନା ଦିନେ ନଷ୍ଟ ହେବ। ଲକ୍ଷ ଲକ୍ଷ ବର୍ଷ ତଳେ ଡାଇନୋସର ଭଳି ବିରାଟ ଜନ୍ତୁଙ୍କ ବଂଶ ଆଜି ଲୋପ ପାଇଯାଇଛି। କେତେ କେତେ ସାମ୍ରାଜ୍ୟ ଧ୍ୱଂସ ପାଇଯାଇଛି। କେଡ଼େ କେଡ଼େ ଉନ୍ନତ ସଭ୍ୟତା ଓ ସଂସ୍କୃତି ଆଜି ଅବଲୁପ୍ତ ହୋଇଯାଇଛି । କେଡ଼େ କେଡ଼େ ସମୃଦ୍ଧ ନଗରମାନଙ୍କର ଆଜି ଅବଶେଷ ସୁଦ୍ଧା ନାହିଁ ।

ଏ ସଂସାରରେ କାହାର ବଳ, ଧନ, ଦର୍ପ, କ୍ଷମତା, ଯଶ ମଧ୍ୟ ଚିରକାଳ ରହେ ନାହିଁ । ଦିନେ ଯେଉଁମାନଙ୍କର ପାଦଭାରରେ ଏ ମହୀଦୂଲୁକୁ ଥିଲା-ଯେଉଁମାନଙ୍କ ଭୀମରଡ଼ିରେ ଏ ମହୀ କମ୍ପୁଥିଲା-ସେମାନେ ଆଜି କାହାନ୍ତି ?

ଏ ତ ଗଲା ଏଇ ନଶ୍ୱର ପୃଥିବୀରେ ସବୁକିଛିର ନଶ୍ୱର ପରିଣାମର କଥା । ପରମପୁରୁଷ ରାମକୃଷ୍ଣ ପରମହଂସଙ୍କ ଭାଷାରେ - "ଯା ଏସେଛେ-ତା' ଯାବେ ।"

କିନ୍ତୁ ଚାଣକ୍ୟ ପଣ୍ଡିତେ ସେ କଥା କହୁ ନାହାନ୍ତି । ସେ କହୁଛନ୍ତି-ସବୁକିଛିର ସ୍ୱାଭାବିକ ପରିଣତି ଏ ସଂସାରର ଧର୍ମ । ମାତ୍ର ଅସମୟରେ-ମଣିଷର ଅସାବଧାନତାରେ ମଧ୍ୟ ଏବଂ ପ୍ରକୃତିର ହଠକାରିତା ଯୋଗୁଁ ବି ଅନେକ କଥା ନଷ୍ଟ ହୋଇଯାଏ । ଯଥା-ଚାଣକ୍ୟ ପଣ୍ଡିତଙ୍କ ଭାଷାରେ-

**ନଦୀତୀରେ ଚ ଯେ ବୃକ୍ଷାଃପରଗେହେଷୁ କାମିନୀ।**
**ମନ୍ତ୍ରୀହୀନାଶ୍ଚ ରାଜାନଃ ଶୀଘ୍ରଂ ନଶ୍ୟନ୍ତ୍ୟସଂଶୟମ୍ ॥ (୨/୧୪)**

ଅର୍ଥାତ୍ ନଦୀକୂଳରେ ବା ବନ୍ଧ ଉପରେ ଥିବା ବୃକ୍ଷ, ନିଜଘରେ ନ ରହି ପରଘରେ ରହୁଥିବା ସ୍ତ୍ରୀଲୋକ; ଏବଂ ମନ୍ତ୍ରଣାଦାୟୀ ମନ୍ତ୍ରୀବିହୀନ ରାଜାମାନେ ଖୁବ୍‌ଶୀଘ୍ର ନଷ୍ଟହୋଇଯାନ୍ତି ।

ନଦୀକୂଳରେ ବଢ଼ିଉଠିଥିବା ଗଛଟି କେତେବେଳେ ଉପୁଡ଼ିପଡ଼ି ନଦୀ ସ୍ରୋତରେ ଭାସିଯିବ କହିହେବ ନାହିଁ । କାରଣ କେବେ କେବେ ନଦୀରେ ଭୀଷଣ ବନ୍ୟାହୁଏ, ଏବଂ ବନ୍ୟାର ପ୍ରଚଣ୍ଡ ସ୍ରୋତରେ ନଦୀବନ୍ଧ ଭାଙ୍ଗିଯାଇ ଚାରିଆଡ଼ ଜଳମଗ୍ନ ହୋଇଯାଏ । ଫଳରେ ଗଛଟି ଉପୁଡ଼ି ନଦୀ ସ୍ରୋତରେ ଭାସିଯାଏ । ସେହିପରି ଜଣେ ସ୍ତ୍ରୀଲୋକ ତା' ନିଜଘରେ ନ ରହି ଅର୍ଥାତ୍, ତା'ର ପିତାମାତାଙ୍କ ସହିତ ବା ଭ୍ରାତା ଭଗ୍ନୀଙ୍କ

ସହିତ ବା ନିଜ ସ୍ୱାମୀ, ଦେବର, ଦେଢ଼ଶୁରଙ୍କ ସହିତ, ଅଥବା ନିଜର ପୁତ୍ରକନ୍ୟାଙ୍କ ସହିତ ନ ରହି ଯଦି ଅନ୍ୟଘରେ ଯାଇ ଆଶ୍ରୟ ନିଏତେବେ ତା'ର ଚରିତ୍ର ଓ ସମ୍ମାନ ନଷ୍ଟ ହେବା ସୁନିଶ୍ଚିତ । ସେ ଏକ ମର୍ଯ୍ୟାଦାହୀନା ସ୍ତ୍ରୀଲୋକ ହୋଇ କେବଳ ଜୀବନରେ ବଞ୍ଚିରହେ । ମାତ୍ର ତା'ର ମନ, ହୃଦୟ ଓ ଆତ୍ମା କଳୁଷିତ ହୋଇଯାଏ । ସେହିପରି ଜଣେ ରାଜା ଯଦି ବୁଦ୍ଧିମାନ୍ ଓ ଚରିତ୍ରବାନ୍ ମନ୍ତ୍ରୀମାନଙ୍କ ବିନା ରାଜ୍ୟଶାସନ କରିବସନ୍ତି, ତେବେ ସେ ରାଜ୍ୟ ଖୁବ୍‌ଶୀଘ୍ର ନଷ୍ଟହୋଇଯାଏ । ପ୍ରଜାମାନେ ଖୁବ୍ କଷ୍ଟପାଆନ୍ତି ଓ ସେ ରାଜ୍ୟ ଅନ୍ୟରାଜାଙ୍କ ଦ୍ୱାରା ଆକ୍ରମିତ ଓ ଲୁଣ୍ଠିତ ହୁଏ । ତେବେ ଏ କଥା କେବଳ 'ରାଜତନ୍ତ୍ର'ର ରାଜାମାନଙ୍କ ପାଇଁ ପ୍ରଯୁଜ୍ୟ ନୁହଁ । ଏହା ମଧ୍ୟ ଗଣତନ୍ତ୍ରରେ ଆମ ମନ୍ତ୍ରୀମାନଙ୍କ ପାଇଁ ପଯୁଜ୍ୟ । ରାଜତନ୍ତ୍ରର ରାଜାମାନେ ଓ ଗଣତନ୍ତ୍ରର ମନ୍ତ୍ରୀମାନେ ସବୁ କ୍ଷମତାର ଅଧିକାରୀ ଓ ଶାସନର ସର୍ବୋଚ୍ଚ କର୍ତ୍ତା । କିନ୍ତୁ ପୂର୍ବକାଳର ରାଜାମାନେ ଓ ଏବକାଳର ମନ୍ତ୍ରୀମାନେ ସବୁ ବିଷୟରେ ଜ୍ଞାନୀ ନୁହନ୍ତି ବା ସେମାନଙ୍କର ଯଥୋଚିତ ବିଚାରଶକ୍ତି ନ ଥାଏ, ବହୁଦର୍ଶିତା ନ ଥାଏ, ଏବଂ ଉପଯୁକ୍ତ ସମୟରେ ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାର କ୍ଷମତା ନ ଥାଏ । ସେଥିପାଇଁ ଆଗକାଳର ରାଜାମାନେ ବୁଦ୍ଧିମାନ୍ ଓ ବହୁଦର୍ଶୀ ମନ୍ତ୍ରୀମାନଙ୍କୁ ରଖୁଥିଲେ ଓ ସେମାନଙ୍କ ସୁପରାମର୍ଶ ଅନୁଯାୟୀ ଶାସନ କରୁଥିଲେ । ଯୋଉ ରାଜାମାନେ ହୁଣ୍ଡା, ଗୁଣ୍ଡା ଓ ମୂର୍ଖ ଏବଂ ହୀନପ୍ରକୃତି, ସେମାନେ ଉପଯୁକ୍ତ ମନ୍ତ୍ରୀ ରଖୁ ନ ଥିଲେ; କିମ୍ବା ଉପଯୁକ୍ତ ମନ୍ତ୍ରୀମାନଙ୍କ ପରାମର୍ଶ ଶୁଣୁ ନ ଥିଲେ । ତେଣୁ ସେମାନଙ୍କ ରାଜ୍ୟ ନଷ୍ଟ ହେଉଥିଲା ।

ଏ କଥା ମଧ୍ୟ ଆମ ଗଣତନ୍ତ୍ରରେ ସର୍ବୋଚ୍ଚ ଶାସକ ନିର୍ବାଚିତ ମନ୍ତ୍ରୀମାନଙ୍କ ପାଇଁ ଏକ ସମୁଚିତ ଚେତାବନୀ । ଗଣତନ୍ତ୍ରରେ ମନ୍ତ୍ରୀମାନଙ୍କୁ ଉପଯୁକ୍ତ ପରାମର୍ଶ ଦେବାପାଇଁ ଉଚ୍ଚଶିକ୍ଷିତ ତାଲିମ୍‌ପ୍ରାପ୍ତ ବୁଦ୍ଧିମାନ୍ ଅଫିସର, ସେକ୍ରେଟାରୀ ଓ ବିଶେଷଜ୍ଞମାନେ ଅଛନ୍ତି । କିନ୍ତୁ ଯେଉଁଠି ମୂର୍ଖ, ଚରିତ୍ରହୀନ, ହୁଣ୍ଡା, ଗୁଣ୍ଡା ମନ୍ତ୍ରୀମାନେ ଉପଯୁକ୍ତ ସଚିବ ବା ବିଶେଷଜ୍ଞମାନଙ୍କ ପରାମର୍ଶ ନ ଶୁଣି ନିଜ ମନମୁତାବକ କାର୍ଯ୍ୟ କରିଚାଲନ୍ତି, ସେଠାରେ ଗଣତନ୍ତ୍ର ଶାସନ ବିଫଳ ହୁଏ, ଏବଂ ସାଧାରଣ ଲୋକମାନେ ବହୁତ କଷ୍ଟ ପାଆନ୍ତି । କେବଳ ସାଧାରଣ ଲୋକେ ନୁହନ୍ତି, ବୈଜ୍ଞାନିକ, କବି, କଳାକାର ଓ ବିଭିନ୍ନ ଶ୍ରେଣୀର ପ୍ରତିଭାବାନ୍ ଗୁଣୀ ଲୋକମାନେ ମଧ୍ୟ ବହୁତ କଷ୍ଟରେ ବଞ୍ଚିଥାନ୍ତି । ସେମାନଙ୍କର ଗୁଣର ବିକାଶ ପାଇଁ ସେ ରାଜ୍ୟରେ କୌଣସି ସୁଯୋଗ ନ ଥିବାରୁ ସେମାନଙ୍କର ଅସାଧାରଣ ସୃଜନଶୀଳ ପ୍ରତିଭା ମଧ୍ୟ ଅକାଳରେ ଅକାରଣ ନଷ୍ଟ ହୋଇଯାଏ ।



# ୮୧. ... ଚନ୍ଦନଂ ନ ବନେ ବନେ ?

ଆମେ ସମସ୍ତେ ଜାଣୁ ଯେ, ସବୁ କଥା ସବୁ ସ୍ଥାନରେ ମିଳେ ନାହିଁ । ଅବଶ୍ୟ ଆଜିକାଲି ପଇସା ଦେଲେ ସବୁ କଥା ସବୁ ସ୍ଥାନରେ ମିଳିବ ବୋଲି କୁହାଯାଏ । ଏଇ ବୈଜ୍ଞାନିକ ଯୁଗରେ-ପୃଥିବୀ କେତେ ଛୋଟ ହୋଇଗଲାଣି । ଯାନବାହନର ଗତି କେତେ ଦ୍ରୁତ ହେଲାଣି । ଘଡ଼ିକେ ଏଠା ଜିନିଷ ସେଠି ପହଞ୍ଚିଯାଉଛି । ସେଠା ପଦାର୍ଥ ଏଠି ପହଞ୍ଚିଯାଉଛି ।

କିନ୍ତୁ ଚାଣକ୍ୟ ପଣ୍ଡିତେ, ସେ ଦୃଷ୍ଟିରୁ କଥାଟି କହୁ ନାହାନ୍ତି । ସେ କହୁଛନ୍ତି,

**ଶୈଳେ ଶୈଳେ ନ ମାଣିକ୍ୟଂ ମୌକ୍ତିକଂ ନ ଗଜେ ଗଜେ।**
**ସାଧବୋ ନ ହି ସର୍ବତ୍ର ଚନ୍ଦନଂ ନ ବନେ ବନେ।। (୨/୯)**

ଅର୍ଥାତ୍, ମାଣିକ୍ୟ ନାମ ମହାମୂଲ୍ୟବାନ୍ ରତ୍ନପଥର ପର୍ବତରେ ଅବଶ୍ୟ ମିଳେ। କିନ୍ତୁ ସବୁ ପର୍ବତରେ ମିଳେ ନାହିଁ। ସେହିପରି ମୁକ୍ତା ନାମକ ବହୁମୂଲ୍ୟ ରତ୍ନ ହାତୀମୁଣ୍ଡରୁ ମିଳିଥାଏ। ମାତ୍ର ସବୁ ହାତୀଙ୍କ ମସ୍ତକରେ ମୁକ୍ତା ନ ଥାଏ। ସାଧୁ ଲୋକେ ଅବଶ୍ୟ ଆମର ଏ ପୃଥିବୀରେ ଅଛନ୍ତି। ମାତ୍ର ସବୁ ଗ୍ରାମ ବା ସହରରେ ସାଧୁ ଲୋକ ମିଳନ୍ତି ନାହିଁ। ଏବଂ ଚନ୍ଦନବୃକ୍ଷ ଅବଶ୍ୟ ଅରଣ୍ୟରେ ଥାଏ। ମାତ୍ର ସବୁ ଅରଣ୍ୟରେ ଆପଣ ଚନ୍ଦନ ବୃକ୍ଷ ଖୋଜିଲେ ପାଇବେ ନାହିଁ । ସ୍ୱତନ୍ତ୍ର ଚନ୍ଦନ ବନରେ କେବଳ ଚନ୍ଦନବୃକ୍ଷମାନ ଥାଆନ୍ତି। କୌଣସି କୌଣସି ବନରେ କିଛି କିଛି ଚନ୍ଦନବୃକ୍ଷ ମିଳିପାରେ। ମାତ୍ର ସବୁ ଜଙ୍ଗଲରେ ଚନ୍ଦନ ବୃକ୍ଷ କାହୁଁ ଆସିବ ?

ପାଠକେ ! ଚାଣକ୍ୟ ପଣ୍ଡିତଙ୍କର ଏହି କେତୋଟି ନିଦର୍ଶନାତ୍ମକ ବାକ୍ୟରୁ ଆମେ ଏତିକି ମର୍ମ ବୁଝିବା ଯେ, ସବୁ ଭଲ ଜିନିଷ ସବୁଠି ମିଳେ ନାହିଁ । ସବୁ ଜାଗାରେ ମଧ ପ୍ରକୃତ ସାଧୁ, ସନ୍ଥ ଯୋଗୀମାନେ ନ ଥାନ୍ତି । ଚାଣକ୍ୟଙ୍କର ଏଇ ଶେଷପଦଟିର ସତ୍ୟତା ବା ବାସ୍ତବତାକୁ ପ୍ରମାଣ କରିବା ପାଇଁ ଅନ୍ୟ ନିଦର୍ଶନଗୁଡ଼ିକ ଦିଆଯାଇଛି । ମାଣିକ୍ୟ, ମୁକ୍ତା ଓ ଚନ୍ଦନ ଭଳି ପଦାର୍ଥ ଯେପରି ଦୁର୍ଲଭ,ମଣିଷ ସମାଜରେ ଯଥାର୍ଥ ସାଧୁ ମଣିଷଟିଏ ମଧ ସେହିପରି ଦୁର୍ଲଭ । ଚାଣକ୍ୟ ଅବଶ୍ୟ ସାଧୁ ଶବ୍ଦଟିକୁ କେବଳ ଗୈରିକ ବସନଧାରୀ, ଜଟାଜୁଟ ବିଲମ୍ବିତ ମସ୍ତକ, ଯୋଗୀ, ବୈରାଗୀ, ବାବାଜିମାନଙ୍କୁ ବୁଝାଉ ନାହାନ୍ତି କି ମୁନିଋଷି ତପୀମାନଙ୍କ କଥା କହୁ ନାହାନ୍ତି । ସେମାନେ ଅବଶ୍ୟ ସହର ଜନପଦମାନଙ୍କରେ କିଛି କିଛି ଅଛନ୍ତି । ହିମାଳୟ ବିନ୍ଧ୍ୟାଦି ପର୍ବତ

ଗୁମ୍ଫାମାନଙ୍କରେ ବି କେତେ ସେପରି ସାଧୁ ସାଧନାରତ ଅଛନ୍ତି । ମଠ, ମିଶନ, ଆଶ୍ରମମାନଙ୍କରେ ବି କିଛି ଆଧ୍ୟାତ୍ମିକ ସାଧକ ନିଶ୍ଚୟ ଅଛନ୍ତି ।

କିନ୍ତୁ ଚାଣକ୍ୟ ପଣ୍ଡିତେ ଏଠାରେ ସେହିସବୁ ସାଧୁଙ୍କ କଥା କହୁ ନାହାନ୍ତି । ତାଙ୍କ କହିବାର ମର୍ମ ହେଲା, ଆମେ ଯେଉଁ ସମାଜରେ ଚଳୁଛୁ ବା ଯୋଉ ରାଜ୍ୟରେ ଚଳୁଛୁ, ସେସବୁ ଜାଗାରେ ମଣିଷମାନେ ହାଉଯାଉ ହେଉଛନ୍ତି । ଅସଂଖ୍ୟ ମଣିଷଙ୍କ ଦାଉରେ ଗ୍ରାମ ଓ ସହର ସବୁ ଉଠୁଛି ପଡୁଛି । କହିବାକୁ ଗଲେ ମଣିଷଙ୍କ ସଂଖ୍ୟା ଦିନକୁ ଦିନ ପୃଥିବୀରେ ବଢ଼ି ବଢ଼ି ଚାଲିଛି । ଗୋଟିଏ ଶତାବ୍ଦୀ ଭିତରେ ମଣିଷଙ୍କ ସଂଖ୍ୟା ପ୍ରାୟ ସତୁରି ଅଶୀ ଗୁଣ ବଢ଼ିଯାଉଛି । ମାତ୍ର ସାଧୁ ମଣିଷଙ୍କ ସଂଖ୍ୟା ସେହି ଅନୁପାତରେ ବଢ଼ିଛି କି ?

ସାଧୁ ଅର୍ଥ ଏଠାରେ ଜଣେ ସତ୍‌ମଣିଷ, ସଜ୍ଜନ ମଣିଷକୁ ବୁଝାଉଛି । ଯେଉଁ ମଣିଷ ଅହଂକାରୀ ନୁହେଁ, ସ୍ୱାର୍ଥପର ନୁହେଁ, ମିଥ୍ୟାଚାରୀ ନୁହେଁ, ଅତ୍ୟାଚାରୀ ନୁହେଁ, ପାପାଚାରୀ ନୁହେଁ ଏବଂ ଯେଉଁ ମଣିଷ ସରଳ, ଶୁଦ୍ଧାଚାରୀ, ପରୋପକାରୀ, ସତ୍‌ପ୍ରକୃତିର ସେହି ମଣିଷକୁ ଆମେ ସାଧୁ ମଣିଷ କହିବା । ଯେଉଁ ମଣିଷ ଅନ୍ୟ ଦୁଃଖରେ ସହାନୁଭୂତିଶୀଳ ହୋଇ ତାକୁ ସାହାଯ୍ୟ କରେ, ଯେଉଁ ମଣିଷ ସର୍ବଦା ସନ୍ତୁଷ୍ଟ ଥାଏ, ଈଶ୍ୱରଙ୍କ ପ୍ରତି ଯାହାର ଅନୁରକ୍ତି ଓ ଆନୁଗତ୍ୟ ଥାଏ, ଯେ କୃତଜ୍ଞ, ସାହସୀ, ଆଶାବାଦୀ, ଜ୍ଞାନପିପାସୁ, ଦୟା କ୍ଷମାଦି ଗୁଣରେ ପରିପୂର୍ଣ୍ଣ, ସେହିଭଳି ଲୋକଙ୍କୁ ଆମେ ସାଧୁ ଲୋକ କହିବା ।

ମହାମତି ଚାଣକ୍ୟ ମଧ୍ୟ ସେହି 'ସାଧୁ' ମଣିଷଙ୍କ କଥା କହୁଛନ୍ତି । ସେପରି ସାଧୁ ମଣିଷ ଆମ ସମାଜରେ ନିଶ୍ଚୟ ବିରଳ । ସାଧୁ ଶାସକ, ସାଧୁ କର୍ମଚାରୀ, ସାଧୁ ଶିକ୍ଷକ, ସାଧୁ ଡାକ୍ତର, ସାଧୁ ଇଞ୍ଜିନିୟର, ସାଧୁ ରାଜନେତା, ସାଧୁ ବିଚାରପତି, ସାଧୁ କୃଷକ, ସାଧୁ ଶ୍ରମିକ, ଏପରିକି ସାଧୁ ପୁରୋହିତ ଓ ସାଧୁ ବାବାଜିଟିଏ ବର୍ତ୍ତମାନ ଆମ ସମାଜରେ ପାଇବା ସହଜ ନୁହେଁ ।

ତେବେ ଏ କଥା ସତ ଯେ, ସବୁଠାରେ ଏପରି ସାଧୁ ମଣିଷ ଦୁର୍ଲଭ ହେଲେ ହେଁ ପୃଥିବୀର ସବୁ ଗ୍ରାମ ଓ ସହରରେ ତଥାପି କିଛି କିଛି ସାଧୁ ଲୋକ ଅଛନ୍ତି; ଏବଂ ସେମାନଙ୍କ ଧର୍ମରେ ଏ ପୃଥିବୀ ଚାଲିଛି ।



# ୮୨. ... ସ୍ତ୍ରୀ ରତ୍ନଂ ଦୁଷ୍କୁଳାଦ

ପାଠକେ ! ଆମେ ବର୍ତ୍ତମାନ ମହାମତି ନୀତିଜ୍ଞ ଚାଣକ୍ୟ ପଣ୍ଡିତଙ୍କର 'ବିବାହ' ସମ୍ପର୍କରେ ମତାମତ ଉପରେ ଆଲୋଚନା କରିବା ।

**ବରୟେତ୍ କୁଳଜାଂ ପ୍ରାଜ୍ଞୋ ବିରୂପାମପି କନ୍ୟକାମ୍।**
**ରୂପଶୀଳାଂ ନ ନୀଚସ୍ୟ ବିବାହଃ ସଦୃଶେ କୁଳେ ॥ (୧/୧୪)**

ଏହି ଶ୍ଳୋକରେ ଚାଣକ୍ୟ ମହାଶୟ ବିବାହ ବିଚାରରେ 'କୁଳ' ଉପରେ କିଛି ଗୁରୁତ୍ୱ ଦେଇଛନ୍ତି । ଅନ୍ୟ ପକ୍ଷରେ 'ପାତ୍ରୀ' ଉପର ମଧ୍ୟ ଗୁରୁତ୍ୱ ଦେଇଛନ୍ତି । ସେ କହନ୍ତି, ବୁଦ୍ଧିମାନ ବା ଜ୍ଞାନୀବ୍ୟକ୍ତି ଉତ୍ତମ କୁଳରୁ କନ୍ୟାଟିଏ ବିବାହ କରିବା ଉଚିତ । ସେ କନ୍ୟାଟି ସୁନ୍ଦର ହେଉ ବା ଅସୁନ୍ଦର ହେଉ, ସତ୍‌କୁଳଜାତା ବା ସମ୍ଭ୍ରାନ୍ତ ବଂଶରେ ଜନ୍ମଲାଭ କରିଥିବା କନ୍ୟାକୁ ଇ ବଧୂରୂପେ ଗ୍ରହଣ କରିବା ଉଚିତ ।

ପାଠକେ ! ଚାଣକ୍ୟଙ୍କ କହିବା ଉଦ୍ଦେଶ୍ୟ ଥିଲା, ସମ୍ଭ୍ରାନ୍ତ କୁଳରେ ବା ସତ୍‌ଧର୍ମପରାୟଣ ବଂଶରେ ଜାତ ହୋଇଥିବା କନ୍ୟାଟିର ସ୍ୱଭାବ, ଚରିତ୍ର ଓ ବ୍ୟବହାର ନିଶ୍ଚୟ ଶୁଦ୍ଧ, ଭଦ୍ର ଓ ଭବ୍ୟ ମଧ୍ୟ ହୋଇଥିବ । ସେ କେବେ ନୀଚମନା ହୋଇ ନ ଥିବ, କ୍ଷୁଦ୍ର ବୁଦ୍ଧି ହୋଇ ନ ଥିବ; ଏବଂ ସେ ମଧ୍ୟ କେବେ ବଂଶ ମର୍ଯ୍ୟାଦା ଓ କୁଳଧର୍ମକୁ ଉଲ୍ଲଙ୍ଘନ କରିବ ନାହିଁ । ବରଂ ସେ ତା'ର ସମଗ୍ର ଜୀବନ ବଂଶର ମର୍ଯ୍ୟାଦା ଓ ଧର୍ମ ବୃଦ୍ଧି କରିବାରେ ନିୟୋଜିତ କରିବ । ଏପରି କନ୍ୟା ଯଦି ସାମାନ୍ୟ କାଳୀ ବା ସାମାନ୍ୟ ଛୋଟୀ ବା ସାମାନ୍ୟ ଟେରୀ ହୋଇଥାଏ, ତେବେ କିଛି କ୍ଷତି ନାହିଁ । କାରଣ, ବାହାରର ସୌନ୍ଦର୍ଯ୍ୟ ଅପେକ୍ଷା ଅନ୍ତରର ସୌନ୍ଦର୍ଯ୍ୟ ବଡ଼ କଥା । ଦେହର ସୌନ୍ଦର୍ଯ୍ୟ ଅଳ୍ପ ଦିନରେ ମ୍ଲାନ ପଡ଼ିଯାଏ । ମାତ୍ର ମନର ସୌନ୍ଦର୍ଯ୍ୟ, ହୃଦୟର ସୌନ୍ଦର୍ଯ୍ୟ ମଣିଷର ମୃତ୍ୟୁ ପର୍ଯ୍ୟନ୍ତ ଥାଏ । ଉଚ୍ଚକୁଳରେ ଜନ୍ମ ହୋଇଥିବା ପୁଅଝିଅମାନେ କେବେ ନିମ୍ନଗାମୀ ହେବେ ନାହିଁ ବୋଲି ଆମେ ଆଶା କରୁ । କିନ୍ତୁ ବହୁବେଳେ ଭଗବାନ୍ ଶ୍ରୀକୃଷ୍ଣଙ୍କ ପବିତ୍ର ଯଦୁବଂଶରେ ଘୋଡ଼ାମୁହାଁ ବାଲୁଙ୍ଗାମାନେ ବି ଜନ୍ମ ହୁଅନ୍ତି; ଏବଂ ମହାନ୍ ରଘୁବଂଶର ଚବିଶ ପୁରୁଷ ପରେ ଅକାଳ କୁଷ୍ମାଣ୍ଡମାନେ ଜନ୍ମହୋଇ ବଂଶଟିକୁ ଲୋପ କରିଦିଅନ୍ତି । ଅନ୍ୟପକ୍ଷରେ ନୀଚ କୁଳରେ ମଧ୍ୟ ମହା ମହା ମଣିଷମାନେ ଜନ୍ମ ହେବାର ଉଦାହରଣ ରହିଛି । ପୃଥିବୀର ଇତିହାସରେ ବହୁ ବହୁ ବିଖ୍ୟାତ କବି, ବୈଜ୍ଞାନିକ, ରାଷ୍ଟ୍ରନାୟକ, ଦାର୍ଶନିକ ଓ କଳାବିଦ୍ ଅତି ସାମାନ୍ୟ ଅନାମଧେୟ ବଂଶରେ ଜନ୍ମଗ୍ରହଣ କରିଥିଲେ। ଏବେ ମଧ୍ୟ କରୁଛନ୍ତି। ପୁରାଣ

ଯୁଗରେ ପ୍ରଖ୍ୟାତ କୁରୁବଂଶରେ ଦୁର୍ଯ୍ୟୋଧନ ଭଳି କୁଳାଙ୍ଗାରମାନେ ଯେପରି ଜନ୍ମ ହୋଇଥିଲେ; ଯୁଧିଷ୍ଠିର, ଅର୍ଜୁନଙ୍କ ପରି ଧର୍ମାତ୍ମାମାନେ ମଧ୍ୟ ଆପଣାର ଗୁଣ ଯଶରେ ସେ ବଂଶର ଗରିମା ରକ୍ଷା କରିଥିଲେ । ସେହିପରି ହିରଣାକ୍ଷ ଓ ହିରଣ୍ୟକଶିପୁଙ୍କ ଭଳି ଅସୁରଙ୍କ ବଂଶରେ ପ୍ରହ୍ଲାଦଙ୍କ ପରି ମହାତ୍ମା ଜନ୍ମ ହୋଇଥିଲେ। ତାଙ୍କ ପୁତ୍ର ବିରୋଚନ ଓ ନାତି ମହାଦାନୀ ବଳି ମଧ୍ୟ ଜନ୍ମ ଗ୍ରହଣ କରିଥିଲେ। ତେଣୁ ଉତ୍ତମ କୁଳ ବା ବଂଶର ନିଶ୍ଚୟ ଏକ ମହତ୍ ପରମ୍ପରା ଥାଏ। ମାତ୍ର ନୀଚ କୁଳକୁ ମଧ୍ୟ ଯୋଗଜନ୍ମା ବ୍ୟକ୍ତି ନିଜ ନିଜର ଧର୍ମ, କର୍ମ, ଆଦର୍ଶ, ଅଭୀପ୍ସା ଓ ଉଦ୍ୟମ ବା ସାଧନା ବଳରେ ଉଚ୍ଚକୁଳ ବା ଉଚ୍ଚବଂଶର ସୋପାନକୁ ଉଠାଇ ନେଇଛନ୍ତି। ତେଣୁ ଚାଣକ୍ୟ ପଣ୍ଡିତଙ୍କର ନୀଚ କୁଳ, ଉଚ୍ଚ କୁଳ ସମ୍ବନ୍ଧୀୟ ଧାରଣାରେ ଆଂଶିକ ସତ୍ୟ ମାତ୍ର ରହିଛି। ପୂର୍ଣ୍ଣ ସତ୍ୟ ନୁହଁ।

ତା' ପରେ ଚାଣକ୍ୟ କହୁଛନ୍ତି, ନୀଚ କୁଳରେ ସୁନ୍ଦରୀ ରୂପସୀ କନ୍ୟାଟିଏ ଥିଲେ ମଧ୍ୟ ତାକୁ ବିବାହ କରିବା ଅନୁଚିତ। କାରଣ ବୈବାହିକ ସମ୍ବନ୍ଧ ସର୍ବଦା ସମାନ ମର୍ଯ୍ୟାଦା ଓ ସଂସ୍କୃତି ଥିବା ବଂଶ ବଂଶ ମଧ୍ୟରେ ହୋଇଥାଏ ।

ପାଠକେ! ଏ ସମ୍ବନ୍ଧେ ମଧ୍ୟ ଆମେ ଗୋଟିଏ କଥା ବିଚାରକୁ ଆଣିବା ଉଚିତ । ତାହା ହେଲା ଚାଣକ୍ୟ ପଣ୍ଡିତେ ଉଚ୍ଚ ବଂଶ ବା ଉଚ୍ଚ କୁଳର କୌଣସି ସଂଜ୍ଞା ଦେଇ ନାହାନ୍ତି । କିନ୍ତୁ ଆମେ ଯାହା ଦେଖିଆସୁଛୁ, ଉଚ୍ଚ କୁଳ ବା ବଂଶ ସାମାଜିକ ଜାତିଭେଦ ଉପରେ ନିର୍ଭର କରେ ନାହିଁ । ଜଣେ ବ୍ରାହ୍ମଣ ବଂଶରେ ବା କ୍ଷତ୍ରିୟ ବଂଶରେ ଜନ୍ମ ହୋଇଛି ବୋଲି ଯେ ଖୁବ୍ ପଣ୍ଡିତ ଏବଂ ଧାର୍ମିକ ହେବ ବା ଖୁବ୍ ବୀରପୁରୁଷ ବା ବୀରା ନାରୀ ହେବ, ଏପରି କିଛି ମାନେ ନାହିଁ । ଆମେ ଯାହା ଲକ୍ଷ୍ୟ କରିଛୁ, କେଶରୀ (ସିଂହ) ବଂଶରେ ଶୃଗାଳ ଓ ଗଧିଆମାନେ ଜନ୍ମ ହୋଇଛନ୍ତି; ଏବଂ ତଥାକଥିତ ଶୂଦ୍ର, ହରିଜନ ବା ଗିରିଜନମାନଙ୍କ କୁଳରେ ମହାକବି ଭୀମଭୋଇ ଓ ଭକ୍ତ ଶିରୋମଣି ଦାସିଆ ବାଉରୀ ଜନ୍ମ ହୋଇଛନ୍ତି; ଏବଂ ସେମାନେ ଜାତିର ପ୍ରାତଃ ସ୍ମରଣୀୟ ନମସ୍ୟ ବ୍ୟକ୍ତି ରୂପେ ଆମ ମନୋଭୂମିରେ ଚିରଦିନ ପାଇଁ ଜୀବିତ ଅଛନ୍ତି ।

ତେଣୁ ପାଠକେ! ଜ୍ୱାଇଁ ନିର୍ବାଚନ କଲାବେଳେ ବା ବଧୂ ନିର୍ବାଚନ କଲାବେଳେ ଏଇ ତଥାକଥିତ ସାମାଜିକ ଜାତିଭେଦ ବା କୁଳଭେଦ ଉପରେ ଖୁବ୍ ବେଶି ନିର୍ଭର କରିବା ଉଚିତ ନୁହଁ। ବ୍ୟକ୍ତିଗତ ଚରିତ୍ର, ସଭ୍ୟତା ଓ ସଂସ୍କୃତି ଉପରେ ନିର୍ଭର କରିବା ହିଁ ବିଜ୍ଞତାର କଥା ହେବ।

ଶେଷକଥାଟି ହେଉଛି, ଆଧୁନିକ କାଳରେ ଓ ଆଗାମୀ ଭବିଷ୍ୟତ୍‌ରେ 'ବିବାହ' ପ୍ରସଙ୍ଗଟି ଆଉ ଅଭିଭାବକମାନଙ୍କ ଉପରେ ନିର୍ଭର କରିବ ନାହିଁ। ପୁତ୍ର କନ୍ୟାମାନେ ନିଜ ନିଜର ରୁଚି ଓ ଆଦର୍ଶ ଅନୁଯାୟୀ ସେମାନଙ୍କର ଜୀବନ ସାଥୀମାନଙ୍କୁ ବାଛିବେ। ତେଣୁ ଏ କ୍ଷେତ୍ରରେ ମଧ୍ୟ ଉଚ୍ଚ ବଂଶ ନୀଚ ବଂଶ କଥା ଉଠୁ ନାହିଁ। ଉପରୋକ୍ତ ଶ୍ଳୋକଟି ପରେ ଚାଣକ୍ୟ ପଣ୍ଡିତେ ବିବାହ ପ୍ରସଙ୍ଗ ଉପରେ ଆଉ ଗୋଟିଏ ଶ୍ଳୋକ ଲେଖିଛନ୍ତି-

**ବିଷାଦପ୍ୟମୃତଂ ଗ୍ରାହ୍ୟମମେଧ୍ୟାଦପି କାଞ୍ଚନମ୍।**
**ନୀଚାଦପ୍ୟୁତ୍ତମାଂ ବିଦ୍ୟାଂ ସ୍ତ୍ରୀରତ୍ନଂ ଦୁଷ୍କୁଳାଦପି ।। (୧/୧୬)**

ଅର୍ଥାତ୍, ବିଷକୁଣ୍ଡ ଭିତରେ ଯଦି ଅମୃତ କଳସୀଟିଏ ଥାଏ, ତେବେ ତାକୁ ବିନା ବିଚାରରେ ଗ୍ରହଣ କରିବା ଉଚିତ । ଯଦି କୁତ୍ସିତ ପଙ୍କ ବା ଦୁର୍ଗନ୍ଧ ମଳକୁଣ୍ଡ ଭିତରେ ଖଣ୍ଡିଏ ସୁନାକାଠି ପଡ଼ିଥାଏ, ତେବେ ବିନାଦ୍ୱିଧାରେ ସେଇ ସୁନାଖଣ୍ଡଟିକୁ ତୋଳିନେବା ଉଚିତ । ଆଉ ମଧ୍ୟ ଯଦି ନୀଚକୁଳ ଜାତ କୌଣସି ଜ୍ଞାନୀ ଗୁଣୀ ଓ ପ୍ରତିଭାଶାଳୀ ବ୍ୟକ୍ତି ତୁମ ନିକଟରେ ଥାନ୍ତି, ତେବେ ତାଙ୍କଠାରୁ ଖୁବ୍ ବିନୀତ ଭାବେ ଆଗ୍ରହ ସହକାରେ ଜ୍ଞାନଲାଭ କରିବା ଉଚିତ୍ ଏବଂ ତାଙ୍କୁ ଗୁରୁ ରୂପେ ବରଣ କରି ମାନ୍ୟତା ପ୍ରଦର୍ଶନ କରିବା ଉଚିତ ।

ଶ୍ଳୋକର ଶେଷବାକ୍ୟଟି ହେଲା, ଅତ୍ୟନ୍ତ ଖରାପ କୁଳରେ ବା ଘୋର ପାପାଚାରୀମାନଙ୍କ ବଂଶରେ ଯଦି ନାରୀରତ୍ନଟିଏ ଥାଏ, ତେବେ ସେ ଯଦି ରାଜି ହୁଅନ୍ତି, ଉଚ୍ଚକୁଳଜାତ ବ୍ୟକ୍ତି ତାଙ୍କୁ ମହାସମ୍ମାନ ଓ ଆଦରର ସହିତ ବିବାହ କରିବା ଉଚିତ। ଗୋବରଖାତରେ ରତ୍ନଖଣ୍ଡିଏ ପଡ଼ିଥିଲେ, ତାକୁ ଯେପରି ଗୋଟାଇ ଆଣିବାକୁ ହୁଏ, ସେହିପରି ରୂପବତୀ, ଜ୍ଞାନବତୀ, ଗୁଣବତୀ କନ୍ୟାଟିଏ ଯେତେ କଦର୍ଯ୍ୟ ବଂଶରେ ଜନ୍ମ ହୋଇଥାଉ ପଛେ, ତା' ସହିତ ବିବାହ କରିବା ଉଚିତ। ଏ କ୍ଷେତ୍ରରେ କନ୍ୟାର କୁଳ ବା ବଂଶମର୍ଯ୍ୟାଦା ଥିଲେ ଭଲ, ନ ଥିଲେ କିଛି ଯାଏ ଆସେ ନାହିଁ।

ପାଠକେ! ଏହି ଶ୍ଳୋକଟିରେ ଚାଣକ୍ୟ ପଣ୍ଡିତଙ୍କର ଏକ ଉଦାର ମହାନ୍ ପ୍ରଜ୍ଞା ପ୍ରକାଶ ପାଇଛି । କିନ୍ତୁ ଆମେ ଉପସଂହାରରେ ଏତିକି କେବଳ କହିବୁ ଯେ, ଏଇ ସତ୍ୟଟି ବର ଓ କନ୍ୟା, ବା ପୁଅ ଓ ଝିଅ ଉଭୟ କ୍ଷେତ୍ରରେ ସମାନ । ନୀଚ କୁଳରେ ବା ବଂଶରେ ଗୁଣବାନ୍, ପ୍ରତିଭାବାନ୍, ରୂପବାନ୍, ବଳବାନ୍ ପୁଅଟିଏ ଜନ୍ମ ହୋଇଥିଲେ ତାକୁ ମଧ ଉଚ୍ଚ କୁଳଜାତା କନ୍ୟା ବା ସମ୍ଭ୍ରାନ୍ତବଂଶସମ୍ଭୂତା କନ୍ୟା ତା'ର

ପତିପଦରେ ବରଣ କରିବା ଉଚିତ । ଭଗୀରଥ ସଗର ବଂଶକୁ ଉଦ୍ଧାର କଲା ଭଳି ବହୁ ସୁପୁତ୍ର ଓ ସୁକନ୍ୟା ଆପଣା ଆପଣାର ମର୍ଯ୍ୟାଦାହୀନ ବଂଶକୁ ନୂତନ ମର୍ଯ୍ୟାଦାରେ ପ୍ରତିଷ୍ଠିତ କରିଛନ୍ତି ।



## ୮୩. ... ଯଃ ତିଷ୍ଠତି ସ ବାନ୍ଧବଃ ?

ପାଠକେ ! ଆଜି ଆମେ ମହାପ୍ରାଜ୍ଞ ଚାଣକ୍ୟ ପଣ୍ଡିତ ପ୍ରକୃତ ଭୃତ୍ୟ, ପ୍ରକୃତ ବନ୍ଧୁ, ପ୍ରକୃତ ମିତ୍ର ଏବଂ ପ୍ରକୃତ ପତ୍ନୀକୁ କେତେବେଳେ ପ୍ରକୃତ ବୋଲି ଜାଣିବା ସେ ସମ୍ବନ୍ଧେ ସୂଚନା ଦେଇ କହୁଛନ୍ତି-

**ଜାନୀୟାତ୍ ପ୍ରେଷଣେ ଭୃତ୍ୟାନ୍ ବାନ୍ଧବାନ୍ ବ୍ୟସନାଽଽଗମେ ।**
**ମିତ୍ରଂ ଚାଽଽପତ୍ତିକାଳେଷୁ ଭାର୍ଯ୍ୟାଂ ଚ ବିଭବକ୍ଷୟେ ।। (୧/୧୧)**

ଏହାର ଅର୍ଥ ହେଲା, କାର୍ଯ୍ୟରେ ନିଯୁକ୍ତ ହେଲା ପରେ ଯେଉଁ ବେତନଭୋଗୀ ସେବାକାରୀ ସେ କାର୍ଯ୍ୟଟିକୁ ଉତ୍ତମ ରୂପେ ସମ୍ପାଦନ କରୁଛି ବୋଲି ପ୍ରମାଣିତ ହେବ, ସେ ହିଁ ଉତ୍ତମ ଭୃତ୍ୟ । ସେହିପରି ଆମର ଯେଉଁ ସାମାଜିକ ବନ୍ଧୁବାନ୍ଧବମାନେ ଅଛନ୍ତି ଯଥା : ମାମୁ, ପିଇସା, ମଉସା, ଶ୍ୱଶୁର, ଶଳା, ସମ୍ବନ୍ଧୀ, ସଢୁ ଇତ୍ୟାଦି ସେମାନଙ୍କର ବନ୍ଧୁପଣିଆ କେତେବେଳେ ପ୍ରମାଣିତ ହୁଏ ? ଆମର ସୁଖସମୃଦ୍ଧି ବେଳାରେ କିମ୍ୱା ଆମର ବିବାହ, ବ୍ରତ, ଗୃହ ପ୍ରତିଷ୍ଠା ପ୍ରଭୃତି ନାନାବିଧ ଆନନ୍ଦପ୍ରଦ ଉତ୍ସବାଦିରେ ଯେଉଁ ବନ୍ଧୁବାନ୍ଧବମାନେ ନିଜେ ଖୁସି ହୋଇ ଆମର ସୁଖ ଆନନ୍ଦରେ ଭାଗୀଦାର ହୁଅନ୍ତି, ସେମାନେ ଇ ଆମର ପ୍ରକୃତ ବନ୍ଧୁବାନ୍ଧବ। ଘରେ ନିମିତ୍ତ ପର୍ବପର୍ବାଣିରେ ପ୍ରକୃତ ବନ୍ଧୁବାନ୍ଧବମାନେ ବେଶ୍ ସାହାଯ୍ୟ ସହଯୋଗ କରନ୍ତି ।

ସେହିପରି କାହାକୁ ଆମେ ଯଥାର୍ଥ ବା ଉତ୍ତମ ମିତ୍ର ବୋଲି କହିବା ? ବନ୍ଧୁ ଓ ମିତ୍ର ଭିତରେ ପାର୍ଥକ୍ୟ ହେଉଛି ବନ୍ଧୁ ଏକ ସାମାଜିକ ସମ୍ପର୍କ ବା ସମ୍ବନ୍ଧ । ମାତ୍ର ମିତ୍ର ହେଲା ଏକ ଭାବାବେଗଜନିତ ସମ୍ପର୍କ ବା ସମ୍ବନ୍ଧ । ସୁହୃଦ୍ ଓ ସଖା ମଧ୍ୟ ସେହିଭଳି ଭାବାବେଗର ସମ୍ପର୍କ । ତାହା କେବଳ ପରସ୍ପରର ଭାବ ଆଦାନପ୍ରଦାନ ଭିତରେ ତିଷ୍ଠି ଥାଏ ।

କୌଣସି ଭୟଙ୍କର ବିପଦକାଳରେ ଯେ ତୁମ ପ୍ରତି ସହାନୁଭୂତିଶୀଳ ହୋଇ, ଅନୁକମ୍ପାଶୀଳ ହୋଇ, ତୁମ ପାଖରେ ଆସି ଛିଡ଼ା ହେଲା, ତୁମକୁ ଅହେତୁକୀ ସାହାଯ୍ୟ

କଲା ଏପରିକି ତୁମଙ୍କୁ ବିପଦରୁ ମୁକ୍ତ କରିବା ପାଇଁ ନିଜେ ମଧ୍ୟ ବିପଦ ବରଣ କଲା, ସେ ହିଁ ତୁମର ପ୍ରକୃତ ମିତ୍ର।

ସେମିତି ତୁମର ବିବାହିତା ଭାର୍ଯ୍ୟାଟିର କେଉଁ ବିଶେଷ ଗୁଣଟି ଥିଲେ ତାକୁ ଆମେ ଉତ୍ତମ ଭାର୍ଯ୍ୟା ବୋଲି କହିବା ? ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଯେଉଁ ଭାର୍ଯ୍ୟା ସୁଖସମୃଦ୍ଧି ବେଳେ ତୁମ ପାଖେ ଥାଏ ଏବଂ ସବୁପ୍ରକାର ସୁଖ ବିଳାସ ଭୋଗୁଥାଏ, ମାତ୍ର ବିପଦ ବେଳେ, ସର୍ବନାଶର ବେଳାରେ ତୁମକୁ ଗୋଟିଏ ମୁହୂର୍ତ୍ତ ପାଇଁ ଛାଡ଼ି କୁଆଡ଼େ ପଳାଇ ଯାଏ ନାହିଁ। ସେ ହିଁ ତୁମର ଯଥାର୍ଥ ପତ୍ନୀ ବା ଭାର୍ଯ୍ୟା ତୁମର ବିପଦ ବେଳେ, ତୁମର ସମ୍ପତ୍ତି କ୍ଷୟ ହୋଇଗଲା ପରେ ତୁମେ ନିଃସ୍ୱ ଦରିଦ୍ର ହୋଇଗଲା ପରେ ମଧ୍ୟ ଯେ ତୁମ ପ୍ରତି ବିମୁଖା ହୁଏ ନାହିଁ, ପ୍ରେମହୀନା ହୁଏ ନାହିଁ, ତାକୁ ଇ ଯଥାର୍ଥରେ ଉତ୍ତମା ପତ୍ନୀ ବା ଉତ୍ତମା ଭାର୍ଯ୍ୟା ବୋଲି କୁହାଯିବ ।

ଚାଣକ୍ୟ ପଣ୍ଡିତେ ଏହି ଶ୍ଳୋକଟିରେ ଉତ୍ତମ ଭୃତ୍ୟ, ପ୍ରକୃତବନ୍ଧୁ, ପ୍ରକୃତମିତ୍ର ଏବଂ ପ୍ରକୃତ ଭାର୍ଯ୍ୟା ବିଷୟରେ ଯାହା ସୂଚାଇଛନ୍ତି, ତାହା ନିଶ୍ଚିତ ଭାବେ ସାର୍ବଜନୀନ ଓ ସାର୍ବକାଳିକ ସତ୍ୟ । ତେବେ ଆମେ ଅନ୍ତତଃ ତାଙ୍କ ବାକ୍ୟକୁ ମାନ୍ୟତା ଦେଇ ଆଉ କିଛି କଥା ସେଥିରେ ଯୋଡ଼ି ପାରିବା । ତା' ହେଲା, ତୁମେ ଯଦି ଉତ୍ତମ ଭୃତ୍ୟଟିଏ ଚାହୁଁଥାଅ, ତେବେ ତୁମକୁ ମଧ୍ୟ ଜଣେ ଉତ୍ତମ ମାଲିକ ହେବାକୁ ପଡ଼ିବ । ତୁମେ ଯଦି ଉତ୍ତମ ବନ୍ଧୁ ବା ମିତ୍ର ଚାହୁଁଥାଅ, ତେବେ ତୁମକୁ ମଧ୍ୟ ଜଣେ ଉତ୍ତମ ବନ୍ଧୁ ଓ ମିତ୍ର ହେବାକୁ ପଡିବ । ପରିଶେଷରେ ତୁମେ ଯଦି ଉତ୍ତମ ପତ୍ନୀଟିଏ ଆଶା କରୁଥାଅ, ତେବେ ତୁମକୁ ମଧ୍ୟ ଜଣେ ଉତ୍ତମ ସ୍ୱାମୀ ବା ପତି ହେବାକୁ ପଡ଼ିବ ।

ଚାଣକ୍ୟ ପଣ୍ଡିତ ଆଉ ଗୋଟିଏ ଶ୍ଳୋକରେ ପ୍ରକୃତ ବନ୍ଧୁର ସ୍ୱରୂପ ଲକ୍ଷଣ ସମ୍ବନ୍ଧେ କହୁଛନ୍ତି-

**ଆତୁରେ ବ୍ୟସନେ ପ୍ରାପ୍ତେ ଦୁର୍ଭିକ୍ଷେ ଶତ୍ରୁ ସଂକଟେ।**
**ରାଜଦ୍ୱାରେ ଶ୍ମଶାନେ ଚ ଯସ୍ତିଷ୍ଠତି ସ ବାନ୍ଧବଃ ।। (୧/୧୨)**

ଅର୍ଥାତ୍, ଯେଉଁ ଲୋକ ତୁମର ଆତୁର ସମୟରେ ଅଥବା ତୁମେ କିଛି ଖରାପ କାମରେ ରତ ଥିଲାବେଳେ; କିମ୍ବା ଖାଦ୍ୟ ସଂକଟରେ ପଡ଼ିଥିଲା ବେଳେ, କିମ୍ବା ଶତ୍ରୁମାନଙ୍କ ଦ୍ୱାରା ଆକ୍ରାନ୍ତ ହେବାବେଳେ ରାଜାଙ୍କ ବିଚାରାଳୟରେ ତୁମର କୌଣସି କୁକର୍ମର ବିଚାର ଚାଲିଥିଲାବେଳ, କିମ୍ବା ତୁମ ଉପରେ ଅକାରଣରେ ରାଜଦଣ୍ଡ ଉଦ୍ୟତ ହେଲାବେଳେ, ଏବଂ ପରିଶେଷରେ ତୁମର ମୃତ୍ୟୁଶଯ୍ୟା ପାଖରେ ବା ତୁମର ମୃତ୍ୟୁପର

ଶବଦାହ ବେଳେ ଶ୍ମଶାନରେ ଉପସ୍ଥିତ ଥାଏ, ସେହି ଲୋକ ହିଁ ତୁମର ଯଥାର୍ଥ ବନ୍ଧୁ ।

ପାଠକେ ! ଚାଣକ୍ୟ ପଣ୍ଡିତଙ୍କର ପ୍ରକୃତ ବନ୍ଧୁ-ପରିଚୟ ବା ଲକ୍ଷଣ ଆମେ ବୁଝିପାରିଲୁ। କିନ୍ତୁ ଅସଲ କଥାଟି ହେଲା, ଆମେ ନିଜେ ଜଣେ ଭଲ ବନ୍ଧୁ ହୋଇ ପାରିଛୁ କି ନାହିଁ। ଜୀବନରେ ଆମେ କେତେ ଜଣଙ୍କ ସହିତ ବନ୍ଧୁତା ସ୍ଥାପନ କରିଛୁ ? କେତେ ଲୋକଙ୍କ ସହିତ ଆମେ ମିତ୍ରଭାବର ସମ୍ପର୍କ ପାତିପାରିଛୁ ? କେତେ ନରନାରୀଙ୍କ ସହିତ ଆମର ମନ ଓ ହୃଦୟର ଚିନ୍ତା ଓ ଅନୁଭୂତି ମିଳାଇପାରିଛୁ ? କେତେ ଲୋକଙ୍କୁ ଆମେ ନିଷ୍କାମ ଭାବେ ଭଲପାଇ ପାରିଛୁ ? କାହା ସହିତ ବନ୍ଧୁତା ଭାଙ୍ଗିଯିବାରେ ଆମେ କେତେ ପରିମାଣରେ ଦାୟୀ, ସେ କଥା ଚିନ୍ତା କରି ଥାଉ କି ? କୌଣସି ବନ୍ଧୁ ବା ମିତ୍ର ବା ସଖା ବା ସୁହୃଦ୍‌ଙ୍କଠାରୁ ଆମେ ସବୁବେଳେ ପ୍ରତିଦାନର ଆଶା ବା ଦାବି ରଖୁ କି ? କୌଣସି ବନ୍ଧୁର କିଛି ଦୋଷ ଦେଖିଲେ ଆମେ ତାକୁ ସହଜ ମନରେ କ୍ଷମା କରିପାରୁ ତ ? ଆମ ମନରେ ଆମ ବନ୍ଧୁ ପାଇଁ ଯଥେଷ୍ଟ ସହାନୁଭୂତି ଓ ଶୁଭେଚ୍ଛା ଥାଏ ତ ? ଆମେ ଆମର ବନ୍ଧୁକୁ ଖୁବ୍ ଖାତିର ସମ୍ମାନ କରୁ ତ ? ଆମ ଆଗରେ କେହି ଯେପରି ଆମ ବନ୍ଧୁର ନିନ୍ଦାବାଦ ନ କରେ ସେଥିପ୍ରତି ଆମେ ସର୍ବଦା ସଚେତନ ଥାଉ ତ ? କେବଳ ବ୍ୟକ୍ତିଗତ ଭାବେ ବନ୍ଧୁକୁ ଯେ ଆମେ ଭଲ ପାଇବା ତା' ନୁହଁ, ବନ୍ଧୁର ସମଗ୍ର ପରିବାର ପ୍ରତି ମଧ୍ୟ ଆମର ସ୍ନେହ ଶୁଭେଚ୍ଛା ଓ ସାହାଯ୍ୟ ମନୋଭାବ ରହିବା ଉଚିତ ନୁହେଁ କି ?

ପାଠକେ ! ବନ୍ଧୁ ବା ମିତ୍ର ପାଖରେ ସର୍ବଦା ହିସାବୀ ବୁଦ୍ଧି ଦେଖାଇବା ଉଚିତ ନୁହେଁ। ଶୁଦ୍ଧ ଓ ଗଭୀର ପ୍ରେମର ଆବେଗ ଏବଂ ମନ ଓ ହୃଦୟର ଏକ ନିବିଡ ବନ୍ଧନ ବନ୍ଧୁତ୍ୱ ରକ୍ଷା କରିବା ପାଇଁ ଏକାନ୍ତ ଆବଶ୍ୟକ।

ବୈଷ୍ଣବ ଭକ୍ତି ସାଧନାରେ ବହୁ ଭକ୍ତ ଭଗବାନ୍‌ଙ୍କ ସହିତ ଶୁଦ୍ଧ ଘନିଷ୍ଠ ସଖା ଭାବର ସମ୍ପର୍କ ରଖି ଆରାଧନା କରିଥାନ୍ତି । ଦରିଦ୍ର ଅଥଚ ମହାଭକ୍ତ ସୁଦାମା ବ୍ରାହ୍ମଣ ଏବଂ ଶୂଦ୍ରାଣୀ ଗର୍ଭରୁ ଜାତ ମହାମତି ବିଦୁର ଭଗବାନ୍ ଶ୍ରୀକୃଷ୍ଣଙ୍କର ପରମବନ୍ଧୁ ଥିଲେ । ଅର୍ଜୁନ ଶ୍ରୀକୃଷ୍ଣ ଦ୍ରୌପଦୀ ଶ୍ରୀକୃଷ୍ଣ-ସୁଗ୍ରୀବ ଓ ଶ୍ରୀରାମ ଏବଂ ବିଭୀଷଣ ଓ ଶ୍ରୀରାମଙ୍କ ମଧ୍ୟରେ ଯେଉଁ ଦିବ୍ୟ ବନ୍ଧୁ ପ୍ରେମ ବା ସଖ୍ୟଭାବ ଥିଲା ତାହାହିଁ ଆମ ପାଇଁ ଆଦର୍ଶ ବନ୍ଧୁତ୍ୱ ।



## ୮୪. ... ବାସଂ ତତ୍ର ନ କାରୟେତ୍ ?

ମହାବୁଦ୍ଧି ଚାଣକ୍ୟ ପ୍ରଥମେ କେଉଁ ରାଜ୍ୟ ବାସଯୋଗ୍ୟ ନୁହେଁ ସେ ବିଷୟରେ ପ୍ରମାଣ ଦେଇ କହୁଛନ୍ତି-

**ଯସ୍ମିନ ଦେଶେ ନ ସମ୍ମାନୋ ନ ବୃତ୍ତି ନ ଚ ବାନ୍ଧବାଃ।**
**ନ ଚ ବିଦ୍ୟାଽଽଗମୋଽପ୍ୟସ୍ତି ବାସଂ ତତ୍ର ନ କାରୟେତ୍।। (୧/୧୮)**

ଅର୍ଥାତ୍, ଯେଉଁ ରାଜ୍ୟରେ ଲୋକେ ଗୁଣୀ ସଜ୍ଜନ, ସାଧୁ ସନ୍ଥ, ଗୁରୁ ଓ ଅଭିଭାବକମାନଙ୍କୁ ସମ୍ମାନ ଦେଇ ଜାଣନ୍ତି ନାହିଁ ସେ ରାଜ୍ୟ ବାସଯୋଗ୍ୟ ନୁହଁ । ଯେଉଁ ରାଜ୍ୟରେ ବନ୍ଧୁବାନ୍ଧବ ନ ଥାନ୍ତି ବା କେହି କାହା ସହିତ ବନ୍ଧୁତା ସ୍ଥାପନ କରନ୍ତି ନାହିଁ। ଯେଉଁ ରାଜ୍ୟରେ ବିଦ୍ୟାଲାଭ ବା ଜ୍ଞାନ ଅର୍ଜନ କରିବାଲାଗି ସୁବିଧା ନାହିଁ କି ସୁଯୋଗ ନାହିଁ, ସେ ରାଜ୍ୟରେ ମଧ୍ୟ ବାସକରିବା ଉଚିତ ନୁହଁ । ଏହି ଶ୍ଳୋକଟିର ବ୍ୟାପକ ଅର୍ଥ ହେଲା, ଯେଉଁ ରାଜ୍ୟରେ ଲୋକମାନେ ପରସ୍ପରକୁ ସମ୍ମାନ ଦେଇ ଜାଣନ୍ତି ନାହିଁ, ସେ ରାଜ୍ୟ ବର୍ବରମାନଙ୍କ ବାସସ୍ଥଳୀ ଅଟେ । ରାମାୟଣରେ ବର୍ଣ୍ଣିତ ଅଛି, ଅଯୋଧ୍ୟାରେ ଶ୍ରୀରାମଙ୍କ ଶାସନକାଳରେ ପ୍ରଜାମାନେ ଖୁବ୍ ସୁଖରେ ଥିଲେ, ସମସ୍ତେ ସମସ୍ତଙ୍କ ପ୍ରତି ମର୍ଯ୍ୟାଦାପୂର୍ଣ୍ଣ ବ୍ୟବହାର କରୁଥିଲେ । ଜଣେ ସାଧାରଣ ଲୋକପ୍ରତି ମଧ୍ୟ ରାଜକର୍ମଚାରୀମାନେ ଖୁବ୍ ଭଦ୍ର ବ୍ୟବହାର କରୁଥିଲେ । ମୋଟଉପରେ ଯେଉଁ ରାଜ୍ୟରେ ଲୋକମାନେ ଭଦ୍ର ଓ ଭବ୍ୟ ନୁହନ୍ତି ସେ ରାଜ୍ୟରେ ବାସ କରିବା ଉଚିତ ନୁହଁ । ଚାଣକ୍ୟ ପୁଣି କହୁଛନ୍ତି-

**ଧନିକଃ ଶ୍ରୋତ୍ରିୟୋ ରାଜା ନଦୀ ବୈଦ୍ୟସ୍ତୁ ପଞ୍ଚମଃ।**
**ପଞ୍ଚ ଯତ୍ର ନ ବିଦ୍ୟନ୍ତେ ନ ତତ୍ର ଦିବସଂ ବସେତ୍।। (୧/୯)**

ଅର୍ଥାତ୍, ଯେଉଁ ରାଜ୍ୟରେ ବା ଯେଉଁ ନଗରରେ ବା ଯେଉଁ ଗ୍ରାମରେ ଆଦୌ ଧନଶାଳୀ ଲୋକ ନ ଥାନ୍ତି, ଆଦୌ ବେଦଜ୍ଞ ପଣ୍ଡିତ ନ ଥାନ୍ତି, ଚିର ଜଳସ୍ରୋତା ନଦୀଟିଏ ବହିଯାଉ ନ ଥାଏ ଏବଂ ଉତ୍ତମ ବୈଦ୍ୟ ବା ଚିକିତ୍ସକ ନ ଥାନ୍ତି ପରିଶେଷରେ ଯେଉଁ ରାଜ୍ୟରେ ଜଣେ ଉତ୍ତମ ଶାସକ ବା ରାଜା ନ ଥାନ୍ତି କିମ୍ବା ଶାସନ ବ୍ୟବସ୍ଥା ଖୁବ୍ ଶୀଥିଳ ଥାଏ, ସେ ସ୍ଥାନରେ ଗୋଟିଏ ଦିନ ମଧ୍ୟ ରହିବା ଉଚିତ ନୁହେଁ। ସତ କଥା। ଏହି ପାଞ୍ଚଟି ବିଷୟ ଆମ ଲାଗି ଅର୍ଥାତ୍ ବଞ୍ଚିବା ଲାଗି ଖୁବ୍ ଗୁରୁତ୍ୱପୂର୍ଣ୍ଣ। ଯୋଉ ରାଜ୍ୟରେ ଶାସନ ବ୍ୟବସ୍ଥା ଠିକ୍ ନାହିଁ, ସେଠାରେ ଲୋକଙ୍କର ଧନଜୀବନ ପ୍ରତି ବିପଦ ସବୁବେଳେ ରହିଛି। ଯଦି ଗୋଟିଏ ଗ୍ରାମରେ ସମସ୍ତେ ଗରିବ ହୋଇଥାନ୍ତି-

ଆଦୌ ଧନୀ ଲୋକ ନ ଥାନ୍ତି, ତେବେ ସେଠାରେ ନଅଁଟ ବେଳେ ତୁମକୁ କେହି ଅର୍ଥ ସାହାଯ୍ୟ କରିପାରିବେ ନାହିଁ। ଲୋକେ ମଧ୍ୟେ ଗରିବ ରହିବା ପାଇଁ ନିଜେ ଦାୟୀ ହୋଇଥାନ୍ତି। ଯଦି ଗୋଟିଏ ରାଜ୍ୟର ବା ଗ୍ରାମର ଲୋକେ ଅଳସୁଆ ଓ ନିଷ୍କର୍ମା ରହିବେ, କୌଣସି ଉଦ୍ୟମ କରିବେ ନାହିଁ, କୌଣସି ଉତ୍ପାଦନ କରିବେ ନାହିଁ, ଏପରିକି ବାଡ଼ିବଗିଚାରେ ଲାଉକଖାରୁ ବୁଦା ବି ଲଗାଇବେ ନାହିଁ, ତେବେ ସେ ଲୋକେ ଦରିଦ୍ର ରହିବାକୁ ବାଧ। ଆଉ ଗୋଟିଏ ଅଭାବ ହେଲା, ଯଦି କୌଣସି ରାଜ୍ୟ ବା ଗ୍ରାମରେ ବେଦବିଦ୍ ବା ଜ୍ଞାନୀ ବିଜ୍ଞାନୀ ନ ଥାନ୍ତି ଏବଂ ସମସ୍ତେ ମୂର୍ଖ ଅଜ୍ଞାନ ହୋଇଥାନ୍ତି, ତେବେ ସେ ରାଜ୍ୟ ଏକ ଅଚେତନ ଅନ୍ଧକାରପୂର୍ଣ୍ଣ ରାଜ୍ୟ। ସେହିପରି ଯଦି ରାଜ୍ୟରେ କେତୋଟି ଚିରସ୍ରୋତା ନଦୀ ନ ଥାଏ ବା ଗ୍ରାମ କଡ଼େ କଡ଼େ ପାଣିଭରା ନଈଟିଏ ବହି ଯାଉ ନ ଥାଏ, ତେବେ ସେ ସ୍ଥାନରେ ଫସଲ ହେବା ସମ୍ଭବ ନୁହଁ ଏବଂ ଜଳକଷ୍ଟର ଆଶଙ୍କା ମଧ ଥାଏ। ପରିଶେଷରେ ଯଦି କୌଣସି ସ୍ଥାନରେ ଭଲ ଡାକ୍ତର ବୈଦ୍ୟ ଓ ଚିକିତ୍ସା ଭବନ ନ ଥାଏ ସେ ସ୍ଥାନରେ ନାନାଦି ରୋଗର ପ୍ରାଦୁର୍ଭାବ ରହିବ ଇ ରହିବ। ସାମାନ୍ୟ ମାତ୍ର ରୋଗରେ ଜଣକର ପ୍ରାଣହାନିର ଆଶଙ୍କା ମଧ ନିଶ୍ଚୟ ରହିବ। ଏ ଦୃଷ୍ଟିରୁ ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଏପରି ରାଜ୍ୟରେ ବା ସ୍ଥାନରେ ଗୋଟିଏ ଦିନ ମଧ ରହିବା ଠିକ୍ ନୁହଁ। ମହାବୁଦ୍ଧି ଚାଣକ୍ୟ ପୁନଶ୍ଚ କହୁଛନ୍ତି,

**ଲୋକଯାତ୍ରା ଭୟଂ ଲଜ୍ଜା ଦାକ୍ଷିଣ୍ୟଂ ତ୍ୟାଗଶୀଳତା।**
**ପଞ୍ଚ ଯତ୍ର ନ ବିଦ୍ୟନ୍ତେ ନ କୁର୍ଯ୍ୟାତ୍ ତତ୍ର ସଂସ୍ଥିତିମ୍॥ (୧/୧୦)**

ଅର୍ଥାତ୍ ଯେଉଁ ସ୍ଥାନରେ ଜୀବିକା ଅର୍ଜନର କୌଣସି ସୁଯୋଗ ନ ଥାଏ ସେଠାରେ ବାସ କରୁଥିବା ଲୋକଙ୍କର ଲୋକଲଜ୍ଜା ନ ଥାଏ, କି କାହା ପ୍ରତି ଭୟ ନ ଥାଏ, ଲୋକଙ୍କରं ମନୋଭାବ ଭଲ ବିଷୟ ପ୍ରତି ଅନୁକୂଳ ନୁହେଁ ଏବଂ ଯେଉଁ ସ୍ଥାନରେ ବାସ କରୁଥିବା ଲୋକମାନେ କାହା ପାଇଁ କିଛି ତ୍ୟାଗ କରି ଜାଣନ୍ତି ନାହିଁ, ସେ ସ୍ଥାନ ମଧ ବାସ ଉପଯୋଗୀ ନୁହଁ । ଶ୍ଳୋକଟିର ବ୍ୟାପକ ଅର୍ଥ ହେଲା, ଯଦି କୌଣସି ରାଜ୍ୟର ସରକାର ସେଠାକାର ଲୋକଙ୍କୁ କର୍ମ-ସଂସ୍ଥାନ ଯୋଗାଇ ନ ପାରିଲା, ତେବେ ଲୋକେ କାମଧନ୍ଦା ନ ପାଇ ଉପାର୍ଜନହୀନ ହୋଇଯିବେ ଓ ଶେଷପର୍ଯ୍ୟନ୍ତ ଖାଇବାକୁ ନ ପାଇ ମରିବେ । ଗୋଟିଏ ରାଜ୍ୟର ଲୋକମାନଙ୍କର ଯଦି ଶାସନ ପ୍ରତି ଭୟ ନ ଥାଏ, ପାପ କର୍ମ ପ୍ରତି ଭୟ ନ ଥାଏ, ଧର୍ମ ଭୟ ନ ଥାଏ, ଈଶ୍ୱର ଭୟ ନ ଥାଏ, ତେବେ ସେ ରାଜ୍ୟର ଲୋକମାନେ ପାପିଷ୍ଠ ଅଟନ୍ତି । ସେହିପରି ଯୋଉ ରାଜ୍ୟର ଲୋକଙ୍କ ମନରେ ନୀଚ କର୍ମ କରିବାକୁ ଲଜ୍ଜା ଲାଗେନା, ନୈତିକ

ଅଧଃପତନରେ ଲଜ୍ଜା ଲାଗେନା, ଅମର୍ଯ୍ୟାଦାକର କାର୍ଯ୍ୟରେ ଲିପ୍ତ ହେବାକୁ ଇଚ୍ଛା ଲାଗେନା, ତେବେ ସେ ରାଜ୍ୟର ନରନାରୀମାନେ ବଡ଼ ଅଧମ ଓ ଅନାଚାରୀ ଅଟନ୍ତି । ଆଉ ଗୋଟିଏ କଥା । ଯଦି କୌଣସି ରାଜ୍ୟ, ଦେଶ ବା ଗ୍ରାମର ଲୋକମାନେ ଅନ୍ୟ ପାଇଁ ତ୍ୟାଗ କରିପାରନ୍ତି ନାହିଁ, ଅର୍ଥାତ୍ ଯେଉଁ ରାଜ୍ୟର ଲୋକମାନେ ଧର୍ମ ଲାଗି, ସତ୍ୟ ଲାଗି, ନ୍ୟାୟ ଲାଗି ଓ ପ୍ରେମ ଲାଗି ନିଜର ଜୀବନ ଉତ୍ସର୍ଗ କରି ଜାଣନ୍ତି ନାହିଁ; କିମ୍ବା ଦୁର୍ଭାଗ୍ୟ-ପୀଡ଼ିତ ଲୋକଙ୍କ ପାଇଁ କିଛି ଅର୍ଥ ତ୍ୟାଗ କରିପାରନ୍ତି ନାହିଁ, କୌଣସି ଆଦର୍ଶ ସାଧନ ଲାଗି ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରିପାରନ୍ତି ନାହିଁ ଭଗବାନ୍ ବା ଧର୍ମ ପାଇଁ ନିଜ ଜୀବନ ତ୍ୟାଗ କରିପାରନ୍ତି ନାହିଁ, ସେ ଦେଶର ଲୋକମାନେ ମ୍ଳେଚ୍ଛ ଓ ସେ ଦେଶ ମ୍ଳେଚ୍ଛ ଦେଶ ବୋଲି ଜାଣିବାକୁ ହେବ। ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଏଭଳି ଦେଶରେ ବା ରାଜ୍ୟରେ ବାସ କରିବା ଆଦୌ ଉଚିତ ନୁହେଁ। ଏପରି ରାଜ୍ୟରେ ରହିଲେ ଜଣେ ସାଧୁ ଲୋକ ମଧ ଅଳ୍ପ ଦିନ ଭିତରେ ଅସାଧୁ ହୋଇଯିବ।



## ୮୫. ... ଯାବଦ୍ ଭୟ ମନାଗତମ୍ ... ?

ପାଠକେ ! ଆହାର, ନିଦ୍ରା, ଭୟ, ମୈଥୁନ-ଏହି ଚାରୋଟି ପ୍ରକୃତିଦତ୍ତ ପ୍ରବୃତ୍ତି ପଶୁର ଯେମିତି ଅଛି, ମଣିଷର ପ୍ରକୃତି ଭିତରେ ମଧ ସେହିପରି ରହିଛି । ଏ ଚାରୋଟି ଜୈବିକ ପ୍ରବୃତ୍ତି । କିନ୍ତୁ ମନୁଷ୍ୟ ତା'ର ସୁବୁଦ୍ଧି ବଳରେ ଓ ଆଧ୍ୟାତ୍ମିକ ଶକ୍ତିବଳରେ ଏ ଚାରୋଟି ପ୍ରବୃତ୍ତିକୁ ବଶୀଭୂତ କରି ରଖିପାରେ ଯଦି ସେ ସେସମ୍ବନ୍ଧେ ସଚେତନ ହୁଏ । ଏହି ଚାରୋଟି ପ୍ରବୃତ୍ତିରୁ ଭୟ କିପରି ମଣିଷ ଜୟକରିପାରିବ ସେ ସମ୍ବନ୍ଧେ ଚାଣକ୍ୟ ପଣ୍ଡିତେ କହୁଛନ୍ତି ।

ତାବଦ୍‌ଭୟେଷୁ ଭେତବ୍ୟଂ ଯାବଦ୍‌ଭୟମନାଗତମ୍।
ଆଗତଂ ତୁ ଭୟଂ ଦୃଷ୍ଟ୍ୱା ପ୍ରହର୍ତ୍ତବ୍ୟମଶଙ୍କୟା ॥ (୫/୩)

ଅର୍ଥାତ୍, ଯେ ପର୍ଯ୍ୟନ୍ତ ଭୟର କାରଣ ତୁମ ସମ୍ମୁଖକୁ ବା ପାଖକୁ ଆସି ନାହିଁ ସେ ପର୍ଯ୍ୟନ୍ତ ସାଧାରଣ ମଣିଷ ଭୟରେ ଡରିମରି ଥାଏ । ସେ ଜାଣେ ଯେ ଆଜି ରାତିରେ ବିପଦ ଆସିପାରେ । ଏହି ଅବସ୍ଥାକୁ ଆଶଙ୍କା କହନ୍ତି । ଏହି ଅବସ୍ଥା ଆହୁରି ସାଂଘାତିକ ହେଲେ ତାକୁ ଆତଙ୍କ କୁହାଯାଏ । ଆଶଙ୍କା ଓ ଆତଙ୍କ ମଣିଷକୁ ସଂତ୍ରସ୍ତ

କରି ରଖିଥାଏ, କିନ୍ତୁ ଯେତେବେଳେ ସତକୁସତ ତୁମପାଖକୁ ବିପଦ ଆସିଗଲା, ସେତେବେଳେ ଆଉ ତାକୁ ଭୟକରିବା ଉଚିତନୁହେଁ । ଭୟକଲେ ସେତେବେଳେ ବିପଦ ତୁମକୁ ମାଡ଼ିବସିବ । ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଏତେବେଳେ ତୁମେ ସାହସ ସଞ୍ଚୟ କର । ଏପରିକି ଦୁଃସାହସର ସହିତ ବିପଦର ସମ୍ମୁଖୀନ ହୁଅ । ବିପଦର ଆକ୍ରମଣକୁ ପ୍ରତିଆକ୍ରମଣରେ ପ୍ରତିହତ କର । ବିପଦର କାରଣ ଯଦି କୌଣସି ହିଂସ୍ରପ୍ରାଣୀ ହୋଇଥାଏ ବା ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କେହି ଆତତାୟୀ ହୋଇଥାଏ, ତା'ହେଲେ ତୁମେମଧ ଅସ୍ତ୍ରଧରି ତାକୁ ପ୍ରତିଆକ୍ରମଣ କର ବା ବୁଦ୍ଧିବଳରେ ତା'ଠାରୁ କୌଣସି ପ୍ରକାରେ ଖସିଯାଇ ଆପଣାର ଧନ ଓ ପ୍ରାଣ ବଞ୍ଚାଅ । ଅବଶ୍ୟ ଏହା ସବୁବେଳେ ସମ୍ଭବ ନୁହେଁ ।

ତା' ହେଲେ ବି ତୁମେ ସେତେବେଳେ ଭୟରେ କାତର ହୋଇ ଜଡ଼ୀଭୂତ ହୋଇଯାଅନା। ଏପରି ଅସହାୟ ଓ ନିରସ୍ତ୍ର ଅବସ୍ଥାରେ ତୁମେ ଏକାନ୍ତଭାବେ ମନେ ମନେ କାତର ଓ ଆର୍ତ୍ତଭାବରେ ଭଗବାନ୍‌ଙ୍କୁ ଡାକ, ତୁମ ଇଷ୍ଟଦେବଙ୍କୁ ଡାକ। ଈଶ୍ୱରଙ୍କ କୃପାହେଲେ ତୁମେ ନିଶ୍ଚୟ ସେ ବିପଦରୁ କୌଣସିପ୍ରକାରେ ରକ୍ଷା ପାଇଯିବ। ହୁଏତ କେହିଜଣେ ଅସ୍ତ୍ରଧାରୀ ସାହସୀ ମଣିଷ ସେତେବେଳେ ତୁମ ପାଖେ ଆସି ପହଞ୍ଚିଯିବ ଓ ତୁମକୁ ସେହି ହିଂସ୍ରପ୍ରାଣୀ ବା ବ୍ୟକ୍ତି ହାତରୁ ରକ୍ଷା କରିବ। କିନ୍ତୁ କସ୍ମିନ୍‌କାଳେ ବିପଦ ସମ୍ମୁଖରେ ଡରି ଡରି ଥରିବ ନାହିଁ। ଦୃଢ଼ହୋଇ ଓ ପ୍ରାର୍ଥନାଶୀଳ ହୋଇ ତା'ର ସମ୍ମୁଖୀନ ହେବ।

ସେହିପରି ତୁମେ ଯଦି ଏକ କଠିନ ବା ମାରାତ୍ମକ ବ୍ୟାଧିର କବଳରେ ହଠାତ୍ ଆକ୍ରାନ୍ତ ହୋଇଯାଅ, ତେବେ ସାହସର ସହିତ ଆତ୍ମବିଶ୍ୱାସ ରଖି ଉପଯୁକ୍ତ ଚିକିତ୍ସକ ଓ ଔଷଧ ବ୍ୟବହାର କର । ମୃତ୍ୟୁର ଆଶଙ୍କାରେ ବିଚଳିତ ହୋଇ ଧୈର୍ଯ୍ୟହୀନ ହୋଇ ମୃତ୍ୟୁ ପୂର୍ବରୁ ପ୍ରତିମୁହୂର୍ତ୍ତରେ ମୃତ୍ୟୁର ପ୍ରହାର ସହ୍ୟ କରନାହିଁ ।

'ଆଶଙ୍କା' ହେଲା ଏକ ଭୀରୁ ମନର ଲକ୍ଷଣ । 'ଆତଙ୍କ' ହେଲା ଏକ ଭୀରୁହୃଦୟର ଲକ୍ଷଣ । 'କିଂକର୍ତ୍ତବ୍ୟବିମୂଢ଼ତା' ହେଲା ଆତ୍ମବିଶ୍ୱାସ ଅଭାବର ଲକ୍ଷଣ; ଏବଂ ଈଶ୍ୱରବିଶ୍ୱାସର ଅଭାବ ହେଲେ ମଣିଷ ଆଶଙ୍କା, ଆତଙ୍କ ଓ ଭୟରେ କାତର ହୋଇଯାଏ; ଏବଂ ଛାଏଁ ଛାଏଁ ବିପଦର ବ୍ୟାଦିତମୁଖ ଭିତରକୁ ପଶିଯାଏ ।

ସାହସ ଓ ବୀରତ୍ୱ ହେଲା ମଣିଷର ସଦ୍‌ଗୁଣ । ବିପଦ ଯେତେ ମାରାତ୍ମକ ହେଲେ ବି ଭଗବାନ୍‌ଙ୍କଠାରୁ ବଡ଼ ନୁହେଁ, ଶକ୍ତିଶାଳୀ ନୁହେଁ । ସେହି ଭଗବାନ୍ ବାହାରେ ବିଦ୍ୟମାନ ଓ ଆମ ଅନ୍ତରରେ ବି ବିଦ୍ୟମାନ । ଧୈର୍ଯ୍ୟ ନ ହରାଇ, କାତର

ନ ହୋଇ, ସେହି ଭଗବାନ୍‌ଙ୍କର ଶରଣାପନ୍ନ ହେଲେ ତାଙ୍କର ଶକ୍ତି ଆମର ମନ ଓ ଦେହ ଭିତରେ ସଞ୍ଚରି ଯାଏ; ଏବଂ ବିପଦବେଳେ ଅଚାନକ ସାହାଯ୍ୟ ଓ ସହାୟତା ମଧ୍ୟ ଆସି ଆକସ୍ମିକ ପହଞ୍ଚିଯାଏ । ତେଣୁ ଚାଣକ୍ୟ ପଣ୍ଡିତଙ୍କର ଏହି ଶ୍ଳୋକଟି ଆମକୁ ଜୀବନରେ ଏକ ମହାନ୍ ଶିକ୍ଷା ପ୍ରଦାନ କରୁଛି ।



## ୮୬. ପାର୍ଥିବ ଜୀବନକୁ ସ୍ୱର୍ଗୀୟ କର

ପାଠକେ ! ଆଜି ଆମ ମହାପ୍ରାଜ୍ଞ ଚାଣକ୍ୟଙ୍କର ଏକ ଚମତ୍କାର ଶ୍ଳୋକ ଅଧ୍ୟୟନ କରିବା । ଶ୍ଳୋକଟି ହେଉଛି -

**କ୍ରୋଧୋ ବୈବସ୍ୱତୋ ରାଜା ତୃଷ୍ଣା ବୈତରଣୀ ନଦୀ ।**
**ବିଦ୍ୟା କାମଦୁଘା ଧେନୁଃ ସନ୍ତୋଷୋ ନନ୍ଦନଂ ବନମ୍ ॥ (୮/୧୪)**

ଅର୍ଥାତ୍, ମନୁଷ୍ୟପକ୍ଷରେ କ୍ରୋଧହେଉଛି ସ୍ୱୟଂ ମୃତ୍ୟୁଦେବତା ଯମରାଜ । ଏବଂ ତୃଷ୍ଣାହେଉଛି, ତପ୍ତ ବୈତରଣୀ ନଦୀ । ଅପରପକ୍ଷରେ 'ବିଦ୍ୟା' ହେଉଛି ସର୍ବକାମନାପୂରକ କାମଧେନୁ ସଦୃଶ । ସନ୍ତୋଷ ହେଉଛି ଯଥାର୍ଥରେ ସ୍ୱର୍ଗର ନନ୍ଦନକାନନ ପରି ।

ଏହି ଶ୍ଳୋକର ଗଭୀର ଅର୍ଥ ହେଉଛି, ଆନନ୍ଦଦାୟକ ସ୍ୱର୍ଗ ଆଉକୋଉଠି ନାହିଁ, ଅଛି ଆମର ଏଇ ମର୍ତ୍ତ୍ୟ ପୃଥିବୀରେ । ସେହିପରି ନରକ ମଧ୍ୟ ଆଉ କୋଉଠି ନାହିଁ, ଅଛି ଆମର ଏଇ ମର୍ତ୍ତ୍ୟ ଜୀବନରେ । ଆମେ ମନୁଷ୍ୟମାନେ ଇଚ୍ଛାକଲେ ଆମର ଏଇ ପାର୍ଥିବ ଜୀବନକୁ ମଧ୍ୟ ସ୍ୱର୍ଗୀୟ ଜୀବନରେ ପରିଣତ କରିପାରିବା । ପ୍ରଥମ କଥାଟି ହେଲା, ଚାଣକ୍ୟ କହୁଛନ୍ତି, ହେ ମନୁଷ୍ୟମାନେ ! ନିଜ ମନରୁ କ୍ରୋଧ ତ୍ୟାଗ କର । କାରଣ କ୍ରୁଦ୍ଧ ବ୍ୟକ୍ତି ଚଂଚଳ ମରିଯାଏ । କ୍ରୋଧରେ ଉତ୍କ୍ଷିପ୍ତ ହେଲେ ଜ୍ଞାନ ହଜିଯାଏ । ସ୍ମୃତିଶକ୍ତି ଲୋପପାଏ । କିଏ ପର, କିଏ ଆପଣାର, କିଏ ମିତ୍ର ଓ କିଏ ଶତ୍ରୁ ବୁଝାପଡ଼େ ନାହିଁ । କ୍ରୋଧାନ୍ଧ ବ୍ୟକ୍ତି ସେହି ଉତ୍ତେଜିତ ମୁହୂର୍ତ୍ତରେ ନିଜର ପରମ ବନ୍ଧୁକୁ ମଧ୍ୟ ମାରି ଦେଇପାରେ, ନିଜର ସ୍ତ୍ରୀ ପୁତ୍ରଙ୍କୁ ବି ହତ୍ୟା କରିପାରେ । ତା'ର ରକ୍ତଚାପ ବଢ଼ିଯାଏ ଓ ତା'ର ହୃଦ୍‌ରୋଗ ବୃଦ୍ଧିପାଇ ସେ ହଠାତ୍ ହୃତ୍‌ସ୍ପନ୍ଦନ ବନ୍ଦ ଯୋଗୁଁ ମରିଯାଇପାରେ । ଏହା ସଚରାଚର ଘଟିଥାଏ । ତେଣୁ "କ୍ରୋଧାବେଗ"କୁ ଦମନ କର ଓ କ୍ରୋଧକୁ 'କ୍ଷମା'ରେ ରୂପାନ୍ତରିତ କର ।

ସେହିପରି 'ତୃଷ୍ଣା' ହେଲା ତପ୍ତବୈତରଣୀ ପରି। ତାକୁ ସହଜରେ ପାରି ହୋଇପାରେନା। ସାଧାରଣ ମୃତ୍ୟୁପରେ ଆମ ସମସ୍ତଙ୍କୁ ସ୍ୱର୍ଗ ବା ନରକକୁ ଯିବାକୁ ହେବ। ଯମଦୂତମାନେ କିମ୍ୱା ବିଷ୍ଣୁଦୂତମାନେ ଆତ୍ମାକୁ ନେଇ ସ୍ୱର୍ଗକୁ, ବା ନରକକୁ ଯିବେ। କିନ୍ତୁ ଆକାଶପଥରେ ଆମକୁ ଏକ ନଦୀ ପାରିହେବାକୁ ହେବ। ତା'ର ଜଳ ଭୟଙ୍କର ଗରମ, ଟକ୍‌ମକ୍ ହୋଇ ସର୍ବଦା ଫୁଟୁଥାଏ। ଯେଉଁମାନେ ମର୍ତ୍ତ୍ୟରେ ଧାର୍ମିକ ଜୀବନ ବଂଚିଥାନ୍ତି, ସେମାନେ ସହଜରେ ସେ ନଦୀକୁ ପାରିହୋଇ ସ୍ୱର୍ଗକୁ ଯାଆନ୍ତି। ମାତ୍ର ପାପୀ ଓ ଅଧର୍ମାଚାରୀ ମଣିଷମାନେ ସେହି ଫୁଟନ୍ତାପାଣିରେ ଶିଝି କଳବଳ ହେଉଥାନ୍ତି।

ଚାଣକ୍ୟ ପଣ୍ଡିତେ କହନ୍ତି, ହେ ମଣିଷମାନେ! ତୁମ ଜୀବନରେ ଏହି ତପ୍ତବୈତରଣୀସଦୃଶ ତୃଷ୍ଣାକୁ ପରିତ୍ୟାଗ କର। 'ତୃଷ୍ଣା'ର ଅର୍ଥ କ'ଣ? ତୃଷ୍ଣା ହେଲା, ଅନ୍ତର ଭିତରେ ସର୍ବଦା ଟଗ୍‌ମଗ୍ ହୋଇ ଫୁଟୁଥିବା ତପ୍ତକାମନା ଓ ବାସନାଗୁଡ଼ିକ । ଏହି ତୃଷ୍ଣା ବା ତପ୍ତକାମନା ଯାହା ଭିତରେ ଜାଗ୍ରତ ହୁଏ, ତାକୁ ଯେତେ ଦେଲେ ମଧ୍ୟ, ସେ ଯେତେ ପାଇଲେ ମଧ୍ୟ, ତା'ର ଜ୍ୱଳନ୍ତ ତୃଷ୍ଣା ବା କାମନାଗ୍ନି ଲିଭେ ନାହିଁ । ବରଂ ଗୋଟିଏ କାମନା ପୂରଣହେଲେ ତାହା ମନରେ ସନ୍ତୋଷ ଶାନ୍ତି ନ ଆଣି କାମନାଗ୍ନିରେ ଜାଳେଣୀରୂପରେ ସାହାଯ୍ୟ କରେ । ଯେତେ ପୂରଣ ହେଲେ ମଧ୍ୟ ତୃଷ୍ଣା-କାତର ମଣିଷର କାମନାଗ୍ନି ଆହୁରି ଜୋର୍‌ରେ ଜଳିଉଠେ । ତେଣୁ ଏହି ତୃଷ୍ଣାକାତର ବା କାମନାତୁର ମଣିଷର ଜୀବନ ହୋଇଯାଏ ଏକ ଅପାରଣୀୟ ତପ୍ତ ବୈତରଣୀ ନଦୀ ପରି । ତୃଷ୍ଣାର୍ତ୍ତ ବ୍ୟକ୍ତିର କ୍ଷୁଧା ତୃଷା ମଧ୍ୟ କେବେ ତୃପ୍ତ ହୁଏ ନାହିଁ । ସେ ସାରାଟି ଜୀବନ ଛଟପଟ ହୋଇ ମରୁଥାଏ ।

କିନ୍ତୁ ଯେଉଁମାନେ ବୁଦ୍ଧିମାନ୍ ମଣିଷ, ଯେଉଁମାନେ ଏଇ ପୃଥିବୀରେ ଥାଇ ମଧ୍ୟ ଏକ ସ୍ୱର୍ଗୀୟ ଜୀବନ ବଂଚିଥାନ୍ତି, ସେମାନେ ପ୍ରଥମେ 'ବିଦ୍ୟାର୍ଜନ' ଉପରେ ଦୃଷ୍ଟି ଦେଇଥାନ୍ତି ଓ ତାକୁ ଇ ସାରାଜୀବନ ଅର୍ଜନ କରୁଥାନ୍ତି । 'ବିଦ୍ୟା' ହେଲା 'କାମଧେନୁ' ପରି । କାମଧେନୁର ସେବାକଲେ ଯେପରି ତୁମେ ଯାହା ଇଚ୍ଛାକରିବ, ତାହା ପାଇବ, ସେହିପରି ନାନା ବିଦ୍ୟା ଅର୍ଜନ କର । ତୁମର ସମସ୍ତ ବାଂଛା ପୂରଣ ହେବ ।

'ବିଦ୍ୟା' ଅର୍ଥ ହେଲା, ଜ୍ଞାନ ବା ଜାଣିବା । ଏହି ବିଦ୍ୟା ବା ଜ୍ଞାନ ହେଉଛି ଦୁଇ ପ୍ରକାର । ପରାବିଦ୍ୟା ଓ ଅପରାବିଦ୍ୟା; କିମ୍ୱା ପାର୍ଥିବ ଜ୍ଞାନ ଓ ଆଧ୍ୟାତ୍ମିକ ଜ୍ଞାନ । ପାର୍ଥିବଜ୍ଞାନ ହେଲା, ନିଜେ ଜୀବନ ଧାରଣ କରିବା ପାଇଁ ଓ କୁଟୁମ୍ୱ ପ୍ରତିପାଳନ

ପାଇଁ ଯେଉଁ ସବୁ ଜ୍ଞାନ ଅର୍ଜନ କରାଯାଏ । କୃଷିବିଦ୍ୟା, ବାଣିଜ୍ୟ ବିଦ୍ୟା, ବିଜ୍ଞାନ ବିଦ୍ୟା ଶାସନ ବିଦ୍ୟା ଇତ୍ୟାଦି । ସେହିପରି କଳାବିଦ୍ୟା, ସାହିତ୍ୟ ବିଦ୍ୟା, ଦର୍ଶନ ବିଦ୍ୟା, ଏସବୁ ମଣିଷର ବୁଦ୍ଧି ବଢ଼ାଏ । ତା'ର ଜ୍ଞାନକୁ ଗଭୀର ଓ ପ୍ରସାରିତ କରେ । ତେଣୁ ଏଇ ପରାବିଦ୍ୟା ଓ ପାର୍ଥିବ ବିଦ୍ୟା ଆମକୁ ନିଶ୍ଚୟ ଶିକ୍ଷା କରିବାକୁ ହେବ । ତା' ନ ହେଲେ ଆମ୍ଭେମାନେ ବଂଚିବା ସହଜ ହେବ ନାହିଁ ।

କିନ୍ତୁ କେବଳ ଖାଇପିଇ ଅନ୍ୟପ୍ରାଣୀଙ୍କ ପରି ବଞ୍ଚିବାକୁ ମଣିଷ ଏ ପୃଥିବୀକୁ ଆସି ନାହିଁ । ଭଗବାନ୍ ମଧ ମଣିଷକୁ ସୃଷ୍ଟିକରିଛନ୍ତି ଏକ ଭିନ୍ନ ଉଦ୍ଦେଶ୍ୟରେ । ସେଥିପାଇଁ ଭଗବାନ୍ ମଣିଷ ଭିତରେ ଦିବ୍ୟଜ୍ଞାନ ଅର୍ଜନ ପାଇଁ ଦିବ୍ୟବୁଦ୍ଧି ମଧ ଦେଇଛନ୍ତି । ମଣିଷ ବୁଝିବ, ଜାଣିବ, ତା'ର ଏ ଜୀବନର ଉଦ୍ଦେଶ୍ୟ କ'ଣ ? ଲକ୍ଷ୍ୟ କ'ଣ ? ଏ ସୃଷ୍ଟିର ରହସ୍ୟ କ'ଣ ? ଏହାର ସ୍ରଷ୍ଟା କିଏ ? ସେଇ ସ୍ରଷ୍ଟା ପରମେଶ୍ୱରଙ୍କୁ ସେ କିପରି ଜାଣିବ ? ତାଙ୍କୁ କିପରି ଉପଲବ୍ଧି କରିବ ? ସେ ନିଜେ ମଧ ତା' ଜୀବନକୁ କିପରି ଦିବ୍ୟ ବା ଈଶ୍ୱରମୟ କରିପାରିବ ? ଈଶ୍ୱର ତା'ଠାରୁ କ'ଣ ଚାହୁଁଛନ୍ତି, ତାହା ସେ କିପରି ଜାଣିବ ? ମଣିଷ ଜାଣିବାକୁ ଚାହିଁବ, ଏ ଜୀବନରେ ପରମ ସତ୍ୟ କ'ଣ ? ପରମ ମଙ୍ଗଳ କ'ଣ ? ପରମ ସୁନ୍ଦର କ'ଣ ? କିପରି ଜୀବନ ବଂଚିଲେ ସେ ଦୁଃଖ ଓ ପାପ କବଳରୁ ମୁକ୍ତି ପାଇବ ? କିପରି ସେ ସେହି ପରମାନନ୍ଦଙ୍କୁ ନିଜ ଜୀବନରେ ଅନୁଭବ କରିବ, ଏ ସବୁ ବିଷୟରେ ଜ୍ଞାନକୁ ପାରମାର୍ଥିକ ଜ୍ଞାନ, ଦିବ୍ୟ ଜ୍ଞାନ ବା ଆଧାତ୍ମିକ ଜ୍ଞାନ କୁହାଯାଏ ।

ଯେଉଁ ମଣିଷ ଏଇ ପାର୍ଥିବ ଜୀବନରେ ଏ ଦୁଇପ୍ରକାର ଜ୍ଞାନ ଅର୍ଜନ କରିବ ବା ଏ ଦୁଇ ପ୍ରକାର ବିଦ୍ୟାରେ ପାରଦର୍ଶିତା ଲାଭ କରିବ-ତେବେ ସେ ଏଇ ପୃଥିବୀରେ ବଂଚିବ ଏକ ସ୍ୱର୍ଗୀୟ ଆନନ୍ଦ ଉପଭୋଗ କରି । ଶେଷ କଥାଟି ହେଲା-ସ୍ୱର୍ଗରେ ନନ୍ଦନକାନନ ଅଛି । ସେଠାରେ ବୁଲିଲେ ସବୁ ଦୁଃଖ ଚାଲିଯାଏ । ମନରେ ଅଫୁରନ୍ତ ଆନନ୍ଦ ହୁଏ । ସେହିପରି ଯେଉଁ ମଣିଷ ତା' ଜୀବନରେ ସବୁବେଳେ ଶାନ୍ତ ଥାଏ- ସନ୍ତୁଷ୍ଟ ଥାଏ- କୋଉଥିପାଇଁ ଉଦ୍‌ବେଗ ପ୍ରକାଶ କରେ ନାହିଁ-ହାଇଁପାଇଁ ହୁଏ ନାହିଁ । ସେ ଏ ପୃଥିବୀରେ ଥାଇ ମଧ ସ୍ୱର୍ଗର ନନ୍ଦନକାନନରେ ବୁଲିବା ପରି ମହାନନ୍ଦ ଉପଭୋଗ କରେ ।



## ୮୭. 'ଦୟା' ହିଁ ଅସଲ ଧର୍ମ ... ?

ପାଠକେ! ଅନେକ ସମୟରେ ଆମେ ପ୍ରକୃତ "ଧର୍ମ" କାହାକୁ କହନ୍ତି, ଜାଣୁନା । ପ୍ରକୃତ "ତପ" କାହାକୁ କହନ୍ତି, ଜାଣୁନା । "ସୁଖ" କାହାକୁ କହନ୍ତି ମଧ୍ୟ ଆମକୁ ଜଣା ନାହିଁ । ଆମ ଦେହ ମନରେ ପ୍ରକୃତ "ବ୍ୟାଧି" ଘୋଟିଛି ବୋଲି ଆମେ କିପରି ଜାଣିବା ? ଅନେକ ପଣ୍ଡିତ, ଜ୍ଞାନ ଓ ଯୋଗୀ ଏ ସବୁ ଉପରେ ଖୁବ୍ ସୁନ୍ଦର ଓ ଗଭୀର ଭାବେ ଆଲୋଚନା କରିଛନ୍ତି, ପ୍ରବଚନ ଦେଇଛନ୍ତି; ଏବଂ ଗ୍ରନ୍ଥ ମଧ୍ୟ ଲେଖିଛନ୍ତି । କାରଣ, ଏଇ କେତୋଟି ବିଷୟ ହେଲା ଆମ ଜୀବନର ସବୁଠାରୁ ଜଟିଳ ପ୍ରଶ୍ନ। ଏବେ ମହାମତି ଚାଣକ୍ୟ ଏ ସବୁ ବିଷୟରେ ଯାହା କହୁଛନ୍ତି ଶୁଣନ୍ତୁ। ଶ୍ଳୋକଟି ହେଲା -

**ଶାନ୍ତିତୁଲ୍ୟଂ ତପୋ ନାସ୍ତି ନ ସନ୍ତୋଷାତ୍‌ପରଂ ସୁଖମ୍ ।**
**ନ ତୃଷ୍ଣାୟାଃ ପରୋ ବ୍ୟାଧିଃ ନ ଚ ଧର୍ମୋ ଦୟାପରଃ ।।** (୮/୧୩)

ଏହାର ଅର୍ଥ ହେଲା "ଶାନ୍ତି" ଠାରୁ ବଳି ତପ ନାହିଁ। ସନ୍ତୋଷ ହିଁ ଏକମାତ୍ର ସୁଖ। ତୃଷ୍ଣା ହେଲା ସବୁଠାରୁ ବଡ଼ ବ୍ୟାଧି ବା ରୋଗ; ଏବଂ ଦୟାଠାରୁ ଅଧିକ କିଛି ଧର୍ମ ନାହିଁ।

ବର୍ତ୍ତମାନ ଦେଖିବା ପ୍ରକୃତ ତପସ୍ୟା କାହାକୁ କହନ୍ତି। ତପସ୍ୟା ବହୁବିଧ । କେହି କେହି ସ୍ୱର୍ଗ ପ୍ରାପ୍ତି ପାଇଁ ଜୀବନରେ କଠିଣ ତପସ୍ୟା କରନ୍ତି । କେହି କେହି କୌଣସି କାମ୍ୟ ଦ୍ରବ୍ୟ ପାଇବାକୁ ତପସ୍ୟା କରନ୍ତି । ଆଉକେହି ସଂସାରର ମଙ୍ଗଳ କାମନା କରି ତପସ୍ୟା କରନ୍ତି। ଏହିପରି ଭାବେ ଲୋକେ ନାନାଦି ଆଶା ଓ କାମନା ମନରେ ପୋଷଣ କରି ତପସ୍ୟା କରିଥାନ୍ତି। ଆଉ କେହି ମଧ୍ୟ ଈଶ୍ୱରଙ୍କୁ ଉପଲବ୍ଧି କରିବା ପାଇଁ ତପସ୍ୟା କରିଥାନ୍ତି। ମାତ୍ର ଏସବୁ ପ୍ରକାର ତପସ୍ୟା ଭିତରେ 'ଶାନ୍ତି' ପାଇଁ ତପସ୍ୟା ହିଁ ସବୁଠାରୁ ବଡ଼ ତପସ୍ୟା। ଯଦି ଆମ ଦେହରେ, ପ୍ରାଣରେ ବା ହୃଦୟରେ ବା ମନରେ ଶାନ୍ତିଭାବ ନ ଆସେ, ତେବେ ଜୀବନରେ ଯାହା କିଛି ପାଇଲେ ବି, ଆମକୁ କିଛି ନ ପାଇଲା ଭଳି ଲାଗିବ। ଯେଉଁମାନେ ମନରେ ଶାନ୍ତ, ସେମାନଙ୍କ ମନରେ କିଛି କାମନା ନ ଥାଏ। ସେମାନଙ୍କ ପ୍ରାଣରେ ବା ହୃଦୟରେ କୌଣସି କାମନା ବା ବାସନାର ଜ୍ୱାଳା ନ ଥାଏ । ସେମାନଙ୍କ ମନ ଓ ହୃଦୟରେ ସର୍ବଦା ଶାନ୍ତି ଲାଗି ଅଭୀପ୍ସା ଚାଲିଥାଏ । ସେ ମନେମନେ ଶାନ୍ତିଦେବୀଙ୍କୁ ଶାନ୍ତ ଭାବେ ଜଣାଉଥାଏ, ହେ ଶାନ୍ତିଦେବୀ! ତୁମେ ମୋ ଭିତରେ ଅବତରଣ କର।

ମୋର ସମସ୍ତ ଇନ୍ଦ୍ରିୟ ଓ ପ୍ରକୃତି ଶାନ୍ତ ହେଉ। ହେ ଶାନ୍ତିଦେବୀ! ତୁମେ ପାର୍ଥିବ ପ୍ରକୃତି ଭିତରେ ଅବତରଣ କର, ଯେପରି ପୃଥିବୀର ଆକାଶମଣ୍ଡଳ ଶାନ୍ତ ରହୁ, ଜଳଭାଗ ଶାନ୍ତ ରହୁ, ବାୟୁ ଶାନ୍ତଭାବେ ବହମାନ ହୁଅନ୍ତୁ, ଅଗ୍ନିଦେବ ଶାନ୍ତଭାବେ ପ୍ରଜ୍ୱଳିତ ହେଉନ୍ତୁ । ପୃଥିବୀ ଶାନ୍ତ ଓ ସ୍ଥିର ରହନ୍ତୁ । ପ୍ରକମ୍ପିତ ନ ହୁଅନ୍ତୁ । ବନ୍ୟା, ବାତ୍ୟା, ଅଗ୍ନ୍ୟୁତ୍ପାତ, ଭୂମିକଂପ ଇତ୍ୟାଦି ନ ହେଉ । ପ୍ରାଣୀମାନେ ହିଂସ୍ର ନ ହୋଇ ଶାନ୍ତ ରହନ୍ତୁ । ସମସ୍ତଙ୍କ ଉଦର ଖାଦ୍ୟପୂର୍ଣ୍ଣହୋଇ ଶାନ୍ତ ରହନ୍ତୁ । ମଣିଷ ଭିତରେ କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟାଦି ଖରାପ ପ୍ରବୃତ୍ତିଗୁଡ଼ିକ ଉତ୍ତେଜିତ ନ ହୋଇ ଉପସମ ହେଉନ୍ତୁ । ମୋର ଓ ଅନ୍ୟ ସବୁ ମଣିଷଙ୍କର ଚିତ୍ତ ଶାନ୍ତ ରହୁ ।

ଏହିପରି ଶାନ୍ତ ଭାବେ ଯେ ଶାନ୍ତିପାଇଁ ନିରବଧି ପ୍ରାର୍ଥନା କରୁଥାଏ, ଅଭୀପ୍ସା କରୁଥାଏ, ସେ ହିଁ ପ୍ରକୃତ ତପସ୍ୱୀ ବୋଲି ବୁଝିବାକୁ ହେବ ।

ସେହିପରି 'ସନ୍ତୋଷ'ଠାରୁ ବଳି ଆଉ 'ସୁଖ' ନାହିଁ । ମନୁଷ୍ୟମାନେ 'ସୁଖ' ପଛରେ ଅଣନିଃଶ୍ୱାସୀ ହୋଇ, ଅଶାନ୍ତ ହୋଇ ଦଉଡ଼ିଥାନ୍ତି । ମାତ୍ର 'ସୁଖ' ପାଆନ୍ତି ? 'ସୁଖ' ବୋଲି ମଧ ଯାହା ତାଙ୍କ ହାତରେ ପଡ଼େ, ତାହା ଧରୁ ଧରୁ ହାତରୁ ଖସିଯାଏ । 'ସୁଖ' ଏକ 'ଆକାଶ କୁସୁମ' ଭଳି କଳ୍ପନା ମାତ୍ର । ତା' ଛଡ଼ା, ଏ ଜୀବନରେ ସବୁ ତଥାକଥିତ ସୁଖପଛରେ ଦୁଃଖ ଥାଏ । ଗୋଟିଏ ସୁଖ ହାତକୁ ଆସିବା ମାତ୍ରେ ତା' ପଛରେ ଶହେ ଦୁଃଖ ଡକାଏତି ଭଳି ଆଗକୁ ଆକ୍ରମଣ କରି ଆମର ସୁଖତକ ଲୁଟି ନିଅନ୍ତି । ତେଣୁ 'ସୁଖ' ପଛରେ ଧାବିତ ନ ହୋଇ ମନେ ମନେ ସନ୍ତୁଷ୍ଟ ରୁହ । ପରିଶ୍ରମ କର । ସେଥିରୁ ଯେତିକି ଫଳ ମିଳୁଛି, ସେତେକ ପାଇ ସନ୍ତୋଷ ଲାଭ କର । ସେତିକି ମିଳିଲା ବୋଲି ଈଶ୍ୱରଙ୍କ ପାଖେ କୃତଜ୍ଞତା ଜଣାଅ । ଅନ୍ୟ ଲୋକଠାରୁ ସାମାନ୍ୟ ସାହାଯ୍ୟ ସହାୟତା ପାଇଲେ, ସେତିକି ଲାଗି ତାକୁ ଧନ୍ୟବାଦ ଦିଅ, ଏବଂ ସେଥିରେ ସନ୍ତୋଷ ଲାଭ କର । ଅସନ୍ତୁଷ୍ଟ ଲୋକ ସର୍ବଦା ସବୁ କଥା ପାଇଁ ଅନ୍ୟକୁ ଦାୟୀ କରୁଥାଏ । ସବୁବେଳେ ନିଜପାଇଁ ସବୁକିଛି ଦାବି କରୁଥାଏ । ଅନ୍ୟମାନଙ୍କୁ ସେ ଭଲ ପାଉ ନ ଥାଏ, ବିଶ୍ୱାସ କରୁ ନ ଥାଏ, ତା'ର କାହା ଉପରେ ଆସ୍ଥା ନ ଥାଏ । ତେଣୁ, "ଆତ୍ମ-ସନ୍ତୋଷ"ଠାରୁ ବଳି ସୁଖ ନାହିଁ ।

ସେହିପରି ତୃଷ୍ଣା ବା କାମନାବାସନାରେ ସର୍ବଦା ଜର୍ଜରିତ ଲୋକଟିର ଦେହ, ପ୍ରାଣ ଓ ମନ ରୋଗଗ୍ରସ୍ତ ହୋଇଯାଏ । ଦୈହିକ ରୋଗ ବା ମାନସିକ ରୋଗ- ସର୍ବବିଧ ରୋଗ ଏହି ମାତ୍ରାଧିକ କାମନା, ବାସନାରୁ ଜାତ ହୋଇଥାଏ । ବଂଚିବା ପାଇଁ ଯେତିକି ଆବଶ୍ୟକ, ତା'ଠାରୁ ବେଶି କାମନା କରିବା ଦ୍ୱାରା ମଣିଷ ରୋଗଗ୍ରସ୍ତ ହୋଇଯାଏ । ତେଣୁ 'କାମନା' ହିଁ ସବୁଠାରୁ ବଡ଼ ରୋଗ ।

ଶେଷରେ ମହାମତି ଚାଣକ୍ୟ କହୁଛନ୍ତି, 'ଧର୍ମ' କାହାକୁ କହନ୍ତି, ସେ ସମ୍ବନ୍ଧେ ନାନା ମୁନିଙ୍କର ନାନା ମତ । ମାତ୍ର ପ୍ରକୃତ ମାନବୀୟ ଧର୍ମ ହେଲା, ଦୟା, କରୁଣା, ସହାନୁଭୂତି, ସମବେଦନା ଓ ଦୁଃଖୀର ସେବାକର୍ମ । ହଜାରେ ଦେଉଳ ତୋଳିଲେ ଧର୍ମ ହୁଏନା, ନାନା ଯାଗଯଜ୍ଞ, ତୀର୍ଥବ୍ରତରେ ମଧ ଯଥାର୍ଥ ଧର୍ମ ହୁଏନା । ଯେତେ ପୂଜା, ଉପାସନା ଦେବାର୍ଚ୍ଚନାରେ ମଧ ଧର୍ମ ହୁଏନା । କିନ୍ତୁ ଯଥାର୍ଥ ଧର୍ମ ହେଲା- "ଜୀବେ ଦୟା" । ସବୁ ପ୍ରାଣୀଙ୍କୁ ଦୟା କର । ଏପରିକି ବୃକ୍ଷଲତାଙ୍କ ପ୍ରତି ମଧ ଦୟା ଭାବ ରଖ । ସମସ୍ତଙ୍କ ଦୁଃଖରେ ସହାନୁଭୂତି ଦେଖାଅ । ଦୁଃଖୀକୁ ସାହାଯ୍ୟ କର । ତାହାହିଁ ସବୁଠାରୁ ବଡ଼ ଧର୍ମ ।



## ୮୮. ... ତସ୍ମାଦ୍ ଭାବୋହି କାରଣମ୍

ପାଠକେ! ଗତଥର ଆମେ ମହାମତି ଚାଣକ୍ୟଙ୍କର ଆଧାତ୍ମିକ ଭାବଦର୍ଶନ ସଂପର୍କରେ କିଂଚିତ୍ ଆଲୋଚନା କରିଥିଲେ । ନିମ୍ନୋକ୍ତ ଶ୍ଳୋକଟିରେ ମଧ ସେହିପରି ଆଉ ଏକ ଭାବପ୍ରଧାନ ବିଷୟଉପରେ ସେ ଆଲୋକପାତ କରିଛନ୍ତି । ଶ୍ଳୋକଟି ପଢ଼ନ୍ତୁ-

**ନ ଦେବୋ ବିଦ୍ୟତେ କାଷ୍ଠେ ନ ପାଷାଣେ ନ ମୃଣ୍ମୟେ।**
**ଭାବେ ହି ବିଦ୍ୟତେ ଦେବସ୍ତସ୍ମାଦ୍ ଭାବୋ ହି କାରଣମ୍ ॥ (୮/୧୨)**

ଶ୍ଳୋକଟର ଅର୍ଥ ହେଲା, ଦେବଦେବୀମାନେ କାଠରେ ନ ଥାନ୍ତି, କି ପଥରରେ ନ ଥାନ୍ତି, କି ମାଟିରେ ନ ଥାନ୍ତି। ପ୍ରକୃତରେ ସେମାନେ ଥାନ୍ତି ଭକ୍ତର ଅନ୍ତରସ୍ଥ 'ଭାବ' ଭିତରେ। ତେଣୁ ଏଇ 'ଭାବ' ହିଁ ହେଲା ସବୁ କିଛିର ମୌଳିକ କାରଣ ।

ପାଠକେ! ଏ ଶ୍ଳୋକଟିରୁ କେହି ଯେପରି ନ ବୁଝନ୍ତି ଯେ, ଚାଣକ୍ୟଙ୍କ ପରି ଜଣେ ନୈଷ୍ଠିକ ସନାତନପନ୍ଥୀ ହିନ୍ଦୁ ଓ ବେଦବେଦାନ୍ତ ପୁରାଣ ଶାସ୍ତ୍ର ସଂହିତାଦିରେ ଜଣେ ମହାଜ୍ଞାନବନ୍ତ ବ୍ରାହ୍ମଣ ମାଟି, ଧାତୁ, କାଠ ବା ପଥରରେ ନିର୍ମିତ ଦେବପ୍ରତିମା ପୂଜାର ବିରୋଧ କରୁଛନ୍ତି । କିନ୍ତୁ ତାଙ୍କର ଏକଥା କହିବାର ମୁଖ୍ୟ ଉଦ୍ଦେଶ୍ୟଟି ହେଲା, ଯଦି ତୁମେ ଈଶ୍ୱରଙ୍କୁ ବା ଗଣପତି, ବିଷ୍ଣୁ, ଦୁର୍ଗା, ଲକ୍ଷ୍ମୀ, ଶିବ ବା ସୂର୍ଯ୍ୟନାରାୟଣଙ୍କୁ ପୂଜା ଆରାଧନା କରିବାକୁ ଚାହଁ, ତେବେ ପ୍ରଥମେ ତୁମେ ତୁମ ଅନ୍ତର ବା ହୃଦୟ ଭିତରେ ସେ ଦେବଦେବୀଙ୍କ ପ୍ରତି ଏକ ଗଭୀର ଶୁଦ୍ଧ ଭାବାବେଗ

ଅନୁଭବ କର । ସେହି ଦେବଦେବୀଙ୍କର ଗୁଣ ଓ ମହିମାଦି ଭାବାବିଷ୍ଟ ହୋଇ କୀର୍ତ୍ତନ କର । ତାଙ୍କର ଭଜନ କର । ତାଙ୍କର ମହିମା ସ୍ମରଣ କରି ମନ ଓ ହୃଦୟରେ ସେଥିପ୍ରତି ଭକ୍ତିଭାବ ଅନୁଭବ କରି ତାଙ୍କର ନାମ ଜପ କର । ସେ ଦେବଦେବୀଙ୍କ ପ୍ରତି ପ୍ରେମ ଭକ୍ତିରେ ତୁମର ଦୁଇ ଆଖିରୁ ଲୁହ ଝରୁ । ତୁମର ରୋମାବଳୀ ଟଙ୍କୁରିତ ହୋଇଯାଉ । ତୁମର ସମଗ୍ର ଶରୀରରେ ଏକ ଭାବ-ହିଲ୍ଲୋଳ ଖେଳିଯାଉ । ଭକ୍ତିବିହ୍ୱଳ କଣ୍ଠରେ ତୁମେ ହାତଯୋଡ଼ି, ଆଣ୍ଠୁମାଡ଼ି ବସି, ଆଖିବୁଜି, ତାଙ୍କର କୃପା କରୁଣା ପ୍ରାର୍ଥନା କର । ତା' ହେଲେ ଯାଇ ତୁମେ ତାଙ୍କର ସୂକ୍ଷ୍ମ ଦର୍ଶନ ଲାଭ କରିବ ଓ ତାଙ୍କର କୃପା ପାତ୍ରୀ ବା ପାତ୍ର ହୋଇପାରିବ ।

ଅନ୍ୟ ପକ୍ଷରେ, ତୁମ ହୃଦୟରେ ପ୍ରେମ କି ଭକ୍ତିର କୌଣସି ଭାବାବେଗ ନ ଥାଇ କାଠ, ପଥର, ଧାତୁରେ ନିର୍ମିତ ମୂର୍ତ୍ତି ପାଖରେ ଯେତେ ଭୋଗରାଗ ନୈବେଦ୍ୟ ଦେଇ ପୂଜା କଲେ; କିମ୍ବା ତାଙ୍କୁ ନାନାଦି ଅଳଙ୍କାରରେ ସଜାଇ, ତାଙ୍କ ପାଖେ ନାନା ବାଦ୍ୟ ବଜାଇ ଖୁବ୍ ଆଡମ୍ବରରେ ପୂଜାପାର୍ବଣ କଲେ କିଛି ଫଳ ମିଳିବ ନାହିଁ । କାରଣ, ଭଗବାନ୍ ଅବଶ୍ୟ ସୂକ୍ଷ୍ମରୂପରେ ବା ଜ୍ୟୋତିରୂପରେ ସର୍ବତ୍ର ଅବସ୍ଥାନ କରୁଛନ୍ତି-ସେଥିରେ ସନ୍ଦେହ ନାହିଁ । ପ୍ରେମୀଭକ୍ତର ଭାବବିହ୍ୱଳ ଆହ୍ୱାନରେ, ପ୍ରାର୍ଥନାରେ ବା କୀର୍ତ୍ତନ ଭଜନରେ ପରମବ୍ରହ୍ମ ବା ପରମେଶ୍ୱର ସେଇସବୁ ଜଡବସ୍ତୁ ଭିତରେ ଜାଗ୍ରତ ହୁଅନ୍ତି; ଏବଂ ତା' ଫଳରେ ସେହି ପ୍ରତିମାଭିତରେ ଏକ ଦିବ୍ୟ ସ୍ପନ୍ଦନ ସୃଷ୍ଟିହୋଇଥାଏ । କିନ୍ତୁ ହୃଦୟରେ ପ୍ରେମଭକ୍ତିର ଦିବ୍ୟଭାବ ନ ଥାଇ ଯେତେ ପୂଜାକଲେ ବି ଭଗବାନ୍ ବା ଦେବତା କେବେକି କୋଉ ପ୍ରତିମା ଭିତରେ ଜାଗ୍ରତ ହେବେ ନାହିଁ ।

କାଷ୍ଠ, ପ୍ରସ୍ତର ନିର୍ମିତ ଦେବ-ପ୍ରତିମା ପୂଜକ ପାଇଁ କେବଳ ଏକ ଅବଲମ୍ବନ । ଯେଉଁମାନେ ନିରାକାର ଓ ନିର୍ଗୁଣ ଭଗବାନ୍‌ଙ୍କ ଉପାସନା କରନ୍ତି, ସେମାନେ ସେମାନଙ୍କ ଅନ୍ତରର ଭାବ ଭିତରେ ତାଙ୍କୁ ଉପଲବ୍ଧି କରନ୍ତି ଓ ତାଙ୍କର କୃପାକରୁଣା ମଧ୍ୟ ଲାଭ କରନ୍ତି ।

ଇସ୍‌ଲାମ୍ ଧର୍ମର ଭକ୍ତମାନେ ଭଗବାନ୍ ବା ଆଲ୍ଲାଙ୍କର କୌଣସି ମୂର୍ତ୍ତି ପୂଜା କରନ୍ତି ନାହିଁ । ସେମାନେ ସେମାନଙ୍କ ଅନ୍ତରାକାଶରେ ଆଲ୍ଲାଙ୍କର ଆଲୋକିତ ମହିମା ଉପଲବ୍ଧି କରନ୍ତି । ଅସଲ କଥା ହେଲା-ପୂଜା, ଆରାଧନା କୌଣସି ମୂର୍ତ୍ତିବା ଚିତ୍ର ପ୍ରତିମାକୁନେଇ ସଫଳ ହୁଏନାହିଁ । ଆରାଧନା ଅନ୍ତରର ବା ହୃଦୟର ବିଷୟ । ଭଗବାନ୍ ଭକ୍ତର ହୃଦୟର ଭାବମୟ ଆହ୍ୱାନର ଜବାବ ଦିଅନ୍ତି । ଆମେ ବହୁ ପ୍ରତିମାପୂଜକ

ହିନ୍ଦୁଭକ୍ତଙ୍କୁ ଜାଣୁ, ଯେଉଁମାନେ ପ୍ରତିମା ବା ମୂର୍ତ୍ତିକୁ ଅବଲମ୍ବନ ମାତ୍ର କରି ନିଜର ହୃଦୟର ଭାବବିହ୍ୱଳତାରେ ଭଗବାନ୍‌ଙ୍କୁ ଉପଲବ୍ଧି କରିଛନ୍ତି ପୂର୍ଣ୍ଣମାତ୍ରାରେ । ଆମେ ମଧ୍ୟ କେତେ ଇସ୍‌ଲାମୀୟ ଭକ୍ତଙ୍କୁ ଜାଣୁ, ଯେଉଁମାନେ ଭଗବାନ୍‌ଙ୍କ ଆରାଧନା ପାଇଁ କୌଣସି ମୂର୍ତ୍ତି ବା ପ୍ରତିମାର ଆବଶ୍ୟକତା ଅନୁଭବ କରନ୍ତି ନାହିଁ; ବରଂ ସେଗୁଡ଼ିକୁ ସେ ଆରାଧନା ପଥରେ ବାଧା ବୋଲି ମନେକରନ୍ତି । କିନ୍ତୁ ସେହି ସବୁ ଇସ୍‌ଲାମୀୟ ଭକ୍ତମାନେ ଆଲ୍ଲା ବା ପରମେଶ୍ୱରଙ୍କ ଦିବ୍ୟଭାବରେ ସର୍ବଦା ସେମାନଙ୍କ ଅନ୍ତରକୁ ପୂର୍ଣ୍ଣ ରଖିଥାନ୍ତି; ଏବଂ ସେମାନଙ୍କ ଜୀବନ ପ୍ରତିଟି ମୁହୂର୍ତ୍ତରେ ସତ୍ୟ, ମଙ୍ଗଳ ଓ ସୁନ୍ଦର ଭାବରେ ଈଶ୍ୱରୋପଲବ୍ଧି କରିଥାନ୍ତି ।

ପାଠକେ ! ମହାମତି ଚାଣକ୍ୟ ଏ ଶ୍ଳୋକ ଭିତରେ ବାହ୍ୟ 'ବସ୍ତୁ' ଅପେକ୍ଷା ଅନ୍ତରର 'ଭାବ' ଉପରେ ଅଧିକ ପ୍ରାଧାନ୍ୟ ଦେଇଛନ୍ତି । ଏପରିକି ହିନ୍ଦୁମାନଙ୍କ ପ୍ରତିମା ଗୁଡ଼ିକୁ ବି କେବଳ ବସ୍ତୁରୂପେ ଦେଖିଲେ ସେଥିରୁ ଦିବ୍ୟଭାବ ଝରି ଆସେ ନାହିଁ । ଦୁର୍ଗାଙ୍କ ମୃଣ୍ମୟୀ ମୂର୍ତ୍ତି ଆଗରେ ମର୍ମସ୍ପର୍ଶୀ ଦୁର୍ଗାସ୍ତୁତି ଗାନ କରି ମାତୃଭାବରେ ବିଭୋର ନ ହେଲେ କାହାର ଦୁର୍ଗା-ଉପଲବ୍ଧି ହୋଇପାରେନା । ଭକ୍ତ ପୂଜକ ପ୍ରତିମା ଭିତରେ ଭାବକୁ ଆରୋପ କରେ । ପ୍ରତିଷ୍ଠା କରେ । ତା' ହୃଦୟର ଭକ୍ତିପୂର୍ଣ୍ଣ ଆବେଗରେ ପ୍ରତିମାକୁ ଜୀବନ୍ୟାସ ଦିଏ । ତେଣୁ 'ଭାବ' ହିଁ ଅସଲ । ଭାବ ନ ଥିଲେ, ଦେବପ୍ରତିମାଗୁଡ଼ିକ କେବଳ ଜଡ଼ବସ୍ତୁ ବ୍ୟତୀତ ଆଉ କିଛି ନୁହେଁ ।



## ୮୯. କାହା ବିନା କ'ଣ ବ୍ୟର୍ଥ ?

ଏ ସଂସାର ଓ ଏ ଜୀବନ ଏପରି ଯେ, ଏଠାରେ ସବୁ କଥା ସବୁବେଳେ ନ ଥାଏ, ସମସ୍ତଙ୍କଠାରେ ସବୁ ଗୁଣ ନଥାଏ, ସବୁ ସ୍ଥାନରେ ସବୁ କଥା ମିଳେ ନାହିଁ । ଜଣକଠାରେ ସବୁ ଗୁଣ ନ ଥାଏ କି ସବୁ ଦୁର୍ଗୁଣ ନ ଥାଏ । କାରଣ ଆମର ଏ ପୃଥିବୀରେ ସବୁ କଥା ଆପେକ୍ଷିକ । ଗୋଟିଏ ଗୁଣ ନିର୍ଭର କରୁଥାଏ ଆଉ ଗୋଟିଏ ଗୁଣ ଉପରେ । କାହାର ସୁନ୍ଦର ଆଖି ଦୁଇଟି ଅଛି, ମାତ୍ର ସେ ଆଖିକି କିଛି ଦିଶୁ ନାହିଁ ।

କାହାର ବୁଦ୍ଧିବିଦ୍ୟା ବହୁତ ଅଛି, ମାତ୍ର ଜୀବନ ବଂଚାଇବାକୁ ଯେତିକି ଧନ ଦରକାର, ସେତେକ ତା' ପାଖରେ ନାହିଁ । ଜଣେ ଖୁବ୍ ପଣ୍ଡିତ । ମାତ୍ର ତାକୁ ଭଲ

ବ୍ୟବହାର ଜଣା ନାହିଁ । ଆମ ଓଡ଼ିଆରେ ଗୋଟିଏ ଢଗ ଅଛି- "କାନ ଥିଲେ ନୋଳି ନାହିଁ, କି ନୋଳି ଥିଲେ କାନ ନାହିଁ ।" "କାହାର ଧନସଂପତ୍ତି ର ସୀମା ନାହିଁ କିନ୍ତୁ ତାକୁ ଭୋଗ କରିବାକୁ ତା'ର କେହି ଉତ୍ତରାଧିକାରୀ ନାହାନ୍ତି । ତେଣୁ ପ୍ରାୟଶଃ ଦେଖାଯାଏ ଯେ, ଗୋଟିଏ କଥା ନ ଥିଲେ ଆରକଥାଟି ବ୍ୟର୍ଥ ହୋଇଯାଏ ।

ବର୍ତ୍ତମାନ ଦେଖିବା-ମହାପ୍ରାଜ୍ଞ ଚାଣକ୍ୟ ମହାଶୟ ଏ ସମ୍ବନ୍ଧେ କ'ଣ କିପରି ମନ୍ତବ୍ୟ ଦେଇଛନ୍ତି । ତାଙ୍କର ଶ୍ଳୋକଟି ହେଲା,

**ନିର୍ଗୁଣସ୍ୟ ହତଂ ରୂପଂ ଦୁଃଶୀଳସ୍ୟ ହତଂ କୁଳମ୍।**
**ଅସିଦ୍ଧସ୍ୟ ହତା ବିଦ୍ୟା ଅଭୋଗେନ ହତଂ ଧନମ୍॥ (୮/୧୬)**

ଶ୍ଳୋକଟିର ଅର୍ଥ ହେଲା, କୌଣସି ନର ବା ନାରୀ ତା'ର ଦେହ ଓ ମୁହଁ ଯେତେ ସୁନ୍ଦର ହୋଇଥାଉ, କିନ୍ତୁ ଯଦି ତା'ର କିଛି ଗୁଣ ନାହିଁ ତେବେ ତା'ର ସୌନ୍ଦର୍ଯ୍ୟ ମୂଲ୍ୟହୀନ। କାରଣ ସେଇ ସୌନ୍ଦର୍ଯ୍ୟ କାହାର ନୟନ ପ୍ରୀତିକର ହୁଏ ନାହିଁ ବା କାହାକୁ ଆକୃଷ୍ଟ କରେ ନାହିଁ । ଏଠାରେ "ଗୁଣ" ଶବ୍ଦଟିର ବ୍ୟାପକ ଅର୍ଥ ଅଛି । ଗୁଣୀଲୋକ ଆମେ କାହାକୁ କହିବା ? ଯେ ସାଧୁ, ସଚ୍ଚୋଟ, ଦୟାବାନ୍ ଏବଂ ଯାହାର ବାକ୍ୟ ଓ ବ୍ୟବହାର ଖୁବ୍ ନମନୀୟ ଓ ମଧୁର ସେ ଜଣେ ସୁଗୁଣବାନ୍ ବ୍ୟକ୍ତି । ଆଉ ମଧ ଯେଉଁ ଲୋକ ଜଣେ ଯୋଗୀ ବା ଜଣେ କବି ବା କଳାକାର ବା ସଂଗୀତଜ୍ଞ ବା ଜଣେ ସମାଜସେବୀ, ସେ ମଧ ଜଣେ ଗୁଣବାନ୍ ମଣିଷ । ଏପରି କିଛି ଗୁଣ ନଥିଲେ, କେବଳ ରୂପ ବା ସୌନ୍ଦର୍ଯ୍ୟର କିଛି ମୂଲ୍ୟ ନ ଥାଏ । ସେହିପରି ଜଣେ ଖୁବ୍ ଗୋଟାଏ ଖ୍ୟାତିମାନ ବଂଶରେ ଜନ୍ମିଥାଇପାରେ ବା ଏକ ଉଚ୍ଚକୁଳରେ ଜନ୍ମିଥାଇପାରେ ବା ଖୁବ୍ ଧନୀ ପରିବାରରେ ଜନ୍ମିଥାଇପାରେ; କିନ୍ତୁ ସେ ଯଦି ନିଜେ ଦୁଃଖୀ ହୋଇଥାଏ, ଅର୍ଥାତ୍ ସେ ନିଜେ ଯଦି ଚରିତ୍ରହୀନ ତେବେ ସେ ଲୋକର ଉଚ୍ଚକୁଳ ବା ବଂଶର ମାନ, ଖ୍ୟାତି ଓ ଗୌରବ ନଷ୍ଟ ହୋଇଯାଏ ଏବଂ ତାକୁ ମଧ ସମାଜରେ କେହି ଖାତିର କରନ୍ତି ନାହିଁ ।

ଚାଣକ୍ୟ ପଣ୍ଡିତେ ଆଉ ଦୁଇଟି ଉଦାହରଣ ଦେଇ କହୁଛନ୍ତି, ଜଣେ ଲୋକ ଯେକୌଣସି ବିଷୟରେ ଖୁବ୍ ଜ୍ଞାନ ଅର୍ଜନ କରିଥାଇପାରେ । ଜଣେ ମଧ ବହୁ ବିଦ୍ୟାର ଅଧିକାରୀ ହୋଇଥାଇପାରେ, ମାତ୍ର ସେ ଯଦି ସେହି ଜ୍ଞାନ ବା ବିଦ୍ୟାକୁ କାର୍ଯ୍ୟକାରୀ ନ କରିପାରେ; କୌଣସି ସିଦ୍ଧି ପ୍ରାପ୍ତ ନ ହୋଇଥାଏ, ତେବେ ତା'ର ଅର୍ଜିତ ଜ୍ଞାନବିଜ୍ଞାନ ବା ବିଦ୍ୟାର କିଛି ମୂଲ୍ୟ ରହିପାରେନା । ଉଦାହରଣସ୍ୱରୂପ, ଜଣେ କୃଷିବିଜ୍ଞାନରେ ପ୍ରଥମ ଶ୍ରେଣୀରେ ପାସ୍ କଲା । ଛଅବର୍ଷକାଳ କୃଷିବିଜ୍ଞାନ ଅଧୟନ କରି ସେ ନାନାବିଧ କୃଷିବିଦ୍ୟା ଅର୍ଜନ କଲା । ଏବଂ ତା'ପରେ ଆସି

ଗାଁରେ ଯଥେଷ୍ଟ ଜମି ଥାଉଁ ଥାଉଁ ତା'ର କିଛି ପ୍ରୟୋଗ ହେଲା ନାହିଁ, ତେବେ ସେ ବିଦ୍ୟାର କି ମୂଲ୍ୟ ଅଛି ?

ସେହିପରି ଜଣକର ବହୁତ ଧନ ଗଚ୍ଛିତ ଅଛି । ତା'ର ପିତୃପିତାମହଙ୍କ ଅର୍ଜିତ ଧନ ଓ ନିଜ ଅର୍ଜିତ ଧନ ମିଶି ସେ ଅମାପ ଧନର ଅଧିକାରୀ ହୋଇପାରିଛି । ମାତ୍ର ଚାଣକ୍ୟ କହୁଛନ୍ତି, ସେପରି ଗଚ୍ଛିତ ଧନର କି ମୂଲ୍ୟ ଅଛି ? ଯଦି ସେ ଧନ କାହାର ଭୋଗ୍ୟ ନ ହେଲା ? ଯଦି ସେ ଧନ ସତ୍‌କାର୍ଯ୍ୟରେ ବ୍ୟୟିତ ନ ହୁଏ, ଯଦି ସେ ଧନ ନିଜର ଓ ପରିବାରର ସୁଖସ୍ୱାଚ୍ଛନ୍ଦ୍ୟ ଲାଗି ବ୍ୟୟିତ ନ ହୁଏ, ତେବେ ସେ ଧନ ଥାଇ କେତେ ? ନଥାଇ କେତେ ? କାରଣ ଧନର ନିଜସ୍ୱ ମୂଲ୍ୟ କିଛି ନଥାଏ । ଧନର ମୂଲ୍ୟ ନିର୍ଭର କରେ ତା'ର ସୁବ୍ୟବହାରରେ । ନିଜର ବା ସମାଜର ଆବଶ୍ୟକତା ପୂରଣ ପାଇଁ ଯଦି ଗଚ୍ଛିତ ଧନ ବ୍ୟୟ କରାଯାଇ ନପାରିଲା, ତେବେ ସେ ଧନରେ ଲକ୍ଷ୍ମୀଙ୍କର ଆଶୀର୍ବାଦ ନ ଥାଏ । ସେପରି ଧନକୁ "କୁବେର ଧନ" କୁହାଯାଏ । କୃପଣମାନେ ଧନକୁ କେବଳ ସଂଚୟ କରନ୍ତି । ଖର୍ଚ୍ଚ କରନ୍ତି ନାହିଁ । ବଦଖର୍ଚ୍ଚିମାନେ ଧନକୁ ନାନାଦି ପ୍ରକାର ଭୋଗ ବିଳାସ ଓ ଖିଆଲଖୁସୀରେ ଖର୍ଚ୍ଚ କରିଦିଅନ୍ତି । ମାତ୍ର ଯଥାର୍ଥ ଲକ୍ଷ୍ମୀବନ୍ତ ଧନୀ ଲୋକମାନେ ଧନର ସଦ୍‌ବ୍ୟବହାର କିପରି କରିବାକୁ ହୁଏ-ତାହା ଜାଣନ୍ତି ।



## ୯୦. କେଉଁ ଜନ ଶୁଦ୍ଧ-ଚରିତ ?

ପାଠକେ ! ନିମ୍ନୋକ୍ତ ଶ୍ଳୋକଟିରେ ମହାପ୍ରାଜ୍ଞ ଚାଣକ୍ୟ "ଶୁଦ୍ଧତା" କାହାକୁ କହନ୍ତି ଏବଂ କେଉଁ ଲୋକର ଚରିତକୁ ଆମେ ଶୁଦ୍ଧ କହିବା, ସେହି ତତ୍ତ୍ୱ କହୁଛନ୍ତି ।

**ଶୁଃର୍ଭୂମିଗତଂ ତୋୟଂ ଶୁଦ୍ଧା ନାରୀ ପତିବ୍ରତା ।**
**ଶୁଚିଃ କ୍ଷେମକରୋ ରାଜା ସନ୍ତୋଷୀ ବ୍ରାହ୍ମଣଃ ଶୁଚିଃ ॥ (୮/୧୭)**

ଶ୍ଳୋକଟିର ଅର୍ଥ ହେଲା, ଭୂମିତଳେ ଥିବା ଜଳ ଶୁଦ୍ଧ ଅଟେ । ଅର୍ଥାତ୍, କୂପଜଳ ଶୁଦ୍ଧ, ପାଇପ୍ ଜଳ ଶୁଦ୍ଧ । ମାତ୍ର ଝରଣା ଓ ନଦୀଜଳ ସବୁ ସମୟରେ ଶୁଦ୍ଧ ନ ଥାଏ । କାରଣ, ଗଙ୍ଗା ଓ ଯମୁନା ନଦୀର ଜଳ ଖୁବ୍ ପବିତ୍ର ହେଲେ ମଧ୍ୟ, ବହୁ ସ୍ଥାନରେ ନାନାଦି ଦୂଷିତ ପଦାର୍ଥ ସେଥିରେ ନିକ୍ଷିପ୍ତ ହେଉଥିବାରୁ ଏହା ପାନୀୟଜଳ ହିସାବରେ ଶୁଦ୍ଧ ନୁହଁ । ତେଣୁ କେବଳ ଭୂମିତଳୁ ନିର୍ଗତ ବା ଉତ୍ସାରିତ ଜଳ ହିଁ ଶୁଦ୍ଧ ଓ ସ୍ୱାସ୍ଥ୍ୟ ପାଇଁ ନିରାପଦ ଅଟେ ।

ବିବାହିତା ନାରୀର ଚରିତ୍ର ଶୁଦ୍ଧ ଥାଏ, ଯଦି ସେ ପତିବ୍ରତା ହୋଇଥାଏ; ଏବଂ ପତିଙ୍କ ବ୍ୟତୀତ ସେ ଯଦି ଅନ୍ୟ ପୁରୁଷ ସଂଗେ ଯୌନସଂପର୍କ ନ ରଖିଥାଏ ତେବେ ଆମେ ସେ ନାରୀକୁ ଶୁଦ୍ଧ କହିବା ।

ସେହିପରି ଯେଉଁ ରାଜା ବା ଶାସକ, ପ୍ରଶାସକମାନଙ୍କ ହୃଦୟ ଦୟା ଓ କ୍ଷମା ଭାବରେ ଅନୁଶୀଳିତ ହୋଇଥାଏ, ଆମେ ସେହି ରାଜା ବା ଶାସକଙ୍କୁ ନିଶ୍ଚୟ ଶୁଦ୍ଧ ଚରିତ କହିବା । କାରଣ, ଦୟା ଓ କ୍ଷମା ଏ ଦୁଇଟି ହେଲେ ଦିବ୍ୟ ସାତ୍ତ୍ୱିକ ଗୁଣ ।

ଶେଷରେ କେଉଁ ବ୍ରାହ୍ମଣଙ୍କୁ ଆମେ ଶୁଦ୍ଧ ଚରିତ କହିବା ? ଯେଉଁ ବ୍ରାହ୍ମଣ ସର୍ବଦା ସନ୍ତୁଷ୍ଟ ଥାନ୍ତି, ତାଙ୍କୁ ଯିଏ ଯାହା ଯେତିକି ଦାନ କଲା, ସେତିକିରେ ସେ ସନ୍ତୁଷ୍ଟ ହୋଇ ଦାତାକୁ ଆଶୀର୍ବାଦ କରନ୍ତି । ଏପରି ବ୍ରାହ୍ମଣ ପ୍ରକୃତରେ ବ୍ରହ୍ମଦର୍ଶୀ ଓ ତାଙ୍କ ପ୍ରକୃତିରେ ଲୋଭ ନ ଥାଏ, ଅସନ୍ତୋଷ ନ ଥାଏ । ସେ ସର୍ବଦା ନିଜ ଯଜମାନଙ୍କର ଓ ସାରା ପୃଥିବୀର କଲ୍ୟାଣ କାମନା କରୁଥାନ୍ତି ଓ ଜଗତର ମଙ୍ଗଳ ଲାଗି ଦେବଦେବୀଙ୍କ ପାଖେ ନିତ୍ୟ ଭୌତିକ ଯଜ୍ଞ ବା ମାନସିକ ଯଜ୍ଞ କରୁଥାନ୍ତି ।

ପାଠକେ ! ମହାମତି ଚାଣକ୍ୟଙ୍କର ଏହି ଶ୍ଳୋକଟିକୁ ଆମେ ଆଉ ଟିକିଏ ବିସ୍ତାର ଅର୍ଥରେ ବୁଝିବା । ପ୍ରଥମ ଉଦାହରଣଟି ଯଥା, ଜଳର ଶୁଦ୍ଧତାକୁ ଆମେ କେବଳ ଭୂମିଗତ ନ କରି ଆକାଶଗତ ମଧ୍ୟ କରିପାରିବା । ଆକାଶରୁ ଯେତେବେଳେ ପ୍ରଥମ ବୃଷ୍ଟି ହୁଏ, ସେତେବେଳେ ତା' ଭିତରେ ଆକାଶରେ ଉଡୁଥିବା ଧୂଳି ମିଶି ଯାଇ ତାହା ଦୂଷିତ ଥାଏ । ମାତ୍ର ପ୍ରଥମ ଅସରା ବର୍ଷା ପରେ ଯେଉଁ ବର୍ଷା ହୁଏ, ସେ ଜଳ ବେଶ୍ ଶୁଦ୍ଧ ଥାଏ ।

ସେହିପରି ଦାମ୍ପତ୍ୟ ଜୀବନରେ ଶୁଦ୍ଧତା ଖାଲି ପତିବ୍ରତା ନାରୀ ଚରିତ୍ରରେ ନ ଥାଏ। ଏକପତ୍ନୀବ୍ରତଧାରୀ ସ୍ୱାମୀର ଚରିତ୍ରରେ ମଧ୍ୟ ଥାଏ। ଜଣେ ବିବାହିତ ପୁରୁଷ ଅନ୍ୟ ନାରୀଙ୍କ ସହିତ ଶୁଦ୍ଧଭାବ ସଂପର୍କ ବା ବନ୍ଧୁତା ରଖିପାରେ। ମାତ୍ର ସେ ଯଦି ଅନ୍ୟ ନାରୀ ସହିତ ଗୋପନୀୟ ଯୌନସଂପର୍କ ରଖେ ବା ପତ୍ନୀସଂପର୍କ ରଖେ, ତେବେ ସେ ପୁରୁଷକୁ କ'ଣ ଆମେ ଶୁଦ୍ଧ ଚରିତ କହିବା ? ଚାଣକ୍ୟଙ୍କ ଯୁଗରୁ ଆଜି ପର୍ଯ୍ୟନ୍ତ, 'ସତୀତ୍ୱ' ଗୁଣଟି କେବଳ ନାରୀଠାରୁ ଦାବି କରାଯାଉଛି । କିନ୍ତୁ ପୁରୁଷ ଠାରୁ ମଧ୍ୟ ସତ୍‌ଚରିତ୍ର ଆଶା କରିବା ଉଚିତ ନୁହେଁ କି ? ସତୀ ଶିରୋମଣି ସୀତାଙ୍କ ଶୁଦ୍ଧ ଚରିତ କଥା କହିଲା ବେଳେ, ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କର କଠୋର ଏକପତ୍ନୀବ୍ରତ କଥା ଭୁଲିଗଲେ ଚଳିବ କି ?

ଦଣ୍ଡଧାରୀ ରାଜା ଓ ଶାନ୍ତିଶୃଙ୍ଖଳାର ଦାୟିତ୍ୱରେ ଥିବା ଶାସକ, ପ୍ରଶାସକମାନଙ୍କ ଠାରୁ ଆମେ ପ୍ରଥମେ ନିରପେକ୍ଷ ବିଚାର ଦାବି କରିବା; ଏବଂ ସେମାନଙ୍କଠାରୁ ଦୟା ଓ କ୍ଷମା ତା' ପରେ ଆଶା କରିବା । ଦୟା ଓ କ୍ଷମାଗୁଣ ଏକ ମାନବୀୟ ଗୁଣ । କିନ୍ତୁ ଏହା ପ୍ରଥମେ ଏକ ବ୍ୟକ୍ତିଗତ ଗୁଣ । କିନ୍ତୁ ସାମାଜିକ ବା ସାମୂହିକ ଦାୟିତ୍ୱ ଯେଉଁମାନଙ୍କ ଉପରେ ଥାଏ, ସେମାନେ ଦୋଷୀକୁ ଦଣ୍ଡ ଦେବା ଉଚିତ ନୁହଁ କି ? ତେବେ କିପରି ଦୋଷୀକୁ କିପରି ଦଣ୍ଡଦେବା ଉଚିତ, ତାହା ଏକ ସ୍ୱତନ୍ତ୍ର ବିଚାର ଏବଂ ଏକଥା ବି ସତ ଯେ, ଆବହମାନ କାଳରୁ ରାଜତନ୍ତ୍ର ଶାସନରୁ ଗଣତନ୍ତ୍ର ଶାସନ ପର୍ଯ୍ୟନ୍ତ 'ରାଜକ୍ଷମା' ପଦ୍ଧତିଟି ଏବେବି ଚାଲୁ ରହିଛି ।

ଶେଷରେ ସନ୍ତୁଷ୍ଟ ବ୍ରାହ୍ମଣଙ୍କ କଥା ଦେଖନ୍ତୁ । ବ୍ରାହ୍ମଣ ଶବ୍ଦକୁ କେବଳ ପାରଂପରିକ ଜାତିପ୍ରଥାରେ ନ ନେଇ, ଆମେ ଏପରି ମଧ୍ୟ ଭାବିପାରିବା ଯେ, ଯେଉଁ ବ୍ୟକ୍ତି ସର୍ବଦା ସମସ୍ତଙ୍କ ଉପରେ ସନ୍ତୁଷ୍ଟ ଥାଏ ଓ ସମସ୍ତଙ୍କ କଲ୍ୟାଣ କାମନା କରୁଥାଏ, ସେ ଇତର ଜାତିରେ ଜନ୍ମ ହେଲେ ବି ନିଶ୍ଚୟ ବ୍ରାହ୍ମଣ ପଦବାଚ୍ୟ ହେବ ।



## ୯୧. ... ମାନ ହିଁ ମହତ ଧନ

ପାଠକେ ! ଆମେ ସମସ୍ତେ ଗୋଟିଏ କଥାରେ ପ୍ରାୟ ଏକମତ ଯେ, ମନୁଷ୍ୟର ବଂଚିବା ପାଇଁ 'ଧନ' ଏକାନ୍ତ ଆବଶ୍ୟକ । ଅର୍ଥନୈତିକ ଦୃଷ୍ଟିରୁ ଆମେ ଦେବା ପ୍ରଚଳିତ ମୁଦ୍ରା, ସୁନା, ରୁପା, ବିଭିନ୍ନ ଧାତୁ, ମଣିମାଣିକ୍ୟ, ଜମି, ଗୃହପାଳିତ ପଶୁପକ୍ଷୀ, ଖାଦ୍ୟଦ୍ରବ୍ୟ ଇତ୍ୟାଦି କଥାକୁ ବୁଝୁ । ଏସବୁ ଅଳ୍ପ ବହୁତେ ନ ଥିଲେ ଏ ସଂସାରରେ ଆମ ପକ୍ଷରେ ବଂଚିବା ଅସମ୍ଭବ ହୁଅନ୍ତା । ରହିବା ପାଇଁ ବାସସ୍ଥାନ-ବସନଭୂଷଣ-ଖାଦ୍ୟପେୟ-ରୋଗ ପାଇଁ ଔଷଧ, ବଂଚିବାରେ ସାହାଯ୍ୟ କରିବାକୁ ଲୋକବାକ, ଏସବୁ ନ ଥିଲେ ଆମେ ବଂଚିବା କିପରି ? ତେଣୁ ପ୍ରତ୍ୟେକ ବ୍ୟକ୍ତି ପରିଶ୍ରମ କରି ନାନାଦି ଉପାୟରେ ଧନ ଅର୍ଜନ କରିଥାନ୍ତି ।

କିନ୍ତୁ ନୈତିକତା ବା ଧାର୍ମିକତା ଦୃଷ୍ଟିରୁ ଆମେ କେବଳ ଅର୍ଥନୈତିକ ଧନକୁ 'ଧନ' ବୋଲି କହିବା ନାହିଁ । ଧନ ଶବ୍ଦର ଏକ ମର୍ଯ୍ୟାଦାବନ୍ତ ପ୍ରତିଶବ୍ଦ ଅଛି । ତାହା ହେଲା ଐଶ୍ୱର୍ଯ୍ୟ । ଧର୍ମ ମଧ୍ୟ ଏକ ଅମୂଲ୍ୟ ଧନ । ଭକ୍ତକବି ମଧୁରାଓଙ୍କ ଭାଷାରେ- "ବାଲ୍ୟକାଳୁ ଧର୍ମଧନ ମୁଁ ସଂଚିବି, ଏଜୀବନ ଅନିଶ୍ଚିତ । କେଜାଣି

କାହାର ଆଜି ମୃତ୍ୟୁକାଳ ହୋଇଯିବ ଉପସ୍ଥିତ ।" ତେଣୁ କେବଳ ଟଙ୍କାପଇସା, ଓ ମଣିମାଣିକ୍ୟ, ସୁନା ରୁପାକୁ ଆମେ ଧନ ବୋଲି କହିବା ନାହିଁ । ଧର୍ମ ମଧ୍ୟ ଏକ ଧନ ଓ ମହାମୂଲ୍ୟବାନ୍ ଧନ । ବିଦ୍ୟା ମଧ୍ୟ ଏକ ଧନ । ଜଣେ ବୈଜ୍ଞାନିକ, ଜଣେ ଦାର୍ଶନିକ, ଜଣେ ସାହିତ୍ୟିକଙ୍କୁ ମଧ୍ୟ ଆମେ ମହାଧନର ଅଧିକାରୀ ବୋଲି କହିବା । ସଦ୍‌ଗୁଣଗୁଡ଼ିକ ମଧ୍ୟ 'ଧନ' ପଦବାଚ୍ୟ ।

ଆମେ କିନ୍ତୁ ବର୍ତ୍ତମାନ ମହାମତି ଚାଣକ୍ୟଙ୍କ ଏକ ଶ୍ଳୋକ ପଢ଼ିବା । ସେଥିରେ ସେ ପ୍ରକୃତରେ ଧନ କାହାକୁ କହୁଛନ୍ତି ଓ ପ୍ରକୃତ ଧନବନ୍ତ କାହାକୁ କହୁଛନ୍ତି-ସେ କଥା ବୁଝିବା । ଶ୍ଳୋକଟି ହେଲା –

**ଅଧମା ଧନମିଚ୍ଛନ୍ତି ଧନଂ ମାନଂ ଚ ମଧ୍ୟମାଃ ।**
**ଉତ୍ତମା ମାନମିଚ୍ଛନ୍ତି ମାନୋ ହି ମହତାଂ ଧନମ୍ ।।**

ଏହି ଶ୍ଳୋକଟିରେ ଅର୍ଥ ହେଲା ଅଧମ ଲୋକମାନେ କେବଳ ଧନ ଚାହାନ୍ତି । ମଧ୍ୟମ ଲୋକମାନେ ଧନ ଓ ମାନ ଉଭୟ ଚାହାନ୍ତି । ମାତ୍ର ଉତ୍ତମ ଲୋକମାନେ କେବଳ 'ମାନ' ଚାହାନ୍ତି ।

ଆମ ସମାଜରେ ପ୍ରାୟ ତିନି ପ୍ରକାର ମଣିଷ ଥାନ୍ତି । ଉତ୍ତମ ମଣିଷ, ଯେ ସବୁଗୁଣରେ ପରିପୂର୍ଣ୍ଣ । ତା'ଠାରେ ପ୍ରାୟ ଦୋଷ ନ ଥାଏ । ମଧ୍ୟମ ମଣିଷ, ଯାହାଠାରେ ଭଲ ଗୁଣ ଅଛି, ମନ୍ଦ ଗୁଣ ମଧ୍ୟ ଅଛି । ଅଧମ ମଣିଷ, ଯାହା ପ୍ରକୃତି କେବଳ ଦୋଷରେ ପରିପୂର୍ଣ୍ଣ । ତା'ଠାରେ କିଛି ଗୁଣ ନ ଥାଏ ।

ମାନନୀୟ ଚାଣକ୍ୟ ପଣ୍ଡିତେ 'ମାନ' ଶବ୍ଦର ଗୁରୁତ୍ୱ ଉପରେ ଜୋର ଦେଇଛନ୍ତି। ଆମେ ସାଧାରଣତଃ 'ମାନ' ଶବ୍ଦର ଅର୍ଥ ଗର୍ବ, ଅଭିମାନ, ଆଡ଼ମ୍ବର ବୋଲି ବୁଝିଥାଉ। ମାତ୍ର 'ମାନ' ଶବ୍ଦର ଅର୍ଥ ତା' ନୁହଁ। 'ମାନ' ଶବ୍ଦର ଅର୍ଥ ହେଲା ମାନବୀୟ ମର୍ଯ୍ୟାଦା। ମର୍ଯ୍ୟାଦା ଶବ୍ଦର ଅର୍ଥ ହେଲା, ଉଚ୍ଚଧରଣର ଚିନ୍ତା ଓ ବ୍ୟବହାର। ଯେଉଁ ଗୁଣ ମଣିଷକୁ ଊର୍ଦ୍ଧ୍ୱସ୍ତରକୁ ଉଠାଇନିଏ, ତାହାହିଁ ମର୍ଯ୍ୟାଦା। ମଣିଷ ପାଇଁ ତା'ର ଚିନ୍ତା, କର୍ମ ଓ ବ୍ୟବହାର ସମ୍ବନ୍ଧେ କେତେକ ନିର୍ଦ୍ଦିଷ୍ଟ ସୁନୀତି ରହିଛି। ତାହାହିଁ ମଣିଷକୁ ମଣିଷ ସ୍ତରରେ ରଖେ ଓ ସେଠାରୁ ତାକୁ ଦେବତାସ୍ତରକୁ ଉଠାଇ ନିଏ। ଏହି ସୁନୀତିଗୁଡ଼ିକୁ ନ ପାଳିଲେ, ମଣିଷର ଅଧଃପତନ ହୁଏ। ସେ ପଶୁଠାରୁ ମଧ୍ୟ ହୀନ ହୋଇଯାଏ।

ଆମେ ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କ ଅମିୟ ଚରିତ କଥା ଜାଣିଛେ । ତାଙ୍କର ପିତୃମାତୃଭକ୍ତି, ଭ୍ରାତୃସ୍ନେହ ଏକପତ୍ନୀବ୍ରତ, ତ୍ୟାଗ ପରାୟଣତା, ସତ୍ୟନିଷ୍ଠା,

ପ୍ରଜାନୁରଂଜନ, ଉପକାରୀ ପ୍ରତି କୃତଜ୍ଞତାବୋଧ, ଧର୍ମରକ୍ଷା ଓ ଧାର୍ମିକ ଲୋକଙ୍କର ପ୍ରତିପାଳନ, ଦାନଶୀଳତା, ଦୟା ଓ ଅନୁକଂପା ତାଙ୍କୁ ମଣିଷରୂପୀ ଭଗବାନ୍ ବୋଲି ଯୁଗ ଯୁଗ ଧରି ପ୍ରତିଷ୍ଠା ଦେଇ ଆସିଛି ।

ମହାମତି ଚାଣକ୍ୟ କହୁଛନ୍ତି, ଏହି ମାନମର୍ଯ୍ୟାଦାକୁ ଆମ ଜୀବନରେ ବଡ଼ ସ୍ଥାନ ଦେବା ଉଚିତ । ଏହାହିଁ ଆମ ପାଇଁ ସର୍ବଶ୍ରେଷ୍ଠ ଧନ । ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ର, ଭାଇର ପ୍ରେମ ପାଇଁ ଓ ପିତାଙ୍କର ସତ୍ୟ ପାଇଁ ରାଜ୍ୟ ତ୍ୟାଗକରି ବନକୁ ଗଲେ। ଏହା ହିଁ ଆମର ଆଦର୍ଶ ହେବା ଉଚିତ । ସୁନା, ରୁପାରୁ ମଣିମାଣିକ୍ୟ, ଜମିଜମା ମଣିଷକୁ ସ୍ୱର୍ଗଗାମୀ କରାଏ ନାହିଁ । ଏହି 'ମାନମର୍ଯ୍ୟାଦା' ପୂର୍ଣ୍ଣ ଚିନ୍ତା ଓ କର୍ମ ହିଁ ମଣିଷକୁ ସ୍ୱର୍ଗଗାମୀ କରାଇଥାଏ । ମଣିଷର ମହତ୍ତ୍ୱ ବଢ଼ାଇଥାଏ । ଏହି ମାନମର୍ଯ୍ୟାଦାହୀନ ମଣିଷକୁ ଆମେ ଦରିଦ୍ରତମ ହୀନମଣିଷ ବୋଲି ହିଁ କହିବା।



## ୯୨. ଭାବର ମୂଳେ ଏ ଜଗତ ...

ପାଠକେ ! ଶିରୋନାମାଟି ଆପଣଙ୍କୁ ନିଶ୍ଚୟ ଆମର ପ୍ରାତଃ ଓ ସାନ୍ଧ୍ୟସ୍ମରଣୀୟ ଭକ୍ତକବି ଜଗନ୍ନାଥ ଦାସଙ୍କ ଭାଗବତ ପ୍ରସଙ୍ଗ ଭଳି ଲାଗୁଥିବ। କିନ୍ତୁ ମୁଁ ଏବେ ଆପଣଙ୍କୁ ଭାଗବତ ପ୍ରସଙ୍ଗ କହୁ ନାହିଁ। ମୁଁ କହିବି ମହାନ୍ ପ୍ରାଜ୍ଞପୁରୁଷ ଚାଣକ୍ୟ ଏଇ "ଭାବ" ସମ୍ବନ୍ଧେ କ'ଣ କହୁଛନ୍ତି ! ଏବେ ତାଙ୍କ ଶ୍ଳୋକଟି ପଢ଼ନ୍ତୁ-

**ନାଗ୍ନିହୋତ୍ରଂ ବିନା ବେଦା ନ ଚ ଦାନଂ ବିନା କ୍ରିୟା ।**
**ନ ଭାବେନ ବିନା ସିଦ୍ଧିସ୍ତସ୍ମାଦ୍‌ଭାବୋ ହି କାରଣମ୍ ॥** (୮/୧୦)

ଶ୍ଳୋକଟିର ଅର୍ଥ ହେଲା, ଅଗ୍ନିହୋତ୍ର ଯଜ୍ଞ ସଂପାଦନ ବ୍ୟତୀତ ବେଦ ପଠନ ବ୍ୟର୍ଥ । ଦାନ ବିନା ଯଜ୍ଞାଦି କ୍ରିୟାନୁଷ୍ଠାନ ମଧ୍ୟ ନିରର୍ଥକ । ଭାବ ବିନା ସିଦ୍ଧି ନାହିଁ । ତେଣୁ ଭାବ ହିଁ ସବୁର କାରଣ ।

ସତ କଥା। ମଣିଷ ପାଇଁ 'ଭାବ' ହେଲା ଅସଲ ଗୁଣ। ମଣିଷକୁ ଭଗବାନ୍ ବୁଦ୍ଧି ଦେଇଛନ୍ତି। ତା' ସହିତ ମଣିଷକୁ ମଧ୍ୟ ହୃଦୟଟିଏ ଦେଇଛନ୍ତି। ଅବଶ୍ୟ, ପ୍ରାଣୀମାନଙ୍କୁ ମଧ୍ୟ ଈଶ୍ୱର ମନ, ବୁଦ୍ଧି, ହୃଦୟ ଦେଇଛନ୍ତି। କିନ୍ତୁ ପ୍ରାଣୀମାନଙ୍କ ବୁଦ୍ଧି ଓ ହୃଦୟବୃତ୍ତିର ସୀମା ଅଛି। ମାତ୍ର ମଣିଷର ବୁଦ୍ଧିର ସୀମା ନାହିଁ କି ହୃଦୟର ମଧ୍ୟ ସୀମା ନାହିଁ। ମଣିଷର ବୁଦ୍ଧି ହେଉଛି ନବ ନବ ଉନ୍ମେଷଶାଳିନୀ। ସେ ନୂଆ ନୂଆ

କଥା ଭାବେ, ଚିନ୍ତା କରେ, ସଙ୍କଳ୍ପ କରେ, ସବୁକଥାକୁ ବିଶ୍ଳେଷଣ କରେ। ଯେ କୌଣସି ସମସ୍ୟା ତା' ଆଗକୁ ଆସିଲେ, ସେ ତା'ର ସମାଧାନ ପାଇଁ ନୂଆ ନୂଆ କୌଶଳ ଉଦ୍‌ଭାବନ କରେ। ଏହି ବୁଦ୍ଧିବଳରେ ସେ ଆଜି ବିଜ୍ଞାନର ଏତେ ଉନ୍ନତି କରିଛି। କେତେ ନୂଆ କଥା ନିର୍ମାଣ କରୁଛି। ନିଜପାଇଁ ଓ ତା' ଗୋଷ୍ଠି ପାଇଁ କେତେ ବିଧିବିଧାନ ତିଆରି କରିଛି। ତେଣୁ ମଣିଷ ପାଇଁ ତା'ର ବୁଦ୍ଧି ଏକ ବିଶେଷ ଅବଦାନ ବିଧାତାର।

ସେହିପରି ମଣିଷର 'ହୃଦୟ'। ଏହି ହୃଦୟ ବଳରେ ସେ କେତେ ସୁନ୍ଦର ସୁନ୍ଦର ଅନୁଭୂତି ସବୁ ପାଉଛି। ପ୍ରେମ, ସ୍ନେହ, ଦୟା, ଅନୁକଂପା, ଭକ୍ତି, ବ୍ୟାକୁଳତା, ଦିବ୍ୟ ଜୀବନ ପାଇଁ ଆସ୍ପୃହା ଜଗତ ପ୍ରତି ଶୁଭମନାସ, ଦୁର୍ଗତ ଲୋକର ସେବା କରିବା ପାଇଁ ତା'ର ହୃଦୟ ବ୍ୟାକୁଳ ହୁଏ। ଈଶ୍ୱରଙ୍କୁ ଉପଲବ୍ଧି କରିବା ପାଇଁ ତା'ର ହୃଦୟ ଆକୁଳ ହୁଏ। ଅନ୍ୟର ଦୁଃଖରେ ସେ କାତର ହୁଏ। ଅସହାୟକୁ ସାହାଯ୍ୟ କରିବା ପାଇଁ ସେ ପ୍ରାଣାବେଗରେ ଧାଇଁଯାଏ। ବେଳେବେଳେ ତା'ର ହୃଦୟରେ ଏପରି ମହତ ଭାବ ଜାଗିଉଠେ ଯେ, ସେ ତା' ଦେଶ ପାଇଁ, ଦୁର୍ଗତ ମଣିଷ ପାଇଁ ନିଜର ପ୍ରାଣ ପର୍ଯ୍ୟନ୍ତ ବିସର୍ଜନ ଦେଇପାରେ । ସେମିତି ଏକ ମହତ୍ କାର୍ଯ୍ୟସାଧନ ପାଇଁ ସେ ତା' ହୃଦୟରେ ଏକ ମହତ୍ ଅଭୀପ୍ସା ବା ସଦିଚ୍ଛା ଅନୁଭବ କରେ ଓ ସେଥିପାଇଁ ତା'ର ସର୍ବସ୍ୱ ଦାନକରି ଫକୀର ହୋଇଯାଏ ।

ଏହିଭାବେ ମଣିଷ ତା'ର ବୁଦ୍ଧିବଳରେ ବିଜ୍ଞାନ, ଦର୍ଶନ ଇତ୍ୟାଦି ପ୍ରସ୍ତୁତ କରିଛି ଓ ତା'ର ହୃଦୟର ଭାବବଳରେ କାବ୍ୟ, କବିତା, କଳା, ପ୍ରେମ ଓ ତ୍ୟାଗ ସେବାଦି ପ୍ରଦର୍ଶନ କରିଆସିଛି। ତେଣୁ ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଅସଲ କଥା ହେଲା ଏଇ 'ଭାବ'। ତୁମ ହୃଦୟରେ ଦୟାଭାବ, ସେବାଭାବ, ତ୍ୟାଗଭାବ, ମହତଭାବ ନଥାଇ ତୁମେ ଯେଉଁ ଦାନ କର, ତାକୁ ଯଥାର୍ଥ ଦାନ କୁହାଯାଇପାରିବ ନାହିଁ। ଯଦି ତୁମେ ହୃଦୟରେ ଏକ ଦିବ୍ୟଭାବ ଅନୁଭବ କରିପାରୁ ନାହଁ, ଯଦି ତୁମ ହୃଦୟରେ ଦିବ୍ୟମଣିଷ ହେବା ପାଇଁ ଏକ ପବିତ୍ର ବ୍ୟାକୁଳତା ଅନୁଭବ କରୁ ନାହଁ, ତେବେ ଗୁଡ଼ାଏ ବେଦ ପାଠ କରି ଲାଭ କ'ଣ? ଗୁଡ଼ାଏ ମଠ ମନ୍ଦିରକୁ ଦୌଡ଼ିବା ର ଲାଭ କ'ଣ? ଗୁଡାଏ ଘିଅ ଓ କାଠ ପୋଡା ଯଜ୍ଞ କରିବାରେ କି ଲାଭ? ଯଦି ତୁମ ହୃଦୟରେ ଦିବ୍ୟମଣିଷ ହେବା ଲାଗି ଅଭୀପ୍ସାର ଦୀପଟିଏ ପ୍ରଜ୍ୱଳିତ ହେଉ ନାହିଁ, ତେବେ ଏସବୁ ବାହ୍ୟ ପୂଜାପୂଜିର କିଛି ଅର୍ଥ ନାହିଁ। କିଛି କାର୍ଯ୍ୟ ନ କରି କେବଳ ସବୁ ଦାନ କରିଦେଲେ, ତା'ର ବି କିଛି ଅର୍ଥ ନାହିଁ। ଦାନ କଲାବେଳେ ତୁମର ମନୋଭାବ କ'ଣ ଥାଏ, ସେଥିରୁ ହିଁ ତୁମ ଦାନର ମହତ୍ତ୍ୱ ଜଣାପଡ଼େ। ତେଣୁ

ଖିଆଲରେ ପିତୃପିତାମହଙ୍କ ଅର୍ଜିତ ଧନସଂପତ୍ତିକୁ ଯାକୁ ତାକୁ ବାଣ୍ଟିଦେଲେ କ'ଣ ତୁମେ ଯଥାର୍ଥରେ ଜଣେ 'ଦାନୀ' ହୋଇପାରିବ ? ଆଦୌ ନୁହଁ। ଦାନ ପଛରେ ଏକ ମହତ୍ ତ୍ୟାଗଭାବ ଥାଏ। ଉତ୍ସର୍ଗଭାବ ଥାଏ। ପୁରାଣରେ ମହାରାଜା ରଘୁ, ମହାରାଜା ହରିଶ୍ଚନ୍ଦ୍ର, ମହାନ୍ ବୀର କର୍ଣ୍ଣ ଓ ମହାରାଜା ଶିବିଙ୍କର ଦାନବୃତ୍ତାନ୍ତ ଆମେ ଶୁଣିଛେ, ପଢ଼ିଛୁ। ସେଇମାନଙ୍କ ଦାନ ହିଁ ଯଥାର୍ଥ ଦାନ।

ତେଣୁ ଚାଣକ୍ୟ କହନ୍ତି, ସବୁ ସତ୍‌କର୍ମ ପଛରେ ସଦ୍‌ଭାବ ଥାଏ। ଭାବ ହିଁ ଅସଲ। ମଣିଷ କେବଳ ତା'ର ବୁଦ୍ଧି ପାଇଁ ବଡ଼ ନୁହଁ। ତା'ର ସଦ୍‌ଭାବପୂର୍ଣ୍ଣ କୋମଳହୃଦୟ ପାଇଁ ଆଜି ସବୁଠାରୁ ବଡ଼ ପ୍ରାଣୀ ବୋଲି ନିଜକୁ ପ୍ରତିଷ୍ଠା କରିପାରିଛି। ମଣିଷର ହୃଦୟ ଏକ ଗଭୀର, ଉର୍ମିଳ ସମୁଦ୍ର ପରି ହେବା ଉଚିତ, ଏବଂ ତା'ର୍ ମନ ଏକ ନିର୍ମଳ, ଉଦାର ନୀଳ ଆକାଶଭଳି ହେବା ଉଚିତ। ହେ ଈଶ୍ୱର ! ସତ୍‌ଚିନ୍ତା ଓ ସତ୍‌ସଙ୍କଳ୍ପରେ ଆମର 'ମନ'କୁ ସମୃଦ୍ଧ କର। ସଦ୍‌ଭାବ ଓ ଶୁଦ୍ଧ ଗଭୀର ଅନୁଭବରେ ଆମର ହୃଦୟଗୁଡ଼ିକୁ ପରିପୂର୍ଣ୍ଣ କର।



## ୯୩. କାହା ବିନା କ'ଣ ନଷ୍ଟ ?

ଏ ସଂସାରରେ ଆମେ ବିଭିନ୍ନ ପ୍ରକାରେ ଅନ୍ୟ ଉପରେ ନିର୍ଭରଶୀଳ । ଅନ୍ୟଜଣକ ମଧ୍ୟ ଆଉ କାହା ଉପରେ ନିର୍ଭରଶୀଳ । ଏହି ପରସ୍ପର ନିର୍ଭରତା ହିଁ ଏ ସୃଷ୍ଟିକୁ ଚଳାଇରଖିଛି । ଯୋଉ ବିଷୟ ଯୋଉ ବିଷୟ ଉପରେ ସଫଳ ହେବାକୁ ନିର୍ଭର କରେ ବା ଯୋଉ ବ୍ୟକ୍ତି ଯୋଉ ବ୍ୟକ୍ତି ଉପରେ ବଂଚିବାକୁ ନିର୍ଭର କରେ, ସେହି ନିର୍ଭରଯୋଗ୍ୟ ବସ୍ତୁ ବା ବ୍ୟକ୍ତିଜଣକ ଯଦି ନ ରହେ ବା ନଷ୍ଟ ହୋଇଯାଏ, ତେବେ ନିର୍ଭରଶୀଳ ଲୋକଟି ମଧ୍ୟ ନଷ୍ଟ ହୋଇଯାଏ । ମହାମତି ଚାଣକ୍ୟ ପଣ୍ଡିତେ ଏଇ ମର୍ମରେ ଶ୍ଳୋକଟିଏ ଲେଖିଛନ୍ତି-

**ହତଂ ଜ୍ଞାନଂ କ୍ରିୟାହୀନଂ ହତଶ୍ଚାଽଜ୍ଞାନତୋ ନରଃ ।**
**ହତଂ ନିର୍ନାୟକଂ ସୈନ୍ୟଂ ସ୍ତ୍ରୀୟୋ ନଷ୍ଟ ହ୍ୟଭର୍ତ୍ତୃକାଃ ।।** (୮/୮)

ଅର୍ଥାତ୍, ଜଣେ ଯେତେ ଜ୍ଞାନ ଅର୍ଜନ କରିଥାଉ, ଯେତେ ବିଜ୍ଞାନ ପଣ୍ଡିତ ହୋଇଥାଉ, ତା'ର ଆଚରଣରେ ଯଦି ତାହା ପ୍ରକାଶ ନ ପାଏ, ତେବେ ତା'ର

ଅର୍ଜିତ ଜ୍ଞାନ କ୍ରମଶଃ ନଷ୍ଟ ହୋଇଯାଏ। ଉଦାହରଣସ୍ୱରୂପ ଜଣେ ଦାର୍ଶନିକ, ଜଣେ ବୈଜ୍ଞାନିକ, ଜଣେ ସାହିତ୍ୟିକ, ଜଣେ ସଂଗୀତଜ୍ଞ, ଜଣେ ଚିତ୍ରଶିଳ୍ପୀ, ଜଣେ ଡାକ୍ତର ବା କବିରାଜ-ଯଦି ନିଜ ନିଜର ଜ୍ଞାନବିଜ୍ଞାନକୁ ସେମାନଙ୍କ ଦୈନନ୍ଦିନ ଜୀବନରେ କାର୍ଯ୍ୟରେ ନ ଲଗାନ୍ତି, ତେବେ ଖୁବ୍‌ଶୀଘ୍ର ତାଙ୍କର ଅର୍ଜିତ ଜ୍ଞାନକୁ ସେ ଭୁଲିଯାନ୍ତି। ଜ୍ଞାନ ଏକ ମାନସିକ ବିଷୟ। ଏହା ମନରେ ସୂକ୍ଷ୍ମରୂପରେ ଥାଏ। କିନ୍ତୁ ତାକୁ ଯଦି ବାସ୍ତବ କ୍ଷେତ୍ରରେ ରୂପାୟିତ କରା ନ ଯାଏ, ପ୍ରୟୋଗ କରା ନ ଯାଏ, ତେବେ ସେହି ଭାବାତ୍ମକ ବା ଚିନ୍ତାତ୍ମକ ଜ୍ଞାନ ଖୁବ୍‌ଶୀଘ୍ର ଉଭେଇ ଯାଏ। ଭାବକୁ ବସ୍ତୁରୂପ ଦେଲେ ତାହା ବାସ୍ତବ ହୁଏ। ଗୋଟିଏ ଚିନ୍ତାକୁ କ୍ରିୟାଶୀଳ କଲେ ଇ ତାହା ବାସ୍ତବ ହୁଏ। ଅବାସ୍ତବ ହେଲେ ତାହା ଉଭାଇଯାଏ। ଅନ୍ୟପକ୍ଷରେ ଜ୍ଞାନହୀନ ଅଜ୍ଞାନ ମନୁଷ୍ୟ ଅକାଳରେ ତା'ର ଜୀବନକୁ ମଧ୍ୟ ନଷ୍ଟ କରିଚାଲେ ଓ ଶେଷରେ ସେ ଏକ ଦୁଃଖଦ ଅକାଳ ମୃତ୍ୟୁବରଣ କରେ।

ସେହିପରି ଯୁଦ୍ଧକ୍ଷେତ୍ରରେ ଯଦି ସେନାନାୟକ ବା ସେନାପତି ନ ଥାନ୍ତି, ତେବେ ଅକାରଣରେ ସୈନ୍ୟମାନେ ଶତ୍ରୁସେନାଙ୍କ ଦ୍ୱାରା ନିହତ ହୋଇଥାନ୍ତି। ଯୁଦ୍ଧକ୍ଷେତ୍ରରେ ସୈନ୍ୟମାନେ ଯୁଦ୍ଧକରନ୍ତି। ମାତ୍ର ସେମାନଙ୍କୁ ପରିଚାଳିତ କରନ୍ତି ସେନାପତି । କୋଉ ଘାଟୀରେ, କେତେବେଳେ, କେଉଁ ସୈନ୍ୟମାନେ କୋଉ ଅସ୍ତ୍ରଶସ୍ତ୍ର ଧରି କିପରି ଯୁଦ୍ଧ କରିବେ ତାହା ସେନାବାହିନୀର ସେନାପତିମାନେ ହିଁ ସ୍ଥିର କରନ୍ତି। ଜଳଭାଗରେ ଯୁଦ୍ଧହେଉ ବା ସ୍ଥଳଭାଗରେ ଯୁଦ୍ଧହେଉ ବା ଆକାଶରେ ଯୁଦ୍ଧହେଉ, ସବୁପ୍ରକାର ଯୁଦ୍ଧରେ ସେନାପତି ହିଁ ନିର୍ଦ୍ଦେଶ ଦେଇଥାନ୍ତି । ଯେଉଁଠି ସେନାପତି ନ ଥାନ୍ତି ବା ସେନାପତି ଦିଗଭ୍ରଷ୍ଟ ହୋଇପଡ଼ନ୍ତି, ସେଠାରେ ସୈନ୍ୟମାନେ ଅରକ୍ଷିତଙ୍କ ପରି ଶତ୍ରୁସେନାଙ୍କ ଦ୍ୱାରା ନିହତ ହୋଇଥାନ୍ତି ।

ସେହିପରି ପତିଅନୁରକ୍ତା ଓ ପତିନିର୍ଭରଶୀଳା ପତ୍ନୀ ଯଦି ହଠାତ୍ ବିଧବା ହୋଇଯାନ୍ତି, ତେବେ ସେ ମଧ୍ୟ ଆଉ ଭଲଭାବେ ବଂଚିପାରନ୍ତି ନାହିଁ । କେହି କେହି ଭାବପ୍ରବଣା ପତିଅନୁରାଗିଣୀ ପତ୍ନୀ ଆଉ ବଂଚିବାକୁ ଇଚ୍ଛା ମଧ୍ୟ କରିପାରନ୍ତି ନାହିଁ । ସେମାନଙ୍କୁ ଜୀବନ ବିସ୍ୱାଦକର ମନେହୁଏ । ସେମାନଙ୍କ ପାଇଁ ଜୀବନର ସବୁ ରସକୂପ ଶୁଖିଯାଏ । ବହୁ ବନ୍ଧୁବାନ୍ଧବ, ପୁତ୍ର, କନ୍ୟା, ନାତିନାତୁଣୀଙ୍କ ମେଳରେ ବି ସେମାନେ ନିଜକୁ ଖୁବ୍ ଏକୁଟିଆ ମନେକରନ୍ତି । ଏହିଭଳି ସ୍ତ୍ରୀଲୋକମାନେ ଆଗେ ସ୍ୱାମୀର ବିୟୋଗ ପରେ ସ୍ୱାମୀଙ୍କ ଚିତାଗ୍ନିରେ ଝାସ ଦେଇ ପ୍ରାଣ ବିସର୍ଜନ କରୁଥିଲେ । କିନ୍ତୁ ଏତେଦୂର ଯିବା ଆଦୌ ଉଚିତ ନୁହଁ । ଜଣେ ବିଧବା ନାରୀ ତା'ର ଅବଶିଷ୍ଟ ଜୀବନକୁ ଧର୍ମ ସାଧନାରେ କଟାଇପାରେ, ସାମାଜିକ କାର୍ଯ୍ୟ ବା ସେବାରେ ନିଜକୁ

ଖଟାଇପାରେ । ନିଜ ଆତ୍ମାର ଉନ୍ନତି ପାଇଁ ବା ବିକାଶ ପାଇଁ ସେ ଅବଶିଷ୍ଟ ଜୀବନ ବିତାଇପାରେ । ଏପରି ବହୁ ମହତ ଉଦାହରଣ ମଧ୍ୟ ରହିଛି । ଯୁଗାବତାର ରାମକୃଷ୍ଣ ପରମହଂସଙ୍କ ତିରୋଧାନ ପରେ ତାଙ୍କର ସନ୍ନ୍ୟାସିନୀ ପତ୍ନୀ ଶ୍ରୀମାନ୍‌ସାରଦାମଣି ଏକୋଇଶ ବର୍ଷ ପର୍ଯ୍ୟନ୍ତ ବଞ୍ଚି ରହିଲେ; ଏବଂ ତାଙ୍କ ପତିଭଗବାନ୍‌ଙ୍କ ମହତକର୍ମରେ ନିଜକୁ ନିୟୋଜିତ ରଖିଲେ । ବିଶ୍ୱବ୍ୟାପୀ ରାମକୃଷ୍ଣ-ଚେତନାକୁ ପ୍ରସାରଣ କରୁଥିବା ରାମକୃଷ୍ଣ ସଂଘ ବା ମିସନ୍‌ର ସେ ଥିଲେ ସର୍ବୋଚ୍ଚ ନେତ୍ରୀ ଓ ନିର୍ଦ୍ଦେଶିକା । ସ୍ୱୟଂ ସ୍ୱାମୀ ବିବେକାନନ୍ଦ, ସ୍ୱାମୀ ସାରଦାନନ୍ଦ, ସ୍ୱାମୀ ବ୍ରହ୍ମାନନ୍ଦ ପ୍ରମୁଖ ରାମକୃଷ୍ଣଙ୍କ ମହାନ୍ ଶିଷ୍ୟମାନେ ଶ୍ରୀମା ସାରଦାମଣିଙ୍କ ନିର୍ଦ୍ଦେଶକୁ ଅପେକ୍ଷା କରି ସମସ୍ତ କାର୍ଯ୍ୟ କରୁଥିଲେ ।

ତେଣୁ ସ୍ତ୍ରୀଲୋକଟିଏ ହଠାତ୍ ବିଧବା ହୋଇଗଲେ ନିଜକୁ ଅସହାୟା ମନେକରି ବିନଷ୍ଟି ପଥରେ ଚାଲିବା ଆଦୌ ଉଚିତ ନୁହେଁ । ଆଧୁନିକ ଯୁଗରେ ମଧ୍ୟ ଆମ ଦେଶରେ ଅସହାୟା ବିଧବାମାନଙ୍କ ପାଇଁ ବହୁ ଧର୍ମାନୁଷ୍ଠାନରେ ରକ୍ଷଣ ବ୍ୟବସ୍ଥା ରହିଛି; ଏବଂ ସେମାନଙ୍କ ଆତ୍ମବିକାଶ ପାଇଁ ଯୋଜନା ମଧ୍ୟ ରହିଛି । ସାମାଜିକ କ୍ଷେତ୍ରରେ ମଧ୍ୟ ସେମାନଙ୍କ ପାଇଁ ବହୁ ବ୍ୟବସ୍ଥା ରହିଛି ।

ମହାମତି ଚାଣକ୍ୟଙ୍କ ସମୟ ଥିଲା ଅଲଗା । ତେଣୁ ତାଙ୍କ ପ୍ରତି ସମସ୍ତ ସମ୍ମାନ ଅର୍ପଣ କରି ଆମେ ତାଙ୍କର ଏଇ ଉପଦେଶଟିକୁ ବିନୀତ ଭାବେ ପ୍ରତ୍ୟାଖ୍ୟାନ କରିବା ଉଚିତ ।



## ୯୪. ପୁରୁଷ ପାଇଁ ଦୁଃଖଦାୟକ ବିଡ଼ମ୍ବନା

ବିଚକ୍ଷଣ ନୀତି-ନିର୍ଦ୍ଧାରକ ଚାଣକ୍ୟ ମହାଶୟ ମନୁଷ୍ୟ ଜୀବନକୁ ନେଇ ନାନାଦି ତାତ୍ତ୍ୱିକ ବିଶ୍ଳେଷଣ କରିଛନ୍ତି ଓ ସେଥିପାଇଁ କେତେକ ସୁନୀତି ମଧ୍ୟ ପ୍ରଣୟନ କରିଛନ୍ତି । ପାଠକେ ! ନିମ୍ନୋକ୍ତ ଶ୍ଳୋକଟି ପଢ଼ି ବିଚାର କରନ୍ତୁ- ଜଣେ ପୁରୁଷ ପକ୍ଷରେ ତିନୋଟି ଦୁଃଖଦାୟକ ବିଡ଼ମ୍ବନା କ'ଣ ?

**ବୃଦ୍ଧକାଳେ ମୃତା ଭାର୍ଯ୍ୟା ବନ୍ଧୁହସ୍ତେ ଗତଂ ଧନମ୍ ।**
**ଭୋଜନଂ ଚ ପରାଧୀନଂ ତିସ୍ରଃ ପୁଂସାଂ ବିଡ଼ମ୍ବନାଃ ॥ (୮/୯)**

ଏ ଶ୍ଳୋକଟିର ଅର୍ଥ ହେଲା, ଜଣେ ପୁରୁଷପାଇଁ ତା' ଜୀବନରେ ତିନୋଟି ଦୁଃଖଦାୟକ ବିଡ଼ମ୍ବନା ରହିଛି । ପ୍ରଥମଟି ହେଲା, ପୁରୁଷର ବୃଦ୍ଧକାଳରେ ଯଦି

ତା'ର ଜିବନସଂଗିନୀ ପ୍ରିୟବତୀ ଭାର୍ଯ୍ୟାର ମୃତ୍ୟୁ ହୋଇଯାଏ, ତେବେ ସେହି ବୃଦ୍ଧ ପୁରୁଷଟିର ଅବଶିଷ୍ଟ ଜୀବନ ବଡ଼ ଦୁଃଖରେ କଟେ । ତା'ର ଅବଶିଷ୍ଟ ଜୀବନ ହାହୁତାଶମୟ ହୋଇଯାଏ । ତା' କଥା ବୁଝିବାକୁ ଆଉ କେହି ନ ଥାନ୍ତି । ପୁଅଝିଅମାନେ ବାହା ସାହା ହେଲାପରେ ସେମାନଙ୍କର ସଂସାର ଦାୟିତ୍ୱ ବଢ଼ିଯାଏ । ସେମାନେ ତାଙ୍କର ଜୀବନ, ଜୀବିକା ଓ ସଂସାରକୁ ଚଳାଉ ଚଳାଉ ସେମାନଙ୍କ ସମୟ ବିତିଯାଏ ।

ଏଣେ ପୁଣି ବାର୍ଦ୍ଧକ୍ୟ ଅବସ୍ଥାରେ ପୁରୁଷଟିର ନାନାଦି ରୋଗ ବାହାରେ । ତା'ର ଦେହ ତ ବାର୍ଦ୍ଧକ୍ୟଜନିତ ରୋଗରେ ପୀଡ଼ିତ ଓ ବିକଳ ହୋଇଯାଏ । ତା'ର ମନ ମଧ୍ୟ ଭାଙ୍ଗିପଡ଼େ । ବେଳେବେଳେ ମନରେ ନାନାପ୍ରକାର ବିକାର ମଧ୍ୟ ଜାତ ହୁଏ । ବୁଢ଼ାଟା ସବୁବେଳେ ସମସ୍ତଙ୍କ ଉପରେ ଚିଡ଼ୁଥାଏ । ନିଜପ୍ରତି ଅବହେଳା ହେଉଛି ବୋଲି ରାଗରେ ସବୁବେଳେ ସମସ୍ତଙ୍କ ଆଗରେ ଅଭିଯୋଗ କରୁଥାଏ । ବୁଢ଼ାଟା ଉପରେ ତା'ର ଚିଡ଼ିଚିଡ଼ା ସ୍ୱଭାବ ଯୋଗୁଁ ଓ ଖେଣ୍ଟାଦୁର୍ଗୁଣ ଯୋଗୁଁ ତା'ର ନାତିନାତୁଣୀମାନେ ମଧ୍ୟ ବିରକ୍ତ ହୋଇଯାନ୍ତି; ଏବଂ ସ୍ଥଳବିଶେଷରେ ବୁଢ଼ାଟାର ଆଶୁ ମରଣ ମଧ୍ୟ କାମନା କରୁଥାନ୍ତି । କେହି କେହି ଚାକିରିରେ ମୁକରିର ହୋଇଥିବା ନାତି ତା'ର ତରୁଣୀ ଭାର୍ଯ୍ୟା ସହିତ କେଉଁ ଦର୍ଶନୀୟ ସ୍ଥାନକୁ ବୁଲିଯିବା ପାଇଁ ଚାକିରିରୁ ଚାରିଛଅଦିନ ଛୁଟି ନେବାକୁ ଦରକାର ପଡ଼ିଲେ, ତା'ର ଉପରିସ୍ଥ କର୍ମଚାରୀଙ୍କ ପାଖକୁ ଛୁଟି ପାଇଁ ଦରଖାସ୍ତରେ ଲେଖେ, "ମହାଶୟ ! ମୋର ଜେଜେବାପା ହଠାତ୍ ମାରାତ୍ମକ ରୋଗରେ ପୀଡ଼ିତ ହୋଇପଡ଼ିଛନ୍ତି। ତେଣୁ ତାଙ୍କର ସେବା ପାଇଁ ମୋତେ ଦୟାକରି ଛଅଦିନ ଛୁଟି ମଂଜୁର କଲେ ମୁଁ ଚିରୋପକୃତ ହେବି।"

ଆଉ କେହି ନାତିର ବିବାହ ଦିନ ସ୍ଥିର ହୋଇଯାଇଛି। ଆସନ୍ତା ପନ୍ଦର ତାରିଖରେ ତା'ର ବିବାହ ହେବ। ହଠାତ୍ ବୁଢ଼ା ଜେଜେ ବାପା ଭୟଙ୍କର ବେମାରଗ୍ରସ୍ତ ହେଲେ। ବିବାହ ପାଇଁ ବ୍ୟାକୁଳ ହେଉଥିବା ନାତି ମହାଦେବଙ୍କ ଲିଙ୍ଗ ଉପରେ ପଇଡ ପାଣି ଢାଳି ପ୍ରାର୍ଥନା କରେ, ହେ ଦୟାଳୁ ମହାଦେବ ! ମୋର ବିବାହ ଆସନ୍ତା ମାସ ପନ୍ଦର ତାରିଖରେ ହେବାକୁ ସ୍ଥିର ହୋଇଛି । କିନ୍ତୁ କାଲିଠାରୁ ମୋର ବୁଢ଼ାବାପାଙ୍କର ହଠାତ୍ ଦେହ ଖରାପ ହୋଇଯାଇଛି । ପ୍ରଭୁ ! ଆଜି କାଲି ଭିତରେ ବୁଢ଼ାକୁ ଯମପୁର ପଠାଇଦେଇ ମୋର ବିବାହର ପଥ ସୁଗମ କରାଇ ଦିଅନ୍ତୁ । ବିବାହ ପରେ ମୁଁ ମୋର ସୁନ୍ଦରୀ ନବବିବାହିତା ପତ୍ନୀଙ୍କ ସହିତ ତୁମ ଉପରେ ଦଶମାଠିଆ ଥଣ୍ଡା କ୍ଷୀର ଢାଳିବି ।"

ପାଠକେ! ବିପତ୍ନୀକ ବୁଢ଼ାଟିର ଦୁରବସ୍ଥା ଶୁଣି ହସିବେ ନା କାନ୍ଦିବେ ? ଆପଣଙ୍କର ଯାହା କିଛି ପ୍ରତିକ୍ରିୟା ହେଲେ ବି, ମୋର କିଛି ଯାଏଆସେନା ।

ସେହିପରି ମଧ୍ୟ "ବନ୍ଧୁହସ୍ତଗତ ଧନ" ଜଣେ ବ୍ୟକ୍ତି ପକ୍ଷରେ ବେଳେବେଳେ ଖୁବ୍ ବିଡ଼ମ୍ବନାର କାରଣ ହୋଇଥାଏ । ମନେକରନ୍ତୁ, ଆପଣଙ୍କର ଜଣେ ଅତି ପ୍ରିୟ ବନ୍ଧୁଙ୍କର କିଛି ଗୋଟାଏ ବଡ଼ ବିପଦ ପଡ଼ିଗଲା । ଘରପୋଡ଼ିରେ ହେଉ କି ବନ୍ୟା ବାତ୍ୟାରେ ହେଉ କି ଭୂମିକଂପ ପ୍ରଭୃତି ଦୈବୀ ଦୁର୍ବିପାକରେ ସେ ଅତି ବିପଦରେ ପଡ଼ିଗଲେ । ଏପରିକି ତାଙ୍କର ଖାଇବାକୁ କିଛି ନ ଥିଲା କି ରହିବାକୁ ଆଶ୍ରା ନ ଥିଲା । ସେପରି ବିପଦକାଳରେ ସେ ଆପଣଙ୍କୁ କିଛି ଧନ ସାହାଯ୍ୟ ମାଗିଲେ । ଆପଣ କ'ଣ ଏପରିସ୍ଥଳେ ତାଙ୍କୁ ସାହାଯ୍ୟ କରିବାକୁ ପଶ୍ଚାଦ୍‌ପଦ ହେବେ ? ଆଦୌ ନୁହେଁ । ଫଳରେ ଆପଣ ବନ୍ଧୁଦୁଃଖରେ ବିଗଳିତ ହୋଇ ତାଙ୍କୁ ବହୁ ଧନ ସାହାଯ୍ୟ କଲେ ବନ୍ଧୁ ମଧ୍ୟ ଟଙ୍କାତକ ପାଇ ଘରଦ୍ୱାର କଲେ । ସରକାରୀ ସାହାଯ୍ୟ ମଧ୍ୟ ତାଙ୍କୁ ମିଳିଲା । ପିଲାମାନେ ତାଙ୍କର ମଧ୍ୟ ରୋଜଗାର କରି ଧନ କମାଇଲେ । କିନ୍ତୁ ସେ ବନ୍ଧୁଜଣକ ଆପଣଙ୍କ ଧନ ଶୁଝିବା ନାଁ ଧରିଲେ ନାହିଁ । "ହଁ ଦେବି" "ହଁ ଦେବି" କହି କହି ଦିନ ପରେ ଦିନ, ମାସ ପରେ ମାସ, ବର୍ଷ ପରେ ବର୍ଷ ଗଡ଼ିଚାଲିଲା । ଏଣେ "ବନ୍ଧୁ" ବୋଲି ଆପଣ କିଛି କଡ଼ାକଥା ତାଙ୍କୁ କହିପାରୁ ନାହାନ୍ତି । ସେ ମଧ୍ୟ ଆପଣଙ୍କ ଠାରୁ କିଛି କାଗଜପତ୍ରରେ କରଜ କଥା ଲେଖିନାହାନ୍ତି । ଏଣେ ଆପଣଙ୍କର ସାନଝିଅର ବାହାଘର ବେଳ ହୋଇଗଲାଣି । ହାତରେ ଯଥୋଚିତ ଧନ ନାହିଁ । ବନ୍ଧୁଙ୍କ ହାତରେ ଆପଣଙ୍କ ଧନତକ ଅଛି । ସେ ବି ବର୍ତ୍ତମାନ ଇଚ୍ଛା କଲେ ଦେଇପାରନ୍ତେ । କିନ୍ତୁ ଦେଉନାହାନ୍ତି । ଏପରିସ୍ଥଳେ ଆପଣ ଗାଲରେ ହାତ ଦେଇ ଚୁପ୍‌ଚାପ୍ ନିଜର ଦୁଃଖକୁ ନିଜେ ଭୋଗିବା ଛଡ଼ା ଉପାୟ ନାହିଁ ।

ବ୍ୟକ୍ତିର ଆଉ ଗୋଟିଏ ବଡ଼ ଦୁଃଖ ହେଲା, ତା'ର ଖାଦ୍ୟସମସ୍ୟା। ତା'ଘରେ ଖାଇବାକୁ ଅନ୍ନ ନାହିଁ। ନିଜ କୁଟୁମ୍ବକୁ ଖାଇବାକୁ ଦେଇପାରୁନାହିଁ। ହୁଏତ ତାକୁ ଭିକ୍ଷା ମାଗି ନିଜ ପେଟ ଓ ପରିବାରଙ୍କ ପେଟକୁ ଅନ୍ନ ଯୋଗାଡ଼ କରିବାକୁ ପଡୁଛି କିମ୍ବା କୌଣସି ଧନୀକ ବ୍ୟକ୍ତିର ଦୟା ଉପରେ ତା'ର ଓ ତା' ପରିବାରର ଭୋଜନ ସମସ୍ୟାର ସମାଧାନ ନିର୍ଭର କରୁଛି। ଚାଣକ୍ୟ କହୁଛନ୍ତି, ପୁରୁଷପକ୍ଷରେ ଏହାଠାରୁ ବଳି ବଡ଼ ଦୁଃଖ ଆଉ ନାହିଁ। ସତ କଥା। ଏ ସଂସାରରେ ଓ ଜୀବନରେ ବହୁ ଦୁଃଖ ରହିଛି। ମଣିଷକୁ ନାନାବିଧ ଦୁଃଖ ଯଂତ୍ରଣା ଭୋଗିବାକୁ ପଡୁଛି। କିନ୍ତୁ ଏଇ ତିନୋଟି ଦୁଃଖଠାରୁ ବଡ଼ ଦୁଃଖ ଆଉ ନାହିଁ। କାରଣ, ଏପରି ଦୁଃଖ ପଛରେ ମାନସମ୍ମାନର ପ୍ରଶ୍ନ ମଧ୍ୟ ଜଡ଼ିତ।



# ୯୫. କିଏ କାହାର ଭୂଷଣ ?

**ଗୁଣୋ ଭୂଷୟତେ ରୂପଂ ଶୀଳଂ ଭୂଷୟତେ କୁଳମ୍ ।**
**ସିଦ୍ଧିର୍ଭୂଷୟତେ ବିଦ୍ୟାଂ ଭୋଗୋ ଭୂଷୟତେ ଧନମ୍ ।। (୮/୧୫)**

ଏହି ଶ୍ଲୋକଟିର ଅର୍ଥ ହେଲା, ମଣିଷର ଦୈହିକ ରୂପକୁ ତା'ର ଅନ୍ତରସ୍ଥ ସଦ୍‌ଗୁଣଗୁଡ଼ିକ ଭୂଷିତ କରିଥାନ୍ତି । ଗୋଟିଏ ବଂଶ ବା କୁଳକୁ ସେ ବଂଶ ବା କୁଳର ନରନାରୀମାନେ ସେମାନଙ୍କର ଉତ୍ତମ ଆଚରଣ, ଭଦ୍ର ଭବ୍ୟ ବ୍ୟବହାର ଓ ଦିବ୍ୟ କର୍ମରାଜିଦ୍ୱାରା ଅଳଂକୃତ କରିଥାନ୍ତି । ଜଣେ ବଡ଼ ବିଦ୍ୱାନ୍ ବା ଜ୍ଞାନୀ ବ୍ୟକ୍ତି ତା'ର ବିଦ୍ୟା ଓ ଜ୍ଞାନର ପ୍ରୟୋଗ କରି ଯେଉଁ ସିଦ୍ଧି ଅର୍ଜନ କରିଥାଏ, ସେହି ସିଦ୍ଧି ଦ୍ୱାରା ହିଁ ତା'ର ବିଦ୍ୟା ଭୂଷିତ ହୋଇଥାଏ । ଶେଷରେ ଧନୀକ ବ୍ୟକ୍ତି ଯେଉଁ ସବୁ ଧନର ଅଧିକାରୀ ହୋଇଥାଏ, ସେ ଧନ ଯଦି ସତ୍, ସୁନ୍ଦର ଓ ମଙ୍ଗଳ ପଥରେ ଭୋଗ ହେଉଥାଏ, ତେବେ ତଦ୍ୱାରା ସେହି 'ଧନ' ମଧ୍ୟ ଶୋଭମାନ ହୋଇଥାଏ ।

ପାଠକେ ! ବର୍ତ୍ତମାନ ମହାପ୍ରାଜ୍ଞ ଚାଣକ୍ୟଙ୍କ ଲିଖିତ ଏହି ସୁନ୍ଦର ଶ୍ଲୋକଟିର ଅସଲ ମର୍ମ କ'ଣ, ସେକଥା ଆଲୋଚନା କରିବା । ଭୂଷଣ ଶବ୍ଦର ଅର୍ଥ ଅଳଂକାର । ଶରୀରରେ ଅଳଂକାର ଲାଗିଲେ ଶରୀର ସୁନ୍ଦର ଦିଶେ । ସୁନ୍ଦର ଶରୀର ସୁନ୍ଦର ଅଳଂକାରଟିଏ ଲାଗିଲେ ତାହା ଆହୁରି ସୁନ୍ଦର ଦିଶେ । ଉଦାହରଣସ୍ୱରୂପ ଜଣେ ସୁନ୍ଦରୀ ନାରୀର ସୁନ୍ଦର କାନକୁ ସୁନ୍ଦର କାନଫୁଲଟିଏ ଖୁବ୍ ମାନେ । ତା'ର ସୁନ୍ଦର ନାକରେ ନାକଫୁଲଟିଏ ଖୁବ୍ ସୁନ୍ଦର ଦେଖାଯାଏ । ତା'ର ସୁନ୍ଦର ଅଙ୍ଗୁଳିକୁ ହୀରାଲଗା ସୁନାମୁଦିଟିଏ ଖୁବ୍ ସୁନ୍ଦର ଦେଖାଯାଏ । ତା' ମାନେ, ସୁନ୍ଦର ଶରୀରକୁ ଅଳଙ୍କାର ଆହୁରି ସୁନ୍ଦର କରି ଦେଖାଏ । ବେଳେବେଳେ ଏହି ଅଳଂକାର ତତ୍ତ୍ୱଟି ବେଶ୍ ଜଟିଳ ହୋଇଉଠେ । ହାତଟି ଯଦି ସୁନାରେ ତିଆରି ହୋଇଥିବ ତେବେ ସେଇ ସୁନାହାତରେ ସୁନାଚୁଡ଼ି ପିନ୍ଧାଇ ଦେଲେ କିଏ କାହାକୁ ସୁନ୍ଦର କରେ ? ଏ ସ୍ଥଳେ କିଏ କାହାର ଅଳଂକାର ? ସୁନାଚୁଡ଼ି ସୁନାନିର୍ମିତ ହାତର ଅଳଙ୍କାର ? ନା, ସୁନାନିର୍ମିତ ହାତ ସେଇ ସୁନାଚୁଡ଼ିର ଅଳଂକାର ? ତା'ମାନେ କିଏ କାହାକୁ ସୁନ୍ଦର କରେ ?

ଚାଣକ୍ୟ କହୁଛନ୍ତି, ସୁନ୍ଦର ଦେହ ଭିତରେ ଯଦି ସୁନ୍ଦର ଗୁଣ ଥାଏ, ତେବେ ସେହି ସୁନ୍ଦର ଗୁଣ ଯୋଗୁଁ ସୁନ୍ଦର ରୂପ ଆହୁରି ଅଧିକ ସୁନ୍ଦର ଦେଖାଯାଏ । ରୂପବତୀ ନାରୀଟି ଯଦି ଜଣେ ବଡ଼ ବୈଜ୍ଞାନିକ ବା ଜଣେ ବଡ଼ ସାହିତ୍ୟିକ, ସଂଗୀତଜ୍ଞ କିମ୍ବା ଅଭିନେତ୍ରୀ ହୋଇଥାନ୍ତି ତେବେ ତାଙ୍କର ସେହି ଗୁଣ ତାଙ୍କ ସୌନ୍ଦର୍ଯ୍ୟକୁ ବଢ଼ାଇଥାଏ ।

କାରଣ ତାଙ୍କର ବ୍ୟକ୍ତିତ୍ୱର ମହତ୍ତ୍ୱ ବଢ଼ିଯାଇଥାଏ । ସେହିପରି ଜଣେ ସୁନ୍ଦର ବଳିଷ୍ଠ ପୁରୁଷ ଯଦି ବିବିଧ ସଦ୍‌ଗୁଣର ଅଧିକାରୀ ହୋଇଥାନ୍ତି, ତେବେ ତାଙ୍କର ସୁନ୍ଦର ଶରୀରରେ ଏକ ମହିମାମୟ ସୌନ୍ଦର୍ଯ୍ୟ ଫୁଟିଉଠେ । ଜଣେ ସୁସ୍ଥ ସୁନ୍ଦର ଶାସକ ବା ପ୍ରଶାସକଙ୍କ ଭିତରେ ଯଦି ରାଜା ରାମଚନ୍ଦ୍ର, ରାଜା ଯୁଧିଷ୍ଠିର, ରାଜା ହରିଶ୍ଚନ୍ଦ୍ର, ରାଜା ରଘୁ ଓ ରାଜା ଶିବିଙ୍କର ରାଜୋଚିତ ସଦ୍‌ଗୁଣଗୁଡ଼ିକ ଥାଏ, ସେଇ ସଦ୍‌ଗୁଣଗୁଡ଼ିକ ତାଙ୍କର ଆଚରଣ ଓ ବ୍ୟବହାରରେ ପ୍ରକାଶ ପାଏ, ତେବେ ସେହି ସେହି ଶାସକ ଓ ପ୍ରଶାସକଙ୍କ ଦେହର ସୌନ୍ଦର୍ଯ୍ୟରେ ଏକ ମହିମା ପ୍ରକାଶିତ ହୋଇଥାଏ ଓ ତାଙ୍କର ଚେହେରା ସମସ୍ତଙ୍କ ଭିତରେ ଶ୍ରଦ୍ଧା ଓ ସମ୍ଭ୍ରମ ସୃଷ୍ଟି କରିଥାଏ ।

ସେହିପରି ଏକ ବଡ଼, ବିଖ୍ୟାତ ବଂଶରେ ଜନ୍ମ ହୋଇଥିବା ନରନାରୀମାନେ ଯଦି ବହୁବିଧ ଗୁଣର ଅଧିକାରୀ ହୋଇଥାନ୍ତି ଏବଂ ଯଦି ସେହି ବଂଶଜ ବ୍ୟକ୍ତିମାନେ ନିଜ ନିଜର ଯଶ, କୀର୍ତ୍ତି ଦ୍ୱାରା ଜଗତର ମଙ୍ଗଳ କରୁଥାନ୍ତି, ତେବେ ସେମାନଙ୍କ ସଦ୍‌ଗୁଣ ଓ ସତ୍‌କର୍ମ ଦ୍ୱାରା ସେହି ବିଖ୍ୟାତ ବଂଶ ଆହୁରି ଉଜ୍ଜ୍ୱଳ ଓ ସୁନ୍ଦର ଦେଖାଯାଏ ।

ଯେଉଁମାନେ ବିଦ୍ୱାନ୍, ଜ୍ଞାନୀ, ବିଜ୍ଞାନୀ, ସେମାନେ ସେମାନଙ୍କର କଠିଣ ସାଧନା ଦ୍ୱାରା ଯେଉଁ ସିଦ୍ଧି ଅର୍ଜନ କରିଥାନ୍ତି, ତଦ୍ୱାରା ସେହି ସବୁ ବିଦ୍ୟାର ମହିମା ସୌନ୍ଦର୍ଯ୍ୟ ବଢ଼ିଯାଏ । ବିଶ୍ୱକବି ରବୀନ୍ଦ୍ରନାଥ ଜଣେ କବି ହିସାବରେ ଯେଉଁ ସିଦ୍ଧି ଅର୍ଜନ କଲେ, ମହାବିଜ୍ଞାନୀ ଆଇନ୍‌ଷ୍ଟାଇନ୍ ଜଣେ ବିଖ୍ୟାତ ବୈଜ୍ଞାନିକ ହିସାବରେ ଯେଉଁ ସିଦ୍ଧି ଅର୍ଜନ କଲେ, ଦାର୍ଶନିକ ରାଧାକୃଷ୍ଣନ୍ ଓ ବାର୍ଟ୍ରାଣ୍ଡରସେଲ ଦାର୍ଶନିକ ହିସାବରେ ଯେଉଁ ସିଦ୍ଧି ଅର୍ଜନ କଲେ, ତଦ୍ୱାରା ସାହିତ୍ୟ, ବିଜ୍ଞାନ ଓ ଦର୍ଶନବିଦ୍ୟାର ମହତ୍ତ୍ୱ ବଢ଼ିଗଲା ନାହିଁ କି ?

ଶେଷ କଥା ହେଲା, ଜଣେ ଧନୀ ବ୍ୟକ୍ତିର ଧନର ସୌନ୍ଦର୍ଯ୍ୟ ବା ମର୍ଯ୍ୟାଦା କିପରି ବଢ଼େ ?

ତାହା ଜଣା ପଡ଼େ ସେ ଧନ କିପରିଭାବେ ବ୍ୟୟ ହେଉଛି ? ସେ ଧନର କିପରି ଉପଭୋଗ ହେଉଛି ? ସେ ଧନକୁ କିପରି ଭୋଗ କରାଯାଉଛି ? ଯେଉଁମାନେ ଅନୀତି ଅନ୍ୟାୟ କର୍ମ କରି କଳା ଧନ ଉପାର୍ଜନ କରନ୍ତି, ସେମାନେ ସେ ଧନକୁ ନାନାଦି କୁତ୍ସିତ ବିଳାସ ଉପଭୋଗ କରି ଖର୍ଚ୍ଚ କରନ୍ତି । ତଦ୍ୱାରା ସେ ଧନର ମଧ୍ୟ ମହିମା ନଷ୍ଟ ହୋଇଯାଏ ।

କିନ୍ତୁ ଯେଉଁମାନେ ସତ୍ ଉପାୟରେ ଧର୍ନ ଅର୍ଜନ କରନ୍ତି, ଏବଂ ସେ ଧନକୁ ସତ୍ ଉପାୟରେ ବ୍ୟୟ କରନ୍ତି ବା ଭୋଗ କରନ୍ତି, ସେ ଧନର ସୌନ୍ଦର୍ଯ୍ୟ ଓ ମହିମା

ବଢ଼ି ଯାଏ। ଦରିଦ୍ର ବ୍ୟକ୍ତିକୁ ଦାନ କରିବା ଦ୍ୱାରା, ସତ୍ ଅନୁଷ୍ଠାନମାନଙ୍କୁ ଆର୍ଥିକ ସାହାଯ୍ୟ କରିବା ଦ୍ୱାରା-ଦେବ-କାର୍ଯ୍ୟରେ ଧନ ବିନିଯୋଗ କରିବାଦ୍ୱାରା, ମୋଟ ଉପରେ ସର୍ବପ୍ରକାର ମଙ୍ଗଳମୟ କାର୍ଯ୍ୟରେ ଅର୍ଜିତ ଧନକୁ ବ୍ୟୟ କଲେ, ସେ ଧନର ମର୍ଯ୍ୟାଦା ବଢ଼େ ଏବଂ ଦାନଧର୍ମଦ୍ୱାରା ସେହି ଧନୀକ ବ୍ୟକ୍ତିଟିର ସଦ୍‌ଗୁଣଗୁଡ଼ିକ ବିକଶିତ ହୋଇଥାଏ ସେହି ସଦ୍‌ଭୋଗ ବା ଧନର ସଦ୍‌ବ୍ୟବହାର ଦ୍ୱାରା ଧନର ମଧ୍ୟ ମହିମା ବଢ଼ିଥାଏ। ସେ ପ୍ରକାର ଧନ ଉପରେ ମହାଲକ୍ଷ୍ମୀ ଓ ଗଣପତିଙ୍କର ଆଶୀର୍ବାଦ ଥାଏ ବୋଲି ସହଜରେ ବୁଝାପଡ଼େ।



## ୯୬. ପାର୍ଥିବ ସ୍ୱର୍ଗ କେଉଁଠାରେ ?

ପ୍ରିୟ ପାଠକେ! ଆମର ବେଦ, ଉପନିଷଦ ଓ ପୁରାଣମାନଙ୍କରେ ଯେଉଁ ତ୍ରିଲୋକର ବର୍ଣ୍ଣନା ରହିଛି, ସେଗୁଡ଼ିକ ହେଲେ ସ୍ୱର୍ଗଲୋକ, ମର୍ତ୍ତ୍ୟଲୋକ ଓ ପାତାଳଲୋକ ଏବଂ ଏହି ତ୍ରିଲୋକର ମଧ୍ୟ ବିଭିନ୍ନ ସ୍ତର ରହିଛି । ସ୍ୱର୍ଗ ମଧ୍ୟ ଗୋଟିଏ ସ୍ଥାନକୁ ବୁଝାଏ ନାହିଁ । ପାତାଳ ମଧ୍ୟ ଗୋଟିଏ ସ୍ଥାନକୁ ବୁଝାଏ ନାହିଁ । ମାତ୍ର ସ୍ୱର୍ଗ କହିଲେ ଆମେ ସାଧାରଣତଃ ଏୟା ବୁଝୁ ଯେ, ଆମ ମର୍ତ୍ତ୍ୟଲୋକର ଉର୍ଦ୍ଧ୍ୱରେ ଖୁବ୍ ସୂକ୍ଷ୍ମ ସ୍ତରରେ ସ୍ୱର୍ଗଲୋକ ଅବସ୍ଥିତ । ଏଠାରେ ସୂକ୍ଷ୍ମରୂପୀ ଦେବଦେବୀମାନେ ଥାଆନ୍ତି । ସେମାନେ ଅମର । ସେମାନେ କେବଳ ଅମୃତ ଖାଆନ୍ତି ଏବଂ ସ୍ୱର୍ଗରେ ଦୁଃଖ ବେଦନା ନାହିଁ । ସମସ୍ତେ ସର୍ବଦା ପୂର୍ଣ୍ଣ ଆନନ୍ଦ ଭୋଗ କରନ୍ତି । କିନ୍ତୁ ଆମର ଏଇ ମର୍ତ୍ତ୍ୟଲୋକରେ ସୁଖଦୁଃଖ ମିଶାମିଶି ହୋଇ ରହିଛି । ଏଠି ମଣିଷ ସମେତ ସବୁ ପ୍ରାଣୀ ମରଣଶୀଳ । ଏଠାରେ ଅମର ଆତ୍ମା ଓ ମରଣଶୀଳ ପଞ୍ଚଭୂତରେ ନିର୍ମିତ ଶରୀର ଏକତ୍ର ଅଛନ୍ତି । ସୁଖ ଆନନ୍ଦ ଏଠାରେ ସମସ୍ତଙ୍କୁ ନାନାଦି କାରଣରୁ ମିଳେନା । ଯାହା ବା ମିଳେ ତାହା ଖୁବ୍ କ୍ଷଣସ୍ଥାୟୀ । ତଥାପି ଆମେ ଏଇ ଅଳ୍ପ ସୁଖ ଓ ବେଶି ଦୁଃଖର ପୃଥିବୀରେ ଇଚ୍ଛା କଲେ ଓ ଚେଷ୍ଟା କଲେ ଏବଂ ଭାଗ୍ୟ ମଧ୍ୟ ଅନୁକୂଳ ହେଲେ କିଛି ପରିମାଣରେ ସ୍ୱର୍ଗ ସୁଖ ଉପଭୋଗ କରିପାରିବା । ମହାବୁଦ୍ଧି ଚାଣକ୍ୟ କହୁଛନ୍ତି-

**ଭୋଜ୍ୟଂ ଭୋଜନଶକ୍ତିଶ୍ଚ ରତିଶକ୍ତିର୍ବରାଙ୍ଗନା।**
**ବିଭବୋ ଦାନଶକ୍ତିଶ୍ଚ ନାଽଳ୍ପସ୍ୟ ତପସଃ ଫଳମ୍ ॥ (୨/୨)**

ଅର୍ଥାତ୍, ଏହି ମର୍ତ୍ତ୍ୟଲୋକରେ ମଧ ଯେଉଁମାନେ ସୁସ୍ୱାଦୁ ଖାଦ୍ୟ ଭୋଜନ କରିବାକୁ ସକ୍ଷମ ଏବଂ ଯଦି ସେମାନଙ୍କର ସେହିସବୁ ଗରିଷ୍ଠ ଓ ସୁସ୍ୱାଦୁ ଖାଦ୍ୟ ଭଲ ହଜମ ହେଉଥାଏ, ଯେଉଁମାନେ ସୁନ୍ଦରୀ ଓ ମନୋରମା ଭାର୍ଯ୍ୟାଙ୍କୁ ନେଇ ଘର କରିଥାନ୍ତି, ପୁଣି ଯେଉଁମାନେ ସର୍ବପ୍ରକାର ଇନ୍ଦ୍ରିୟସୁଖ ଭୋଗକରିବାକୁ ସକ୍ଷମ ଥା'ନ୍ତି, ଯେଉଁମାନେ ଧନସମ୍ପଦରେ ପରିପୂର୍ଣ୍ଣ ଏବଂ ଯେଉଁମାନେ ଅଭାବୀ ଲୋକଙ୍କୁ ଏବଂ ସମାଜର କୌଣସି ଶୁଭକର୍ମ ପାଇଁ ଯଥେଷ୍ଟ ଦାନ କରିପାରନ୍ତି, ସେମାନେ ନିଶ୍ଚୟ ପୂର୍ବଜନ୍ମରେ ବା ଏହି ଜନ୍ମରେ ଖୁବ୍ ତପସ୍ୟା କରି ତା'ର ଫଳ ଭୋଗ କରୁଥାନ୍ତି। ତା' ଫଳରେ ସେମାନେ ଏହି ଅଳ୍ପ ସୁଖ ଓ ବେଶି ଦୁଃଖ ପରିପୂର୍ଣ୍ଣ ପୃଥିବୀରେ ଆପଣା ପାଇଁ କ୍ଷୁଦ୍ର ସ୍ୱର୍ଗଟିଏ ସୃଷ୍ଟି କରିଥା'ନ୍ତି ଓ ଯତ୍‌କିଞ୍ଚିତ୍ ସ୍ୱର୍ଗସୁଖ ବା ଆନନ୍ଦ ଉପଭୋଗ କରିଥାନ୍ତି।

ଚାଣକ୍ୟ ପଣ୍ଡିତେ ପୁନଶ୍ଚ କହୁଛନ୍ତି-

**ଯସ୍ୟ ପୁତ୍ରୋ ବଶୀଭୂତୋ ଭାର୍ଯ୍ୟା ଛନ୍ଦାନୁଗାମିନୀ।**
**ବିଭବେ ଯଶ୍ଚ ସନ୍ତୁଷ୍ଟସ୍ତସ୍ୟ ସ୍ୱର୍ଗ ଇହୈବ ହି ।। (୨/୨)**

ଅର୍ଥାତ୍, ଯେଉଁ ବ୍ୟକ୍ତିର ପୁତ୍ର ଓ କନ୍ୟାମାନେ ବଶୀଭୂତ ଏବଂ ଯାହାର ପତ୍ନୀ ସ୍ୱାମୀର ଜୀବନଛନ୍ଦ ବା ଜୀବନଧାରାକୁ ଅନୁସରଣ କରେ, ଯେ ନିଜର ଝାଳବୁହା ପରିଶ୍ରମରୁ ଲବ୍ଧଧନକୁ ନେଇ ସନ୍ତୁଷ୍ଟ ଥାଏ, ସେ ବ୍ୟକ୍ତି ତା'ର କ୍ଷୁଦ୍ର କୁଟୀରଟିକୁ ମଧ ଏକ କ୍ଷୁଦ୍ର ସ୍ୱର୍ଗରେ ପରିଣତ କରି ମହାଆନନ୍ଦରେ କାଳାତିପାତ କରୁଥାଏ । ପୁତ୍ର ଓ କନ୍ୟାମାନେ 'ବଶୀଭୂତ' ଅର୍ଥ ଯେଉଁ ପୁତ୍ର କନ୍ୟାମାନେ ଧାର୍ମିକ ଓ ନ୍ୟାୟ ପଥରେ ଚାଲୁଥିବା ଆପଣାର ପିତାମାତାଙ୍କ ଆଦର୍ଶକୁ ଅବଜ୍ଞା ନ କରି, ଅସତ୍ ପଥରେ ଉନ୍ମାର୍ଗଗାମୀ ନ ହୋଇ ସତ୍‌ପଥରେ ଗତି କରନ୍ତି, ସେହି ପୁତ୍ର କନ୍ୟାମାନଙ୍କୁ ବୁଝାଉଛି । ଅନ୍ୟପକ୍ଷରେ ଆମେ ଏ କଥା ମଧ କହିପାରୁ ଯେ, ଅସତ୍ୟ, ଅନ୍ୟାୟ ପଥରେ ଗତିକରୁଥିବା ପିତାମାତାଙ୍କୁ ସତ୍‌ପୁତ୍ର କନ୍ୟାମାନେ ଆଦୌ ମାନିବା ଉଚିତ ନୁହେଁ । ଅଧର୍ମାଚାରୀ ପିତାମାତାଙ୍କ ବଶୀଭୂତ ହେବା ପୁତ୍ର କନ୍ୟାମାନଙ୍କ ପକ୍ଷରେ ଅନୁଚିତ ଅଟେ । ମହାଭକ୍ତ ପ୍ରହ୍ଲାଦ ତାଙ୍କର ରାକ୍ଷସ ପ୍ରକୃତିର ନାସ୍ତିକ ଅହଙ୍କାରୀ ପିତା ହିରଣ୍ୟକଶିପୁର ବଶୀଭୂତ ନ ଥିଲେ । ସେ ତାଙ୍କୁ ମାନୁ ନ ଥିଲେ ଏବଂ ସେଥିପାଇଁ ଦୁଷ୍ଟବୁଦ୍ଧି ହିରଣ୍ୟକଶିପୁ ତାଙ୍କୁ ବହୁ ନିର୍ଯାତନା ଦେଇଥିଲେ । ତେବେ ସୁଦ୍ଧା ମହାତ୍ମା ପ୍ରହ୍ଲାଦ ସେହି ଅସୁର ପ୍ରକୃତି ନିଷ୍ଠୁର ପିତାଙ୍କର ବଶୀଭୂତ ହୋଇ ନ ଥିଲେ । ସେହିପରି

ସ୍ୱାମୀର ପଦଚ୍ଛନ୍ଦକୁ ଅନୁସରଣ କରିବା ପତ୍ନୀର ଧର୍ମ ବୋଲି ଆମେ ସବୁ କ୍ଷେତ୍ରରେ କହିପାରିବା ନାହିଁ । କଥାସମ୍ରାଟ୍ ଫକୀରମୋହନ ସେନାପତିଙ୍କ 'ପେଟେଣ୍ଟ ମେଡ଼ିସିନ' ଗଳ୍ପ ସମସ୍ତେ ପଢ଼ିଥିବେ । ଗଳ୍ପର ନାୟକ ଚନ୍ଦ୍ରମଣିବାବୁ ଖୁବ୍ ଭଲ ମଣିଷ ଥିଲେ । ମାତ୍ର ବଦପ୍ରକୃତିର ସାଙ୍ଗମାନଙ୍କ ସହ ମିଶି ଘୋର ମଦ୍ୟପ ହେଲେ ଏବଂ ବେଶ୍ୟା ସଙ୍ଗେ ମାତିଲେ । ମାତ୍ର ତାଙ୍କ ସ୍ତ୍ରୀ ସୁଲୋଚନାଦେବୀ ଥିଲେ ଜଣେ ପତିପରାୟଣା, ପ୍ରେମମୟୀ ନାରୀ । ସେ ମଧ୍ୟ ଥିଲେ ଖୁବ୍ ବୁଦ୍ଧିମତୀ ଓ ଆଦର୍ଶ ଗୃହିଣୀ । ତାଙ୍କର ଚରିତ୍ର ଓ ବ୍ୟକ୍ତିତ୍ୱ ଥିଲା ସ୍ୱାମୀ ଚନ୍ଦ୍ରମଣିବାବୁଙ୍କଠାରୁ ଅଧିକ ଉଜ୍ଜ୍ୱଳ । ସେ ମଧ୍ୟ ଭଲମନ୍ଦ ଓ କର୍ତ୍ତବ୍ୟ ଅକର୍ତ୍ତବ୍ୟ ସମ୍ବନ୍ଧେ ଖୁବ୍ ସଚେତନ ଥିଲେ । ସବୁକ୍ଷେତ୍ରରେ ଖୁବ୍ ସତର୍କ ଓ ସକ୍ରିୟ ଥିଲେ । ତେଣୁ ସେ ମଦ୍ୟପ ବେଶ୍ୟାସକ୍ତ ଓ ଉନ୍ମାର୍ଗଗାମୀ ସ୍ୱାମୀଙ୍କୁ ଅଧଃପତନରୁ ଉଦ୍ଧାର କରିଥିଲେ । ସେଥିପାଇଁ ତାଙ୍କୁ ସ୍ୱାମୀଙ୍କ ଉପରେ ଝାଞ୍ଜୁଣି ପ୍ରହାର କରିବାକୁ ପଡ଼ିଥିଲା । ଏବଂ ଚନ୍ଦ୍ରମଣିବାବୁ ଭଲ ବାଟକୁ ଫେରିଆସିଥିଲେ । ତା' ପରେ ସ୍ୱାମୀ-ସ୍ତ୍ରୀ ଦୁହେଁ ଅତି ଆନନ୍ଦରେ ଦାମ୍ପତ୍ୟ ଜୀବନ ଅତିବାହିତ କରିଥିଲେ । ତେଣୁ ମହାମତି ଚାଣକ୍ୟଙ୍କ ପ୍ରତି ଯଥାସମ୍ମାନ ଜଣାଇ ଆମେ ଏ କ୍ଷେତ୍ରରେ ଏତିକି କହିପାରିବା ଯେ, ପତ୍ନୀକୁ ପତିର ଗୋଡ଼ାଣିଆ ହେବାକୁ ନ କହି ଆମେ ଏତିକି ଅନ୍ତତଃ ସ୍ପଷ୍ଟ ଭାବେ କହିପାରିବା ଯେ, ଅସତ୍ ପଥରେ ଚାଲୁଥିବା ବା ଉନ୍ମାର୍ଗଗାମୀ ସ୍ୱାମୀମାନଙ୍କୁ ସମର୍ଥନ କରିବା ବା ସେମାନଙ୍କ ପଦାଙ୍କ ଅନୁସରଣ କରିବା ଆଦର୍ଶ ପତ୍ନୀର ଧର୍ମ ନୁହେଁ । ସେ ବରଂ ଆପଣାର ବ୍ୟକ୍ତିତ୍ୱର ପ୍ରଭାବ ପକାଇ ବା ପ୍ରେମର ପ୍ରଭାବ ପକାଇ କୁପଥଗାମୀ ସ୍ୱାମୀକୁ କୁପଥରୁ ସୁପଥକୁ ଫେରାଇ ଆଣିବା ଉଚିତ । ତାହା କରିବାକୁ ସମର୍ଥ ବା ସକ୍ଷମ ହୋଇ ନ ପାରିଲେ ସେପରି ସ୍ୱାମୀଠାରୁ ଦୂରେଇଯିବା ଉଚିତ । ଆଦର୍ଶ ସ୍ୱାମୀର ପଦାଙ୍କ ଅନୁସରଣ କରିବା ସତୀ ସ୍ତ୍ରୀର କର୍ତ୍ତବ୍ୟ ଅଟେ । ମାତ୍ର କୁମାର୍ଗରେ ଚାଲୁଥିବା ଅବାଧ୍ୟ ଓ ଦୁର୍ଦ୍ଦାନ୍ତ ସ୍ୱାମୀର ସଙ୍ଗ ଖୁବ୍ ଶୀଘ୍ର ପରିତ୍ୟାଗ କରିବା ଉଚିତ । କାରଣ ସେହି ଚାଣକ୍ୟ ପଣ୍ଡିତେ ଅନ୍ୟତ୍ର କହିଛନ୍ତି ଓ ମହାମତି ବ୍ୟାସ ମଧ୍ୟ ମହାଭାରତରେ କହିଛନ୍ତି, "ଆତ୍ମାନଂ ସତତ୍ ରକ୍ଷେଦ୍" ସବୁ କିଛିର ବିନିମୟରେ ଆତ୍ମମର୍ଯ୍ୟାଦା ରକ୍ଷା କରିବା ସବୁ ନରନାରୀଙ୍କର ପ୍ରଥମ କର୍ତ୍ତବ୍ୟ ।



## ୯୭. ଚାଣ୍ଡାଳ କିଏ ?

ପାଠକେ ! ମହାଜ୍ଞାନୀ ଚାଣକ୍ୟଙ୍କର ନିମ୍ନୋକ୍ତ ଶ୍ଳୋକଟି ପଢ଼ନ୍ତୁ ଓ ସେ ବିଷୟରେ ଆଲୋଚନାଟି ଉପରେ ଧ୍ୟାନ ଦିଅନ୍ତୁ ।

ଚାଣକ୍ୟ କହୁଛନ୍ତି-

**ପକ୍ଷୀଣାଂ କାକଶ୍ଚାଣ୍ଡାଳଃ ପଶୂନାଂ ଚୈବ କୁକ୍କୁରଃ ।**
**ମୁନୀନାଂ କୋପୀଶ୍ଚାଣ୍ଡାଳଃ ସର୍ବେଷାଂ ଚୈବ ନିନ୍ଦକଃ ।। (୬/୨)**

ଅର୍ଥାତ୍, ଏ ପୃଥିବୀରେ ପକ୍ଷୀମାନଙ୍କ ଭିତରେ କୁଆ ହେଉଛି ଚାଣ୍ଡାଳ । ପଶୁମାନଙ୍କ ଭିତରେ କୁକୁର ହେଉଛି ଚାଣ୍ଡାଳ । ମୁନିମାନଙ୍କ ଭିତରେ ପାପଇଚ୍ଛା ଓ ପାପକର୍ମ ହିଁ ଚାଣ୍ଡାଳ ଏବଂ ଯେଉଁ ଲୋକ ସର୍ବଦା ଅନ୍ୟମାନଙ୍କୁ ନିନ୍ଦା କରେ ସେ ହେଉଛି ସବୁଠାରୁ ବଡ଼ ଚାଣ୍ଡାଳ ।

ବର୍ତ୍ତମାନ ଆମେ ଦେଖିବା, ପ୍ରକୃତ ଚାଣ୍ଡାଳତ୍ୱ କ'ଣ ଓ ପ୍ରକୃତ ଚାଣ୍ଡାଳ କେଉଁମାନେ ? ସାଧାରଣତଃ ଆମେ ଚାଣ୍ଡାଳ ଶବ୍ଦଟିକୁ ପାପାଚାରୀ ଓ ଦୁଷ୍କର୍ମରେ ରତ ଥିବା ନରନାରୀଙ୍କ ସମ୍ବନ୍ଧେ ପ୍ରୟୋଗ କରିଥାଉଁ । ଯେଉଁମାନେ ହୀନକର୍ମା, ଯେଉଁମାନେ ଭ୍ରଷ୍ଟାଚାରୀ ଯେଉଁମାନେ ବିକୃତମନା, ଯେଉଁମାନେ ନୃଶଂସ, ନିଷ୍ଠୁର ଓ ଅମାନବୀୟ ଜୀବନ ବଞ୍ଚନ୍ତି, ସେମାନଙ୍କୁ ସାଧାରଣତଃ ଆମେ ଚାଣ୍ଡାଳ କହିଥାଉ । ଯେଉଁମାନେ ଅଭକ୍ଷ ଭକ୍ଷଣ କରନ୍ତି, ଅଗମ୍ୟା ଗମନ୍ତି, ଅନୀତିକୁ ନୀତି କରି ବଞ୍ଚନ୍ତି, ଯେଉଁମାନେ ଅନ୍ୟକୁ ବୃଥାରେ ପୀଡ଼ା ବା କଷ୍ଟ ଦିଅନ୍ତି, ଯେଉଁମାନେ ଅନ୍ୟର କଷ୍ଟ ଦେଖିଲେ ଖୁସି ହୁଅନ୍ତି, ଯେଉଁମାନେ କ୍ଷୁଧାର୍ତ୍ତ ହାତରୁ ଖାଦ୍ୟପୂର୍ଣ୍ଣ ପାତ୍ର ଛଡ଼ାଇ ନିଅନ୍ତି, ଯେଉଁମାନେ ଇତର ପ୍ରାଣୀ ସହ ସଙ୍ଗମ କରନ୍ତି, ଯେଉଁମାନେ ଯୌନ ବ୍ୟାପାରରେ ବ୍ୟଭିଚାରୀ, ଅତ୍ୟାଚାରୀ ଓ ଗୁରୁଲଘୁ ମାନ୍ୟତା ରଖନ୍ତି ନାହିଁ, ସେମାନଙ୍କୁ ମଧ୍ୟ ଆମେ ଚାଣ୍ଡାଳ ବୋଲି କହିବା । ଯେଉଁମାନେ ସର୍ବବିଧ ପଶୁ ଓ ପକ୍ଷୀଙ୍କର ମାଂସ ଭକ୍ଷଣ କରନ୍ତି, ଯେଉଁମାନଙ୍କର ଦେହ ଓ ମନ ଶୁଚିମନ୍ତ ନୁହଁ, ଏ ସମସ୍ତଙ୍କୁ ଆମେ ଚାଣ୍ଡାଳ କହୁ ।

ସେହିପରି ଚାଣ୍ଡାଳଙ୍କ ଭିତରେ ମଧ୍ୟ ଅଛନ୍ତି 'ବ୍ରହ୍ମଚାଣ୍ଡାଳ' । ଚାଣକ୍ୟ ପଣ୍ଡିତେ କହନ୍ତି, ଯେଉଁମାନେ ମୁନି ବା ଋଷି, ଯେଉଁମାନେ ସମାଜରେ ସାଧୁ, ସନ୍ଥ, ବାବାଜି, ସନ୍ନ୍ୟାସୀ, ବ୍ରାହ୍ମଣ ବା ବୈଷ୍ଣବ ବୋଲି ପୂଜନୀୟ ହୋଇଥାନ୍ତି, ସେମାନଙ୍କ ଭିତରେ ଯଦି ପାପ-ପ୍ରବୃତ୍ତି ଦେଖାଦିଏ ବା ସେମାନେ ଯଦି ଅତ୍ୟନ୍ତ ହୀନ, ନାରକୀୟ

ପାପକର୍ମରେ ଲିପ୍ତ ହୁଅନ୍ତି ବା ଗୋପନରେ ପାପାଚାର କରୁଥାନ୍ତି ଓ ବାରମ୍ବାର ଧରା ପଡୁଥାନ୍ତି, ସେମାନଙ୍କୁ ସମସ୍ତେ 'ବ୍ରହ୍ମଚାଣ୍ଡାଳ' କହି ଘୃଣା କରନ୍ତି । ଚାଣ୍ଡାଳଙ୍କ ମଧ୍ୟରେ ବ୍ରହ୍ମଚାଣ୍ଡାଳ ସବୁଠାରୁ ଘୃଣ୍ୟ ।

ମାତ୍ର ପାଠକେ ! ଚାଣକ୍ୟ ପଣ୍ଡିତେ ଆଉ ପ୍ରକାରେ ଚାଣ୍ଡାଳଙ୍କ କଥା କହୁଛନ୍ତି, ସେମାନେ ସବୁଠାରୁ ବିକୃତ ଚାଣ୍ଡାଳ । ସେମାନେ ହେଲେ ପରନିନ୍ଦୁକ । ଏହି ନିନ୍ଦୁକମାନେ କାହାକୁ ସହ୍ୟ କରିପାରନ୍ତି ନାହିଁ । ଗୁଣୀ ଓ ପ୍ରତିଭାବାନ୍ ଲୋକଙ୍କୁ ସମସ୍ତେ ଗଣ୍ୟମାନ୍ୟ କରନ୍ତି । ମାତ୍ର ନିନ୍ଦୁକମାନେ ସେମାନଙ୍କୁ ମାନ୍ୟକରିବା ବା ପ୍ରଶଂସା କରିବା ଦୂରେଥାଉ, ସେମାନଙ୍କ ଚରିତ୍ରର ଅତି ସାମାନ୍ୟ ଦୋଷକୁ ଖୁବ୍ ବଡ଼କରି ସମାଜରେ ସେମାନଙ୍କୁ ନିନ୍ଦନୀୟ କରିବାପାଇଁ ଚେଷ୍ଟା କରୁଥାନ୍ତି । ଗୁଣୀ ଓ ସମ୍ମାନାସ୍ପଦ ଲୋକମାନଙ୍କୁ ଏହି ନିନ୍ଦୁକମାନେ ସହ୍ୟ କରିପାରନ୍ତି ନାହିଁ । ଏମାନେ ମହାସତୀ ସୀତା ଠାକୁରାଣୀ ଓ ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କର ନିନ୍ଦାଗାନ କରିବାକୁ ପଶ୍ଚାଦ୍‌ପଦ ହୁଅନ୍ତି ନାହିଁ । ଏଭଳି ନିନ୍ଦୁକମାନଙ୍କୁ ଚାଣକ୍ୟ ମହାଚାଣ୍ଡାଳ ବୋଲି ଅଭିହିତ କରିଛନ୍ତି ।

ସତ କଥା । ଆମ ମଣିଷ ସମାଜରେ ବହୁବିଧ ନାରୀ ନର ଅଛନ୍ତି । କିଏ ଗୁଣ ବା ପ୍ରତିଭା ନେଇ ଜନ୍ମ ହୋଇଛି । କିଏ ମଧ୍ୟ ଗୁଣ ବା ପ୍ରତିଭା ନ ଥାଇ ମଧ୍ୟ ସାଧାରଣ ମଣିଷ ରୂପେ ବଞ୍ଚନ୍ତି । କିନ୍ତୁ ସାଧାରଣ ଭଲ ମଣିଷମାନେ ଅସାଧାରଣ ଗୁଣୀ ଲୋକଙ୍କୁ ଈର୍ଷା କରନ୍ତି ନାହିଁ କି ଅସମ୍ମାନ କରନ୍ତି ନାହିଁ । ସେମାନେ ବରଂ ଗୁଣୀ ଓ ପ୍ରତିଭାବାନ୍ ଲୋକଙ୍କର ଗୁଣଗାନ କରି, ପ୍ରଶଂସାବାଦ କରି ଓ ସେମାନଙ୍କୁ ଆଦର ସମ୍ମାନ କରି ନିଜେ ନିଜକୁ ଧନ୍ୟ ମନେକରନ୍ତି । ତା' ଫଳରେ ସେମାନଙ୍କ ସଦ୍‌ଗୁଣ ବଢ଼ିଯାଏ । ମାତ୍ର ଖଳ ପ୍ରକୃତିର ବିକୃତମନା ଲୋକମାନେ ଗୁଣୀ ଲୋକଙ୍କର ନିନ୍ଦାବାଦ କରିବା ଦ୍ୱାରା ଗୁଣୀ ଲୋକଙ୍କର କିଛି କ୍ଷତି କରିପାରନ୍ତି ନାହିଁ । କିନ୍ତୁ ଏଇ ନିନ୍ଦୁକମାନଙ୍କର ପ୍ରକୃତି ଓ ଚରିତ୍ର ଦିନକୁ ଦିନ ଦୟନୀୟ ଭାବେ ନିମ୍ନଗାମୀ ହୋଇଥାଏ ଏବଂ ସେମାନେ ଚଣ୍ଡାଳତ୍ୱ ପ୍ରାପ୍ତହୁଅନ୍ତି । ଚାଣକ୍ୟ ପଣ୍ଡିତେ ଏହି ନିନ୍ଦୁକମାନଙ୍କୁ ସବୁଠାରୁ ନିମ୍ନ ଚାଣ୍ଡାଳ ଆଖ୍ୟା ଦେଇଛନ୍ତି ।

ମାତ୍ର ପାଠକେ ! ମହାମତି ଚାଣକ୍ୟ ପଶୁମାନଙ୍କ ଭିତରେ କୁକୁରକୁ ଓ ପକ୍ଷୀମାନଙ୍କ ଭିତରେ କୁଆମାନଙ୍କୁ କାହିଁକି ଚାଣ୍ଡାଳ କହିଛନ୍ତି, ତା'ର କାରଣ ଆମେ ଠିକ୍ ବୁଝିପାରୁ ନାହୁଁ । ପଶୁମାନଙ୍କ ଭିତରେ ଗୋରୁ ଓ କୁକୁର ଭଳି ଗୃହପାଳିତ ପ୍ରାଣୀମାନଙ୍କୁ ଆମେ ସବୁ ପ୍ରାଣୀଙ୍କଠାରୁ ବେଶି ଶ୍ରଦ୍ଧା ଓ ମାନ୍ୟ କରୁ । ଅଧିକାଂଶ ମନୁଷ୍ୟ ଗୋରୁ ଓ କୁକୁରଙ୍କୁ ପାଳିଥାନ୍ତି । ଉଭୟ ପ୍ରାଣୀ ଆମ୍ଭମାନଙ୍କର ବହୁ ଉପକାର

କରିଥାନ୍ତି ଏବଂ ସେମାନେ ମନୁଷ୍ୟମାନଙ୍କ ଆଦର ଯତ୍ନର ପ୍ରତିଦାନ ମଧ୍ୟ ଦିଅନ୍ତି। ତେଣୁ କୁକୁରକୁ ଚାଣକ୍ୟ ପଣ୍ଡିତେ ଚାଣ୍ଡାଳ କହିବାର କାରଣ ଆମେ ବୁଝିପାରୁ ନାହୁଁ।

ଏତଦ୍‌ବ୍ୟତୀତ ଆଧ୍ୟାତ୍ମିକ ମନସ୍ତତ୍ତ୍ୱାନୁଯାୟୀ ମନୁଷ୍ୟ ଯେପରି ବିକୃତମନା ହୋଇଥାଏ, ପଶୁପକ୍ଷୀମାନେ ସେପରି ବିକୃତମନା ହୁଅନ୍ତି ନାହିଁ। ଇତର ପ୍ରାଣୀମାନଙ୍କର ମାନସିକ ବିକୃତି ଆଦୌ ନାହିଁ। ସେମାନେ ନିଜ ନିଜର ପ୍ରାଣୀଧର୍ମ ପାଳନ କରି ସରଳ ଓ ସହଜ ଭାବେ ବଞ୍ଚନ୍ତି। ମାତ୍ର ମନୁଷ୍ୟ ହିଁ ଯାବତୀୟ ମାନସିକ ବିକୃତିର ଅଧିକାରୀ ଏବଂ ଶତକଡ଼ା ଅଠାନବେ ଭାଗ ମଣିଷ ମାନବ-ଧର୍ମ ପାଳନ କରି ବଞ୍ଚନ୍ତି ନାହିଁ। ଅଧିକାଂଶ ମଣିଷ ଏକ ବିକୃତ ଜୀବନ ବଞ୍ଚନ୍ତି। ତେଣୁ ମହାମତି ଚାଣକ୍ୟଙ୍କୁ ଯଥାସମ୍ମାନ ଦେଇ ଆମେ ଇତର ପ୍ରାଣୀମାନଙ୍କୁ 'ଚାଣ୍ଡାଳ' ଅପବାଦରୁ ବାଦ୍ ଦେଉଛୁ।



## ୯୮. ଧର୍ମ ଏକୋହି ନିଶ୍ଚଳଃ ?

ପାଠକେ ! ଆମେ ସମସ୍ତେ ଜାଣିଛୁ ଯେ, ଏହି ପୃଥିବୀରେ, ଏହି ଜଗତରେ, ଏହି ସଂସାରରେ କିଛି ସ୍ଥିର ନୁହେଁ। ଏଠାରେ ସବୁବେଳେ ପରିବର୍ତ୍ତନ ଚାଲିଛି। ଆମର ଏହି ପୃଥିବୀ ଦିନେ ଜ୍ୱଳନ୍ତ ସୂର୍ଯ୍ୟଙ୍କଠାରୁ ମହାଶୂନ୍ୟରେ ଛିଟିକି ପଡ଼ିଥିବା ଗୋଟିଏ ଜ୍ୱଳନ୍ତ ଜଡ଼ପିଣ୍ଡ ଥିଲା। ମାତ୍ର କୋଟି କୋଟି ବର୍ଷ ଭିତରେ ଏ ପୃଥିବୀ ବର୍ତ୍ତମାନ କ'ଣ ହୋଇଛି ଓ ଭବିଷ୍ୟତ୍‌ରେ କ'ଣ ହେବାକୁ ଯାଉଛି-ତାହା ଦେଖିଲେ ଓ ତାକୁ ଭାବିଲେ ମନ ସ୍ତମ୍ଭୀଭୂତ ହୋଇଯାଏ। କାଳସ୍ରୋତ ଆମ ଅଲକ୍ଷ୍ୟରେ ବହିଚାଲିଛି। ଯାହା ଆସୁଛି ତାହା ସେହି କାଳସ୍ରୋତରେ କୁଆଡ଼େ ଭାସି ଅଦୃଶ୍ୟ ହୋଇଯାଉଛି।

ଏ 'ଜଗତ' ଶବ୍ଦର ଅର୍ଥ ହେଲା, ଯାହା ଗତିଶୀଳ। ଏ 'ସଂସାର' ଶବ୍ଦର ମଧ ଅର୍ଥ ହେଲା, ଯାହା କିଛି ଆମଠାରୁ ଅପସରି ଯାଉଛି। ଆମର ଜୀବନ ମଧ ସେହିପରି ଆସୁଛି ଓ କୁଆଡ଼େ ଚାଲିଯାଉଛି। କିଛି ଏଠାରେ ସ୍ଥିର ରହୁ ନାହିଁ। ଭକ୍ତକବି ମଧୁସୂଦନ ତାଙ୍କ 'ଜୀବନଚିନ୍ତା' କବିତାରେ ପରମ ବିସ୍ମୟରେ ବିହ୍ୱଳ ହୋଇ ନିଜକୁ ନିଜେ ପଚାରୁଛନ୍ତି 'କିସ ଏ ଜଗତେ କହ ସ୍ଥିର ଅଚଞ୍ଚଳ ?'

ସଂସାରର ଓ ଜୀବନର ଏହି ଅସ୍ଥିରତାକୁ ଲକ୍ଷ୍ୟ କରି ଆମର ମହାପ୍ରାଜ୍ଞ ଚାଣକ୍ୟ ଗୋଟିଏ ଶ୍ଳୋକରେ କହୁଛନ୍ତି-

**ଚଳା ଲକ୍ଷ୍ମୀଶ୍ଚଳାଃ ପ୍ରାଣାଶ୍ଚଳଂ ଜୀବିତ ଯୌବନମ୍ ।**
**ଚଳାଚଳେ ଚ ସଂସାରେ ଧର୍ମ ଏକୋ ହି ନିଶ୍ଚଳଃ ।। (୫/୨୦)**

ଅର୍ଥାତ୍ ହେ ମନୁଷ୍ୟମାନେ ! ତୁମ୍ଭେମାନେ ଗୋଟିଏ କଥା ମନରେ ବୁଝିରଖ ଯେ, ଏହି ସଂସାର ଅନିଶ୍ଚିତ ଏବଂ ଏହି ଅନିଶ୍ଚିତ ସଂସାରରେ ସବୁକିଛି ଅନିଶ୍ଚିତ-ଅସ୍ଥିର-ଚଞ୍ଚଳ ଓ ବିଲୟମାନ। ଏଠି ଲକ୍ଷ୍ମୀ ଅର୍ଥାତ୍ ଧନସମ୍ପଦ, ସୌଭାଗ୍ୟ, କ୍ଷମତା, ଯଶ ଓ ସମ୍ମାନ-ସବୁ କିଛି ଅସ୍ଥାୟୀ। ଭକ୍ତକବି ମଧୁସୂଦନ ମଧ୍ୟ ଠିକ୍ ଏଇ ମର୍ମରେ କହିଛନ୍ତି -

'ଧନ ମାନ ଯଶ ଆଦି ଯାହା
ଏ ଭବେ ଲଭନ୍ତି ନରେ-ଭାଗ୍ୟଦେବୀ ପ୍ରସାଦରେ
କାଳଚକ୍ର ଆବର୍ତ୍ତନେ
କି ବେଗରେ ଆହା !
ପଳାନ୍ତିରେ ଅନୁସରି
ନିଜ ନିଜ ରାହା'

ସତ କଥା । ଆମର ଜନ୍ମ, ଜୀବନ ଓ ମୃତ୍ୟୁ କିଛି ଆମ ହାତରେ ସ୍ଥିର ହୋଇ ରହେ ନାହିଁ । ଭାଗ୍ୟବିଧାତାଙ୍କ ଅନୁଗ୍ରହରୁ ଆମେ ଯାହା କିଛି ଜୀବନରେ ପାଇଥାଉ- ତାହା କେତେବେଳେ ଯେ ଆମେ ହରାଇବସିବୁ ତାହା ଆମକୁ ଜଣା ନାହିଁ । ଅଜ୍ଞାତ କାଳସ୍ରୋତରେ ଆମେ ଭାସିଆସୁଛୁ ଓ ସେହି ଅଜ୍ଞାତ କାଳସ୍ରୋତ ପୁଣି ଆମକୁ କେଉଁ ଅଜ୍ଞାତ ସ୍ଥାନକୁ ଭସାଇ ନେଉଛି । ତେଣୁ ଆମର ଜୀବନସ୍ରୋତ ନିଃଶବ୍ଦରେ ମୃତ୍ୟୁର କରାଳ ସମୁଦ୍ରଆଡ଼କୁ ବହିଚାଲିଛି । କୌଣସି ଜୀବିତ ପ୍ରାଣୀ ମଧ୍ୟ ଏଠାରେ ଅଜର ଅମର ନୁହଁ । ସମସ୍ତେ ଦିନେ ଏ ସଂସାରରୁ ବିଦାୟ ନେବେ । ଗୃହ, ମନ୍ଦିର, ଅଙ୍ଗନ, ଦୁର୍ଗ-ଏସବୁ କିଛି ମଧ୍ୟ ଦିନେ ଜୀର୍ଣ୍ଣତାପ୍ରାପ୍ତ ହୋଇ ଭାଙ୍ଗିପଡ଼ିବ ।

ଆମେ ପୁରାଣ ପଢ଼ିଛୁ, ଇତିହାସ ପଢ଼ିଛୁ, ବିଜ୍ଞାନ ଦର୍ଶନ ମଧ୍ୟ ପଢ଼ିଛୁ । ଏସବୁ ପଢ଼ି ଆମର ଏହି ଶିକ୍ଷା ହୋଇଛି ଯେ, ଏ ସଂସାରରେ କିଛି ସ୍ଥିର ନୁହେଁ ନିଶ୍ଚଳ ନୁହଁ ।

ଭକ୍ତକବି ମଧୁସୂଦନ ତାଙ୍କ 'ଜୀବନ-ଚିନ୍ତା' କବିତାରେ ନିଜକୁ ନିଜେ ପ୍ରଶ୍ନ କରିଛନ୍ତି -

'କିସ ଏ ଜଗତେ କହ ସ୍ଥିର ଅଚଞ୍ଚଳ ?'

ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଏ ଜଗତରେ ସବୁକିଛି ଚଳମାନ। ସବୁକିଛି ଅସ୍ଥିର, ସବୁକିଛି ଅନିତ୍ୟ। କିନ୍ତୁ 'ଧର୍ମ' ହିଁ କେବଳ ଏକମାତ୍ର ନିଶ୍ଚଳ ବିଷୟ। କାରଣ, ଧର୍ମ ହେଉଛନ୍ତି ଶାଶ୍ୱତ, ସନାତନ ଏବଂ ସ୍ଥିରପ୍ରତିଷ୍ଠ। ଯେଉଁମାନେ ଏହି ଧର୍ମକୁ ଅବଲମ୍ବନ କରି ବଞ୍ଚନ୍ତି ଯେଉଁମାନେ ଧର୍ମ ପଥରେ ଚାଲନ୍ତି, ଯେଉଁମାନେ ଧର୍ମକୁ ଅତି ସାବଧାନରେ ରକ୍ଷା କରନ୍ତି, ସେମାନେ ଜାଣନ୍ତି ଯେ, ତାଙ୍କର ସବୁକିଛି ଉଭେଇଯିବ। ମାତ୍ର ଧର୍ମ କେବେ ଉଭେଇଯିବ ନାହିଁ ଏବଂ ଏହି ଧର୍ମ ହିଁ ଜୀବନରେ ଯେପରି ମୃତ୍ୟୁ ପରେ ବି ସେହିପରି ତୁମର ଆତ୍ମା ସଙ୍ଗେ ସଂଲଗ୍ନ ହୋଇ ରହିଥିବ। ଛାଡ଼ିବ ନାହିଁ।

ତା' ହେଲେ, ଆମେ ବର୍ତ୍ତମାନ ବୁଝିବା, ଏହି ଧର୍ମ ବିଷୟଟି କ'ଣ ? ଏହା କ'ଣ ହିନ୍ଦୁଧର୍ମ, ମୁସଲମାନ ଧର୍ମ, ଖ୍ରୀଷ୍ଟିଆନ ଧର୍ମ ପରି ଏକ ସାମ୍ପ୍ରଦାୟିକ ରୀତିନୀତିକୁ ମାନି ବଞ୍ଚିବାର ଏକ ଆଦର୍ଶ ?

ନା-ନା। ଏଠାରେ 'ଧର୍ମ' ଶବ୍ଦକୁ ସାମ୍ପ୍ରଦାୟିକ ଅର୍ଥରେ ନିଆଯାଇ ନାହିଁ । ଏହି ଧର୍ମ ହେଲା ସତ୍ୟ, ନ୍ୟାୟ, ନୀତି, ଅହିଂସା, ପ୍ରେମ, ଈଶ୍ୱରଭକ୍ତି, ଈଶ୍ୱରଙ୍କଠାରେ ଆତ୍ମସମର୍ପଣ, ସମସ୍ତଙ୍କ ପ୍ରତି ଶୁଭେଚ୍ଛା ଓ କଲ୍ୟାଣ ଭାବ, କ୍ଷମା, ସେବା ଓ ବିପନ୍ନକୁ ସହାୟତା ଆଦି ସଦ୍‌ଭାବନା ଓ ସତ୍‌କର୍ମାଦିକୁ ବୁଝାଇଥାଏ ।

ମିଥ୍ୟା, ହିଂସା, ନିର୍ଦ୍ଦୟତା, କାମ, କ୍ରୋଧ, ଲୋଭ, ଗର୍ବ, ଅହଂକାର ଓ ଈର୍ଷାଦି ଭାବ ଓ ତତ୍ ପ୍ରଣୋଦିତ କର୍ମକୁ ଅଧର୍ମ କୁହାଯାଏ । ଭଗବାନ୍‌ଙ୍କ ନାମରେ ମିଥ୍ୟାଚାର ଓ ହିଂସାଚରଣକୁ ମଧ୍ୟ ଅଧର୍ମ କୁହାଯାଏ । ସମତା, ସହିଷ୍ଣୁତା, ସଙ୍ଗତି ଓ ସମନ୍ୱୟର ଭାବ କର୍ମାଦିକୁ 'ଧର୍ମ' କୁହାଯାଏ । ଏହିସବୁ ଧାର୍ମିକ ଗୁଣଗୁଡ଼ିକ ଥିଲେ ବ୍ୟକ୍ତି ହିନ୍ଦୁ ହୁଅନ୍ତୁ ବା ମୁସଲମାନ ହୁଅନ୍ତୁ ବା ଖ୍ରୀଷ୍ଟିଆନ ହୁଅନ୍ତୁ, ସେ ନିଶ୍ଚୟ ଈଶ୍ୱର ବା ଆଲ୍ଲା ବା ଗଡ୍‌ଙ୍କୁ ଉପଲବ୍ଧି କରିବାର ଯୋଗ୍ୟତା ଅର୍ଜନ କରିବେ ।

ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଜୀବନରେ ସବୁକିଛି ଚଞ୍ଚଳ ସତ, ମାତ୍ର ଏହି ଧର୍ମ ହିଁ ଏକମାତ୍ର ନିଶ୍ଚଳ। ଧର୍ମକୁ କାଳ ଗ୍ରାସ କରିପାରେ ନାହିଁ। କାରଣ ଧର୍ମ ଆମକୁ ଶାଶ୍ୱତ ଭଗବାନ୍‌ଙ୍କ ସହିତ ମିଳିତ କରାଇଦିଏ। ତେଣୁ ଯେହେତୁ ଈଶ୍ୱର ସ୍ଥିର, ସେହେତୁ ଧର୍ମ ସ୍ଥିର ଏବଂ ଧାର୍ମିକ ବି ସ୍ଥିର।



# ୯୯. ଚାଣକ୍ୟଙ୍କ ସୌଜନ୍ୟବାଦ

ପାଠକେ ! ଆମେ ଜାଣୁ ମହାଜ୍ଞାନୀ, ତୀକ୍ଷ୍ଣବୁଦ୍ଧି, ବିଜ୍ଞୋତ୍ତମ, ନୀତିବିଶାରଦ ଚାଣକ୍ୟ ଜଣେ ରାଜନୀତିଜ୍ଞ ଓ କୂଟନୀତିଜ୍ଞ ମଧ୍ୟ ଥିଲେ। ମାତ୍ର କେବଳ ସେତିକି ନୁହେଁ, ମହାମତି ଚାଣକ୍ୟ ମନୁଷ୍ୟର ଦୈନନ୍ଦିନ ଜୀବନରେ ଓ ସାଧାରଣ ଜୀବନଚର୍ଯ୍ୟାରେ କ'ଣ କର୍ତ୍ତବ୍ୟ, କ'ଣ ଅକର୍ତ୍ତବ୍ୟ ତାହା ମଧ୍ୟ ସେ ଶ୍ଳୋକାକାରରେ ଆମକୁ ଦର୍ଶାଇଛନ୍ତି। କାରଣ ସେ ମଧ୍ୟ ଥିଲେ ଜଣେ ଅତ୍ୟନ୍ତ ଭଦ୍ର, ଭବ୍ୟ ଓ ଶାଳୀନ ବ୍ୟବହାରକୁଶଳୀ। ମଣିଷର ନୈତିକ ଓ ମନସ୍ତାତ୍ତ୍ୱିକ ଜୀବନ ଉପରେ ମଧ ଥିଲା ତାଙ୍କର ଗଭୀର ବୁଝାମଣା। ବର୍ତ୍ତମାନ ପଢ଼ନ୍ତୁ ନିମ୍ନୋକ୍ତ ଶ୍ଳୋକଟି ଓ ତା'ର ବ୍ୟାଖ୍ୟାନ।

**ବିପ୍ରୟୋର୍ବିପ୍ରବହ୍ନ୍ୟୋଶ୍ଚ ଦମ୍ପତ୍ୟୋଃ ସ୍ୱାମିଭୃତ୍ୟୟୋଃ।**
**ଅନ୍ତରେଣ ନ ଗନ୍ତବ୍ୟଂ ହଲସ୍ୟ ବୃଷଭସ୍ୟ ଚ ।। (୭/୫)**

ଏ ଶ୍ଳୋକର ଅର୍ଥ ହେଲା, ଦୁଇଜଣ ବ୍ରାହ୍ମଣ ବା ସାଧୁସନ୍ଥ ବା ବ୍ରହ୍ମଜ୍ଞାନୀ ପୁରୁଷଙ୍କ ମଝିରେ କିମ୍ବା ରାସ୍ତାର ଗୋଟିଏ ପଟେ ବ୍ରାହ୍ମଣ ଥାଇ ଅନ୍ୟ ପଟେ ଅଗ୍ନି ଜଳୁଥିଲେ ଦୁହିଁଙ୍କ ମଝିରେ ଉଦ୍ଧତଭଙ୍ଗୀ ଦେଖାଇ ରାସ୍ତା ଅତିକ୍ରମ କରିବ ନାହିଁ। ରାସ୍ତା ଉପରେ ସ୍ୱାମୀସ୍ତ୍ରୀ ବା ପ୍ରେମିକପ୍ରେମିକା ଠିଆହୋଇ ଆଳାପ କରୁଥିଲାବେଳେ ସେମାନଙ୍କ ମଝିରେ ପଶି ରାସ୍ତା ଅତିକ୍ରମ କରିବା ଠିକ୍ ନୁହେଁ। ପ୍ରଭୁ ଓ ଭୃତ୍ୟ ଯଦି ରାସ୍ତାରେ ଠିଆହୋଇ କଥାବାର୍ତ୍ତା ହେଉଥିବେ ତେବେ ସେମାନଙ୍କ ଭିତରଦେଇ ଯିବା ଆଦୌ ଉଚିତ ବା ଶୋଭନୀୟ ନୁହଁ। ଆଉ ଗୋଟିଏ କଥା ବି ଶୁଣନ୍ତୁ। ରାସ୍ତାରେ ଗୋଟିଏ ପଟେ ହଳ ଓ ଅନ୍ୟ ପାର୍ଶ୍ୱରେ ବଳଦ ଠିଆ ହୋଇଥିଲେ ସେମାନଙ୍କ ଭିତରେ ମଧ୍ୟ ପଶିଯାଇ ରାସ୍ତା ଅତିକ୍ରମ ଆଦୌ କରିବ ନାହିଁ।

ପାଠକେ ! ପୃଥିବୀରେ ଓ ଦେଶରେ, ରାଜ୍ୟରେ ଓ ଗ୍ରାମମାନଙ୍କରେ ଜନସଂଖ୍ୟା ବଢ଼ିଛି। ମାତ୍ର ସେହି ତୁଳନାରେ ସଜ୍ଜନ, ସୁଜନ, ଭଦ୍ରଜନ ଓ ମାନ୍ୟଜନଙ୍କ ସଂଖ୍ୟା ବଢ଼ି ନାହିଁ। ଗୁଣୀଲୋକଙ୍କ ସଂଖ୍ୟା ମଧ୍ୟ ବଢ଼ି ନାହିଁ। ଗଣତନ୍ତ୍ର, ସମାଜବାଦ, ସାମ୍ୟବାଦ ଓ ଜନମତ ଇତ୍ୟାଦିର ଦ୍ୱାହି ଦେଇ ମଣିଷମାନେ ଖୁବ୍ ଉଦ୍ଧତ, ସ୍ୱେଚ୍ଛାଚାରୀ ଓ ଅଶାଳୀନ ହୋଇ ଉଠିଛନ୍ତି। ଆଉ ମଧ୍ୟ ଆଜିକାଲି ଯୁଗରେ ପ୍ରତି ମଣିଷ ଭାବୁଛି, ସେ କାହାଠାରୁ କୋଉଥିରେ ସାନ ନୁହେଁ। ସେ କାହିଁକି କାହା ପାଖେ ମୁଣ୍ଡ ନୁଆଁଇବ ? ସେ କାହିଁକି ଆଉ କାହାକୁ ରାସ୍ତାରେ ବାଟ ଛାଡ଼ିଦେବ ? ବସ୍ ବା ଟ୍ରେନ୍‌ରେ ଆଉ କାହାକୁ ସିଟ୍ ଚାଡ଼ିଦେବ ? ସିନେମା ହଲ୍‌କୁ ପଶିଲାବେଳେ କି ମନ୍ଦିର ଭିତରେ

ପଶିଲା ବେଳେ ସେ କାହିଁକି ସମସ୍ତଙ୍କୁ ଠେଲି ପଛରେ ପକାଇ ଦେଇ ଆଗ ଠାକୁରଠାକୁରାଣୀଙ୍କ ଦର୍ଶନ କରିବ ନାହିଁ ?

ଏଭଳି ଭାବନା ଏକ ମୂଢ଼ତା ଓ ଏଭଳି ଆଚରଣ ଏକ ପାଶବିକ ଅଜ୍ଞାନ ଆଚରଣ । ଆମେ ବୁଝିବା ଉଚିତ ଯେ, ସମାଜରେ ଆମଠାରୁ ଅଧିକ ବୟସ୍କ ମଣିଷ ଅଛନ୍ତି, ଜ୍ଞାନୀଲୋକ ଅଛନ୍ତି, ଗୁଣୀ ଓ ଖ୍ୟାତନାମା ଲୋକ ଅଛନ୍ତି, ଦୁର୍ବଳ ଓ ରୋଗୀମଣିଷ ଅଛନ୍ତି, ମାନ୍ୟଗଣ୍ୟ ମଣିଷ ଅଛନ୍ତି, ମହିଳାମାନେ ଅଛନ୍ତି, ଏମାନଙ୍କୁ ଠେଲିଦେଇ ଓ ଏମାନଙ୍କ ପ୍ରତି ଅବଜ୍ଞା ପ୍ରଦର୍ଶନ କରି ଆମେ କଦାପି ଆଗକୁ ଚାଲିଯିବା ଉଚିତ ନୁହେଁ । ଏହା ସୌଜନ୍ୟ ନୁହଁ ।

ଚାଣକ୍ୟ ପଣ୍ଡିତେ ମଣିଷକୁ ଭଦ୍ରତା, ଭବ୍ୟତା ଓ ସୌଜନ୍ୟ ଶିଖାଇବା ପାଇଁ ଅନେକ ଶ୍ଳୋକ ଲେଖିଛନ୍ତି । ଆମର ଏଇ ଶ୍ଳୋକଟିର ଗଭୀର ଅର୍ଥ ହେଲା, କେହି ଯେପରି ଉଦ୍ଧତ ଭାବେ ବ୍ରାହ୍ମଣ ଅର୍ଥାତ୍ ଜ୍ଞାନୀ, ଗୁଣୀ, ନୀତିବାନ୍ ଲୋକଙ୍କୁ ଅବଜ୍ଞା କର ନାହିଁ । ପ୍ରଜ୍ୱଳିତ ଅଗ୍ନି ପ୍ରତି ସାବଧାନ ହୁଅ ଓ ତା' ଭିତରେ ଅବସ୍ଥାନ କରୁଥିବା ଅଗ୍ନିଦେବତାଙ୍କୁ ବାହାରେ ଓ ଭିତରେ ନମସ୍କାର କର । ଜ୍ଞାନୀ ଓ ସାଧୁସନ୍ଥ ଦେଖିଲେ ବିନୀତ ଭାବେ ବ୍ୟବହାର ପ୍ରଦର୍ଶନ କର । ହଳ ଓ ବଳଦ ଭିତରେ ରାସ୍ତା ଅତିକ୍ରମ କଲାବେଳେ ସାବଧାନ ହୁଅ । କାରଣ ବଳଦଦ୍ୱୟ ତୁମକୁ ଆକ୍ରମଣ କରିପାରନ୍ତି । ଅନ୍ୟ ପକ୍ଷରେ ହଳ ଓ ବଳଦମାନେ କୃଷିର ସହାୟକ । ସେମାନଙ୍କୁ ଅବଜ୍ଞା କର ନାହିଁ । ତା' ଛଡ଼ା ରାସ୍ତା ଅତିକ୍ରମ କଲାବଳେ ବା ରାସ୍ତାରେ ଚାଲିଲା ବେଳେ ଏତେ ବ୍ୟଗ୍ର ହୁଅ ନାହିଁ-ଚଞ୍ଚଳ ହୁଅ ନାହିଁ । ଅନ୍ଧ ଭଳି ବାଟ ଚାଲ ନାହିଁ । ଚାରିଆଡ଼କୁ ଦେଖିଶୁଣି ଚାଲ । ରାସ୍ତା ଉପରେ ସମସ୍ତଙ୍କର ସମାନ ଅଧିକାର । ତା' ଛଡ଼ା ରାସ୍ତାରେ ଚୋର ଖଣ୍ଡ ଚାଲୁଛନ୍ତି- ସାଧୁସନ୍ଥ, ଜ୍ଞାନୀ ଓ ମାନ୍ୟଗଣ୍ୟ ଲୋକ ଚାଲୁଛନ୍ତି । ଗୋରୁଗାଈଙ୍କଠାରୁ ଆରମ୍ଭ କରି ବିଭିନ୍ନ ପଶୁପକ୍ଷୀ ମଧ ଚାଲୁଛନ୍ତି । ସମସ୍ତଙ୍କ ପ୍ରତି ସଚେତନ ହୋଇ ଓ ଭଦ୍ର ବ୍ୟବହାର କରି ଆମେ ରାସ୍ତା ଅତିକ୍ରମ କରିବା ଉଚିତ ନୁହେଁ କି ? ମଣିଷର ଏହି ଭଦ୍ର, ଭବ୍ୟ, ଶାଳୀନ ଓ ସୌଜନ୍ୟପୂର୍ଣ୍ଣ ବ୍ୟବହାର ସମ୍ପର୍କରେ ଚାଣକ୍ୟ ପଣ୍ଡିତେ ଆଉ ଗୋଟିଏ ଶ୍ଳୋକ କହୁଛନ୍ତି-

**ପାଦାଭ୍ୟାଂ ନ ସ୍ପୃଶେଦଗ୍ନିଂ ଗୁରୁଂ ବ୍ରାହ୍ମଣମେବ ଚ ।**
**ନୈବ ଗାଂ ନ କୁମାରୀଂ ଚ ନ ବୃଦ୍ଧଂ ନ ଶିଶୁଂ ତଥା ॥ (୭/୬)**

ଅର୍ଥାତ୍ ଭଦ୍ରଲୋକ କେବେବି ଜାଣତରେ ବା ଅଜାଣରେ ଅଗ୍ନି, ଗୁରୁ, ବ୍ରାହ୍ମଣ, ଗାଈ, କୁମାରୀ, ବୃଦ୍ଧ ଏବଂ ବାଳକକୁ ପାଦରେ ସ୍ପର୍ଶ କରିବା ଉଚିତ ନୁହେଁ ।

ଅଗ୍ନିକୁ ଦେବତା ଜ୍ଞାନରେ ଏବଂ ପୋଡ଼ିଯିବା ଭୟରେ, ଗୁରୁଙ୍କପ୍ରତି ଭକ୍ତି ଓ ସମ୍ମାନ ହେତୁ, ବ୍ରାହ୍ମଣ ବା ସାଧୁସନ୍ଥଙ୍କ ପ୍ରତି ସମ୍ମାନ ହେତୁ, ଗାଈକୁ ମଧ ଦେବିଜ୍ଞାନରେ ଓ କୃତଜ୍ଞତା ପ୍ରଦର୍ଶନ କରି ଏବଂ କୁମାରୀ କନ୍ୟାକୁ ସୁକୁମାର ଆଚରଣ ଦେଖାଇ, ବୃଦ୍ଧବ୍ୟକ୍ତିଙ୍କୁ ସମ୍ମାନ ଦେଖାଇ ଓ ଶିଶୁମାନଙ୍କ ପ୍ରତି ସୁକୁମାର ଭାବ ହେତୁ ସେମାନଙ୍କୁ କଦାପି ପାଦରେ ସ୍ପର୍ଶକରିବା ଅନୁଚିତ ।

ପାଠକେ ! ମହାମତି ଚାଣକ୍ୟଙ୍କର ଭଦ୍ରଭାବ, ମହତଭାବ, ସୌଜନ୍ୟଭାବ, ଭକ୍ତିଭାବ ଓ ସୁକୁମାର ଭାବର ପରିଚୟ ପାଇଲେ ତ ! ସତ କଥା, ଜଣେ ସଜ୍ଜନ ହେବାକୁ ହେଲେ, ତା'ର ପ୍ରଥମେ ଆଚରଣଶୁଦ୍ଧି ଏକାନ୍ତ ଆବଶ୍ୟକ। ଏଇ ଶୁଦ୍ଧ ଓ ଭଦ୍ର ଆଚରଣ ହିଁ ମନୁଷ୍ୟ ପକ୍ଷରେ ଅତ୍ୟନ୍ତ ଆବଶ୍ୟକ ଗୁଣ।



## ୧୦୦. ମଣିଷର ବ୍ୟକ୍ତିତ୍ୱ ସମ୍ବନ୍ଧେ ଚାଣକ୍ୟ

ମହାମତି ଓ ମହାପ୍ରାଜ୍ଞ ଚାଣକ୍ୟ କେବଳ ଜଣେ ଶାସ୍ତ୍ରଜ୍ଞ ନ ଥିଲେ। ଜଣେ ସାଧାରଣ ପ୍ରଫେସର ବା ଜ୍ଞାନୀବ୍ୟକ୍ତି ନ ଥିଲେ। ତାଙ୍କର ମଣିଷର ଜୀବନଚର୍ଯ୍ୟା ସମ୍ବନ୍ଧେ ଓ ମଣିଷର ବ୍ୟକ୍ତିତ୍ୱ ସମ୍ବନ୍ଧେ ଖୁବ୍ ଅନୁଶୀଳନ ଥିଲା। ବାହ୍ୟପ୍ରକୃତି ସହିତ ମନୁଷ୍ୟ ପ୍ରକୃତିର ବହୁ ମେଳ ଓ ଅମେଳ ସେ ଲକ୍ଷ୍ୟ କରିଥିଲେ। ବାହ୍ୟ ପ୍ରକୃତିରେ ଘଟୁଥିବା ଓ ଦୃଶ୍ୟମାନ ହେଉଥିବା ବହୁ ବିଷୟକୁ ଉଲ୍ଲେଖ କରି ସେ ମନୁଷ୍ୟକୁ ତା'ର ନିଜ ବ୍ୟକ୍ତିତ୍ୱ ଗଠନ କରିବା ଦିଗରେ ମାର୍ଗ ପ୍ରଦର୍ଶନ କରିଛନ୍ତି। ବର୍ତ୍ତମାନ ତାଙ୍କର ଶ୍ଳୋକଟିଏ ଦେଖନ୍ତୁ-

**ନାଽତ୍ୟନ୍ତଂ ସରଳୈର୍ଭାବ୍ୟଂ ଗତ୍ୱା ପଶ୍ୟ ବନସ୍ଥଳୀମ୍।**
**ଛିଦ୍ୟନ୍ତେ ସରଳାସ୍ତତ୍ର କୁବ୍ଜାସ୍ତିଷ୍ଠନ୍ତି ପାଦପାଃ ।। (୭/୧୨)**

ଏହି ଶ୍ଳୋକର ଆକ୍ଷରିକ ଅର୍ଥଟି ହେଲା, ଯଦି ସରଳତା ମଣିଷ ପାଇଁ ଏକ ସ୍ୱର୍ଗୀୟ ଗୁଣ, ତଥାପି ସମାଜରେ ବା ସଂସାରରେ ଚଳିବାକୁ ହେଲେ ଅତି ସରଳ ହେବା ଉଚିତ ନୁହଁ। ଅରଣ୍ୟକୁ ଯାଇ ଦେଖ, ସରଳ ଓ ସିଧା ବଢ଼ି ଉଠିଥିବା ବୃକ୍ଷମାନଙ୍କୁ କାଠବେପାରୀମାନେ ଖୁବ୍ ସହଜରେ କାଟି ନେଇଛନ୍ତି। ମାତ୍ର ନାନା ଆଡ଼କୁ ବହୁ ଡାଳପତ୍ର ମେଲାଇ ବକ୍ରଭାବେ ବଢ଼ି ଉଠିଥିବା ବୃକ୍ଷମାନଙ୍କୁ କାଠ ମାଫିଆମାନେ

ବା କାଠୁରିଆମାନେ ସହଜରେ କାଟିପାରି ନାହାନ୍ତି। ତେଣୁ ଚାଣକ୍ୟ କହନ୍ତି, ସଂସାରୀ ମଣିଷଟିଏ ଅତି ସରଳ ହେବା ଉଚିତ ନୁହଁ। କାରଣ ଏ ସମାଜ ଓ ସଂସାର ନାନା ଆପଦବିପଦରେ ପରିପୂର୍ଣ୍ଣ। ପ୍ରତ୍ୟେକ ପରିବାର ଓ ସମାଜରେ ବହୁ ଜଟିଳ ଚରିତ୍ରର ନରନାରୀ ଅଛନ୍ତି। ଜୀବନର ପଥ ମଧ୍ୟ ଏତେ ସରଳ ନୁହଁ। ଲକ୍ଷ୍ୟସ୍ଥଳରେ ପହଞ୍ଚିବାକୁ ହେଲେ ବହୁ ବକ୍ରପଥରେ ଯିବାକୁ ହୁଏ। ତେଣୁ ସରଳତା ଏକ ଦିବ୍ୟଗୁଣ ହେଲେ ବି ଅତି ସରଳ ହେଲେ ଜଣେ ଏ ସଂସାରରେ ଚଳିପାରିବ ନାହିଁ। ତାକୁ କିଛିମାତ୍ର ବକ୍ର ପଥରେ ଯିବାକୁ ହେବ। କିଛିମାତ୍ର ଜଟିଳ ହେବାକୁ ହେବ। ନ ହେଲେ ଏ ସଂସାରରେ ତୁମକୁ ସମସ୍ତେ ଚିତା କାଟିବେ ଓ ତୁମକୁ ନଣ୍ଡା କରିଦେବେ। ତେଣୁ ଏତେ ସରଳ ହୁଅନା।

ଏତେ ସରଳଭାବେ ସମସ୍ତଙ୍କୁ ବିଶ୍ୱାସ କରନା। ତୁମର ଦୃଷ୍ଟି ମଧ୍ୟ ଏତେ ସରଳ ନ ହେଉ। ସଂସାରରେ ଚଳିବାକୁ ହେଲେ ମଧ୍ୟେ ମଧ୍ୟେ ବକ୍ରଦୃଷ୍ଟି କରିବାକୁ ପଡ଼େ। ପକ୍ଷୀମାନଙ୍କ ଭିତରେ କାଉମାନଙ୍କୁ ଦେଖିଛ ତ? ଦେଖିଛ ତ ଚତୁର ଓ ଧୂର୍ତ୍ତ କାକପକ୍ଷୀ କିପରି ମଧ୍ୟେ ମଧ୍ୟେ ବେକକୁ ତଳକୁ ନୁଆଁଇ ମୁହଁକୁ ବା ଥଣ୍ଟକୁ କିଞ୍ଚିତ୍ ବଙ୍କାଇ ବକ୍ର ଦୃଷ୍ଟିରେ ସବୁଆଡ଼କୁ ଚାହେଁ ଓ ନିରୀକ୍ଷଣ କରେ? କୁଆମାନେ ବଡ଼ ଚତୁର । ସେମାନେ ଚାରିଦିଗକୁ ଚାହିଁ ଓ ଊର୍ଦ୍ଧ୍ୱକୁ ଏବଂ ନିମ୍ନକୁ ଚାହିଁ, ସବୁ ଦୃଷ୍ଟିରୁ ସତର୍କ ରହି ଆହାର ଭକ୍ଷଣ କରନ୍ତି ବା ଆଉ କିଛି କରନ୍ତି । ବିଲୁଆ ଓ କୋକିଶିଆଳୀ ପ୍ରାଣୀମାନଙ୍କ ଭିତରେ ବଡ଼ ଚତୁର ଓ ଧୂର୍ତ୍ତ ବୋଲି କୁହାଯାଏ । "ବିଲୁଆ ବଡ ଚତୁର, ପଇଡ଼ ବଡ଼ ମଧୁର" । ଏ ବାକ୍ୟଟି ଭକ୍ତକବି ମଧୁସୂଦନ ରାଓଙ୍କ ବର୍ଣ୍ଣବୋଧରୁ ଆପଣମାନେ ନିଶ୍ଚୟ ପଢ଼ିଥିବେ।

ଏଇ ବକ୍ରଦୃଷ୍ଟି ବା ଚତୁର ଦୃଷ୍ଟି ଓ କିଞ୍ଚିତ୍ ଧୂର୍ତ୍ତ ଆଚରଣ ନ ଥିଲେ ମଣିଷଟିଏ କେବଳ ସରଳ ହୋଇ ବଞ୍ଚିପାରିବ ନାହିଁ । ତାକୁ ଏଇ ଜଟିଳ ସଂସାରରେ ଚତୁର ଓ ଧୂର୍ତ୍ତ ଲୋକମାନେ ଲହୁଣି ଲଗାଇ ଗିଳିଦେବେ । ତେଣୁ ଏତେ ବେଶି ସରଳ ହୁଅନା ବୋଲି ଚାଣକ୍ୟ ପଣ୍ଡିତେ ଆମକୁ ସତର୍କ କରିଦେଇଛନ୍ତି ।

ମାତ୍ର ପାଠକେ! ଆମେ ଏହି ଶ୍ଳୋକଟିକୁ ମଧ୍ୟ କିଞ୍ଚିତ୍ ସତର୍କତାର ସହିତ ଗ୍ରହଣ କରିବା। ଅସଲ କଥା ହେଲା, ସରଳ ହେବା ମାନେ ବୋକା ହେବା ନୁହଁ । ଆମ ଧର୍ମଶାସ୍ତ୍ର ଓ ନୀତିଶାସ୍ତ୍ରମାନଙ୍କରେ ସରଳ ହେବାକୁ କୁହାଯାଇଛି । ମାତ୍ର ବୋକା ହେବାକୁ କୁହାଯାଇ ନାହିଁ । ରାମକୃଷ୍ଣ ପରମହଂସ ଜଣେ ଅତି ମାତ୍ରାରେ ସରଳ ଭକ୍ତଙ୍କୁ ଗାଳିଦେଇ କହିଥିଲେ - 'ମୂର୍ଖ! ସରଳ ହବି ବଲେ କି ବୋକା ହବି?'

ଅର୍ଥାତ୍, ଆରେ ମୂର୍ଖ ! ମୁଁ ସରଳ ହେବାକୁ କହିଥିଲି । ମାତ୍ର ବୋକା ହେବାକୁ କହି ନ ଥିଲି । ମୁଁ ତୁମକୁ ବିଶ୍ୱାସ କରିବାକୁ କହିଛି । ମାତ୍ର ମୁଁ କ'ଣ ତୁମକୁ ସତର୍କ, ସାବଧାନ ହେବାକୁ ମନା କରିଛି ?

ଅସଲ କଥା ହେଲା, ସରଳତାର ଅର୍ଥ ବୋକା ହେବା ନୁହଁ । ଇଂରାଜୀରେ ଗୋଟିଏ ପ୍ରବଚନ ଅଛି, "Be simple. But not a simpleton." ଅର୍ଥାତ୍, ସରଳ ଓ ସହଜ ହୁଅ । ମାତ୍ର ନିର୍ବୁଦ୍ଧିଆ ହୁଅନା, ବୋକା ହୁଅନା, ବିଚାରଶୂନ୍ୟ ହୁଅନା, ଅସତର୍କ ହୁଅନା ।

ସତ କଥା, ଆମେ ମହାପୁରୁଷମାନଙ୍କ ଚରିତ ଦେଖିବା । ରାମକୃଷ୍ଣ, ବିବେକାନନ୍ଦ, ମହାତ୍ମା ଗାନ୍ଧୀ, ଶ୍ରୀଅରବିନ୍ଦ ପ୍ରମୁଖ ମହାତ୍ମାମାନେ ଖୁବ୍ ସରଳପ୍ରାଣ ଥିଲେ । ସେମାନଙ୍କ ମନରେ କୁଟିଳତା ନ ଥିଲା । ଜଟିଳତା ନ ଥିଲା । ମାତ୍ର ସେମାନେ ବୋକା ନ ଥିଲେ, ବରଂ ଖୁବ୍ ଜ୍ଞାନୀ ଥିଲେ । ଇଂଲଣ୍ଡର ତତ୍କାଳୀନ ପ୍ରଧାନମନ୍ତ୍ରୀ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ ଖୁବ୍ କୁଟିଳ କୂଟନୀତିଜ୍ଞ ଥିଲେ । ମାତ୍ର ସରଳତାର ଆଧାର ମହାତ୍ମା ଗାନ୍ଧୀଙ୍କୁ ସେ ତାଙ୍କ କୂଟବୁଦ୍ଧିରେ ହରାଇ ପାରିଥିଲେ କି ?



## ୧୦୧. ମଣିଷର ଚାରୋଟି ସ୍ୱର୍ଗୀୟ ଗୁଣ

ପାଠକେ ! ଗୁଣବାନ୍ ମଣିଷଙ୍କର ଅନେକ ସଦ୍‌ଗୁଣ ଥାଏ । ସେହିସବୁ ଗୁଣ ଯୋଗୁଁ ଗୁଣୀ ମଣିଷମାନେ ସମାଜରେ ବହୁ ଆଦର ଓ ମାନ୍ୟତା ପାଇଥାନ୍ତି । ସଦ୍‌ଗୁଣ ଦୁଇପ୍ରକାର । ପ୍ରଥମଟି ହେଲା ମଣିଷର କୌଣସି ପ୍ରତିଭା ଥିଲେ ସେ ଗୁଣୀ ହୋଇଥାଏ । ପ୍ରତିଭା ଶବ୍ଦର ଅର୍ତ ହେଲା, 'ନବ ନବ ଉନ୍ମେଷଶାଳିନୀ ପ୍ରଜ୍ଞା' । ତା' ଅର୍ଥ ଯେଉଁ ବ୍ୟକ୍ତିଠାରେ ଏପରି ଏକ ସୃଜନଶୀଳ ବୁଦ୍ଧି ଥାଏ ଏବଂ ସେହି ବୁଦ୍ଧି ଓ ପ୍ରଜ୍ଞା ବଳରେ ସେ ନୂଆ ନୂଆ ବିଷୟ ସୃଷ୍ଟି କରିପାରେ, ଉଦ୍‌ଭାବନ କରିପାରେ ଓ ଆବିଷ୍କାର ମଧ କରିପାରେ । ନୂତନ ଭାବ ଓ ନୂତନ ଶୈଳୀରେ ସାହିତ୍ୟ ସୃଷ୍ଟିକାରୀ ମଣିଷମାନେ ପ୍ରତିଭାବାନ୍ କବି । ନୂତନ ସ୍ୱର ଓ ଲୟ ସୃଷ୍ଟିକରି ମଧୁରକଣ୍ଠରେ ଗୀତଗାଇ ପାରୁଥିବା ଲୋକମାନେ ହେଲେ ପ୍ରତିଭାବାନ୍ ସଙ୍ଗୀତଜ୍ଞ । ସେହିପରି ପ୍ରକୃତିକୁ ବିଶ୍ଳେଷଣ କରି ତା' ମଧରୁ ନୂତନ ତଥ୍ୟ ଓ ତତ୍ତ୍ୱ ଉଦ୍‌ଭାବନ କରୁଥିବା ମଣିଷଙ୍କୁ ପ୍ରତିଭାବାନ୍

ବୈଜ୍ଞାନିକ କୁହାଯାଏ । ସେହିପରି ଯେଉଁମାନେ ନୂଆ କିଛି ଆବିଷ୍କାର କରନ୍ତି, ସେମାନଙ୍କୁ ମଧ୍ୟ ପ୍ରତିଭାବାନ୍ କୁହାଯାଏ । ନୂତନ ଦାର୍ଶନିକ ଚିନ୍ତା ପ୍ରକାଶ କରୁଥିବା ପ୍ରାଜ୍ଞ ବ୍ୟକ୍ତିମାନେ ମଧ୍ୟ ପ୍ରତିଭାବାନ୍ ଅଟନ୍ତି ।

ତେବେ ଏହି ପ୍ରତିଭା ଏକ ସଦ୍‌ଗୁଣ ହେଲେ ବି ଏହା ଏକ ଜନ୍ମଗତ ବା ଈଶ୍ୱରଦତ୍ତ ଗୁଣ । ଏଇ ପ୍ରତିଭାଶାଳୀ ବ୍ୟକ୍ତିମାନେ ସେମାନଙ୍କର ଏଇ ଈଶ୍ୱରଦତ୍ତ ପ୍ରତିଭାର ପ୍ରକାଶ ଓ ବିକାଶ ଲାଗି ଜୀବନରେ ବହୁ ସାଧସାଧନା କରିଥାନ୍ତି ଏବଂ ସେମାନଙ୍କ ଅବଦାନରେ ସମାଜ ବହୁଭାବେ ଉପକୃତ ହୋଇଥାଏ । ମାତ୍ର ପାଠକେ ! ମହାମତି ଚାଣକ୍ୟ ଆଉ କେତୋଟିର ସ୍ୱର୍ଗୀୟ ଗୁଣର କଥା କହୁଛନ୍ତି, ସେ ଗୁଣଗୁଡ଼ିକ ପ୍ରତିଭା ନୁହଁ । ମାତ୍ର ସେହି ସଦ୍‌ଗୁଣଗୁଡ଼ିକ ମଣିଷ ଜୀବନରେ ଆଚରିତ ହେବାର ଦେଖିଲେ ଆମେ ବୁଝିପାରିବା ଯେ, ଏହି ସ୍ୱର୍ଗୀୟଗୁଣଧାରୀ ମଣିଷଟି ସିଧା ସ୍ୱର୍ଗରୁ ପୃଥିବୀ ଉପରକୁ ଖସିପଡ଼ିଛି । ଏବେ ଶ୍ଳୋକଟି ଶୁଣନ୍ତୁ ।

**ସ୍ୱର୍ଗସ୍ଥିତାନାମିହ ଜୀବଲୋକେ**
**ଚତ୍ୱାରି ଚିହ୍ନାନି ବସନ୍ତି ଦେହେ।**
**ଦାନପ୍ରସଙ୍ଗୋ ମଧୁରା ଚ ବାଣୀ**
**ଦେବାଽର୍ଚ୍ଚନଂ ବ୍ରାହ୍ମଣତର୍ପଣଂ ଚ ।। (୭/୧୬)**

ଶ୍ଳୋକଟିର ଅର୍ଥ ହେଲା, ଏଇ ଆମର ଇହଲୋକରେ ଯେଉଁ ଲୋକର ଜୀବନରେ ଚାରୋଟି ସ୍ୱର୍ଗୀୟ ଗୁଣ ବିକଶିତ ହୋଇଥିବ ବା ଆଚରିତ ହୋଇଥିବ, ସେଥିରୁ ଜଣାପଡ଼ିବ ଯେ, ସେ ଲୋକଟି ସିଧା ସ୍ୱର୍ଗରୁ ଖସି ଆମର ମର୍ତ୍ତ୍ୟଲୋକରେ ଜନ୍ମ ହୋଇଛି। ସେହି ଗୁଣଗୁଡ଼ିକ ହେଲେ ଦାନଶୀଳତା, ମଧୁର ବଚନ, ଦେବାର୍ଚ୍ଚନା ଏବଂ ବ୍ରାହ୍ମଣତର୍ପଣ।

ପାଠକେ! ଏଇ ଚାରୋଟି ମାନବୀୟ୍ ସଦ୍‌ଗୁଣକୁ ଆମେ ନିଶ୍ଚୟ ସ୍ୱର୍ଗୀୟ ଗୁଣ କହିବା। ଯେଉଁ ଲୋକ ଦାନଶୀଳ ସେ ମହତ୍ କାର୍ଯ୍ୟରେ ଦାନ କରିଥାଏ, ଦରିଦ୍ର ଲୋକଙ୍କୁ ମଧ୍ୟ ଦାନ କରିଥାଏ। ଦେବଦେବୀଙ୍କ ପୂଜାର୍ଚ୍ଚନା ପାଇଁ ଦାନ କରିଥାଏ, ରୋଗୀମାନଙ୍କୁ ଦାନ କରିଥାଏ। ଏପରି ବ୍ୟକ୍ତିର ମନ ଥାଏ ଖୁବ୍ ଉଦାର ଓ ସମ୍ବେଦନଶୀଳ। ପ୍ରକୃତ ଦାନୀବ୍ୟକ୍ତି ଦରକାର ପଡ଼ିଲେ ତା'ର ସର୍ବସ୍ୱ ଦାନ କରିଦେଇଥାଏ। କିନ୍ତୁ କାହାଠାରୁ ସେଥିପାଇଁ ପ୍ରତିଦାନ ଆଶା କରେ ନାହିଁ। ଚାଣକ୍ୟଙ୍କ ମତରେ ଏଭଳି ସ୍ୱର୍ଗୀୟ ଗୁଣଧାରୀ ବ୍ୟକ୍ତି ନିଶ୍ଚୟ ସିଧା ସ୍ୱର୍ଗରୁ ମର୍ତ୍ତ୍ୟରେ ଭୂମିଷ୍ଠ

ହୋଇଛି । ସେହିପରି ଯେଉଁ ବ୍ୟକ୍ତିର ବଚନ ବା କଥାବାର୍ତ୍ତା ଅତି ମଧୁର, ଯେ କାହାକୁ କଟୁବାକ୍ୟ, ତିକ୍ତବାକ୍ୟ କହେ ନାହିଁ, ତା'ର ଯିଏ ଯେତେ ଅପକାର କଲେ ବି ଯେ ତାହା ସହିତ ମଧ୍ୟ ମଧୁର ଭାଷାରେ କଥା କହେ, ତାକୁ ଯିଏ ଯେତେ କଷ୍ଟ ଦେଲେ ବି, ଅପମାନ କଲାବେଳେ ବି ସେ ସେଥିରେ ବ୍ୟସ୍ତ ବିବ୍ରତ ହୋଇ କାହାକୁ କଟୁବାକ୍ୟ କରେ ନାହିଁ, ବରଂ ମଧୁର ସ୍ୱରରେ ଭଲ କଥା କହୁଥାଏ, ତେବେ ବୁଝିବାକୁ ହେବ ଯେ ସେ ଲୋକଟି ନିଶ୍ଚୟ ସ୍ୱର୍ଗରୁ ଆସିଛି । ପ୍ରକୃତରେ ଯେଉଁ ବ୍ୟକ୍ତି ମଧୁର ବାକ୍ୟ କହେ, ଯେତେ ରାଗିଥିଲେ ବି ଅନ୍ୟକୁ ଦଗ୍ଧ କଲା ଭଳି ବାକ୍ୟାଗ୍ନି ବର୍ଷଣ କରେ ନାହିଁ, ଶତ୍ରୁକୁ ସୁଦ୍ଧା ବାକ୍ୟବାଣରେ ବିଦ୍ଧ କରେ ନାହିଁ, ତା'ର ସେହି ସୁନ୍ଦର ମଧୁର ବାକ୍ୟ ଅମୃତ ଭଳି । ଭାଗବତରେ ଜଗନ୍ନାଥ ଦାସ କହନ୍ତି,

"ମଧୁର ବିନୟ ବଚନ । କହି ତୋଷିବ ପ୍ରାଣୀ ମନ ॥"

ପ୍ରକୃତରେ ଯେଉଁ ବ୍ୟକ୍ତି କାହାଦ୍ୱାରା ଯେତେ କ୍ଷତିଗ୍ରସ୍ତ ହେଲେ ବି ତା' ପାଟିରୁ ଅପରର ମର୍ମଭେଦୀ ବାକ୍ୟବାଣ ନିର୍ଗତ ହୁଏ ନାହିଁ, ସେ ନିଶ୍ଚୟ ତା'ର ପୁଣ୍ୟକର୍ମ ଯୋଗୁଁ ସିଧା ସ୍ୱର୍ଗରୁ ଏ ମର୍ତ୍ତ୍ୟଭୂମିରେ ଜନ୍ମ ହୋଇଛି ।

ଆଉ ଦୁଇଟି ଦିବ୍ୟଗୁଣ ହେଲା, ଦେବାର୍ଚ୍ଚନା ଓ ବ୍ରାହ୍ମଣର ସେବା । ଦେବାର୍ଚ୍ଚନା ଅର୍ଥ ମଣିଷର ଭକ୍ତି, ତଦ୍‌ଗତ ଭାବ ପ୍ରକାଶ । ଯେଉଁ ବ୍ୟକ୍ତି ଈଶ୍ୱରପରାୟଣ ଓ ଧାର୍ମିକ ଭାବରେ ସବୁ ଦେବଦେବୀଙ୍କୁ ମାନ୍ୟତା ଅର୍ପଣ କରେ, ପୂଜା ଆରାଧନା କରେ, ସେ ବ୍ୟକ୍ତି ନିଶ୍ଚୟ ସ୍ୱର୍ଗରୁ ଏଠାରେ ଜନ୍ମ ହୋଇଛି ବୋଲି ବୁଝିବାକୁ ହେବ । ଚାଣକ୍ୟ ପଣ୍ଡିତେ ଚତୁର୍ଥ ଦିବ୍ୟ ଗୁଣଟି 'ବ୍ରାହ୍ମଣ ସେବା' ବୋଲି କହିଛନ୍ତି । "ବ୍ରାହ୍ମଣ" ଶବ୍ଦକୁ ଆମେ ଏଠାରେ କେବଳ ଜାତି ଦୃଷ୍ଟିରୁ ନ ନେଇ ଉଦାର ଭାବରେ ଆମ ସମାଜର ଜ୍ଞାନୀ, ଗୁଣୀ, ଧର୍ମବନ୍ତ, ସାଧୁ ଓ ସନ୍ଥ ସ୍ୱଭାବ ବ୍ୟକ୍ତିଙ୍କୁ ବୁଝିବା । ଯେଉଁ ବ୍ୟକ୍ତି ଏପରି ସତ୍‌ସ୍ୱଭାବର ବ୍ୟକ୍ତିଙ୍କର ସେବା ଅର୍ଚ୍ଚନା କରେ, ସେ ମଧ୍ୟ ସ୍ୱର୍ଗରୁ ସିଧା ଏଠାରେ ଭୂମିଷ୍ଠ ହୋଇଛି ବୋଲି ବୁଝିବାକୁ ହେବ ।



# ୧୦୨. ମଣିଷର ଛଅ ନାରକୀୟ ଗୁଣ ?

ପାଠକେ ! ପୂର୍ବରୁ ଆପଣମାନଙ୍କୁ ମନୁଷ୍ୟର ଚାରୋଟି ସ୍ୱର୍ଗୀୟ ଗୁଣ ମହାମତି ଚାଣକ୍ୟଙ୍କ ନିର୍ଣ୍ଣୟାନୁସାରେ ଶୁଣାଇଲି । ଏଥର ମହାଜ୍ଞାନୀ ଚାଣକ୍ୟ ମନୁଷ୍ୟ ପ୍ରକୃତିର ଯେଉଁ ଛଅଟି ନାରକୀୟ ଦୁର୍ଗୁଣ ବିଷୟରେ କହିଛନ୍ତି, ସେହି ପ୍ରସଙ୍ଗରେ କିଛି ଆଲୋଚନା କରୁଛି,

**ଚାଣକ୍ୟଙ୍କ** ଶ୍ଳୋକଟି ହେଲା-

ଅତ୍ୟନ୍ତକୋପଃ କଟୁକା ଚ ବାଣୀ
ଦରିଦ୍ରତା ଚ ସ୍ୱଜନେଷୁ ବୈରମ୍ ।
ନୀଚପ୍ରସଙ୍ଗଃ କୁଳହୀନସେବା
ଚିହ୍ନାନି ଦେହେ ନରକସ୍ଥିତାନାମ୍ ॥ (୭/୧୭)

ଏହି ଶ୍ଳୋକର ଅର୍ଥ ହେଲା, ଅତ୍ୟନ୍ତ କ୍ରୋଧ, ସମସ୍ତଙ୍କ ପ୍ରତି କଟୁ ବା ନିଷ୍ଠୁର ବାକ୍ୟପ୍ରୟୋଗ, ନିଜ ଦୋଷରୁ ଦାରିଦ୍ର୍ୟ, ନିଜର ଲୋକମାନଙ୍କ ପ୍ରତି ଶତ୍ରୁ ଭଳି ବ୍ୟବହାର, ନୀଚସ୍ତରର ବ୍ୟକ୍ତିମାନଙ୍କ ସହ ସମାଗମ, ନୀଚ ଓ ନିମ୍ନସ୍ତରର ଲୋକମାନଙ୍କ ସହ ଆଦାନପ୍ରଦାନ ବା ସେମାନଙ୍କର ସେବାକରିବା ପାଇଁ ଉନ୍ମୁଖତା - ଏଇ ଛଅଟି ଗୁଣରୁ ସବୁ ବା କେତୋଟି ଗୁଣ ଯାହାଠାରେ ଥାଏ ତାକୁ ଆମେ ନାରକୀୟ ମଣିଷ ବୋଲି କହିବା ଓ ସେ ନିଶ୍ଚୟ ସିଧା ନରକରୁ ଏହି ମର୍ତ୍ତ୍ୟଭୂମିକୁ ଖସିପଡ଼ିଛି ବୋଲି ବୁଝିବା ।

ପାଠକେ ! ବର୍ତ୍ତମାନ ଆମେ ଚାଣକ୍ୟଙ୍କର ଏହି ସିଦ୍ଧାନ୍ତଗୁଡ଼ିକୁ ବିଶ୍ଳେଷଣ କରି ଦେଖିବା । ମନୁଷ୍ୟର ପ୍ରକୃତି ଭିତରେ ଏହି ଛଅଟି ଦୁର୍ଗୁଣ ହେଲା – କାମ, କ୍ରୋଧ ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ । ଏଇ ଛଅଟି ଦୁର୍ଗୁଣକୁ ଆମ ଶାସ୍ତ୍ରରେ ଷଡ଼ିରପୁ ବା ଛଅଶତ୍ରୁ ବୋଲି କୁହାଯାଇଛି । ସେଗୁଡ଼ିକ ମଧ୍ୟରେ ଅତ୍ୟଧିକ କ୍ରୋଧ ବା କୋପ ସବୁଠାରୁ ମାରାତ୍ମକ ନାରକୀୟ ଗୁଣ ? କ୍ରୋଧର ମୂଳ କାରଣଗୁଡ଼ିକ କ'ଣ ? ଅହଂକାରୀ ଓ ସ୍ୱାର୍ଥପର ଲୋକର କାମନା ବା ଇଚ୍ଛା ପୂରଣଦିଗରେ କିଛି ବାଧା ଆସିଲେ ସେ ଅତ୍ୟନ୍ତ କ୍ରୁଦ୍ଧ ହୋଇଥାଏ । ଲୋଭୀ ଲୋକ ଲୋଭନୀୟ ପଦାର୍ଥ ନ ପାଇଲେ ଅତ୍ୟନ୍ତ କ୍ରୁଦ୍ଧ ହୋଇଥାଏ । ଯେଉଁ ଲୋକ ମୋହରେ ଆକ୍ରାନ୍ତ ହୋଇଥାଏ, ଧନ ମୋହ, କ୍ଷମତା ମୋହ, ସନ୍ତାନ ମୋହ, ସମ୍ମାନ ମୋହ ଇତ୍ୟାଦିରେ ଅନ୍ଧ

ହୋଇଥାଏ, ସେ ମଧ ତା'ର ମୋହ ଉପରେ ବାଧା ଆସିଲେ ଅତ୍ୟନ୍ତ କୁପିତ ହୋଇଥାଏ । ମଦମତ୍ତ ଲୋକ ମଧ ନିଜର ଧନ, କ୍ଷମତା, ଉପଭୋଗ୍ୟ ସାମଗ୍ରୀ, ଜନବଳ ଇତ୍ୟାଦିରେ ଏତେ ପ୍ରମତ୍ତ ଥାଏ ଯେ, ସେ ମଧ ସେଥିରେ କିଛି ବାଧା ଆସିଲେ ତା'ର କ୍ରୋଧ ପ୍ରଜ୍ୱଳିତ ହୋଇ ସଂସାରରେ ଆପଦ ସୃଷ୍ଟି କରିଥାଏ ।

ଯେଉଁ କାରଣରୁ ହେଉ ପଛେ ଅତି କ୍ରୋଧ ଏକ ମାରାତ୍ମକ ନାରକୀୟ ଗୁଣ । ଭଗବତ୍‌ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ କହିଛନ୍ତି, କ୍ରୋଧରୁ ବୁଦ୍ଧିନାଶ ଓ ବୁଦ୍ଧିନାଶରୁ ମୃତ୍ୟୁର ସମ୍ମୁଖୀନ ହେବାକୁ ପଡ଼ିଥାଏ । ଅତ୍ୟଧିକ କ୍ରୁଦ୍ଧ ବ୍ୟକ୍ତିର ବୁଦ୍ଧିନାଶ ହେଲେ ସେ ପର ଆପଣା, ଠିକ୍ ଭୁଲ ଜାଣିପାରେନା । ତା' କୋପାନଳରେ ସବୁକିଛି ଜଳି ପାଉଁଶ ହୋଇଯାଏ, ସେ ଜାଣିପାରେନା ।

ସେହିଭଳି କଟୁକ୍ତି ମଧ ଏକ ଖରାପ ଗୁଣ । ଯେଉଁ ବ୍ୟକ୍ତି ଅନ୍ୟ ସହିତ କୋମଳ, ଭଦ୍ର ଓ ମଧୁର ବାକ୍ୟାଳାପ କରିପାରେନା, ସେ ଗୋଟାଏ କୁତ୍ସିତ ଲୋକ । ତା' ଭିତରେ ସର୍ବଦା ଘୃଣା, ଅହଂକାର ଓ କ୍ରୋଧାଗ୍ନି ଜଳୁଥାଏ । ତା' ମସ୍ତିଷ୍କ ବା ହୃଦୟରେ କୌଣସି ଉଚ୍ଚ ଚିନ୍ତା, ଅଭୀପ୍ସା ବା ଶୁଭକାମନା ନ ଥାଏ । ତା' ହୃଦୟରେ ସର୍ବଦା ଅନ୍ୟପ୍ରତି ଈର୍ଷା, ହିଂସା ଓ ଅସହିଷ୍ଣୁତାର ଅଗ୍ନି ଜଳୁଥାଏ । ତେଣୁ ତା' ପାଟିରୁ ଭଲ କଥାରେ ବି କୋମଳ, ଭଦ୍ର ମଧୁର ବାକ୍ୟ ନିର୍ଗତ ହୁଏ ନାହିଁ । ସେ ସବୁବେଳେ ଅନ୍ୟକୁ ଭର୍ତ୍ସନା କରୁଥାଏ, ନତୁବା ବିଦ୍ରୂପ କରୁଥାଏ; କିମ୍ବା ବେଖାତିର କରୁଥାଏ । ଏହିଭଳି କଟୁବାକ୍ୟ କହୁଥିବା ମଣିଷ ନିଶ୍ଚୟ ସିଧା ନରକରୁ ଆମର ଏ ମର୍ତ୍ତ୍ୟଭୂମିରେ ଗଳିପଡ଼ିଛି – ଏହାହିଁ ଚାଣକ୍ୟଙ୍କ ନିର୍ଣ୍ଣୟ ।

ଆଉ ଗୋଟିଏ ନାରକୀୟ ଗୁଣ ହେଲା 'ଦରିଦ୍ରତା' । ଏଠାରେ ଦରିଦ୍ରତାକୁ ବ୍ୟାପକ ଦୃଷ୍ଟିରୁ ଦେଖିବାକୁ ହେବ । ଦରିଦ୍ର ହେବାକୁ ବା କିଏ ଚାହେଁ ? ଅବଶ୍ୟ ଯେଉଁମାନେ ଗଭୀର ଜ୍ଞାନ, ବିଜ୍ଞାନରେ ଗବେଷଣାରତ, ସେମାନେ ପ୍ରାୟ ଧନବାନ୍ ହୋଇ ନ ଥାନ୍ତି । ସେହିପରି ଯେଉଁମାନେ କୌଣସି ପ୍ରକାର ତପଃସାଧନ କରୁଛନ୍ତି, ସେମାନେ ଧନ ଉପାର୍ଜନ ଲାଗି ମନଦେଇ ନ ଥାନ୍ତି । ପୀର, ଫକୀର, ସାଧୁ, ସନ୍ଥ, ସେଣ୍ଟ୍, ବୈଷ୍ଣବ, ସନ୍ନ୍ୟାସୀମାନେ ଧନକୁ ସେମାନଙ୍କ ସାଧନାର ପ୍ରତିବନ୍ଧକ ଭାବି ସେ ଦିଗରେ ମନ ନ ଦେଇ ଭିକ୍ଷାରେ ବା ମାଧୁକରୀରେ ଜୀବନ ନିର୍ବାହ କରନ୍ତି । ତେଣୁ ଏ ପ୍ରକାର ଦାରିଦ୍ର୍ୟ ସମ୍ବନ୍ଧେ ଚାଣକ୍ୟ କହୁ ନାହାନ୍ତି । କାରଣ ଏହି ମହାତ୍ମାମାନେ ଏକ ଉଚ୍ଚତର ଲକ୍ଷ୍ୟସାଧନ ପାଇଁ ଦାରିଦ୍ର୍ୟକୁ ସ୍ୱତଃପ୍ରବୃତ୍ତ ହୋଇ ବରଣ କରିଥାନ୍ତି ।

କିନ୍ତୁ ଯେଉଁମାନେ କର୍ମକୁଣ୍ଠ, ଯେଉଁମାନେ ଆଳସ୍ୟପରାୟଣ, ଯେଉଁମାନେ ଉଦ୍ୟମହୀନ ଓ ଉଦ୍‌ଯୋଗ ବିମୁଖ, ଯେଉଁମାନେ ବିନା ଶ୍ରମରେ ଅନ୍ୟ ସାହାଯ୍ୟରେ ବଞ୍ଚିବାକୁ ଚାହାନ୍ତି ଓ ସେଥିଯୋଗୁଁ ଦରିଦ୍ର ହୋଇଛନ୍ତି, ମହାମତି ଚାଣକ୍ୟ ସେହିମାନଙ୍କୁ ଲକ୍ଷ୍ୟ କରି 'ଦାରିଦ୍ର୍ୟ'କୁ ଏକ ନାରକୀୟ ଗୁଣ ବୋଲି ଅଭିହିତ କରିଛନ୍ତି । ପ୍ରକୃତରେ ଏ ପୃଥିବୀ ମାତା ହେଲେ ଆମ 'ବସୁମାତା' । ସବୁ ଧନ ଅଛି ଏ ପୃଥିବୀରେ, ପୃଥିବୀକୁ ଠିକ୍‌ରୂପେ କର୍ଷଣ କଲେ, ଠିକ୍‌ରୂପେ ଦୋହନ କଲେ, ଠିକ୍‌ରୂପେ ପାର୍ଥିବ ବସ୍ତୁଗୁଡ଼ିକୁ ବ୍ୟବହାର୍ଯ୍ୟ ଦ୍ରବ୍ୟରୂପେ ତିଆରି କରିପାରିଲେ ଜଣେ କେବେ ଦରିଦ୍ର ହେବ ନାହିଁ । ଏ ସୃଷ୍ଟିର କର୍ତ୍ତା ଭଗବାନ୍ ଅର୍ଥାତ୍, ଐଶ୍ୱର୍ଯ୍ୟବାନ, କର୍ତ୍ତ୍ରୀ ହେଲେ ଭଗବତୀ, ଅର୍ଥାତ୍ ଐଶ୍ୱର୍ଯ୍ୟବତୀ । ଯେଉଁ ରାଜ୍ୟର ଶାସକ ପ୍ରଶାସକମାନେ ଲକ୍ଷ୍ମୀଛଡ଼ା ଓ ପ୍ରଜାମାନେ ଅଲକ୍ଷଣା ଓ ଅଲକ୍ଷଣୀ, ସେଠାରେ ଏହି ଦାରିଦ୍ର୍ୟରୂପୀ ନାରକୀୟ ଗୁଣର ପ୍ରଭାବ ରହିବ ହିଁ ରହିବ ।

ସେହିପରି ଯେଉଁମାନେ ନୀଚଲୋକଙ୍କ ସଙ୍ଗେ କାରବାର କରନ୍ତି ଓ ନୀଚ ବ୍ୟକ୍ତିଙ୍କର ସେବା କରନ୍ତି, ସେମାନେ ମଧ୍ୟ ନାରକୀୟ ଗୁଣ ନେଇ ଏ ମର୍ତ୍ତ୍ୟକୁ ସିଧା ଓହ୍ଲାଇ ଆସିଛନ୍ତି । ନୀଚତା କାହାକୁ କହନ୍ତି ? ନୀଚ ଲୋକ କିଏ ? ଏହା ମଧ୍ୟ ଆଲୋଚ୍ୟ ବିଷୟ । ଯେଉଁ ମଣିଷଟି ପ୍ରେମ, ଦୟା, କ୍ଷମା, ସେବା, ଗୁଣ ବିରହିତ ସେ ନୀଚ ମଣିଷ । ଯେ ନୀତି ମାନେନାହିଁ, ଧର୍ମଚାରକୁ ଡେଇଁ ଚାଲିଥାଏ, ଯେ ନାସ୍ତିକ, ମିଥ୍ୟାଚାରୀ, ଅହଂକାରୀ, ନୃଶଂସ, ପରନିନ୍ଦୁକ ଓ ଗୁଣୀବ୍ୟକ୍ତିଙ୍କୁ ସହ୍ୟ କରିପାରେ ନାହିଁ, ସେ ବ୍ୟକ୍ତିକୁ ଆମେ ନୀଚଲୋକ ବୋଲି କହିବା । ଚାଣକ୍ୟ ପଣ୍ଡିତେ ଏଇସବୁ ନୀଚ ଲୋକଙ୍କ ସହ କୌଣସି ସମ୍ପର୍କ ରଖିବାକୁ ଦୃଢ଼ଭାବେ ନିଷେଧ କରିଛନ୍ତି ।



## ୧୦୩. କାହାର କେଉଁ ବଳ...

ପାଠକେ ! ମହାବୁଦ୍ଧି ଚାଣକ୍ୟ କାହାର ବଳ ବା ଶକ୍ତି କ'ଣ ତାହା ନିମ୍ନୋକ୍ତ ଶ୍ଲୋକଟିରେ ବୁଝାଇଛନ୍ତି । ଶ୍ଲୋକଟି ଆଗ ଶୁଣନ୍ତୁ-

**ବାହୁବୀର୍ଯ୍ୟଂ ବଳଂ ରାଜ୍ଞାଂ ବ୍ରାହ୍ମଣୋ ବ୍ରହ୍ମବିଦ୍ ବଳୀ ।**
**ରୂପଯୌବନମାଧୁର୍ଯ୍ୟଂ ସ୍ତ୍ରୀଣାଂ ବଳମନୁତ୍ତମମ୍ ।। (୭/୧୧)**

ଶ୍ଳୋକଟିର ଅର୍ଥ ହେଲା, ରାଜା ବା ଶାସକମାନଙ୍କର ବଳ ହେଲା ସେମାନଙ୍କର ବାହୁର ଶକ୍ତି, ଯାହାକୁ ନେଇ ସେ ଶତ୍ରୁକୁ ଦମନ କରିପାରିବେ। ବ୍ରାହ୍ମଣମାନଙ୍କର ବଳ ହେଲା, ସେମାନଙ୍କର ବ୍ରହ୍ମଜ୍ଞାନ। ନାରୀମାନଙ୍କର ବଳ ହେଲା, ସେମାନଙ୍କର ଯୌବନଶ୍ରୀ, ଶରୀରର ଲାବଣ୍ୟ ଏବଂ ବ୍ୟବହାରରେ ମାଧୁର୍ଯ୍ୟ।

ପାଠକେ ! ଯଥାର୍ଥ ବଳର ସୁନ୍ଦର ଉଦାହରଣ ଚାରୋଟି ଦେଖିଲେ ତ ! ଆଗେ ରାଜତନ୍ତ୍ରରେ କ୍ଷତ୍ରିୟମାନେ ରାଜପଣ କରୁଥିଲେ। ସିଂହାସନରେ ନିରାପଦରେ ବସିବା ପାଇଁ ରାଜାର ସେନାସାମନ୍ତ ତ ନିଶ୍ଚୟ ରହିବେ। କିନ୍ତୁ ରାଜାର ନିଜ ପାଇଁ ବାହୁବଳ ନିତାନ୍ତ ଆବଶ୍ୟକ। ରାଜ୍ୟରେ ସେନାପତି ଅବଶ୍ୟ ରହିବେ। ମାତ୍ର ରାଜା ନିଜେ ଯୁଦ୍ଧ ବିଶାରଦ ହୋଇଥିବା ଉଚିତ ଏବଂ ଆବଶ୍ୟକ ପଡ଼ିଲେ ଆକ୍ରମଣକାରୀ ଶତ୍ରୁ ସହିତ ମଲ୍ଲଯୁଦ୍ଧରେ ନିପୁଣ ହୋଇଥିବା ଉଚିତ। ତା' ନ ହେଲେ ରାଜ୍ୟ ଓ ରାଜଗାଦୀ ସମ୍ଭାଳିବା ଅସମ୍ଭବ ହୋଇପଡ଼ିଥାଏ।

କିନ୍ତୁ ଆଜିର ଗଣତନ୍ତ୍ର ଯୁଗରେ ଗୋଟିଏ ରାଜ୍ୟର ମୁଖ୍ୟମନ୍ତ୍ରୀ ବା ଗୋଟିଏ ଦେଶର ପ୍ରଧାନମନ୍ତ୍ରୀଙ୍କଠାରୁ ବାହୁବଳ ଆଶା କରିବା ହାସ୍ୟାସ୍ପଦ କଥା। ଗଣତନ୍ତ୍ର ଯୁଗରେ ଶାସକପକ୍ଷରେ ଜନବଳ ଥିବା ହିଁ ତାଙ୍କର ପ୍ରକୃତ ବଳ। ବହୁ ଜନମତ ହିଁ ଆଧୁନିକ ମନ୍ତ୍ରୀ ଓ ନେତାମାନଙ୍କର ଅସଲ ବଳ। ତା' ସତ୍ତ୍ୱେ ବି ବହୁ ନେତା ଓ ଶାସକ ରାଜ୍ୟର ସୈନ୍ୟବଳ ଓ ପୋଲିସବଳ ବ୍ୟତୀତ ନିଜର ଏକ ବ୍ୟକ୍ତିଗତ ଗୁଣ୍ଡାଦଳ ପୋଷିଥାନ୍ତି। ଏହି ଗୁଣ୍ଡାଦଳ ମଧ୍ୟ ଲୋକଙ୍କୁ ଭୟ ଦେଖାଇ ନେତା ଓ ଶାସକଙ୍କର ଭୋଟ ବଳ ବଢ଼ାଇଥାନ୍ତି। ଗଣତନ୍ତ୍ରରେ ଖବରକାଗଜ ମଧ୍ୟ ନେତା ଓ ଶାସକମାନଙ୍କର ଏକପ୍ରକାର ବଳ ବା ଶକ୍ତିର କାର୍ଯ୍ୟ କରେ। ଧନ ବଳ ମଧ୍ୟ ଆଜିର ନେତା ଓ ଶାସକମାନଙ୍କର ଗାଦିନସିନ ହେବା ପାଇଁ ବହୁ ସାହାଯ୍ୟ କରିଥାଏ।

ଆଜିକାଲି ଜାତିଭେଦ ସମାଜରେ ଏତେ ପ୍ରକଟ ନୁହେଁ । ମାତ୍ର ରାଜନୀତିରେ ଜାତିଭେଦ ଖୁବ୍ ବଢ଼ିଯାଇଛି । ଆଜି ଆମେ ବେଦପାଠ କରିବାର ଅଧିକାର କେବଳ ବ୍ରାହ୍ମଣଙ୍କୁ ଦେଇ ନାହୁଁ । ସବୁ ଜାତିର ଲୋକଙ୍କର ବେଦପାଠ କରିବାର ଓ ବିବିଧ ଜ୍ଞାନବିଜ୍ଞାନ ଅର୍ଜନ କରିବାର ଅଧିକାର ରହିଛି । ତେଣୁ ଚାଣକ୍ୟ ମହୋଦୟ ବ୍ରାହ୍ମଣର ବଳ ବେଦଜ୍ଞାନ ବୋଲି ଯାହା କହିଛନ୍ତି, ତାକୁ ଆମେ ଜାତି ଅର୍ଥରେ ନେବା ନାହିଁ । ବରଂ ଆମେ ବର୍ତ୍ତମାନ ଏପରି କହିବା ଯେ, ଜ୍ଞାନ ବିଜ୍ଞାନ ଓ ବ୍ରହ୍ମଜ୍ଞାନ ହେଲା ବିଦ୍ୱାନ୍‌ମାନଙ୍କର ବଳ । ସେହି ବିଦ୍ୱାନ୍‌ଜଣକ ଜାତିରେ ବ୍ରାହ୍ମଣ ହୁଅନ୍ତୁ ବା ହରିଜନ, ଗିରିଜନ ହୁଅନ୍ତୁ-ସେଥିରେ କିଛି ଯାଏ ଆସେ ନାହିଁ ।

ବର୍ତ୍ତମାନ ନାରୀମାନଙ୍କର ବଳ ସମ୍ବନ୍ଧେ ଚାଣକ୍ୟଙ୍କ ବାକ୍ୟକୁ ବିଚାର କରିବା । ଏ କଥା ସତ ଯେ, ରୂପବତୀ, ଲାବଣ୍ୟବତୀ, ଯୌବନବତୀ ମାଧୁର୍ଯ୍ୟମୟୀ ନାରୀ

ଖୁବ୍ ସହଜରେ ଅନ୍ୟମାନଙ୍କୁ (ବିଶେଷତଃ ପୁରୁଷମାନଙ୍କୁ) ପ୍ରଭାବିତ କରିପାରନ୍ତି ଓ ବଶୀଭୂତ କରିପାରନ୍ତି । କିନ୍ତୁ ଏତିକିମାତ୍ର ନେଇ ଜଣେ ନାରୀ ଶକ୍ତିମୟୀ ହୋଇପାରନ୍ତି ନାହିଁ । ଜଣେ ନାରୀକୁ ପ୍ରଭାବଶାଳୀ ହେବା ପାଇଁ ବହୁ ମାନବୀୟ ଗୁଣର ଅଧିକାରିଣୀ ହେବାକୁ ପଡ଼ିବ ।

ଏକରେ ଜଣେ ନାରୀ ଶକ୍ତିମୟୀ ହେବା ପାଇଁ ତା'ର ଏକ ଦୃଢ଼ ବ୍ୟକ୍ତିତ୍ୱ ଥିବା ଉଚିତ । ସେ ବ୍ୟକ୍ତିତ୍ୱରେ ଥିବା ମାଧୁର୍ଯ୍ୟ ଓ ଐଶ୍ୱର୍ଯ୍ୟର ଏକ ଚମତ୍କାର ସମନ୍ୱୟ । ଜଣେ ପ୍ରଭାବଶାଳିନୀ ଶକ୍ତିମୟୀ ନାରୀ ସରସ୍ୱତୀଙ୍କ ଭଳି ବିଦ୍ୟାବତୀ ହୋଇଥିବ । ମହାଲକ୍ଷ୍ମୀଙ୍କ ଭଳି ତା'ର ବ୍ୟକ୍ତିତ୍ୱ ଓ ଆଚରଣରେ ଥିବ ମାଧୁର୍ଯ୍ୟ, ସଙ୍ଗତି, ପ୍ରେମ ଓ ସ୍ନେହଶୀଳତା, ସେବାଭାବ ଓ ଏକ ଆଶା ଓ ପ୍ରତ୍ୟୟଦାୟିନୀ ମନୋଭାବ । ଶକ୍ତିମୟୀ ନାରୀଙ୍କଠାରେ ଦେବୀ ଦୁର୍ଗାଙ୍କର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ସହ ବୀରଭାବ ଓ ଯୋଦ୍ଧୃଭାବ ମଧ୍ୟ ରହିବା ଉଚିତ ।

ପାଠକେ ! ଆପଣ ବର୍ତ୍ତମାନ ଆମର ପ୍ରାତଃସ୍ମରଣୀୟ, ଜାତିପ୍ରାଣ, ସାହିତ୍ୟସ୍ରଷ୍ଟା ଫକୀରମୋହନ ସେନାପତିଙ୍କ ଲିଖିତ 'ପେଟେଣ୍ଟ୍ ମେଡିସିନ୍' ଗଳ୍ପର ନାୟିକା ମଦ୍ୟପ ଓ ଲମ୍ପଟ ସ୍ୱାମୀ ଚନ୍ଦ୍ରମଣିବାବୁଙ୍କ ପତ୍ନୀ ସୁଲୋଚନା ଦେବୀଙ୍କ କଥା ମନେପକାନ୍ତୁ । ସେ ହିଁ ଯଥାର୍ଥରେ ଜଣେ ଶକ୍ତିମୟୀ ପ୍ରଭାବଶାଳିନୀ ନାରୀ । ସେ ଥିଲେ ଏକାଧାରରେ ମାହେଶ୍ୱରୀ ମହାଲକ୍ଷ୍ମୀ, ମହାକାଳୀ ଓ ମହାସରସ୍ୱତୀଙ୍କର ପାର୍ଥିବ ପ୍ରତୀକ । ତେଣୁ ଚାଣକ୍ୟ ପଣ୍ଡିତେ ନାରୀର ଶକ୍ତି କେବଳ ତା'ର ସୌନ୍ଦର୍ଯ୍ୟ, ଯୌବନ ଓ ମାଧୁର୍ଯ୍ୟ ଗୁଣରେ ବୁଝାପଡ଼େ ତାହା ନୁହେଁ । କାମୁକ ଓ ନାରୀରଙ୍କ ପୁରୁଷମାନେ ନାରୀଠାରେ କେବଳ ଯୌବନ, ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ଦେଖି ମୁଗ୍ଧ ବା ବଶୀଭୂତ ହୁଅନ୍ତି । ମାତ୍ର ସୁପୁରୁଷମାନେ ନାରୀଠାରେ ରୂପ ସହିତ ଗୁଣର ସମନ୍ୱୟ ନ ଦେଖିଲେ, ତାଙ୍କ ଦ୍ୱାରା ପ୍ରଭାବିତ ବା ବଶୀଭୂତ ହୁଅନ୍ତି ନାହିଁ ।

ତା' ଛଡ଼ା ଆମ ଶାସ୍ତ୍ର କହନ୍ତି, ନାରୀ ହେଉଛନ୍ତି ପୁରୁଷ ପାଇଁ ଶକ୍ତିର ଉତ୍ସ । ସେହି ଶକ୍ତି ବଳରେ ସେ ପୁରୁଷର ମନ ଓ ପ୍ରାଣରେ ସୃଜନାତ୍ମକ ଉଦ୍ଦୀପନା ଜାଗ୍ରତ କରେ । ଉତ୍ସାହ ପ୍ରଦାନ କରେ । ଆଶା ଓ ଆଶ୍ୱାସନା ସଞ୍ଚାର କରେ । ଶକ୍ତିମୟୀ, ଗୁଣମୟୀ ଦିବ୍ୟ ନାରୀମାନେ ପୁରୁଷକୁ ପତନୋନ୍ମୁଖୀ ନ କରି ପୁରୁଷର ଉତ୍‌ଥାନରେ ପ୍ରେରଣା ଦେଇଥାନ୍ତି । ଶକ୍ତିମୟୀ ନାରୀର ଗୋଟିଏ ମାତ୍ର ବାକ୍ୟରେ ସାଧାରଣ କାମୁକ ପୁରୁଷଟିଏ ମହାଭକ୍ତ ଓ କବି ଗୋସ୍ୱାମୀ ତୁଳସୀ ଦାସ ହୋଇ ଉଠିଛନ୍ତି ବା ମହାଭକ୍ତ ବୈଷ୍ଣବ ବିଲ୍ୱମଙ୍ଗଳ ହୋଇ ଉଠିଛନ୍ତି । ତେଣୁ ଆମେ ଚାଣକ୍ୟ ପଣ୍ଡିତଙ୍କର ସେହି ଉକ୍ତିଟିକୁ ବିନୟର ସହିତ ମାନିନେବା ନାହିଁ ।



# ୧୦୪. କିଏ କୋଉଠୁ ଆନନ୍ଦ ପାଏ ?

ପ୍ରାଣୀ ମାତ୍ରକେ ସୁଖ ଚାହେଁ। ମାତ୍ର ମଣିଷ ଖାଲି ଇନ୍ଦ୍ରିୟ ଭୋଗଜନିତ ସୁଖ ଚାହେଁନା। ମଣିଷ ଚାହେଁ, ମନର ଆହ୍ଲାଦ, ଆତ୍ମାର ଆନନ୍ଦ ଆଉ ଉଲ୍ଲାସ। ମାତ୍ର ଜୀବମାତ୍ରକେ କେତେବେଳେ ତାକୁ ଭଲ ଲାଗୁଥିବା ଜିନିଷଟିଏ ପାଇଲେ ଖୁସି ହୁଏ; ନ ପାଇଲେ ଦୁଃଖିତ ହୁଏ। ଏହିପରି ସୁଖଦୁଃଖରେ ପରିପୂର୍ଣ୍ଣ ଜୀବର ଜୀବନ। ମାତ୍ର ମଣିଷ ଗୋଟିଏ ପ୍ରାଣୀ ଯେ କି ଜୀବନରୁ ଖୁବ୍ ବେଶି ଆନନ୍ଦ ଭୋଗ କରେ, ବହୁବିଧ ଆନନ୍ଦ ଭୋଗ କରେ ଏବଂ ସେଇ ମଣିଷ ମଧ ବହୁବିଧ ଦୁଃଖ ଭୋଗ କରେ ଓ ସବୁଠାରୁ ବେଶି ସୁଖ ମଧ ଭୋଗ କରେ। ତେବେ ଗୋଟିଏ କଥା ସତ ଯେ, ଜୀବଟିଏ ଏଠି ଜନ୍ମ ହେଉଛି ଆନନ୍ଦ ଭିତରୁ, ବଞ୍ଚୁଛି ମଧ ସେଇ ଆନନ୍ଦ ଭିତରେ ଓ ମରିବ ମଧ ସେଇ ଆନନ୍ଦ ଭିତରେ। ଆମର ବେଦ ଉପନିଷଦ ସେଇ କଥା କହନ୍ତି।

କିନ୍ତୁ ବେଦ ଉପନିଷଦ ଯେଉଁ ଆନନ୍ଦର କଥା କହୁଛନ୍ତି, ସେ ଆନନ୍ଦ ଖୁବ୍ ଗଭୀର ସ୍ତରର କଥା । ଆମ ଭଳି ମଣିଷ ସେଇ ଆନନ୍ଦର ଉପଲବ୍ଧି କାହୁଁ ପାଇବ ? ଯେଉଁମାନେ କେବଳ ଦେହ, ପ୍ରାଣ ଓ ମନକୁ ନେଇ ବଞ୍ଚନ୍ତି, ସେମାନେ ଅବଶ୍ୟ ଆନନ୍ଦ ଭୋଗ କରନ୍ତି; କିନ୍ତୁ ତା' ସହିତ ନିରାନନ୍ଦ ମଧ ଭୋଗୁଥାନ୍ତି । କେବଳ ଯେଉଁମାନେ ନିଜର ଅନ୍ତରାତ୍ମାରେ ବଞ୍ଚନ୍ତି, ଯେଉଁ ମଣିଷମାନଙ୍କ ଭିତରେ ପ୍ରେମ, ପ୍ରୀତି, ସ୍ନେହ, ତ୍ୟାଗ, ସେବା ପ୍ରଭୃତି ଗୁଣ ଥାଏ ସେଇମାନେ ହିଁ ପ୍ରକୃତ ଆନନ୍ଦଭୋଗ କରିପାରନ୍ତି । କିନ୍ତୁ ନିମ୍ନୋକ୍ତ ଶ୍ଳୋକରେ ମହାମତି ଚାଣକ୍ୟ କେଉଁମାନେ କାହାଠାରୁ ଆନନ୍ଦ ପାଆନ୍ତି, ତା'ର ସୂଚନା ଦେଇଛନ୍ତି । ଶ୍ଳୋକଟି ହେଲା-

**ତୁଷ୍ୟନ୍ତି ଭୋଜନେ ବିପ୍ରା ମୟୂରା ଘନଗର୍ଜିନେ।**
**ସାଧବଃ ପରସଂପତ୍ତୌ ଖଳଃ ପରବିପତ୍ତିଷୁ ।।** (୭/୯)

ଅର୍ଥାତ୍, ସ୍ୱାଦିଷ୍ଟ ଭୂରିଭୋଜନ ପାଇଲେ ବ୍ରାହ୍ମଣମାନେ ଖୁସି ହୁଅନ୍ତି ବା ତୃପ୍ତ ହୁଅନ୍ତି। ବର୍ଷଣମୁଖୀ କୃଷ୍ଣମେଘର ଗର୍ଜନ ଶୁଣିଲେ ମୟୂରମାନେ ଉଲ୍ଲସିତ ହୁଅନ୍ତି ବା ଆନନ୍ଦରେ ଉଚ୍ଚାଟିତ ହୋଇ କେକାରବ କରନ୍ତି। ଅନ୍ୟର ସୁଖସମ୍ପଦ ବୃଦ୍ଧି ଦେଖିଲେ ସଜ୍ଜନମାନେ, ସହୃଦୟ ବ୍ୟକ୍ତିମାନେ ଖୁସି ହୁଅନ୍ତି ଏବଂ ଅପରପକ୍ଷରେ ଦୁଷ୍ଟବୁଦ୍ଧି ଈର୍ଷୁକ ବ୍ୟକ୍ତିମାନେ ଅନ୍ୟର ଦୁଃଖ ବିପଦ ଦେଖିଲେ ବେଶ୍ ଖୁସି ହୋଇଥାନ୍ତି।

ପାଠକେ ! ଚାଣକ୍ୟ ପଣ୍ଡିତେ ମନୁଷ୍ୟ ସମାଜକୁ ଭଲ ଭାବେ ଦେଖିଛନ୍ତି । ସେ କାଳରେ ବ୍ରାହ୍ମଣମାନେ ଖୁବ୍ ଦରିଦ୍ର ଥିଲେ । କାରଣ ସେମାନେ ସର୍ବଦା ଯଜନ, ଯାଜନ, ଅଧ୍ୟାପନାରେ ଜୀବନ ବିତାଉଥିଲେ । ଜୀବନରେ ଯଥେଷ୍ଟ ଜ୍ଞାନ ଅର୍ଜନ କରିବା ଓ ଅନ୍ୟକୁ ସେହି ଜ୍ଞାନ ପ୍ରଦାନ କରିବା, ଜଗତର ବା ଯଜମାନର ମଙ୍ଗଳ ପାଇଁ ଯଜ୍ଞ କରିବା ଓ ଦେବଦେବୀମାନଙ୍କୁ ଆବାହନ କରି ସେମାନଙ୍କୁ ହବିପ୍ରଦାନ କରି ସନ୍ତୁଷ୍ଟ କରିବା ହେଲା ସେକାଳର ବ୍ରାହ୍ମଣମାନଙ୍କର ଜୀବନଚର୍ଯ୍ୟା । ଧନ ଉପାର୍ଜନ କରିବା ପାଇଁ ସେମାନଙ୍କର ଆଗ୍ରହ ନ ଥିଲା, ସମୟ ମଧ୍ୟ ନ ଥିଲା । ଅନ୍ୟପ୍ରକାରେ କହିଲେ, ଧର୍ମରକ୍ଷା ପାଇଁ, ଧର୍ମ ପ୍ରଚାର ପାଇଁ, ସମାଜର ମଙ୍ଗଳ ପାଇଁ ସେମାନେ ଯାଗ, ଯଜ୍ଞ, ଧ୍ୟାନ, ପୂଜା, ଆରାଧନା, ଉପାସନା ଇତ୍ୟାଦି କାର୍ଯ୍ୟରେ ଜୀବନ ବିତାଉଥିଲେ । ମୋଟ ଉପରେ ସେମାନେ ସ୍ୱେଚ୍ଛାରେ ଦାରିଦ୍ର୍ୟକୁ ବରଣ କରିଥିଲେ । ଭାଗବତରେ ଭଗବାନ୍ ଶ୍ରୀକୃଷ୍ଣଙ୍କର ବାଲ୍ୟବନ୍ଧୁ ମହାଜ୍ଞାନୀ, ମହାଭକ୍ତ ଶୁଦ୍ଧାତ୍ମା ସୁଦାମା ହେଉଛନ୍ତି ପୂର୍ବକାଳର ବ୍ରାହ୍ମଣମାନଙ୍କ ଜୀବନଚର୍ଯ୍ୟାର ଶ୍ରେଷ୍ଠ ଉଦାହରଣ ।

ଦାରିଦ୍ର୍ୟ ହେତୁ ସେମାନେ ଦୁଇବେଳା ଉଦରପୂର୍ଣ୍ଣ କରି ଭୋଜନ କରିପାରୁ ନ ଥିଲେ । ସେଥିପାଇଁ ଅନ୍ୟ ଜାତିର ଧନୀଲୋକମାନେ ବିଭିନ୍ନ ପର୍ବପର୍ବାଣି ଓ କର୍ମକର୍ମାଣିରେ ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ କରି ସୁସ୍ୱାଦୁ ଭୂରି ଭୋଜନ ଦେଉଥିଲେ । ତାହା ଭୋଜନ କରି ସରଳ ମଙ୍ଗଳକାମୀ ବ୍ରାହ୍ମଣମାନେ ଆନନ୍ଦରେ ନୃତ୍ୟ କରୁଥିଲେ ଓ ଯଜମାନମାନଙ୍କ ମଙ୍ଗଳ କାମନା କରି ଆଶୀର୍ବାଦ ଦେଉଥିଲେ ।

ପାଠକେ ! ବିଚକ୍ଷଣ ବୁଦ୍ଧି ଓ ମହାଜ୍ଞାନୀ ଚାଣକ୍ୟ ନିଜେ ଜାତିରେ ବ୍ରାହ୍ମଣ ଥିଲେ ବି, ଏହି ଶ୍ଳୋକରେ ସେ ବ୍ରାହ୍ମଣମାନଙ୍କର ଭୋଜନ-ସ୍ପୃହାକୁ ନେଇ କିଞ୍ଚିତ୍ ହାସ୍ୟକୌତୁକ କରିଛନ୍ତି । କେହି ଭାବିବା ଉଚିତ ନୁହେଁ ଯେ, ଚାଣକ୍ୟ ପଣ୍ଡିତେ ଏକଥା କହି ବ୍ରାହ୍ମଣମାନଙ୍କୁ ଉପହାସ ବା ବିଦ୍ରୂପ କରିଛନ୍ତି ।

ଅପର ଉଦାହରଣଗୁଡ଼ିକ ଦେଖନ୍ତୁ । ଗ୍ରୀଷ୍ମତାପିତ ପୃଥିବୀରେ ଜୀବଜନ୍ତୁମାନେ ବହୁ କଷ୍ଟ ପାଉଥିଲା ବେଳେ ଯଦି ଅକସ୍ମାତ୍ ଆକାଶରେ ବର୍ଷଣମୁଖୀ କଳାମେଘ ଘୋଟି ଆସି ଗର୍ଜନ କରେ-ତାହା ମୟୂରମାନଙ୍କ ସ୍ନାୟୁମଣ୍ଡଳୀରେ ଏକ ଅପୂର୍ବ ପୁଲକ ଓ ଉନ୍ମାଦନା ସୃଷ୍ଟି କରେ । ସ୍ୱତଃ ସେ ତା'ର ଲମ୍ବ ଗ୍ରୀବା ଲମ୍ବାଇ ଆକାଶ ଆଡେ ଚାହିଁ କେକାରବରେ ନିଜେ ଆନନ୍ଦ ପାଏ ଓ ଚତୁର୍ଦ୍ଦିଗରେ ଏକ ଆନନ୍ଦର ସ୍ପନ୍ଦନ ଖେଳାଇଦିଏ ।

କିନ୍ତୁ ମଣିଷମାନଙ୍କ କଥା ଦେଖନ୍ତୁ । ମଣିଷଙ୍କ ଭିତରେ ଦୁଇପ୍ରକାର ମଣିଷ ଅଛନ୍ତି । ଦୁଷ୍ଟ ଓ ଶିଷ୍ଟ ମଣିଷ । ଖଳବୁଦ୍ଧି ଓ ଶୁଭବୁଦ୍ଧି ମଣିଷ । ଶିଷ୍ଟ ଓ ସାଧୁ ପ୍ରକୃତିର ଲୋକମାନେ ଅନ୍ୟର ସମ୍ପଦ ବଢ଼ିଲେ ଦେଖି ଖୁସି ହୁଅନ୍ତି । ମାତ୍ର ଦୁଷ୍ଟ ଲୋକମାନେ ଅନ୍ୟ ପ୍ରକାରେ ଆନନ୍ଦ ଅନୁଭବ କରନ୍ତି । ଅନ୍ୟକୁ ବିପତ୍ତି ପଡ଼ିଲେ ବା ଅନ୍ୟର କିଛି ଅମଙ୍ଗଳ ହେଲେ ବା ଅନ୍ୟର ଦୁର୍ଭାଗ୍ୟ ଦେଖି ଖଳ ଓ ଦୁଷ୍ଟମାନେ ଖୁବ୍ ଖୁସି ହୁଅନ୍ତି ।

ପାଠକେ ! ଚାଣକ୍ୟ ପଣ୍ଡିତେ ସୁଖ, ଆନନ୍ଦ ଓ ପରିତୋଷକୁ ନେଇ ଯେଉଁ କେତୋଟି ଉଦାହରଣ ଦେଲେ ତାହା ଆମ ପାଇଁ ଖୁବ୍ ଆମୋଦଦାୟକ ନୁହେଁ କି ?



## ୧୦୫. ... ଆତ୍ମାନଂ ସତତଂ ରକ୍ଷେତ୍

ନୀତି ଶ୍ଳୋକଟି ହେଲା-

**ଆପଦର୍ଥେ ଧନଂ ରକ୍ଷେଦ୍ ଦାରାନ୍ ରକ୍ଷେଦ୍ଧନୈରପି ।**
**ଆତ୍ମାନଂ ସତତଂ ରକ୍ଷେତ୍ ଦାରୈରପି ଧନୈରପି ॥ (୧/୬)**

ମହାମତି ଚାଣକ୍ୟ କହୁଛନ୍ତି, ଭବିଷ୍ୟତ୍‌ରେ କୌଣସି ଆପଦ ବିପଦ ପଡ଼ିବାର ଆଶଙ୍କା ସବୁବେଳେ ଥାଏ। ସେହିସବୁ ଆକସ୍ମିକ ଦୁରବସ୍ଥାକୁ ସମ୍ଭାଳିବା ପାଇଁ ଧନ ସଞ୍ଚୟ ନିଶ୍ଚୟ କରିବା ଉଚିତ ଏବଂ ଏହି ଧନ ଦ୍ୱାରା ପତ୍ନୀ ଓ ପରିବାରକୁ ସୁରକ୍ଷିତ କରିବା ଉଚିତ। କିନ୍ତୁ ଧନ ଓ ପତ୍ନୀ ପ୍ରଭୃତି ପରିବାରକୁ ସୁରକ୍ଷା ଦେବା ସଙ୍ଗେ ସଙ୍ଗେ ନିଜ ଆତ୍ମାକୁ ମଧ୍ୟ ସୁରକ୍ଷିତ କରିବା ଉଚିତ। ପାଠକେ! ଏହି ଶ୍ଳୋକଟିରେ ଚାଣକ୍ୟ ପଣ୍ଡିତେ ଆମକୁ ବ୍ୟାବହାରିକ ଜ୍ଞାନଉପଦେଶ ଦେବା ସଙ୍ଗେ ସଙ୍ଗେ ଆଉ ଏକ ଗଭୀର ଜୀବନଚର୍ଯ୍ୟା ବିଷୟରେ ଖୁବ୍ ଚମତ୍କାର ଭାବେ ଇଙ୍ଗିତ ଦେଇଛନ୍ତି ।

ଚାଣକ୍ୟ କହୁଛନ୍ତି, ହେ ସଂସାରୀ ଲୋକମାନେ! ଏ ସଂସାରରେ ସୁରୁଖୁରୁ ଜୀବନ କାଟିବାକୁ ହେଲେ ତୁମକୁ ଅବଶ୍ୟ ଧନଅର୍ଜନ କରବାକୁ ହେବ ଏବଂ ଅଜଣା ଭବିଷ୍ୟତ୍ ପାଇଁ ମଧ୍ୟ ଧନ ସଞ୍ଚୟକରିବାକୁ ହେବ। ଜଣେ ଗୃହତ୍ୟାଗୀ ବୈରାଗୀ ବା ସନ୍ନ୍ୟାସୀ ପାଇଁ ଧନ ଉପାର୍ଜନ କରିବା ଦରକାର ନାହିଁ କି ଧନ ସଞ୍ଚୟ କରିବା

ମଧ୍ୟ ଆବଶ୍ୟକ ନାହିଁ। କାରଣ ସନ୍ନ୍ୟାସୀର ପତ୍ନୀ ବା ପରିବାର ପୋଷଣର ଦାୟିତ୍ୱ ନାହିଁ। ସେ ନିଜର ଶରୀରକୁ ମଧ୍ୟ ଖାତିର କରେ ନାହିଁ। ସେ କେବଳ ଈଶ୍ୱରଙ୍କୁ ନେଇ ମାତିଥାଏ। ସାଧନ ଭଜନ କରୁଥାଏ।

କିନ୍ତୁ ସଂସାରୀ ଲୋକଟି ବିଚରା ତା' ସଂସାରକୁ ନେଇ ସର୍ବଦା ସନ୍ତପ୍ତ ହେଉଥାଏ । ଧନ ଅର୍ଜନ ନ କଲେ ପାଞ୍ଚପ୍ରାଣୀ କୁଟୁମ୍ବକୁ ପୋଷିବ କିପରି ? ପିଲାଛୁଆଙ୍କୁ ମଣିଷ କରିବ କିପରି ? ରୋଗ ବୈରାଗରେ ଚିକିତ୍ସା ବ୍ୟବସ୍ଥା କରିବ କିପରି ? ତା' ଛଡା ଭବିଷ୍ୟତ କଥା ବି ଅଛି। ତେଣୁ ସଂସାରୀ ଲୋକ ସତ୍ ଉପାୟରେ ଦୈହିକ ବା ମାନସିକ ପରିଶ୍ରମ କରି ଧନ ଉପାର୍ଜନ କରିବ। ତଦ୍ୱାରା ସଂସାର ଭରଣ-ପୋଷଣ କରିବା ଯେଉଁମାନେ କର୍ମକୁଣ୍ଠ, ଅଳସୁଆ, ଅବିବେକୀ ସେମାନେ ସମୟକୁ ବୃଥାରେ କାଟନ୍ତି । ପରିଶ୍ରମ କରନ୍ତି ନାହିଁ। ତେଣୁ ସାରା ଜୀବନ ଦରିଦ୍ର ହୋଇ ରହନ୍ତି ଏବଂ ପରିବାରକୁ ଦୁଃଖକଷ୍ଟ ଦିଅନ୍ତି ।

ଆଉ କେତେକ ଅଛନ୍ତି, ଯେଉଁମାନେ ଅସଦ୍ ଉପାୟରେ ଧନ ଉପାର୍ଜନ କରନ୍ତି, ଚୋରି ଡକାଏତି କରି କିମ୍ବା କିଳାପୋତେଇ କରି କିମ୍ବା ସର୍ବସାଧାରଣଙ୍କ ଅର୍ଥକୁ ଆତ୍ମସାତ୍ କରି ପ୍ରଚୁର ଧନଲାଭ କରନ୍ତି ସେହି ଧନରେ ମଉଜ ମଜ୍‌ଲିସ୍ କରନ୍ତି, ପତ୍ନୀ ଓ ପରିବାରକୁ ନେଇ ନାନାବିଧ ବିଳାସବ୍ୟସନରେ ମାତିଥାନ୍ତି । ଅସାଧୁ ଉପାୟରେ ପ୍ରଚୁର ଧନ ଉପାର୍ଜନ କରିବା ଫଳରେ ସେମାନଙ୍କର ମନ ସେହି ଧନକୁ ନାନା ପ୍ରକାର ପାପଜନକ ଆମୋଦପ୍ରମୋଦ ଓ ଇନ୍ଦ୍ରିୟ ସୁଖଭୋଗରେ ବ୍ୟୟ କରନ୍ତି । ପାପ-ଅର୍ଜିତ-ଧନ ମଣିଷକୁ ପାପର ଆବର୍ତ୍ତ ଭିତରକୁ ଟାଣିନିଏ । ତା'ର ଶରୀର ଅଶୁଦ୍ଧ ଓ ଅସୁସ୍ଥ ହୁଏ, ମନ ହୁଏ କୁଟିଳ, ଜଟିଳ ଓ ନୀଚ । ତା'ର ହୃଦୟ ହୋଇଉଠେ ନାନାଦି ଆବିଳ ଭାବନା, କୁତ୍ସିତ ଆବେଗ ଓ ପ୍ରବେଗମାନଙ୍କ ଦ୍ୱାରା ଆନ୍ଦୋଳିତ । ଫଳରେ ତା'ର ଚିନ୍ତା, ଅନୁଭୂତି ଓ କର୍ମରାଜୀ ଏଭଳି ଦୂଷଣୀୟ ହୋଇଯାଏ ଯେ- ତା'ର ସେହି ଶୁଦ୍ଧ ବୁଦ୍ଧ ଆନନ୍ଦ ଓ ଚେତନାମୟ ଅନ୍ତରାତ୍ମାର ଚାରିପଟେ ଅଜ୍ଞାନ ଓ ଅଶୁଦ୍ଧତାର ଘୋର ଅନ୍ଧକାର ଘୋଟିଯାଏ । ତା' ମାନେ ସେ ନିଜେ ଏକ ନାରକୀୟ ଜୀବନ ଭୋଗକରି ଶେଷକୁ ସେହି ଜ୍ୱାଳାରେ ଦଗ୍ଧ ହେଉଥାଏ ।

ସେଥିପାଇଁ ମହାପ୍ରାଜ୍ଞ ଚାଣକ୍ୟ କହୁଛନ୍ତି, ହେ ସଂସାରୀ ଲୋକମାନେ! ତୁମ୍ଭମାନଙ୍କୁ ତୁମର ପରିବାର ପାଇଁ ଆବଶ୍ୟକୀୟ ଧନ ନିଶ୍ଚୟ ଉପାର୍ଜନ କରିବାକୁ ପଡ଼ିବ। ଧନବ୍ୟତୀତ ତୁମର ପତ୍ନୀ ଓ ସନ୍ତାନସନ୍ତତି ସୁଖରେ ବଞ୍ଚିପାରିବେ ନାହିଁ। ତୁମର ବୃଦ୍ଧ ପିତାମାତାଙ୍କ ସେବା ଯତ୍ନ, ଲାଗି ମଧ୍ୟ ଧନ ଉପାର୍ଜନ ଆବଶ୍ୟକ।

ସର୍ବୋପରି ତୁମର ଭବିଷ୍ୟତ୍‌ର ଆବଶ୍ୟକତା ପାଇଁ ଓ ତୁମକୁ ନିରାପଦ ରଖିବା ପାଇଁ ଧନ ସଞ୍ଚୟ କରିବା ମଧ୍ୟ ଅତି ଆବଶ୍ୟକ । କିନ୍ତୁ ଚାଣକ୍ୟ ପଣ୍ଡିତେ ଏହା ସହିତ ଆଉ ଗୋଟିଏ ମୂଲ୍ୟବାନ୍ କଥା ମଧ୍ୟ କହୁଛନ୍ତି । ସେ କହୁଛନ୍ତି, ଦେଖ ବାବୁ ! ତୁମେ ତୁମର ନିରାପତ୍ତା ପାଇଁ ଓ ପରିବାର ପାଇଁ ଯେତେ ଧନ ସତ୍ ଉପାୟରେ ଉପାର୍ଜନ କରୁଛ କର । କିନ୍ତୁ ସାଧୁ ସାବଧାନ ! ତୁମକୁ ତୁମ ଅନ୍ତରାତ୍ମାର ମର୍ଯ୍ୟାଦା ନିଶ୍ଚୟ ରକ୍ଷା କରିବାକୁ ପଡ଼ିବ । ତୁମର ଧନ ସମ୍ପଦ, ପତ୍ନୀ ଓ ସନ୍ତାନସନ୍ତତିକୁ ରକ୍ଷା କରିବା ଯେମିତି କର୍ତ୍ତବ୍ୟ ସେମିତି ମଧ୍ୟ ତୁମର ଅନ୍ତରାତ୍ମାର ଉଜ୍ଜ୍ୱଳତା ରକ୍ଷା କରିବା ତା' ଠାରୁ ଅଧିକ ଏକ ଆବଶ୍ୟକୀୟ ସାଧନା । କାରଣ ମଣିଷ ଭିତରେ ଯେଉଁ ଆତ୍ମା-ପୁରୁଷ ଅଛନ୍ତି- ତାଙ୍କର ବିକାଶ ଓ ମର୍ଯ୍ୟାଦା ବଢ଼ାଇବା ହେଲା ଆମ ମଣିଷ ଜୀବନର ସର୍ବୋଚ୍ଚ ଲକ୍ଷ୍ୟ । ତେଣୁ 'ଆତ୍ମାନଂ ସତତଂ ରକ୍ଷେତ୍ଂ' । ଅର୍ଥାତ୍ ଆମେ ଯେପରି ଆଉ କାହା ଲାଗି ବା କିଛି ଲାଗି ଆମର ଆତ୍ମାକୁ ହରାଇ ନ ବସୁ ! ଆମର ଆତ୍ମମର୍ଯ୍ୟାଦା ହରାଇ ନ ବସୁ ! ଏଇ ସଂସାରକୁ ଆମେ ନିଶ୍ଚୟ ରକ୍ଷା କରିବା । ମାତ୍ର ସଂସାରକୁ ରକ୍ଷା କରିବାକୁ ଯାଇ ଆମେ ଯେପରି ଆତ୍ମହରା ହୋଇ ନ ଯାଉ । ଆତ୍ମାକୁ ଭୁଲି ନ ଯାଉ । ଆତ୍ମା ଉପଲବ୍ଧିର ଲକ୍ଷ୍ୟ ହରାଇ ନ ବସୁ ! ଆମର ଅନ୍ତରାତ୍ମା ଯେଉଁ ଶୁଦ୍ଧ, ବୁଦ୍ଧ ଉଜ୍ଜ୍ୱଳ ସ୍ଥିତିରେ ଅଛନ୍ତି, ଆମର ଧନ-ଲାଳସା-କ୍ଷମତା ଲାଳସା-ଇନ୍ଦ୍ରିୟ ସୁଖଲାଳସା ଯେପରି ସେହି ଦିବ୍ୟସ୍ଥିତିକୁ ଆକ୍ରାନ୍ତ କରି ନ ଦିଏ ! ତେଣୁ ଆମ ଆତ୍ମାକୁ ଆମେ ସବୁ କିଛି ବିନିମୟରେ ସର୍ବଦା ଇ ରକ୍ଷା କରିବା ପାଇଁ ତତ୍ପର ରହିବା । ମହାଭାରତରେ ମହାତ୍ମା ବିଦୁର ଦୁଷ୍ଟ ବୁଦ୍ଧି ଦୁର୍ଯୋଧନଙ୍କ ମୋହାନ୍ଧ ପିତା ଅନ୍ଧରାଜା ଧୃତରାଷ୍ଟ୍ରଙ୍କୁ କହୁଛନ୍ତି, "ହେ ରାଜା ! ମୁଁ ଦେଖୁଛି, ତୁମେ କେବଳ ବାହ୍ୟ ଦୃଷ୍ଟିରେ ଅନ୍ଧ ନୁହଁ, ଅନ୍ତର୍ଦୃଷ୍ଟିରେ ମଧ୍ୟ ଅନ୍ଧ ଅଟ। ହେ ରାଜା! ଧର୍ମର ନୀତି ଯାହା ମୁଁ କହୁଛି ଶୁଣ । ପରିବାରର କୁଶଳ ପଥରେ ବାଧା ଦେଉଥିବା ଦୁଷ୍ଟ ପୁତ୍ରକୁ ତ୍ୟାଗ କରିବା ଉଚିତ । ଦେଶର କୁଶଳ ପଥରେ ଯଦି ପରିବାର ପ୍ରତିବନ୍ଧକ ହୁଏ, ତେବେ ପରିବାରକୁ ତ୍ୟାଗ କରିବା ଉଚିତ। ପୃଥିବୀର ମଙ୍ଗଳ ପଥରେ ଯଦି ତୁମ ଦେଶ ବାଧକ ହେଉଥାଏ, ତେବେ ସେ ଦେଶକୁ ତ୍ୟାଗ କରିବ ଏବଂ ହେ ରାଜା ! ତୁମ ଆତ୍ମାର କୁଶଳ ବା ଉନ୍ନତିପାଇଁ ଯଦି ଏ ପୃଥିବୀ ବାଧକହୁଏ ତେବେ ଆତ୍ମାଲାଗି ଏ ପୃଥିବୀକୁ ବି ତ୍ୟାଗ କରିବାଉଚିତ । ହେ ରାଜା ! ଆତ୍ମାନଂ ସତତଂ ରକ୍ଷେତ୍ ।"



## ୧୦୬. ... ସୁପୁତ୍ରେଣ କୁଳଂ ଯଥା

ମହାମତି ଚାଣକ୍ୟଙ୍କର କେତେକ ପାରିବାରିକ ନୀତିଶ୍ଳୋକ ରହିଛି । ସେଗୁଡ଼ିକରେ ସେ ସୁପୁତ୍ର, ସୁକନ୍ୟା, ସୁପତି, ସୁପତ୍ନୀ, ସୁପିତା, ସୁମାତା ଓ ସୁବନ୍ଧୁମାନଙ୍କ ସମ୍ବନ୍ଧେ କେତେକ ଚମତ୍କାର କଥା କହିଛନ୍ତି । ସେଥିରୁ ଗୋଟିଏ ଶ୍ଳୋକ ଶୁଣନ୍ତୁ-

**ଏକେନାଽପି ସୁବୃକ୍ଷେଣ ପୁଷ୍ପିତେନ ସୁଗନ୍ଧିନା ।**
**ବାସିତଂ ତଦ୍‌ବନଂ ସର୍ବଂ ସୁପୁତ୍ରେଣ କୁଳଂ ଯଥା ॥ (୩/୧୪)**

ଅର୍ଥାତ୍, ଗୋଟିଏ ନିଘଞ୍ଚ ଅରଣ୍ୟରେ ବହୁବିଧ ବୃକ୍ଷ ରହିଥାନ୍ତି । କିନ୍ତୁ ସେହି . ବନସ୍ପତିମାନଙ୍କ ଭିତରେ ଯଦି ଗୋଟିଏ ହେଲେ ମଧ ପୁଷ୍ପିତ କଦମ୍ବ ବୃକ୍ଷଟିଏ ଥାଏ ବା ନାଗେଶ୍ୱର ବୃକ୍ଷଟିଏ ଥାଏ କିମ୍ବା ଚମ୍ପା, ବକୁଳ କିମ୍ବା ପୁଷ୍ପିତ ପୁନ୍ନାଗ ବୃକ୍ଷଟିଏ ଥାଏ, ତେବେ ସେହି ସୌରଭପୂର୍ଣ୍ଣ ଏକମାତ୍ର ବୃକ୍ଷ ଦ୍ୱାରା ହିଁ ସମଗ୍ର ବନଭୂମିଟି ସୁବାସିତ ହୋଇଥାଏ । ସେହିପରି ଗୋଟିଏ ଦମ୍ପତିଙ୍କର ବା ଗୋଟିଏ ପରିବାରରେ ଯଦି ଏକମାତ୍ର ସୁପୁତ୍ରଟିଏ ଥାଏ ତେବେ ସେ ପରିବାର ଧନ୍ୟ ହୋଇଥାଏ ।

ପାଠକେ ! ଚାଣକ୍ୟ ଏଠାରେ ପୁତ୍ର ଶବ୍ଦ ବ୍ୟବହାର କରିଛନ୍ତି । ମାତ୍ର ସେ ସ୍ଥଳେ ସୁପୁତ୍ରୀ ବା ସୁକନ୍ୟା ଶବ୍ଦ ମଧ ବ୍ୟବହାର କରାଯାଇପାରେ । ଗୋଟିଏ ଦମ୍ପତି ଯଦି ଏକମାତ୍ର ସୁକନ୍ୟା ବା ସୁପୁତ୍ରୀ ଲାଭ କରନ୍ତି ତେବେ ତା'ର ସତ୍‌କର୍ମ ଓ ସୁଗୁଣ ରାଶି ଚତୁର୍ଦ୍ଦିଗରେ ପ୍ରକଟିତ ହେବା ଫଳରେ ସେ ଦମ୍ପତି ନିଜକୁ ଧନ୍ୟ ମନେକରନ୍ତି । ଏପରିକି ଗୋଟିଏ ବଡ଼ ପରିବାରରେ ମଧ ବହୁ ପୁତ୍ର ବା କନ୍ୟାମାନଙ୍କ ଭିତରୁ ଯଦି ଜଣେ ପୁତ୍ର ବା କନ୍ୟା ଖୁବ୍ ଗୁଣବାନ୍ ବା ଗୁଣବତୀ ହୁଏ; ଏବଂ ତା'ର ଗୁଣରାଶି ଦ୍ୱାରା ଅନ୍ୟମାନେ ମଧ ଧନ୍ୟ ହୁଅନ୍ତି ତା'ର ସତ୍‌କର୍ମଗୁଡ଼ିକ ଫଳରେ ଅନ୍ୟମାନେ ଉପକୃତ ହୁଅନ୍ତି ।

ଗୋଟିଏ ସୁପୁତ୍ର ବା ସୁକନ୍ୟାର ସଦ୍‌ଗୁଣ ଓ ସତ୍‌କର୍ମ ଦ୍ୱାରା ଯେ କେବଳ ସେମାନଙ୍କ ମାତାପିତା ଓ ପରିବାର ଧନ୍ୟ ହୁଅନ୍ତି, ତାହା ନୁହେଁ, ସମଗ୍ର ଦେଶ ଓ ସମଗ୍ର ବିଶ୍ୱ ମଧ ସେମାନଙ୍କ ପାଇଁ ଧନ୍ୟ ହୋଇଥାଏ । ବୁଦ୍ଧ, ଯିଶୁ, ମହମ୍ମଦ, ଶ୍ରୀଚୈତନ୍ୟ ରାମକୃଷ୍ଣ, ବିବେକାନନ୍ଦ, ଶ୍ରୀଅରବିନ୍ଦ, ରବୀନ୍ଦ୍ରନାଥ, ମହାତ୍ମା ଗାନ୍ଧୀ, ଆଇନ୍‌ଷ୍ଟାଇନ୍, ମଦର ଟେରେସା, ଶ୍ରୀମା ସାରଦାମଣି ଓ ଶ୍ରୀମା ମୀରାଙ୍କ ଦ୍ୱାରା ସମଗ୍ର ବିଶ୍ୱ ଧନ୍ୟ ହୋଇ ନାହିଁ କି ? ମହାମତି ଚାଣକ୍ୟଙ୍କ ଶ୍ଳୋକରୁ ଆମର ସନ୍ଦେହ

ହୋଇପାରେ ଯେ, ସେ କେବଳ ଜଣକର ପକ୍ଷପାତୀ। ଗଣଙ୍କର ନୁହେଁ। ଏ ସମ୍ବନ୍ଧେ ଆମେ ପରେ ଆଲୋଚନା କରିବା । ବର୍ତ୍ତମାନ ଏ ଶ୍ଳୋକଟିର ବିପରୀତ ଶ୍ଳୋକଟି ଦେଖନ୍ତୁ –

**ଏକେନ ଶୁଷ୍କବୃକ୍ଷେଣ ଦହ୍ୟମାନେନ ବହ୍ନିନା।**
**ଦହ୍ୟତେ ତଦ୍‌ବନଂ ସର୍ବଂ କୁପୁତ୍ରେଣ କୁଳଂ ଯଥା ॥** (୩/୧୫)

ଏହାର ଅର୍ଥ ହେଲା, ଗୋଟିଏ ଘଞ୍ଚ ସବୁଜ ଅରଣ୍ୟରେ ଯଦି ଏକମାତ୍ର ଶୁଷ୍କ ବୃକ୍ଷଟିଏ ଥାଏ ଏବଂ ଦୈବାତ୍ ସେହି ଶୁଷ୍କ ବୃକ୍ଷରେ କୌଣସି କାରଣରୁ ଅଗ୍ନି ଲାଗିଯାଏ, ତେବେ ସେ ବୃକ୍ଷଟି ନିଜେ ପୋଡ଼ିଯାଏ ଓ ସମଗ୍ର ଅରଣ୍ୟ ମଧ୍ୟ ତା' ଠାରୁ ବିଚ୍ଛୁରିତ ଅଗ୍ନିଶିଖା ଦ୍ୱାରା ଖୁବ୍ ଅଳ୍ପ ସମୟରେ ପୋଡ଼ି ପାଉଁଶ ହୋଇଯାଏ । ସେହିପରି ଗୋଟିଏ ପରିବାରରେ କୁପୁତ୍ର ବା କୁପୁତ୍ରୀଟିଏ ଯଦି ଦୁର୍ଭାଗ୍ୟକୁ ଜନ୍ମ ହୋଇଥାଏ, ତେବେ ସେ ନିଜର ଦୁର୍ଗୁଣ ଓ ଦୁଷ୍କର୍ମର ଅଗ୍ନିରେ ପୋଡ଼ି ନିଜେ ତ ଧ୍ୱଂସ ହୋଇଯାଏ, ସମଗ୍ର ପରିବାରକୁ ମଧ୍ୟ ଧ୍ୱଂସ ଆଡ଼କୁ ଠେଲିଦିଏ । ଚାମୁଚେ ଦୁଇଚାମୁଚ କିରୋସିନି ଯଦି ଗୋଟିଏ ପାୟସପୂର୍ଣ୍ଣ ହାଣ୍ଡିରେ ପଡ଼େ, ତେବେ ସମଗ୍ର ସୁସ୍ୱାଦୁ ପାୟସତକ ନଷ୍ଟ ହୋଇଯାଏ। ସେହିପରି ଗୋଟିଏ ଖରାପ ଦୁଷ୍ଟ ମଣିଷ ମଧ୍ୟ ଗୋଟିଏ ଗ୍ରାମକୁ ନଷ୍ଟ କରିଦିଏ ଓ ଗୋଟିଏ ମହାନ୍ ଜାତିର ସୁନାମରେ କାଳି ବୋଳିଦିଏ ।

ତେଣୁ 'ଗୋଟିଏ'ର ବା 'ଏକ'ର ମହତ୍ତ୍ୱ ଓ ପ୍ରାଧାନ୍ୟ କିଛି କମ୍ ନୁହେଁ। ବରଂ ବହୁ ସମୟରେ ଆମେ ଏକ ବା ଗୋଟିଏ ଉପରେ ଆଶା ରଖି ଆଶ୍ୱସ୍ତ ହେଉଥାଉ ଏବଂ ଅନ୍ୟପକ୍ଷରେ ଏହି ଏକ ବା ଗୋଟିଏ ଆମକୁ ମହାଦୁଃଖ ଓ ସନ୍ତାପ ଦେଇଥାଏ।



## ୧୦୭. କିପରି ରଖିବ, କିପରି ଜାଣିବ ?

**ଅଭ୍ୟାସାଦ୍‌ଧାର୍ଯ୍ୟତେ ବିଦ୍ୟା କୁଳଂ ଶୀଳେନ ଧାର୍ଯ୍ୟତେ।**
**ଗୁଣେନ ଜ୍ଞାୟତେ ତ୍ୱାର୍ଯ୍ୟଃ କୋପୋ ନେତ୍ରେଣ ଗମ୍ୟତେ ॥** (୫/୮)

ଏହି ଶ୍ଳୋକରେ ମହାବିଜ୍ଞ ଚାଣକ୍ୟ ପଣ୍ଡିତେ କୋଉ କଥାକୁ କିପରି ରକ୍ଷା କରାଯାଏ ଏବଂ କୋଉ କଥା କିପରି ଜଣାଯାଏ, ତା'ର ନିଦର୍ଶନ ଦେଇ ବୁଝାଇଛନ୍ତି । ପ୍ରଥମ ବିଷୟଟି ହେଲା ଯେକୌଣସି ବିଦ୍ୟା ବା ଜ୍ଞାନ । ଥରେ ପଢ଼ିଦେଲେ ବା

ଜାଣିଦେଲେ ମନ ଭିତରେ କୌଣସି ବିଦ୍ୟା ବା ଜ୍ଞାନ ଧାର୍ଯ୍ୟ ହୁଏ ନାହିଁ ବା ସ୍ଥାୟୀ ହୋଇ ରହେ ନାହିଁ । ଯେତେବଡ଼ ବିଦ୍ୱାନ୍ ହେଲେ ବି, ଯେତେବଡ଼ ଜ୍ଞାନବନ୍ତ ପଣ୍ଡିତ ପ୍ରଫେସର ହେଲେ ବି ଯଦି ସେ ସବୁଦିନ ପଠନପାଠନ, ଚର୍ଚ୍ଚା, ଆଲୋଚନା, ପ୍ରୟୋଗ ଇତ୍ୟାଦି ଅଭ୍ୟାସ ନ କରେ ତେବେ ତା'ର ମୁଣ୍ଡରୁ ସେ ସବୁ ବିଦ୍ୟା-ଜ୍ଞାନ ବିସ୍ମରଣ ହୋଇଯିବ । ତେଣୁ ପଣ୍ଡିତ ଓ ବିଦ୍ୱାନ୍‌ମାନେ ଜ୍ଞାନ ଚର୍ଚ୍ଚାରେ ଓ ଜାଣିଥିବା କୌଣସି ବିଦ୍ୟାର ପ୍ରୟୋଗରେ ସର୍ବଦା ନିଜକୁ ନିୟୋଜିତ କରିଥାନ୍ତି । ଆଗେ ରାଜତନ୍ତ୍ରରେ ରାଜାମାନେ ବହୁ ସମୟରେ ପଣ୍ଡିତ ସଭାର ଆୟୋଜନ କରୁଥିଲେ, ଏବଂ ସେଠାରେ ରାଜାଙ୍କ ସମ୍ମୁଖରେ ଜ୍ଞାନବନ୍ତ ପଣ୍ଡିତମାନେ ଧର୍ମ, ଦର୍ଶନ, ବିଜ୍ଞାନ, କାବ୍ୟ, ସଙ୍ଗୀତ ଇତ୍ୟାଦି ସମ୍ବନ୍ଧେ ଖୁବ୍ ଆଲୋଚନା କରୁଥିଲେ । ରାଜାମାନେ ସେମାନଙ୍କୁ ଉତ୍ସାହିତ କରିବା ପାଇଁ ପ୍ରଚୁର ଅର୍ଥ ଓ ମାନପତ୍ର ପ୍ରଦାନ କରୁଥିଲେ ।

ଏବେ ମଧ୍ୟ ଗଣତନ୍ତ୍ରରେ ସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟ ଓ ଏକାଡେମୀମାନଙ୍କରେ ବା ବିବିଧ ଅନୁଷ୍ଠାନମାନଙ୍କରେ ତର୍କସଭା, ସେମିନାର, ଆଲୋଚନାଚକ୍ର ପ୍ରଭୃତିର ଆୟୋଜନ କରାଯାଉଛି ଓ ସେଥିରେ ଜ୍ଞାନବିଜ୍ଞାନରେ ପାରଦର୍ଶୀ ପଣ୍ଡିତମାନେ ବିବିଧ ବିଷୟରେ ପ୍ରବନ୍ଧପାଠ କରୁଛନ୍ତି, ଆଲୋଚନା ମଧ୍ୟ କରୁଛନ୍ତି । ଏହାଦ୍ୱାରା ଜ୍ଞାନ, ବିଜ୍ଞାନ, ବିଦ୍ୟା ସୁରକ୍ଷିତ ଓ ବର୍ଦ୍ଧିତ ହେଉଛି ।

ସେହିପରି ଶୀଳ ବା ଉତ୍ତମ ଆଚରଣ ଦ୍ୱାରା କୁଳଧର୍ମ ଓ କୁଳଗୌରବକୁ ରକ୍ଷା କରାଯାଏ । ଗୋଟିଏ କୁଳ ବା ବଂଶର ନରନାରୀମାନେ ଯଦି ଅନ୍ୟମାନଙ୍କ ସହିତ ଭଦ୍ର ଓ ମାର୍ଜିତ ବ୍ୟବହାର କରୁଥାନ୍ତି; ଯଦି ସେମାନେ କୌଣସି ବାଧାବିଘ୍ନକୁ ଖାତିର ନ କରି ସତ୍ୟ, ଦୟା, ତ୍ୟାଗ, ସେବା ଓ ଧର୍ମାଚରଣରେ ସର୍ବଦା ରତ ଥାନ୍ତି, ତେବେ ସେହି ବଂଶର ମର୍ଯ୍ୟାଦା ଅକ୍ଷୁଣ୍ଣ ରହିଥାଏ । ବିଖ୍ୟାତ ରଘୁବଂଶ କଥା ସମସ୍ତେ ଜାଣିଥିବେ । ସଗର ବଂଶରୁ ଆରମ୍ଭକରି ମହାରାଜା ଦିଲୀପଙ୍କ ପର୍ଯ୍ୟନ୍ତ ଓ ଦିଲୀପଙ୍କଠାରୁ ଆରମ୍ଭକରି ସମ୍ରାଟ୍ ରଘୁ, ସମ୍ରାଟ୍ ଅଜ, ସମ୍ରାଟ ଦଶରଥ, ରଘୁକୁଳ ଚନ୍ଦ୍ରମା ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କ ପର୍ଯ୍ୟନ୍ତ ଓ ତାଙ୍କଠାରୁ ଆରମ୍ଭ କରି ଲବକୁଶ ଏବଂ ସୂର୍ଯ୍ୟବଂଶର ଆଉ ତିନିଚାରିପୁରୁଷ ପର୍ଯ୍ୟନ୍ତ ରଘୁକୁଳର ଗୌରବ ଅକ୍ଷୁଣ୍ଣ ରହିଥିଲା । ତା' ପରେ ସେହି ବଂଶର ରାଜାମାନେ ଆଉ ସେହି ଶୀଳତା ରଖି ପାରିଲେନି । ତେଣୁ ସେମାନେ ଏତେବଡ଼ ଗୌରବ ମଣ୍ଡିତ ବଂଶର କୁଳମର୍ଯ୍ୟାଦା ତାଙ୍କର କ୍ଷୁଦ୍ର ଆଚରଣ ଦ୍ୱାରା ନଷ୍ଟ କରିଦେଲେ ।

ସେହିପରି ଆଉ ଗୋଟିଏ କଥା ଶୁଣନ୍ତୁ । ଆର୍ଯ୍ୟ ବା ଅନାର୍ଯ୍ୟ କେବଳ ଜାତି ବିଶେଷକୁ ବୁଝାଏ ନାହିଁ । ସଦ୍‌ଗୁଣ ଦ୍ୱାରା ଜଣେ ଆର୍ଯ୍ୟ ପଦବାଚ୍ୟ ହୋଇଥାଏ ଏବଂ ବଦ୍‌ଗୁଣ ଦ୍ୱାରା ତା'ର ଅନାର୍ଯ୍ୟତ୍ୱ ପ୍ରତିପାଦିତ ହୁଏ । ଜଣେ ଅରଣ୍ୟରେ ବା ପାହାଡ଼ ପର୍ବତରେ କୁଟୀର ଭିତରେ ରହୁଛି ବୋଲି ତାକୁ ଅନାର୍ଯ୍ୟ କହିହେବ ନାହିଁ । କାରଣ ସେହି ଲୋକ ଜଣେ ବାନପ୍ରସ୍ଥୀ ସନ୍ନ୍ୟାସୀ ହୋଇପାରନ୍ତି, ଜଣେ ଋଷି ବା ମୁନି ହୋଇପାରନ୍ତି, କିମ୍ୱା ଜଣେ ତପସ୍ୱୀ ହୋଇପାରନ୍ତି । ବନବାସୀ ପରଜା, ଭୂୟାଁ, ସାନ୍ତାଳ, ଶବରମାନଙ୍କ ଭିତରେ ଏପରି ସବୁ ଗୁଣୀ, ଜ୍ଞାନୀ ଓ ସୁଶୀଳ ଲୋକ ଆଗେ ଥିଲେ ଏବଂ ସବୁ ଯୁଗରେ ମଧ୍ୟ ଅଛନ୍ତି, ଆମେ ସେମାନଙ୍କୁ ନିଶ୍ଚୟ ଆର୍ଯ୍ୟ ବୋଲି କହିବା। ଏ ଯୁଗରେ ମଧ୍ୟ ବ୍ରାହ୍ମଣ ଶାସନ ଓ କ୍ଷତ୍ରିୟ ଗଡ଼ମାନଙ୍କରେ ଏପରି ସବୁ ତଥାକଥିତ ସଭ୍ୟ ଶିକ୍ଷିତ ମଣିଷ ଅଛନ୍ତି, ଭଲ ପୋଷାକପତ୍ର ପିନ୍ଧୁଛନ୍ତି, ବହୁ ଧନ ଓ କ୍ଷମତାର ଅଧିକାରୀ ହୋଇଛନ୍ତି; କିନ୍ତୁ ସେମାନଙ୍କର ଆଚାର, ବ୍ୟବହାର ଓ ଚରିତ୍ର ଦେଖିଲେ ସେମାନଙ୍କୁ କେବେ ଆର୍ଯ୍ୟ ବୋଲି କହିହେବ ନାହିଁ । ତେଣୁ ଉତ୍ତମ ଉନ୍ନତ ମାର୍ଜିତ ସୁଶୀଳବନ୍ତ ଚରିତ୍ରବାନ୍ ମଣିଷ ମାତ୍ରେ ହିଁ ଆର୍ଯ୍ୟ ଓ ତା'ର ବିପରୀତ ଚରିତ୍ରର ଲୋକମାନଙ୍କୁ ଆମେ ଅନାର୍ଯ୍ୟ ବୋଲି କହିବା ଉଚିତ ।

ଶେଷ କଥାଟି ହେଲା, କୋପ ବା କ୍ରୋଧ ମଣିଷର କୋଉ ଅଙ୍ଗରେ ପ୍ରକାଶ ପାଏ ? ଚାଣକ୍ୟ ପଣ୍ଡିତେ କହୁଛନ୍ତି, କୋପଭାବଟି ଜଣକର ଆଖିରେ ପ୍ରକାଶ ପାଏ ।

ତେବେ ଏକଥା ସତ ଯେ ଜଣେ ଖୁବ୍ ରାଗିଗଲେ ତା'ର ଦେହର ବିଭିନ୍ନ ଅଙ୍ଗରେ ତାହା ପ୍ରକଟିତ ହୁଏ। ତା'ର ଓଠ ଥରେ, କଣ୍ଠ ଚିତ୍କାର ଛାଡ଼େ, ତା'ର ସାରା ଦେହ କମ୍ପିତ ହୁଏ। ତା'ର ହସ୍ତ ଓ ଆଙ୍ଗୁଠିଗୁଡ଼ିକ ବାରମ୍ବାର ଆନ୍ଦୋଳିତ ହେଉଥାନ୍ତି । ତା'ର ମୁଖ କ୍ରୋଧାଗ୍ନିରେ ଜଳିଲା ଭଳି ନାଲି ପଡ଼ିଯାଏ। ତେବେ ଜଣେ ତା' ଅନ୍ତରରେ ରାଗକୁ ଚାପି ରଖିବା ଦ୍ୱାରା ତା'ର ଦେହର ବିଭିନ୍ନ ଅଙ୍ଗରେ ତାହା ପ୍ରକାଶ ପାଏ ନାହିଁ। କିନ୍ତୁ ଯେତେ ଅବଦମିତ କଲେ ମଧ୍ୟ ଜଣଙ୍କର ଅନ୍ତର କ୍ରୋଧଭାବ ତା'ର ଦୁଇ ଆଖିରେ ପ୍ରକାଶ ପାଇଥାଏ। ପାଠକେ ! ଚାଣକ୍ୟ ପଣ୍ଡିତଙ୍କର ପର୍ଯ୍ୟବେକ୍ଷଣ ଦକ୍ଷତା ଦେଖିପାରିଲେ ତ !



## ୧୦୮. ନଷ୍ଟସ୍ୟ କାରଣଂ କିମ୍ ?

ଆମ ନିଜର ଅସାବଧାନତା ଦ୍ୱାରା କିମ୍ବା ଅଜ୍ଞାନ ଓ ଅସତର୍କତା ଫଳରେ କିପରି ଆମର ଜ୍ଞାନ ବା ବିଦ୍ୟା ନଷ୍ଟ ହୋଇଯାଏ, ଶସ୍ୟ ନଷ୍ଟ ହୋଇଯାଏ, ଧନ ନଷ୍ଟ ହୋଇଯାଏ ଓ ଆମର ଦେଶରକ୍ଷକ ସେନାବାହିନୀ ମଧ ନଷ୍ଟ ହୋଇଯାନ୍ତି, ସେଇ କଥାଟି ଗୋଟିଏ ଶ୍ଳୋକରେ ମହାମତି ଚାଣକ୍ୟ ବର୍ଣ୍ଣନା କରୁଛନ୍ତି । ଶ୍ଳୋକଟି ହେଲା-

**ଆଳସ୍ୟୋପହତା ବିଦ୍ୟା ପରହସ୍ତଗତାଃ ସ୍ତ୍ରିୟଃ ।**
**ଅଳ୍ପବୀଜଂ ହତଂ କ୍ଷେତ୍ରଂ ହତଂ ସୈନ୍ୟମନାୟକମ୍ ।। (୫/୭)**

ଏହାର ଅର୍ଥ ହେଲା, ଅଳସୁଆ ଲୋକ ଯେତେ ଜ୍ଞାନ ଅର୍ଜନ କରିଥାଉ ବା ଯେତେ ବିଦ୍ୟା ଅର୍ଜନ କରିଥାଉ ପଛେ, ଯଦି ସେହି ବିଦ୍ୟା ବା ଜ୍ଞାନକୁ ସେ ବାସ୍ତବ ଜୀବନରେ ଉପଯୋଗ  ନ କରିପାରେ, ଆଳସ୍ୟ ଯୋଗୁଁ ତା'ର ବିଦ୍ୟା ବା ଜ୍ଞାନ ଫଳବତୀ ହେବ ନାହିଁ। ଯେଉଁ ବିଦ୍ୟା ବା ଜ୍ଞାନ ବାସ୍ତବ ଜୀବନରେ ଉପଯୋଗ ହୋଇ ନ ପାରିଲା ତାହା କେବଳ ସେହି ଜ୍ଞାନୀ ବା ବିଦ୍ୟାବନ୍ତ ଲୋକଟିର ମୁଣ୍ଡ ଭିତରେ ଆବଦ୍ଧ ରହିବ। କିଛିଦିନ ପରେ ସେ ବିଦ୍ୟା ବା ଜ୍ଞାନ ମଧ ଭୁଲି ହୋଇଯିବ । ତେଣୁ ବିଦ୍ୟା ଓ ଜ୍ଞାନକୁ ବାସ୍ତବ ଜୀବନରେ ପ୍ରୟୋଗ କରିବା ନିତାନ୍ତ ବାଞ୍ଛନୀୟ । ତଦ୍ୱାରା ସେହି ବିଦ୍ୟା ଯଥାର୍ଥରେ ଫଳବତୀ ହୋଇଥାଏ ।

ଅନ୍ୟ ଅର୍ଥରେ ଯେଉଁ ବ୍ୟକ୍ତି ଅଳସୁଆ, ଯେଉଁ ବ୍ୟକ୍ତି କର୍ମଠ ନୁହଁ, ଉଦ୍‌ଯୋଗୀ ନୁହଁ, ସେ କୌଣସି ବିଦ୍ୟା ବା ଜ୍ଞାନ ଅର୍ଜନ କରିପାରେ ନାହିଁ । ଅର୍ଜନ କଲେ ବି ରଖିପାରେ ନାହିଁ ।

ସେହିପରି ଧନ କଥା ମଧ ଭାବନ୍ତୁ । ଧନ ସର୍ବଦା ନିଜ ପାଖରେ ରଖିବା ଉଚିତ  କିମ୍ବା ସହଜଲଭ୍ୟ ବ୍ୟାଙ୍କ ଇତ୍ୟାଦିରେ ଜମା ରଖିବା ଉଚିତ । ଧନର ନିଜସ୍ୱ କିଛି ମୂଲ୍ୟ ନାହିଁ । କିନ୍ତୁ ଧନ ନ ଥିଲେ ଏବଂ ଧନ ଥାଇ ମଧ ଠିକଣା ବେଳରେ, ତାହା ଯଦି ନ ମିଳେ, ତେବେ ସେଇ ଧନ ବଦଳରେ ଆମେ କିଛି କାମ କରିପାରିବା ନାହିଁ । କୌଣସି ପଦାର୍ଥ କ୍ରୟ କଲା ବେଳେ ତୁମର ଧନ ତୁମ ପାଖରେ ନ ଥାଇ ଯଦି ଆଉ କାହା ପାଖରେ ଥାଏ ଏବଂ ତାହା ଯଦି ସହଜରେ ସେହିକ୍ଷଣି ନ ମିଳେ, ତେବେ ତୁମେ ତୁମର ଆବଶ୍ୟକୀୟ ପଦାର୍ଥଟି କ୍ରୟ କରିପାରିବ ନାହିଁ । ସେତେବେଳେ ତୁମ ଧନକୁ ନଷ୍ଟଧନ ବୋଲି କୁହା ନ ଯିବ କାହିଁକି ?

ଏହାର ଅନ୍ୟ ଅର୍ଥଟି ହେଲା, ତୁମେ ଯେପରି ତୁମର ଝାଳବୁହା ଧନକୁ ସାବଧାନରେ ସାଇତି ରଖ ଏବଂ ସେ ଧନକୁ ବୃଦ୍ଧି କରିବାରେ ମଧ୍ୟ ଚେଷ୍ଟାକର କିମ୍ବା ତୁମର ଆବଶ୍ୟକ ବେଳେ ଖର୍ଚ୍ଚ କରିପାର, ସେପରି ତୁମେ କରିପାରିବ ନାହିଁ- ଯଦି ତୁମର ସେ ଧନ ଅନ୍ୟ ଲୋକ ପାଖେ ଥାଏ। ସେ ଲୋକ ପାଖେ ତୁମ ଧନ ରହିବାର କାରଣ ହୋଇପାରେ ଯେ, ସେ ତୁମଠାରୁ କରଜ ନେଇଛି ଏବଂ ସେତେକ ସେ ସମୂଳସୁଧ ସହ ଫେରାଇ ଦେବ। କିନ୍ତୁ ସେ ଲୋକ ଯଦି ତୁମକୁ ଠକିଦେଲା କିମ୍ବା ସେ ଧନକୁ ଖାଇପିଇ ମଉଜରେ ଉଡ଼ାଇଦେଲା ତେବେ ତୁମର ସେଇ ପରହସ୍ତଗତ ଧନର କି ମୂଲ୍ୟ ଅଛି କହିଲ ଦେଖି !! ସେ ଧନକୁ ନଷ୍ଟଧନ ବୋଲି ଭାବିବା ଛଡ଼ା ଗତ୍ୟନ୍ତର ନାହିଁ।

ଏହି ସାଦୃଶ୍ୟ ଦେଖାଇ ଚାଣକ୍ୟ ପଣ୍ଡିତେ ଆଉ ଗୋଟିଏ 'ନଷ୍ଟ' କଥା କହୁଛନ୍ତି । ଚାଣକ୍ୟ କହନ୍ତି ଚାଷୀଟିଏ ତା' ଜମିକୁ ଠିକ୍ ଭାବରେ ଚାଷକରି ଖତ ଦେଇ ଉର୍ବର କଲା । କିନ୍ତୁ ସେ ଯଦି ସେହି କର୍ଷିତ ଜମିରେ ଆବଶ୍ୟକ ପରିମାଣ ଶସ୍ୟବୀଜ ନ ପକାଏ ତେବେ ସେ ଜମିରେ ଭଲ ଫସଲ ହେବ କିପରି ? ଏ କ୍ଷେତ୍ରରେ ଶସ୍ୟବୀଜ ମଧ୍ୟ ଉତ୍ପନ୍ନକ୍ଷମ ହେବା ଉଚିତ ଏବଂ ଶସ୍ୟବୀଜଗୁଡ଼ିକ ମଧ୍ୟ ଯଦି ପୋକଖିଆ ହୋଇଥାନ୍ତି, ତେବେ ଶସ୍ୟକ୍ଷେତ୍ର ଯେତେ ଉର୍ବରା ହେଲେ ମଧ୍ୟ ଲାଭ କ'ଣ ହେବ ? କ୍ଷେତ୍ର ନଷ୍ଟ ନ ହୋଇ ଆଉ କ'ଣ ହେବ ?

ଶେଷରେ ଚାଣକ୍ୟ ରାଜନୈତିକ କ୍ଷେତ୍ର କଥା କହୁଛନ୍ତି । ସେ କହୁଛନ୍ତି, ଯଦି ଗୋଟିଏ ସେନାବାହିନୀର ସେନାପତି ବା କମାଣ୍ଡର ନାହାନ୍ତି ବା ସେହି ସେନାପତିଙ୍କୁ ଯୁଦ୍ଧକୌଶଳ ଜଣା ନ ଥାଏ, ସେ ଯଦି ଶତ୍ରୁଙ୍କ ବିରୋଧରେ ଠିକ୍ ସମୟରେ ଏବଂ ଠିକ୍ ଘାଟିରେ ସେନାଚାଳନା ନ କରିପାରନ୍ତି, ତେବେ ତାଙ୍କର ସେନାବାହିନୀ ଯେତେ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହେଲେ ବି ଅଚିରେ ଶତ୍ରୁପକ୍ଷ ହାତରେ ପଡି ନଷ୍ଟ ହୁଅନ୍ତି ବା ଧ୍ୱଂସ ହୁଅନ୍ତି ।

ତେଣୁ ମହାମତି ଚାଣକ୍ୟ ଏହି କେତୋଟି ଉଦାହରଣ ଦେଇ ଆମକୁ କିପରି ବିଦ୍ୟା ନଷ୍ଟ ନ ହେବ, କିପରି ଉର୍ବର ଶସ୍ୟକ୍ଷେତ୍ର ନଷ୍ଟ ନ ହେବ, କିପରି ଧନ ନଷ୍ଟ ନ ହେବ ଓ ଶେଷରେ କିପରି ରାଜ୍ୟର ସେନାବାହିନୀ ନଷ୍ଟ ନ ହେବେ, ସେ ସମ୍ବନ୍ଧେ ସଚେତନ ଓ ସାବଧାନ କରି ଦେଇଛନ୍ତି ।



# ୧୦୯. ମଣିଷର ଚାରୋଟି ସହଜାତ ଗୁଣ

ଆମେ ଜାଣୁ ଯେ, ପ୍ରତ୍ୟେକ ପଦାର୍ଥ ବା ଜୀବର ଏକ ସ୍ୱତନ୍ତ୍ର ନାମ ଥାଏ ଏକ ସ୍ୱତନ୍ତ୍ର ରୂପ ଥାଏ ଓ ଏକ ସ୍ୱତନ୍ତ୍ର ଗୁଣ ଥାଏ । ଭିନ୍ନ ଭିନ୍ନ ଜାତିର ବୃକ୍ଷଲତା ମାନଙ୍କର ଆକାର ସ୍ୱତନ୍ତ୍ର, ପତ୍ର, ପୁଷ୍ପ ମଧ୍ୟ ସ୍ୱତଂତ୍ର ଓ ସେଗୁଡ଼ିକର ଫଳ ଫୁଲ ସ୍ୱତଂତ୍ର ଏବଂ ନାମ ମଧ୍ୟ ସ୍ୱତଂତ୍ର । ଯେପରି ବରଗଛ, ଆମ୍ବଗଛ, ଜାମୁଗଛ, ତେନ୍ତୁଳି ଗଛ, ଆଖୁଗଛ ଓ ନିମ୍ବଗଛ ଇତ୍ୟାଦି । ସେହିପରି ଭିନ୍ନ ଭିନ୍ନ କୀଟପତଙ୍ଗ, ପଶୁପକ୍ଷୀଙ୍କ ନାମ, ରୂପ ଓ ଗୁଣ ମଧ୍ୟ ସ୍ୱତଂତ୍ର । ହାତୀ, ସିଂହ, ବାଘ, ବିଲୁଆ, କୁକୁର, ମୂଷା, ଚୁଚୁନ୍ଦ୍ରା, ତେଲୁଣୀପୋକ, ପାରୁଡ଼ାପୋକ, ସାଧବବୋହୂ ପୋକ ଇତ୍ୟାଦି । ପଦାର୍ଥମାନଙ୍କ ସମ୍ବନ୍ଧେ ବି ସେଇ ଏକା କଥା । ମୁଗୁନି ପଥର, ମାଙ୍କଡ଼ା ପଥର, ମାର୍ବଲ ପଥର, ସୁନା, ରୁପା, ପିତ୍ତଳ, ତମ୍ବା, ସ୍ଫଟିକ ଇତ୍ୟାଦି ବସ୍ତୁର ସ୍ୱତଂତ୍ର ରୂପ, ଗୁଣ ଓ ନାମ ରହିଛି । ସେହି ସେହି ଜୀବମାନେ ଓ ପଦାର୍ଥମାନେ ସୃଷ୍ଟି ହେବା ମୁହୂର୍ତ୍ତରୁ ସେହି ରୂପ, ସେହି ଗୁଣ ଓ ସେହି ନାମ ଧରି ପରିଚିତ ହୋଇଥାନ୍ତି । ଅବଶ୍ୟ ପ୍ରତ୍ୟେକ ଜୀବ ବୃକ୍ଷ ଓ ପଦାର୍ଥର ରୂପ ଓ ଗୁଣ କେବଳ ତା'ର ସୃଷ୍ଟିବେଳୁ ରହିଥାଏ । ମାତ୍ର ସେଗୁଡ଼ିକର ନାମକରଣ ସବୁ ମଣିଷମାନେ କରିଛନ୍ତି । ହାତୀ, ଘୋଡ଼ା, ତେଲୁଣୀ ପୋକ, ବାଘ, ନେଉଳ, ବରଗଛ, କଦମ୍ବଗଛ, ଆଖୁଗଛ ଇତ୍ୟାଦି ନାମକରଣ ସବୁ ମଣିଷମାନେ ଦେଇଛନ୍ତି ଏବଂ ବିଭିନ୍ନ ଭାଷାରେ ଏହାର ନାମକରଣ ମଧ୍ୟ ଅଲଗା । ଆମେ କହୁ ଜଳ ବା ପାଣି । ମାତ୍ର ଇଂରାଜୀରେ ତା' ନାମ ୱାଟର । ଆମେ ଯାହାକୁ ମୂଷା କହୁ- ଉର୍ଦ୍ଦୁଭାଷାରେ ତା' ନାମ ଚୁହା, ଇଂରାଜୀରେ ତା' ନାମ ର୍‌ୟାଟ୍ ବା ମାଉସ୍ । ପ୍ରତ୍ୟେକ ପଦାର୍ଥ ଓ ପ୍ରତ୍ୟେକ ବୃକ୍ଷ ଓ ପ୍ରତ୍ୟେକ ପ୍ରାଣୀ ମଧ୍ୟ ତାଙ୍କର ଜନ୍ମରୁ ବିଭିନ୍ନ ଗୁଣ ଧରି ଜନ୍ମ ହୁଅନ୍ତି । ବାଘ ମାଂସାଶୀ କିନ୍ତୁ ହାତୀ ନିରାମିଷାଶୀ । ଆଖୁଗଛ ଜନ୍ମରୁ ମିଠା । ମାତ୍ର ନିମ୍ବଗଛ ଜନ୍ମରୁ ପିତା ।

ଏହି ସୂତ୍ର ଧରି ଆମର ମହାଜ୍ଞାନୀ ଚାଣକ୍ୟ ପଣ୍ଡିତେ ମଣିଷ ସଂପର୍କରେ ଗୋଟିଏ ଶ୍ଳୋକ ଲେଖିଛନ୍ତି ।

**ଦାତୃତ୍ୱଂ ପ୍ରିୟବକ୍ତୃତ୍ୱଂ ଧୀରତ୍ୱମୁଚିତଜ୍ଞତା ।**
**ଅଭ୍ୟାସେନ ନ ଲଭ୍ୟନ୍ତେ ଚତ୍ୱାରଃ ସହଜା ଗୁଣାଃ ।। (୭/୧)**

ଅର୍ଥାତ୍, ଉଦାରତା, ପ୍ରିୟଭାଷଣ, ଧୀରତା ଓ ସମୁଚିତ ବିଷୟ ଜ୍ଞାନ, ଏହି ଚାରୋଟି ସଦ୍‌ଗୁଣ କେହି ମଣିଷ ଶିକ୍ଷା ବା ଅଭ୍ୟାସ ଦ୍ୱାରା ଲାଭ କରି ନ ଥାଏ । ଏଗୁଡ଼ିକ ମଣିଷର ସହଜାତ ଗୁଣ ।

ପାଠକେ ! ମହାପ୍ରାଜ୍ଞ ଚାଣକ୍ୟଙ୍କର ଏହି ସିଦ୍ଧାନ୍ତ କେତେକାଂଶରେ ଠିକ୍ ହୋଇପାରେ । ମାତ୍ର ଆମେ ଏ ସିଦ୍ଧାନ୍ତସହ ସଂପୂର୍ଣ୍ଣ ଏକମତ ହୋଇପାରୁ ନାହୁଁ । ଏ କଥା ସତ ଯେ, ଅନ୍ୟ ପ୍ରାଣୀଙ୍କ ପରି ମଣିଷ ମଧ୍ୟ କେତେକ ସହଜାତ ପ୍ରବୃତ୍ତି ନେଇ ଜନ୍ମ ହୋଇଛି । ଆହାର, ନିଦ୍ରା, ଭୟ, ମୈଥୁନ ଏ ଚାରୋଟି ପ୍ରବୃତ୍ତି ଅନ୍ୟ ପ୍ରାଣୀଙ୍କର ଯେମିତି ସହଜାତ, ମଣିଷର ମଧ୍ୟ ସେମିତି ସହଜାତ । କିନ୍ତୁ ମନୁଷ୍ୟ ତା' ପ୍ରକୃତିରେ ଆଉ କେତେକ ସଦ୍‌ଗୁଣର ବୀଜ ଧରି ମଧ୍ୟ ଜନ୍ମ ହୋଇଛି । ଯଥା, ଅଧିକ ଜ୍ଞାନ ପାଇଁ ସ୍ପୃହା, ନିଜେ କିଛି ସୃଷ୍ଟି କରିବା ପାଇଁ ଇଚ୍ଛା, ଏକ ଉଚ୍ଚତର ଜୀବନ ବଂଚିବା ପାଇଁ ଆଗ୍ରହ, ନିଜର ଓ ବାହ୍ୟ ପ୍ରକୃତିର ଅଧୀନତା ସ୍ୱୀକାର ନ କରି ସ୍ୱାଧୀନ ଭାବେ ଓ ନିରଙ୍କୁଶ ଭାବେ ବଂଚିବା ପାଇଁ କାମନା। ପରିସ୍ଥିତିର ବନ୍ଧନ ଭିତରୁ ମୁକ୍ତ ହେବାକୁ ବ୍ୟାକୁଳତା, ଶ୍ରେୟ ଓ ପ୍ରେୟ, ଉଚିତ ଅନୁଚିତ, ପବିତ୍ର ଅପବିତ୍ର, ଅଧଃପତନ ଓ ଉର୍ଦ୍ଧ୍ୱଗମନର ଗୁଣାଗୁଣ ବୁଝିବାର ଶକ୍ତି ଇତ୍ୟାଦି ବହୁ ସଦ୍‌ଗୁଣ ମଧ୍ୟ ସେ ଜନ୍ମରୁ ଲାଭ କରିଛି । ମଣିଷ ଜନ୍ମ ବେଳେ ଯାହା ଯେତିକି ଥିଲା, ସେଥିରୁ ଅଧିକ ହେବାକୁ ଚାହେଁ । ଏବଂ ତାହା ଶିକ୍ଷା କରିବାକୁ ଇଚ୍ଛା କରେ ଓ ଚେଷ୍ଟା ମଧ୍ୟ କରେ । ସେ ମଧ୍ୟ ଶ୍ରେୟ ପ୍ରେୟ ସମ୍ବନ୍ଧେ ଜ୍ଞାନ ଅର୍ଜନ କରି ତଦନୁଯାୟୀ ବଂଚିବାକୁ ଚାହେଁ । ଧରାଯାଉ, ଯୌନପ୍ରବୃତ୍ତି ତା' ପ୍ରକୃତିରେ ଥିଲେ ବି, ସେ ସେଥିରେ ସଂଯମ ମଧ୍ୟ ଅବଲମ୍ବନ କରିପାରେ । ଅନ୍ୟ ପ୍ରାଣୀଙ୍କ ପରି ତାକୁ ମଧ୍ୟ କ୍ଷୁଧା ହୁଏ । ମାତ୍ର ସେ ଖାଦ୍ୟ ଅଖାଦ୍ୟ ବିଚାର କରିପାରେ ଏବଂ ଅନେକ ସମୟରେ ମଧ୍ୟ ସେ ନିଜପାଇଁ ରଖିଥିବା ଖାଦ୍ୟ ପଦାର୍ଥ ନିଜେ ନ ଖାଇ ଅନ୍ୟ ଜଣେ କ୍ଷୁଧାର୍ତ୍ତ ଲୋକ ପ୍ରତି ଦୟା ପରବଶ ହୋଇ ନିଜର ଖାଦ୍ୟତକ ତାକୁ ଦାନ କରିଦେଇପାରେ ।

ତେବେ ଏକଥା ସତ ଯେ ସବୁ ମଣିଷ ଏହା କରିପାରନ୍ତି ନାହିଁ । ମାତ୍ର ସଦ୍‌ଶିକ୍ଷା ଦ୍ୱାରା ଏଇ ସବୁ ଭଲ ଗୁଣଗୁଡ଼ିକ ମଣିଷ ଆୟତ୍ତ କରିପାରେ । ତେବେ ଏକଥା ସତ ଯେ, ଆମ ଭିତରୁ ସବୁ ମଣିଷ, ବିବେକାନନ୍ଦ, ଗାନ୍ଧି, ଗୋପବନ୍ଧୁ, ମଦର ଟେରେସା, କି ରବୀନ୍ଦ୍ରନାଥ ହୋଇ ନ ପାରନ୍ତି । ମାତ୍ର ମଣିଷ ତା'ର ଶିକ୍ଷାଦ୍ୱାରା, ଅଭୀପ୍ସା ଦ୍ୱାରା, ଅଭ୍ୟାସ ଦ୍ୱାରା ତା'ର ବଦ୍‌ଗୁଣଗୁଡ଼ିକରୁ ମୁକ୍ତି ପାଇପାରେ ଓ ଅନେକ ସଦ୍‌ଗୁଣ ମଧ୍ୟ ଆୟତ୍ତ କରିପାରେ । ଦସ୍ୟୁ ରତ୍ନାକର ତ ପୁଣି ଋଷିକବି ବାଲ୍ମୀକି ହେଲେ । ସାଧାରଣ ଗଣିତ ପରୀକ୍ଷାରେ ଫେଲ୍ ହେଉଥିବା ପିଲାଟି ତ ଦିନେ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ ହେଲେ ।

ଆମ ଭଳି ସାଧାରଣ ଲୋକଟିଏ ଗାନ୍ଧି କି ଗୋପବନ୍ଧୁ ନ ହୋଇପାରନ୍ତି । ମାତ୍ର ଆମେ ଯଦି ସେହି ମହାପୁରୁଷମାନଙ୍କ ସଦ୍‌ଗୁଣଗୁଡ଼ିକ ଅର୍ଜନ କରିବାକୁ ଇଚ୍ଛା

କରୁ ଓ ସେଗୁଡ଼ିକୁ ନିଜ ଜୀବନରେ ପ୍ରୟୋଗ କରୁ, ତେବେ କେତେ ପରିମାଣରେ ଯେ, ଆମ ଭଳି ସାଧାରଣ ଲୋକଙ୍କର ପ୍ରକୃତିର ଉନ୍ନତି ନ ହେବ, ତାହା ନୁହେଁ ।

ତେଣୁ ଶିକ୍ଷା ଦ୍ୱାରା ଓ ନିଜର ଦୃଢ଼ ଇଚ୍ଛା ବା ଅଭୀପ୍ସା ଦ୍ୱାରା ମଣିଷ ନିଜକୁ ସାଧାରଣ ସ୍ତରରୁ କେତେ ପରିମାଣରେ ଉପରକୁ ଉଠାଇପାରେ । ମଣିଷର ମାନସିକ ସଂକୀର୍ଣ୍ଣତାର ଜାଲକୁ ମଣିଷ ନିଜେ ଛିଣ୍ଡାଇପାରେ ଓ ମୁକ୍ତ ଉଦାର ହୋଇପାରେ । ଚଂଚଳଚିତ୍ତ ବ୍ୟକ୍ତି ବହୁ ପରିମାଣରେ ସ୍ଥିରଚିତ୍ତ ହୋଇପାରେ । ଉତ୍ତମ ବାକ୍ୟ ବା ମଧୁର, ବାକ୍ୟ କହୁ ନ ଥିବା ମଣିଷ ମଧ ଇଚ୍ଛା କଲେ କେତେ ପରିମାଣରେ ମଧୁରଭାଷୀ ହୋଇପାରେ ।

ଶେଷରେ ଆମର କହିବା କଥା ହେଲା, ସବୁ ମଣିଷ ଭିତରେ ଏପରି ଏକ ମାନବୀୟ ଶକ୍ତି ନିହିତ ଅଛି, ଯାହା ସେ ଜନ୍ମଗତ ଭାବେ ଅଳ୍ପେ ବହୁତେ ପାଇଛି, ତାହା ଫଳରେ ସେ ନିଜ ଜୀବନରେ ବହୁ ସଦ୍‌ଗୁଣ ଅର୍ଜନ କରିପାରେ ଓ ନିଜ ଜୀବନରେ ମଧ ସେଗୁଡ଼ିକୁ ପ୍ରୟୋଗ କରିପାରେ । ମଣିଷକୁ ଇତର ପ୍ରାଣୀଙ୍କ ସହ ସମାନ ଭାବିବା ଠିକ୍ ନୁହେଁ। ମହାମତି ଚାଣକ୍ୟ ମଣିଷକୁ ଏତେ ସୀମିତ ବୋଲି ଭାବିବା ଠିକ୍ ନୁହେଁ ବୋଲି ଆମେ ବିନୟର ସହିତ ଭାବୁଛୁ ।



# ୧୧୦. ଆକୃତିର ବିଶାଳତା କି ପ୍ରକୃତିନିହିତ ତେଜ ?

**ହସ୍ତୀ ସ୍ଥୂଳତନୁଃ ସାଚାଙ୍କୁଶବଶଃ କିଂ ହସ୍ତିମାତ୍ରୋଽଙ୍କୁଶୋ**
**ଦୀପେ ପ୍ରଜ୍ୱଳିତେ ପ୍ରଣଶ୍ୟତି ତମଃ କି ଦୀପମାତ୍ରଂ ତମଃ।**
**ବଜ୍ରେଣାପି ହତାଃ ପତନ୍ତି ଗିରୟଃ କିଂ ବଜ୍ରମାତ୍ରଂ ଗିରିମ୍**
**ତେଜ ଯସ୍ୟ ବିରାଜତେ ସ ବଳବାନ୍ ସ୍ଥୂଳେଷୁ କଃ ପ୍ରତ୍ୟୟଃ ।। (୧୧/୩)**

ପାଠକେ ! ଆପଣ ନିଶ୍ଚୟ ଉପରିଲିଖିତ ମହାମତି ଚାଣକ୍ୟଙ୍କ କୃତ ଶ୍ଲୋକଟିକୁ ପାଠ କରି ବୁଝିପାରୁଥିବେ । ଶ୍ଲୋକଟିର ସରଳ ବ୍ୟାଖ୍ୟା ହେଲା, ହାତୀର ଶରୀର ସବୁ ପ୍ରାଣୀଙ୍କଠାରୁ ବିଶାଳ । ତଥାପି ସେ ମାହୁନ୍ତର ଅଙ୍କୁଶକୁ ଡରି ବଶୀଭୂତ ହୋଇଥାଏ । ଅନ୍ଧାରିଆ ଜାଗାରେ ଦୀପଟିଏ ଜାଳିଦେଲେ ଅନ୍ଧକାର ଦୂରୀଭୂତ ହୋଇଯାଏ। ପର୍ବତ ଉପରେ ବଜ୍ରାଘାତ ହେଲେ ପର୍ବତ ବିଦୀର୍ଣ୍ଣ ହୋଇଯାଏ ।

ତେବେ ଏଥିରୁ କ'ଣ ଆମେ ବୁଝିବା ଯେ, ମାହୁନ୍ତ-ଧୃତ ଅଙ୍କୁଶଟି ହାତୀସଦୃଶ ବିଶାଳ? ପ୍ରଜ୍ୱଳିତ ଦୀପଟିଏ କ'ଣ ଅନ୍ଧକାର ସଦୃଶ? ବଜ୍ର କ'ଣ ପର୍ବତଠାରୁ ବିଶାଳ? ଆଦୌ ନୁହେଁ। ତେବେ ଏଇ ସବୁ ଉଦାହରଣରୁ ଜଣାପଡୁଛି ଯେ ଆକୃତିର ବିଶାଳତା ବଡ଼ କଥା ନୁହଁ। ତେଜ ହିଁ ବଡ଼ କଥା। ଏହି 'ତେଜ' ହେଉଛି ଶକ୍ତି ବା ବଳ ଜ୍ଞାନ, ଗୁଣ ଓ ମର୍ଯ୍ୟାଦାଦି ସଦ୍‌ଗୁଣ। ଏହି 'ତେଜ' ଆଗରେ ଆକୃତିର ବିଶାଳତା ବଡ଼ କଥା ନୁହଁ। ଗୁଣୀ ବ୍ୟକ୍ତି ଆକୃତିରେ ସାନ ହେଲେ ବି ବହୁ ଡେଙ୍ଗାଲୋକଙ୍କ ଦ୍ୱାରା ପୂଜା ପାଆନ୍ତି ଓ ସମ୍ମାନିତ ହୁଅନ୍ତି। ସେହପରି ଜଣେ କ୍ଷମତାଶାଳୀ ବ୍ୟକ୍ତି ମଧ୍ୟ ଆକୃତିରେ ସାନ ହେଲେ ବି ତାଙ୍କଠାରୁ ଡେଙ୍ଗା ଲୋକଙ୍କୁ ଶାସନାଧୀନ କରି ରଖିପାରନ୍ତି। ଶୁଣାଯାଏ, ଫ୍ରାନ୍ସ ଦେଶର ମହାବୀର ନେପୋଲିଅନ ବୋନାପାର୍ଟ ଗେଡ଼ା ଲୋକଟିଏ ଥିଲେ। ମାତ୍ର ସେ ଏକ ବିଶାଳ ସେନାବାହିନୀର ନାୟକ ଥିଲେ ଓ ୟୁରୋପରେ ମହାଭୀତି ସଂଚାର କରିପାରିଥିଲେ। ତା'ର କାରଣ, ନେପୋଲିଅନ ତାଙ୍କର ବ୍ୟକ୍ତିତ୍ୱରେ ଖୁବ୍ ତେଜୀୟାନ୍ ଥିଲେ ଓ ସେହି ତେଜ ଯୋଗୁଁ ସମସ୍ତେ ତାଙ୍କୁ ଭୟ କରୁଥିଲେ।

ଏକଦା ଆମ ଦେଶର ପ୍ରଧାନମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରିଜୀ ତାଙ୍କ ଶାସନ କାଳ ମଧ୍ୟରେ ଦେଶ ଭିତରେ ଓ ଦେଶ ବାହାରେ ଖୁବ୍ ପ୍ରତିଷ୍ଠା ଲାଭ କରିଥିଲେ । ଦେଶ ଭିତରେ ତାଙ୍କ ଶାସନକାଳରେ ଶାନ୍ତିଶୃଙ୍ଖଳା ସୁପ୍ରତିଷ୍ଠ ଥିଲା ଏବଂ ସାରା ପୃଥିବୀରେ ମଧ୍ୟ ସବୁ ଦେଶରେ ସେ ଭାରତର ମହିମା, ମର୍ଯ୍ୟାଦା ଓ ଶକ୍ତିର ପରାକାଷ୍ଠା ପ୍ରମାଣିତ କରି ଦେଇଥିଲେ । ଅଥଚ ଶାସ୍ତ୍ରିଜୀ ଥିଲେ ମାତ୍ର ଚାରିଫୁଟ ଆଠଇଞ୍ଚ ଲମ୍ବ ଏକ କ୍ଷୁଦ୍ରକାୟ ଶରୀରର ଅଧିକାରୀ । ତାଙ୍କ ସମୟରେ ଦେଶର ସାମରିକ ଶକ୍ତି ଖୁବ୍ ବୃଦ୍ଧି ପାଇଥିଲା ଏବଂ କୃଷି ଉତ୍ପାଦନରେ ମଧ୍ୟ ଦେଶ ଖୁବ୍ ସମୃଦ୍ଧ ହୋଇଥିଲା । ତା'ର କାରଣ - ସେ 'ଜୟ ଜବାନ୍' - 'ଜୟ କିସାନ' ବୋଲି ଦୁଇଟି ସ୍ଲୋଗାନ୍ ଦେଶସାରା ନିନାଦିତ କରିଥିଲେ । ସବୁଠାରୁ ବଳଶାଳୀ ଓ ଧନଶାଳୀ ଦେଶ ଆମେରିକା ମଧ୍ୟ ଶାସ୍ତ୍ରୀଙ୍କୁ ବିଶ୍ୱର ମହାନ୍ ଶକ୍ତିଶାଳୀ ପୁରୁଷ ଓ ପ୍ରଧାନମନ୍ତ୍ରୀ ବୋଲି ସ୍ୱୀକାର କରିଥିଲା ।

ପାଠକେ! ଏବେ ଆପଣ ଆମ ଦେଶର ଜାତୀୟ ପିତା ମହାତ୍ମା ଗାନ୍ଧିଙ୍କ କଥା ଭାବନ୍ତୁ। ତାଙ୍କ ଛବିଟିକୁ ସ୍ମରଣକୁ ଆଣନ୍ତୁ। ସ୍ମରଣ କରନ୍ତୁ, ସେହି ଶୀର୍ଣ୍ଣକାୟ କଙ୍କାଳସାର ଚନ୍ଦା ମଣିଷଟି, ସେଇ ଆଣ୍ଠୁ ଲୁଚୁ ନ ଥିବା ଧୋତିପିନ୍ଧା ମଣିଷଟିକୁ; ବେଳେବେଳେ ଛୋଟ ଚାଦରଟିଏ କାନ୍ଧରେ ପକାଇ, ହାତରେ ବାଉଁଶ ବାଡ଼ିଟିଏ ଧରି କୋଟି କୋଟି ଭାରତୀୟଙ୍କୁ ନେତୃତ୍ୱ ଦେଉଥିବା ଲୋକଟିକୁ। ଯାହାକୁ ସାରା

ପୃଥିବୀ ମହାତ୍ମା ବୋଲି ସ୍ୱୀକାର କରିଥିଲା ଏବଂ ଯାହାଙ୍କର ଅହିଂସା ଆନ୍ଦୋଳନରେ ବ୍ରିଟିଶସିଂହ ଭାରତ ଛାଡ଼ି ପଳାଇଥିଲା - ସେକାଳର ଚର୍ଚ୍ଚିଲ, ହିଟଲର, ମୁସୋଲିନ୍, ଷ୍ଟାଲିନ ପ୍ରମୁଖ ରାଷ୍ଟ୍ରନାୟକମାନେ ତାଙ୍କ ମହିମା ମର୍ଯ୍ୟାଦା ଓ ଶକ୍ତିକୁ ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲେ।

ତେଣୁ ଆମେ ଚାଣକ୍ୟଙ୍କ ସହିତ ସଂପୂର୍ଣ୍ଣ ଏକମତ ଯେ, ଆକୃତିର ବିଶାଳତା ବଡ଼ କଥା ନୁହଁ, ଭିତରର 'ତେଜ' ହିଁ ବଡ଼ କଥା । ଏହି ତେଜ ଚାରିତ୍ରିକ ସଦ୍‌ଗୁଣ ହୋଇପାରେ, ସତ୍‌କର୍ମର ପ୍ରଭାବ ହୋଇପାରେ ବା ବିକଶିତ ଆତ୍ମାର ତେଜୀୟାନ୍ ମର୍ଯ୍ୟାଦା ହୋଇପାରେ ।

ପାଠକେ ! ଆପଣ ପୁରାଣକଥିତ ଭଗବାନ୍‌ଙ୍କର ବାମନାବତାର କଥା ଭାବନ୍ତୁ ତ ! ଭକ୍ତ ପ୍ରବର ପ୍ରହ୍ଲାଦଙ୍କର ନାତି ଅସୁରରାଜ ବଳୀଙ୍କର ଦାନ-ଗର୍ବକୁ ଖଣ୍ଡନ କରିବା ପାଇଁ ଭଗବାନ୍ ବିଷ୍ଣୁ ବାମନ ବ୍ରାହ୍ମଣଟିଏ ରୂପରେ ଆସି ରାଜା ବଳୀଙ୍କୁ ମାତ୍ର ତାଙ୍କ ପାଦରେ ତିନିପାଦ ଭୂମି ଦାନ ମାଗିଲେ। ରାଜା ବଳି ସେଥିରେ ସମ୍ମତହୋଇ ଦେଖିଲେ ସେହି ବାମନ ବ୍ରାହ୍ମଣଟିର ଦୁଇଟିଯାକ ପାଦ ସ୍ୱର୍ଗ ଓ ମର୍ତ୍ତ୍ୟକୁ ବିସ୍ତାରିଗଲା। ତୃତୀୟ ପାଦ ଭୂମି କାହିଁ ବୋଲି ବାମନ ପ୍ରଶ୍ନ କଲାରୁ ବଳୀ ନିଜ ମସ୍ତକକୁ ତାଙ୍କ ପାଦତଳେ ରଖିଦେଲେ। ବାମନରୂପୀ ବିଷ୍ଣୁ ତାଙ୍କ ମସ୍ତକରେ ନିଜ ପାଦ ରଖି ତାଙ୍କୁ ପାତାଳକୁ ଚାପି ଦେଲେ ଏବଂ ପରେ ବିଷ୍ଣୁ ପାତାଳରେ ଏକ ନୂତନ ସ୍ୱର୍ଗ ସୃଷ୍ଟିକରି ସେଠାରେ ଏକ ଦିବ୍ୟନୀତି ପ୍ରତିଷ୍ଠା କଲେ। ଏବଂ ବଳୀଙ୍କୁ ସେହି ନୂତନ ସ୍ୱର୍ଗର ନୂତନ ଇନ୍ଦ୍ରପଦରେ ଅଭିଷିକ୍ତ କଲେ।

ପାଠକେ ! ଏବେ ଆପଣ ନିଶ୍ଚୟ ହୃଦୟଙ୍ଗମ କରିସାରିବେଣି ଯେ, ଆକୃତିର ବିଶାଳତା ବଡ଼ କଥା ନୁହଁ। ଆମ ପ୍ରକୃତି ଭିତରେ ନିହିତ ଥିବା 'ତେଜ' ହିଁ ବଡ଼ କଥା। ଏହି ତେଜ ଆମର ନୈତିକ ଗୁଣରାଶି ହୋଇପାରେ ବା ଆମର ସୃଜନଶୀଳ ପ୍ରତିଭା ହୋଇପାରେ ବା ଆମର ମହତ୍ କର୍ମରାଶି ହୋଇପାରେ'। ମୋଟ ଉପରେ ତେଜସ୍ୱୀ ବ୍ୟକ୍ତିର ତେଜ ତା'ର ଅନ୍ତର୍ନିହିତ ଶକ୍ତି, ସାମର୍ଥ୍ୟ ଓ ପ୍ରତିଭା ବୋଲି ବୁଝିବାକୁ ହେବ ଏବଂ ତା'ର ଶୁଦ୍ଧ ଚରିତ୍ରକୁ ମଧ୍ୟ ବୁଝିବାକୁ ହେବ। କିନ୍ତୁ ଏହି 'ତେଜ'କୁ ରକ୍ଷା କରିବା ବଡ଼ କଷ୍ଟସାଧ୍ୟ ବ୍ୟାପାର। ବେଳେ ବେଳେ ତେଜୀୟାନ୍ ସୂର୍ଯ୍ୟଙ୍କୁ ମଧ୍ୟ କଳାମେଘ ଘୋଡ଼ାଇ ପକାଏ। ମାତ୍ର ତାହା କିଛିସମୟ ଲାଗି। ରାହୁ କେତୁ ମଧ୍ୟ ଚନ୍ଦ୍ର ସୂର୍ଯ୍ୟଙ୍କ ତେଜକୁ କିଛି ସମୟ ପାଇଁ ଗ୍ରାସ କରିପକାନ୍ତି। ମାତ୍ର ତାହା ମଧ୍ୟ ଅଳ୍ପକ୍ଷଣ ପାଇଁ।

ଅସଲ କଥା ହେଲା; ଯଥାର୍ଥ ତେଜସ୍ୱୀ ମଣିଷର ତେଜକୁ କେହି ସବୁ ସମୟ ପାଇଁ ଲିଭାଇ ଦେଇପାରିବ ନାହିଁ; ମାତ୍ର ତେଜସ୍ୱୀ ବ୍ୟକ୍ତି ନିଜ ଦୁଷ୍କର୍ମରୁ ଆପଣା ତେଜ ହରାଇଥାଏ। କବିବର ରାଧାନାଥଙ୍କ 'ଚନ୍ଦ୍ରଭାଗା' କାବ୍ୟ ବର୍ଣ୍ଣିତ ତେଜସ୍ୱୀ ସୂର୍ଯ୍ୟଦେବ -କନ୍ଦର୍ପର ଫୁଲଶରରେ ବିଦ୍ଧହୋଇ ଚନ୍ଦ୍ରଭାଗା ନାମ୍ନୀ ସୁନ୍ଦରୀ ବାଳିକାଟି ପାଖରେ ନିଜର ତେଜ ହରାଇଥିଲେ। ଏହାଠାରୁ ଦୁର୍ଭାଗ୍ୟର କଥା ଆଉ ଅଛିକି ?



# ୧୧୧. କେଉଁଠି ଥାଏ ବିଦ୍ୟା, ଦୟା, ସତ୍ୟତା ଓ ପବିତ୍ରତା ?

**ଗୃହାଽଽସକ୍ତସ୍ୟ ନୋ ବିଦ୍ୟା ନୋ ଦୟା ମାଂସଭୋଜିନଃ ।**
**ଦ୍ରବ୍ୟଲୁବ୍ଧସ୍ୟ ନୋ ସତ୍ୟଂ ସ୍ତ୍ରୈଣସ୍ୟ ନ ପବିତ୍ରତା ! (୧୧/୧୫)**

ମହାମତି ଚାଣକ୍ୟ ଏହି ଶ୍ଳୋକଟିରେ ମଣିଷ ପ୍ରକୃତିର ବିଶ୍ଳେଷଣ କରି ନୈତିକତା ଦୃଷ୍ଟିରୁ କେତୋଟି ସତ୍ୟ ଆବିଷ୍କାର କରିଛନ୍ତି । ଏହି ଶ୍ଳୋକଟିର ସାଧାରଣ ଅର୍ଥ ହେଲା, ଯେଉଁ ଛାତ୍ର ବା ଶିଷ୍ୟ ସର୍ବଦା ତା'ର ପରିବାର ପ୍ରତି ଆସକ୍ତ ଥାଏ ଏବଂ ଘରୁ ବାହାରିବାକୁ ଇଚ୍ଛା କରୁ ନ ଥାଏ, ସେ କ'ଣ କେବେ କୌଣସି ବିଦ୍ୟା ଶିଖି ପାରିବ ? ସେ କୌଣସି ଜ୍ଞାନ ମଧ୍ୟ ଅର୍ଜନ କରିପାରିବ ନାହିଁ ।

ଯେଉଁ ଲୋକ ପ୍ରାଣୀ-ମାସଂଭୋଜୀ, ତା' ହୃଦୟରେ ଦୟାଭାବ କିପରି ଆସିବ ? ଯେଉଁ ଲୋକର ସବୁ ଦ୍ରବ୍ୟ ପ୍ରତି ଲୋଭାସକ୍ତି ଥାଏ ତା' ପ୍ରକୃତିରେ ସତ୍ୟଭାବ କିପରି ଆସିବ ? ଏବଂ ଶେଷରେ ଯେଉଁ ପୁରୁଷ ସ୍ତ୍ରୈଣ, ଅର୍ଥାତ ଯେଉଁ ପୁରୁଷ ସର୍ବଦା ନାରୀବଶ ହୋଇଥାଏ, ସର୍ବଦା ନାରୀ ସମ୍ଭୋଗ ଲାଳସାରେ ଘାରି ହେଉଥାଏ, ତା' ପ୍ରକୃତିରେ ପବିତ୍ର ଭାବ କୋଉଠୁ ଆସିବ ?

ପାଠକେ ! ଏହି ଶ୍ଳୋକରେ ଚାଣକ୍ୟ ଗୋଟିଏ ଗଭୀର ସତ୍ୟକୁ ପରୋକ୍ଷ ବାକ୍ୟଶୈଳୀରେ ପ୍ରକାଶ କରିଛନ୍ତି ।

ଏହି ଶ୍ଳୋକଟିର ମର୍ମାର୍ଥକୁ ଆଉ ଏକ ପ୍ରତ୍ୟକ୍ଷ ବାକ୍‌ଶୈଳୀରେ ମଧ୍ୟ ପ୍ରକାଶ କରିହେବ। ତା' ହେଲା, ଯଦି କୌଣସି ବ୍ୟକ୍ତି ବା ଛାତ୍ରଛାତ୍ରୀ କିଛି ବିଦ୍ୟା ଅର୍ଜନ କରିବାକୁ ଚାହୁଁଥାନ୍ତି, କିଂବା କୌଣସି ଜ୍ଞାନ ଅର୍ଜନ କରିବାକୁ ଚାହୁଁଥାନ୍ତି, ତେବେ ତାଙ୍କୁ ଗୃହ ପରିବାରଠାରୁ ଆସକ୍ତି ବର୍ଜନ କରିବାକୁ ହେବ। ବିଦ୍ୟାର୍ଥୀ ବ୍ୟକ୍ତିଙ୍କୁ

ବିଦ୍ୟାର୍ଜନ କରିବା ପାଇଁ ଗୃହଛାଡ଼ି ବିଦେଶ ଯିବାକୁ ପଡ଼ିଥାଏ। କାରଣ, ସବୁ ପ୍ରକାର ବିଦ୍ୟା ସବୁ ଜାଗାରେ ଶିଖିବାକୁ ମିଳି ନ ଥାଏ। ସବୁ ବିଦ୍ୟାଳୟରେ ସବୁ ପ୍ରକାର ବିଦ୍ୟା ଶିଖିବାର ବ୍ୟବସ୍ଥା ନ ଥାଏ। ତେଣୁ ଶିକ୍ଷାର୍ଥୀମାନଙ୍କୁ ଘର ଛାଡ଼ି ଅନ୍ୟ ସ୍ଥାନକୁ ଯିବାକୁ ପଡ଼ିଥାଏ। ଘରେ ମୁହଁମାଡ଼ି ପଡ଼ିଲେ ବା ଗୃହତ୍ୟାଗ କରି ଅନ୍ୟ ରାଜ୍ୟକୁ ନ ଗଲେ କେହି ତା'ର ବାଂଛିତ ବିଦ୍ୟା ଅର୍ଜନ କରିପାରିବ ନାହିଁ।

ସେହିପରି 'ଦୟା' ବା 'କରୁଣା' ବା 'ସହାନୁଭୂତି' ପ୍ରଭୃତି ସଦ୍‌ଗୁଣ କୋଉ ମଣିଷ ପ୍ରକୃତିରେ ଓ ଆଚରଣରେ ସମ୍ଭବ ହେବ। ପ୍ରଥମ କଥା ହେଲା, ଯେଉଁ ଲୋକ ମାଂସାହାରୀ ନୁହଁ ଅନ୍ୟ ଜୀବକୁ ମାରି ତା'ର ମାଂସ ଖାଇବା ଓ ସେହି ମାଂସ ଖାଇବା ପ୍ରତି ସବୁବେଳେ ଲୋଭାତୁର ହୋଇ ରହିବା, ଏ ସବୁ ମଣିଷକୁ ହିଂସ୍ରଜନ୍ତୁରେ ପରିଣତ କରେ। ଅନ୍ୟ ଜୀବକୁ ମାରି ତା'ର ମାଂସ ଖାଇବା ଦ୍ୱାରା ମଣିଷ ହୃଦୟରୁ ଦୟାଭାବ ଲୋପପାଇଯାଏ। ତେଣୁ ମଣିଷ ଶାକାହାରୀ ହେବା ଉଚିତ ବୋଲି ମହାମତି ଚାଣକ୍ୟ କହୁଛନ୍ତି। ଜନ୍ତୁମାନେ ଅନ୍ୟ ଦୁର୍ବଳ ଜନ୍ତୁକୁ ମାରି ଖା'ନ୍ତି। କିନ୍ତୁ ସେମାନଙ୍କ ପାଇଁ ପ୍ରକୃତି ଅନ୍ୟ ବ୍ୟବସ୍ଥା କରିନାହିଁ। ଗୋରୁଗାଈ ବା ଛେଳିମେଣ୍ଢା, ଠେକୁଆ ହରିଣାଦି ପ୍ରାଣୀ ଅନ୍ୟ ଦୁର୍ବଳ ପ୍ରାଣୀକୁ ମାରିଖାନ୍ତି ନାହିଁ। ସେମାନେ ଜନ୍ମରୁ ଶାକାହାରୀ; ଘାସ, ପତ୍ର, ଫଳମୂଳ ଖାଇ ବଂଚନ୍ତି। ମାତ୍ର ବାଘ, ଭାଲୁ, ସିଂହ, ହେଟା, ଗଧିଆ ସର୍ପ; ଆଦି ପ୍ରାଣୀ ଅନ୍ୟ ଦୁର୍ବଳ ପ୍ରାଣୀଙ୍କୁ ମାରି ଖା'ନ୍ତି। କାରଣ ପ୍ରକୃତି ସେମାନଙ୍କୁ ସେହିପରି ଗଢ଼ିଛି। ସେମାନେ କେବେ ଫଳମୂଳ, ଘାସ ଖାଇପାରିବେ ନାହିଁ।

ମାତ୍ର ସବୁ ପ୍ରାଣୀଙ୍କ ଭିତରେ ମନୁଷ୍ୟକୁ ଶ୍ରେଷ୍ଠ ବୋଲି କୁହାଯାଇଛି। ତା' ମନରେ ବୁଦ୍ଧି ବେଶି ଓ ସେ ମଧ ବିବେକୀ, ଭଲମନ୍ଦ ବିଚାର କରିପାରେ। ଦିବ୍ୟ ଅଦିବ୍ୟ ଭିତରେ ଭେଦ ବୁଝିପାରେ। ମଣିଷ ଭିତରେ ଯଦିଓ ଗୋଟିଏ ପ୍ରାଣୀ ଅଛି ତା' ଭିତରେ ମଧ ଦିବ୍ୟଭାବ ରହିଛି। ଆମ ଭିତରେ ବହୁ ମନୁଷ୍ୟ ମାଛ, ମାଂସ, ଖାଆନ୍ତି ନାହିଁ। ସେମାନଙ୍କ ହୃଦୟ ଦୟା କରୁଣାରେ ପରିପୂର୍ଣ୍ଣ। ତେଣୁ ଚାଣକ୍ୟ ପଣ୍ଡିତେ କହନ୍ତି, ଯଦି ତୁମେ ଦୟା କରୁଣାଦି ଦିବ୍ୟଗୁଣର ଅଧିକାରୀ ହେବାକୁ ଚାହଁ, ତେବେ ଆମିଷ ଖାଦ୍ୟ ତ୍ୟାଗକର।

ଆଉ ଗୋଟିଏ ସତ୍ୟ ହେଲା, ଯୋଉ ମଣିଷଭିତରେ ସବୁଦ୍ରବ୍ୟପ୍ରତି ଲୋଭ ଅଛି, ଯେଉଁ ଲୋକ ସବୁବେଳେ ବିଭିନ୍ନ ପ୍ରକାର ଅଧିକାରୀ ହେବାକୁ ଚାହେଁ ତା' ଭିତରେ ସତ୍ୟ ଭାବ କିପରି ଆସିବ ? କାରଣ, ଲୋଭ ମଣିଷକୁ ସତ୍ୟପଥରୁ ଅସତ୍ୟପଥକୁ ଟାଣିନିଏ । ମଣିଷ ଏହି ଦ୍ରବ୍ୟଲୋଭରେ ପଡ଼ି ଅନ୍ୟଦ୍ରବ୍ୟକୁ ତା'

ଠାରୁ ଲୁଣ୍ଠନ କରେ - ଚୋରି ରାହାଜାନି କରେ । ହତ୍ୟା ମଧ କରେ । ଯେ ଧନ ଲୋଭୀ ସେ ଯେ କୌଣସି ଉପାୟରେ ଧନୀ ହେବାକୁ ଚାହେଁ । ତା'ର ସତ୍ୟ ଅସତ୍ୟ ଭାବ କାହୁଁ ଆସିବ ? ଆମ ସମାଜରେ ବର୍ତ୍ତମାନ ଚୋରା ଧନ, ଚୋରା ମାଲ କଳାଟଙ୍କା ଓ ଅନ୍ୟାୟରେ ଉପାର୍ଜିତ ଧନ ବଢ଼ିଚାଲିଛି । କିନ୍ତୁ ତା' ହେଲେ ମଧ ମଣିଷ ସୁଖରେ ରହିପାରୁନି । ମଣିଷ ଭିତରେ ପାପାଚାର ବଢ଼ିଚାଲିଛି ।

ଶେଷ କଥାଟି ହେଲା, ଯେଉଁ ପୁରୁଷମାନେ ନାରୀ ଭୋଗ ଲାଳସାରେ ବୁଡ଼ିକରି ରହିଥାନ୍ତି, ସେମାନେ ଯେ କୌଣସି ପାପ କରିପାରନ୍ତି । ଯୌନଲାଳସା ମଣିଷକୁ ଅପବିତ୍ର କରିଦିଏ । ସମାଜରେ ମଧ ନାନାଦି ବ୍ୟଭିଚାର ପ୍ରବେଶ କରେ ।

ପାଠକେ ! ଏଠାରେ ଚାଣକ୍ୟ ମହାଶୟ କେବଳ ପୁରୁଷ ସମ୍ବନ୍ଧେ କହିଛନ୍ତି। ମାତ୍ର ଏକଥା ମଧ ନାରୀ ସଂପର୍କରେ କହିହେବ। ପୁରୁଷ ହେଉନ୍ତୁ ବା ନାରୀ ହୁଅନ୍ତୁ, ଯୌନଭୋଗ ଲାଳସା ତାକୁ ବିପଥଗାମୀ କରେ ଓ ତା'ର ମନ, ପ୍ରାଣ ଓ ଶରୀର ପାପଗ୍ରସ୍ତ ହୁଏ। ଯୌନଲାଳସା ମଣିଷ ପାଇଁ ଏକ ବିକୃତ ଚେତନା। ଅନ୍ୟ ପ୍ରାଣୀମାନେ କେବଳ ସନ୍ତାନ ଉତ୍ପାଦନ ପାଇଁ ଯୌନ ସମ୍ଭୋଗ କରନ୍ତି। ଏକ ବିଶେଷ ଋତୁରେ ସେମାନଙ୍କ ଭିତରେ ଯୌନ ଉତ୍ତେଜନା ହୁଏ। ମାତ୍ର ମଣିଷର ଯୌନଭୋଗ ଲାଳସା ତା'ର ଏକ ପାପପ୍ରତି ଆକର୍ଷଣ ବୋଲି ବୁଝିବାକୁ ହେବ। ଏହି ଲାଳସା ମଣିଷକୁ ଅପବିତ୍ର କରିଦିଏ।



## ୧୧୨. କାହାର ଶବ ଶୃଗାଳର ଅଖାଦ୍ୟ

ପାଠକେ ! ସମସ୍ତେ ଜାଣନ୍ତି ଯେ, ଶୃଗାଳମାନେ ମୃତବ୍ୟକ୍ତି ମୃତପ୍ରାଣୀର ଶବ ଭକ୍ଷଣ କରନ୍ତି । ମାତ୍ର ନିମ୍ନୋକ୍ତ ଶ୍ଳୋକରେ ମହାମତି ଚାଣକ୍ୟ ଶୃଗାଳକୁ ସମ୍ବୋଧନ କରି କହୁଛନ୍ତି, ଆରେ ଶୃଗାଳ ! ତୁ ଗୋଟିଏ ମାଂସଭକ୍ଷୀ ଓ ଶବଭକ୍ଷୀ ପ୍ରାଣୀ ! ମାତ୍ର ମୁଁ ତୋତେ ସାବଧାନ କରିଦେଉଛି, ତୁ ଏହି ଲୋକମାନଙ୍କ ଶବ ଖାଇବୁ ନାହିଁ ।

**ହସ୍ତୌ ଦାନବିବର୍ଜ୍ଜିତୌ ଶ୍ରୁତିପୁଟୌ ସାରସ୍ୱତଦ୍ରୋହିଣୌ ।**
**ନେତ୍ରେ ସାଧୁବିଲୋକନେନ ରହିତେ ପାଦୌ ନ ତୀର୍ଥଙ୍ଗତୌ ॥**
ଅନ୍ୟାୟାର୍ଜ୍ଜିତବିତ୍ତପୂର୍ଣ୍ଣମୁଦରଂ ଗର୍ବେଣ ତୁଙ୍ଗଂ ଶିରୋ ।
ରେ ରେ ଜମ୍ବୁକ ମୁଂଚ ମୁଂଚ ସହସା ନିଚଂ ସୁନିନ୍ଦ୍ୟଂ ବପୁଃ ॥ (୧୨/୪)

ଏ ଶ୍ଳୋକଟିରେ ନୀତିଜ୍ଞାନବିବୁଧ ଚାଣକ୍ୟ ଗୋଟିଏ ବିଲୁଆ ଉଦ୍ଦେଶ୍ୟରେ କହୁଛନ୍ତି, ଆରେ ଶୃଗାଳ ! ତୁ ଯେକୌଣସି ପ୍ରାଣୀର ଶବ ଖାଇପାରୁ। ମାତ୍ର ଯେଉଁ ମଣିଷ ଏପରି କୃପଣ ଯେ, ଜୀବନରେ ତା'ର ହାତ କେବେ କାହାକୁ ଦାନ ଦେଇ ନାହିଁ।

ଦରିଦ୍ର ଲୋକକୁ ଦୟାରେ ଟଙ୍କାଟିଏ ବି ଦାନ କରିନି, କୌଣସି ଦେବାଳୟ, ମଠ ବା ସାଧୁସନ୍ଥ ଗୋଷ୍ଠୀଙ୍କୁ ଭକ୍ତି ଭାବରେ କିଛି ଦାନ କରିନାହିଁ, ନିଜର ଦରିଦ୍ର ବନ୍ଧୁବାନ୍ଧବଙ୍କ ବିପଦବେଳେ କିଛି ମାତ୍ର ସାହାଯ୍ୟ କରି ନାହିଁ, କ୍ଷୁଧାର୍ତ୍ତ ପଶୁପକ୍ଷୀଙ୍କୁ ଶସ୍ୟ ମୁଠାଏ ଦାନ କରି ନାହିଁ, ସେପରି କୃପଣ କର୍କଶ-ହୃଦୟ ଲୋକର ଶବ ତୁ ଆଦୌ ଛୁଇଁବୁ ନାହିଁ।

ଚାଣକ୍ୟ ପୁଣି କହୁଛନ୍ତି, ଆରେ ଶୃଗାଳ ! ତୁ କେବେହେଲେ ବି ସେଇ ମଣିଷଙ୍କ ମଡ଼ା ଖାଇବୁ ନାହିଁ, ଯେଉଁମାନେ ବେଦାଦି ଶାସ୍ତ୍ର ନିଜେ କେବେ ଅଧ୍ୟୟନ କରି ନାହାନ୍ତି, କିମ୍ବା କାନରେ ବି କେବେ ପୁରାଣାଦି ଶାସ୍ତ୍ର ଶୁଣି ନାହାନ୍ତି, ଯେଉଁମାନଙ୍କର ସାହିତ୍ୟ, ସଂଗୀତ, କଳାଦି ପ୍ରତି କିଛି ମାତ୍ର ଶ୍ରଦ୍ଧା ନ ଥାଏ, ଯେଉଁ ଲୋକମାନଙ୍କର ଚକ୍ଷୁଦ୍ୱୟ ସାଧୁସନ୍ଥ-ଦର୍ଶନ-ବିମୁଖ, ଅର୍ଥାତ୍ ଯେଉଁମାନେ ସାଧୁସନ୍ଥଙ୍କ ସଙ୍ଗ କରନ୍ତି ନାହିଁ ସେଇ ପାପାଚାରୀମାନଙ୍କ ଶବକୁ ଆରେ ଶୃଗାଳ ! ତୁ ଯେତେ କ୍ଷୁଧାର୍ତ୍ତ ହେଲେ ବି, କେବେ ବି ସ୍ପର୍ଶକରିବୁ ନାହିଁ ।

ଧର୍ମଦ୍ରଷ୍ଟା ଚାଣକ୍ୟ ପୁଣି କହୁଛନ୍ତି ଆରେ ଶୃଗାଳମାନେ ! ମୁଁ ଜାଣେ, ତୁମ୍ଭେମାନେ ମୃତପ୍ରାଣୀଙ୍କ ମାଂସଭକ୍ଷଣ କରି ଉଦରଜ୍ୱାଳା ନିବାରଣ କରୁଥାଅ। ମାତ୍ର ମୁଁ ତୁମକୁ ଅନୁରୋଧ କରୁଛି ସାବଧାନ ବି କରିଦେଉଛି, ତୁମ୍ଭେମାନେ ଯେ କୌଣସି ମଲାଜନ୍ତୁର ଶବ ଭକ୍ଷଣ କରିପାର। ମାତ୍ର ଯେଉଁ ମଣିଷ ତା'ର ଜୀବନରେ କେବେ ତୀର୍ଥଯାତ୍ରା କରି ନାହିଁ, ତୀର୍ଥଯାତ୍ରା ପାଇଁ କେବେବି ମନ ବଳାଇ ନାହିଁ, ସେହି ଅଧର୍ମୀ ପାପାଚାରୀ ମଣିଷମାନେ ମରିଗଲେ ସେମାନଙ୍କ ଶବରେ ତୁମ୍ଭେମାନେ କେବେ ବି ମୁହଁମାରିବ ନାହିଁ। କାରଣ ପାପୀଲୋକର ଶବଖାଇଲେ ତୁମକୁ ବି ତା' ପାପ ଲାଗିବ ।

ଚାଣକ୍ୟ ପଣ୍ଡିତେ ପୁନଶ୍ଚ ଶୃଗାଳମାନଙ୍କ ଉଦ୍ଦେଶ୍ୟରେ କହୁଛନ୍ତି, "ଆରେ ଶୃଗାଳମାନେ ! ମୁଁ ଜାଣେ, ପ୍ରାଣୀମାନଙ୍କ ଶବ ଭକ୍ଷଣ କରି ତୁମ୍ଭେମାନେ ବଞ୍ଚୁଥାଅ । ତା' ଠିକ୍ ଅଛି । ତୁମ୍ଭେମାନେ ଯେ କୌଣସି ପ୍ରାଣୀର ମଡ଼ା ଖାଅ । ଆମର ଆପତି ନାହିଁ । କିନ୍ତୁ ଯେଉଁ ମଣିଷମାନେ ନିଜ ପରିଶ୍ରମ ବିନିମୟରେ ନ୍ୟାଯ୍ୟ ଧନ ଉପାର୍ଜନ ନ କରି ନିଜର ସତ୍‌କର୍ମଫଳଜନିତ ଧନ ରୋଜଗାର ନ କରି ଅନ୍ୟାୟ ପଥରେ

ଅର୍ଥ ଉପାର୍ଜନ କରି ଜୀବନ ବଞ୍ଚନ୍ତି, ସେହି ଚୋର, ଡକାଏତ, ଲୁଟେରା, ଠକ ଓ ଅସାଧୁ କର୍ମଚାରୀଙ୍କ ଶବକୁ ତୁମ୍ଭେମାନେ କେବେ ସ୍ପର୍ଶ ମଧ୍ୟ କରିବ ନାହିଁ । କାରଣ, ସେ ଖାଦ୍ୟ ତୁମ ପେଟକୁ ରୋଗାକ୍ରାନ୍ତ କରିବ ।

ତା'ପରେ ମହାମତି ଚାଣକ୍ୟ ଶୃଗାଳମାନଙ୍କୁ ପୁନଶ୍ଚ କହୁଛନ୍ତି, ଆରେ ଶୃଗାଳମାନେ ! ତୁମ୍ଭେମାନେ ଯେତେ କ୍ଷୁଧାର୍ତ୍ତ ହେଲେ ବି, ଯଦି କୌଣସି ଗର୍ବୀ, ଉଦ୍ଧତ ମଣିଷ ସର୍ବଦା ତା ମୁଣ୍ଡକୁ ଉତ୍ତୋଳିତ କରି ରଖିଥାଏ, କୌଣସି ଦେବଦେବୀଙ୍କ ପାଖରେ, ବା ସାଧୁସନ୍ଥ ସୁଜନଙ୍କ ପାଖରେ ବା କୌଣସି ଗୁଣୀଲୋକଙ୍କ ପାଖରେ ବା ମାନ୍ୟଗଣ୍ୟ ଲୋକଙ୍କ ପାଖରେ ନିଜର ମଥାନତ କରେ ନାହିଁ, ସେହି ଅହଂକାରୀର ଶବକୁ ତୁମ୍ଭେମାନେ କେବେବି ଭକ୍ଷଣ କରିବ ନାହିଁ। କାରଣ, ସେହିସବୁ ମଣିଷମାନେ ନିଚ୍ଚ ଓ ସେମାନେ ସର୍ବଦା ସମାଜରେ ନିନ୍ଦିତ ହୋଇଥାନ୍ତି। ଆରେ ଶୃଗାଳମାନେ ! ସେପରି ମଣିଷର ଶବକୁ ପରିତ୍ୟାଗ କରି ତୁମ୍ଭେମାନେ ଅନ୍ୟତ୍ର ଖାଦ୍ୟ ଅନ୍ୱେଷଣ କର। ପାଠକେ ! ଏବେ ମହାମତି ଚାଣକ୍ୟଙ୍କ ଉଦାହରଣରୁ ଆପଣମାନେ ନିଶ୍ଚୟ କେଉଁ ମଣିଷ ନିନ୍ଦନୀୟ ଓ ଘୃଣ୍ୟ, ତାହା ଜାଣି ପାରୁଥିବେ।



## ୧୧୩. ସଂକୀର୍ତ୍ତନରେ ମୃଦଙ୍ଗମାନେ କ'ଣ କହୁଛନ୍ତି ?

ସହୃଦୟ ପାଠକ-ପାଠିକାମାନେ ! ଆପଣମାନେ ମହାମତି ଚାଣକ୍ୟଙ୍କର ନୀତିଶ୍ଳୋକମାନ ପଢ଼ି ଶୁଣି ମଣିଷ ଜୀବନରେ ନୈତିକତା କାହାକୁ କହନ୍ତି, ତାହା ଜାଣିଛନ୍ତି । ମାତ୍ର ନିମ୍ନୋକ୍ତ ଶ୍ଳୋକଟିରେ ମହାଜ୍ଞାନୀ ଓ ମହାଭକ୍ତ ଚାଣକ୍ୟ ମହାଶୟ ଗୋଟିଏ ଆଧ୍ୟାତ୍ମିକ ତତ୍ତ୍ୱ କହୁଛନ୍ତି। ନିମ୍ନ ଚାରିପଦ ଶ୍ଳୋକରେ ଚାଣକ୍ୟ ପଣ୍ଡିତଙ୍କର ଆଧ୍ୟାତ୍ମିକ ରସପୂର୍ଣ୍ଣ ହୃଦୟର ପରିଚୟ ମିଳିବା ସଙ୍ଗେ ସଙ୍ଗେ ତାଙ୍କର ଧ୍ୱନ୍ୟାତ୍ମକ କବିତ୍ୱର ମଧ୍ୟ କି ଚମତ୍କାର ନିଦର୍ଶନ ମିଳୁଛି ଏବେ ଶୁଣନ୍ତୁ । ଶ୍ଳୋକଟି ହେଲା,

**ଯେଷାଂ ଶ୍ରୀମଦଯଶୋଦା-ସୁତ-ପଦ-କମଳେ ନାସ୍ତିଭକ୍ତିର୍ନରାଣାଂ,**
**ଯେଷାମାଭୀର-କନ୍ୟା-ପ୍ରିୟଗୁଣକଥନେ ନାନୁରକ୍ତା ରସଜ୍ଞା ।**
**ଯେଷାଂ ଶ୍ରୀକୃଷ୍ଣ- ଲୀଳା-ଲଳିତ-ରସକଥା ସାଦରୌ ନୈବ କର୍ଣ୍ଣୌ,**
**ଧିକ୍‌ତାନ୍‌ଧିକ୍‌ତାନ୍‌ଧିକତାନ୍ କଥୟତି ସତତଂ କୀର୍ତ୍ତନସ୍ଥୋ ମୃଦଙ୍ଗଃ ॥** (୧୨/୫)

ଏହି ଚମତ୍କାର ଶ୍ଳୋକଟିର ବିଶଦ ବ୍ୟାଖ୍ୟା କରାଯାଉ । ଗୋଟିଏ ମଠ ବା ଦେବାଳୟର ପ୍ରାଙ୍ଗଣରେ କୌଣସି ଏକ ଆଧ୍ୟାତ୍ମିକ ମହୋତ୍ସବମେଳାରେ ସଂକୀର୍ତ୍ତନପ୍ରବଣ

ବୈଷ୍ଣବମାନେ ନାନାଆଡୁ ଆସି ମିଳିତଭାବେ ସଂକୀର୍ତ୍ତନ କରୁଛନ୍ତି । ସଂକୀର୍ତ୍ତନରେ ଜଣେ ଭାବବିଭୋର ବୈଷ୍ଣବଲୀଳା ପୁରୁଷୋତ୍ତମ ଦିବ୍ୟପ୍ରେମ ଓ ଆନନ୍ଦର ସଂସ୍ଥାପକ ସଚ୍ଚିଦାନନ୍ଦ ଭଗବାନ୍‌ଙ୍କର ପୂର୍ଣ୍ଣ ଅବତାର ଶ୍ରୀକୃଷ୍ଣଙ୍କର ମର୍ତ୍ତ୍ୟବୃନ୍ଦାବନର ଦିବ୍ୟଲୀଳା ସୁନ୍ଦର ମଧୁର କଣ୍ଠରେ ଗାନ କରୁଛନ୍ତି । ସେ ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା, ପୌଗଣ୍ଡଲୀଳାର ବିଷୟ ଚମତ୍କାର ଭାବେ ଗାଉଛନ୍ତି । ସେ କିପରି ଦିବ୍ୟ ବାତ୍ସଲ୍ୟରସର ପ୍ରମୂର୍ତ୍ତବିଗ୍ରହ ନନ୍ଦରାଣୀଙ୍କର କରୁଣ ମଧୁର ବାତ୍ସଲ୍ୟ ରସର ମଧୁର ଲୀଳା ଗୀତ ଗାଉଛନ୍ତି; ପୁଣି ସେ ଗାୟକରତ୍ନ କିପରି ଭଗବାନ୍ ଶ୍ରୀକୃଷ୍ଣଙ୍କର ଭାବମୟୀ ଗୋପୀମାନଙ୍କ ସହିତ ଓ ମହଭାବସ୍ୱରୂପିଣୀ ଶ୍ରୀରାଧାରାଣୀଙ୍କ ସହିତ ଦିବ୍ୟ ପ୍ରେମରସର ଗାନ କରୁଛନ୍ତି ।

ସେହି ଗୀତକୁ ଅନ୍ୟ ସଂକୀର୍ତ୍ତନୀୟାମାନେ ମିଳିତ ସ୍ୱରରେ ଗାନ କରି ପ୍ରେମୋନ୍ମତ୍ତ ହୋଇ ନୃତ୍ୟ କରୁଛନ୍ତି । ସେମାନଙ୍କ ଗୀତ ଓ ନୃତ୍ୟ ସଙ୍ଗେ ତାଳ ରଖି ଗିନିବଜାଳିମାନେ ବିଭୋର ହୋଇ ଗିନିବାଦନ କରୁଛନ୍ତି । ସେମାନଙ୍କ ମଧ୍ୟରେ ଆଉ ଜଣେ ବୈଷ୍ଣବ ଏକାଗ୍ରଚିତ୍ତରେ ଉପଯୁକ୍ତ ତାଳରେ ମୃଦଙ୍ଗବାଦନ କରୁଛନ୍ତି । ଏହି ବୈଷ୍ଣବମାନଙ୍କୁ ଦେଖି ସେମାନଙ୍କର ଦିବ୍ୟ ପ୍ରେମବିଭୋର ଗାନ ଶୁଣି ଓ ଭାବୋନ୍ମତ୍ତ ନୃତ୍ୟ ଦେଖି ରସରାଜ ଭଗବାନ୍ ଶ୍ରୀକୃଷ୍ଣଙ୍କ ଭକ୍ତମାନେ ସେଠାରେ ଆସି ରୁଣ୍ଡହୋଇ ସବୁ ଶୁଣୁଛନ୍ତି ଓ ସେମାନେ ମଧ୍ୟ ଦିବ୍ୟ ଭାବରେ ବିଗଳିତ ହୋଇ ବୈଷ୍ଣବମାନଙ୍କ ସହିତ ଦୁଇହାତ ଉପରକୁ ଟେକି ନୃତ୍ୟ କରୁଛନ୍ତି ।

କିନ୍ତୁ ସବୁ ଗ୍ରାମବାସୀ ଓ ବଜାରରେ ବୁଲୁଥିବା ବା କ୍ରୟବିକ୍ରୟରେ ରତଥିବା ନାରୀ-ପୁରୁଷମାନେ ସେହି ସ୍ଥଳକୁ ଆସୁ ନାହାନ୍ତି କି ସେ ଆଡ଼ିକି ମଧ୍ୟ କାନ ଡେରୁ ନାହାନ୍ତି । ସେହି ଲୋକମାନେ ସେମାନଙ୍କ ଦୈନନ୍ଦିନ ଜୀବନ-ଜଂଜାଳରେ ବ୍ୟସ୍ତ ବିବ୍ରତ । ସେମାନଙ୍କର ସାଂସାରିକ ଜୀବନକୁ ନେଇ ସେମାନେ ହସିକାନ୍ଦି ମାତିଛନ୍ତି । ସେମାନେ ଦିବ୍ୟ ଭାବର ଧାର ଧରନ୍ତି ନାହିଁ । ଏପରିକି କିଏ ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ୍ ରାମ ଓ କିଏ ଲୀଳା ପୁରୁଷୋତ୍ତମ ରାମ, ସେକଥା ସେମାନଙ୍କୁ ଜଣା ନାହିଁ କି ଜାଣିବାକୁ ମଧ୍ୟ ସେମାନଙ୍କର ସାମାନ୍ୟ ଆଗ୍ରହ ନାହିଁ ।

ଏକଥାକୁ ଲକ୍ଷ୍ୟ କରି ମହାବୁଦ୍ଧିମାନ୍, ମହାହୃଦୟବାନ୍, ଈଶ୍ୱର-ପ୍ରାଣ ଚାଣକ୍ୟ ଏକ ହାସ୍ୟକର ଓ ବିଦ୍ରୂପାତ୍ମକ ଶ୍ଳେଷ ବାକ୍ୟ କହୁଛନ୍ତି -

ହେ ସଂସାରୀ ଲୋକମାନେ ! ସେଠି ଯୋଉ ହରିପ୍ରେମ ସଂକୀର୍ତ୍ତନ ଚାଲିଛି, ସେଥିରେ ବୈଷ୍ଣବମାନେ ଦିବ୍ୟ ବାତ୍ସଲ୍ୟରସର ପ୍ରତିମୂର୍ତ୍ତି ମା' ଯଶୋଦାଙ୍କ ମୁଖନିଃସୃତ କୃଷ୍ଣଙ୍କ ବାଲ୍ୟଲୀଳାର ଗୀତ ଗାନ କରୁଛନ୍ତି, ଅଥଚ ତୁମମାନଙ୍କର ତେଣିକି ମନକର୍ଣ୍ଣର

ଦ୍ୱାର ଖୋଲୁ ନାହିଁ। ସେଇ ବୈଷ୍ଣବମାନେ ମଧ୍ୟ ବ୍ରଜଧାମର, ମହାଭାବପ୍ରବଣା ଗୋପୀ ଓ ଶ୍ରୀରାଧାରାଣୀଙ୍କ ସହିତ, ସଚ୍ଚିଦାନନ୍ଦ ଭଗବାନ୍ ଶ୍ରୀକୃଷ୍ଣଙ୍କ ପ୍ରେମଲୀଳା ଗାନ କରୁଛନ୍ତି। ଅଥଚ ତେଣିକି ମଧ୍ୟ ତୁମର ମନ କର୍ଣ୍ଣର ଆଗ୍ରହ ନାହିଁ । ହେ ମୂଢ଼ ସଂସାରୀ ଲୋକମାନେ! ତୁମେ ସେହି ସଂକୀର୍ତ୍ତନ ମଣ୍ଡଳୀରେ ସେ ଗୀତ ସବୁ ନ ଶୁଣ ପଛକେ, ଏବେ ଟିକିଏ ସେଠାରେ ବାଜୁଥିବା ମୃଦଙ୍ଗମାନେ କ'ଣ ତୁମ ବିଷୟରେ କହୁଛନ୍ତି, ସେ କଥାକୁ ଟିକିଏ କର୍ଣ୍ଣପାତ କରତ ଦେଖି! ସେମାନେ କ'ଣ କହୁଛନ୍ତି? ସେଇ ମୃଦଙ୍ଗମାନେ ବାଦନ ଛଳରେ ତୁମ ଭଳି ମୂଢ଼ ସଂସାରୀ ଲୋକଙ୍କ ଉଦ୍ଦେଶ୍ୟରେ କହୁଛନ୍ତି, ତୁମମାନଙ୍କୁ ଧିକ୍! ତୁମ ସଂସାରକୁ ଧିକ୍! ତୁମ ଜନମକୁ ଧିକ୍! ତୁମ ଜୀବନକୁ ଧିକ୍ ଧିକ୍ ଧିକ୍ ।



## ୧୧୪. ଲଲାଟ ଲିଖନ କେ କରିବ ଆନ?

ତର୍କଶାସ୍ତ୍ରରେ କାର୍ଯ୍ୟକାରଣ ସଂପର୍କ ରହିଛି। ତା' ଅର୍ଥ ଯଦି କାରଣ ଉପସ୍ଥିତ ହୁଏ, ତେବେ ତତ୍‌ଜନିତ କାର୍ଯ୍ୟଟିଏ ଉତ୍ପନ୍ନ ହୋଇଥାଏ। ଯଥା, ନାରୀପୁରୁଷଙ୍କର ଯୌନ-ସଙ୍ଗମରୁ ସନ୍ତାନ ଜାତ ହୁଏ । ବସନ୍ତ ଋତୁ ଆସିଲେ ଆମ୍ରଗଛମାନେ ବଉଳନ୍ତି । ମାଟିରେ ମଂଜି ପୋତିଲେ ଗଛ ହୁଏ ।

କିନ୍ତୁ ଏହି ତର୍କସମ୍ମତ ସତ୍ୟଟି ସବୁବେଳେ ପ୍ରମାଣିତ ହୋଇପାରେନି ବିଭିନ୍ନ କାରଣରୁ । ତା'ଛଡ଼ା ଆମେ ସବୁକଥାରେ ସମସ୍ତଙ୍କୁ ଦାୟୀ କରିପାରିବା ନାହିଁ । ଘଟଣା ସବୁ ଘଟିବା ପଛରେ ବହୁ ଅଦୃଶ୍ୟ କାରଣମାନ ଥାଏ । ଆମେ ସେଥିପାଇଁ ଗୋଟିଏ କାରଣକୁ ଦାୟୀ କରିପାରିବା ନାହିଁ ।

ମହାପ୍ରାଜ୍ଞ ଓ ପଣ୍ଡିତ ଚାଣକ୍ୟ ଏଇ ଉଦ୍ଦେଶ୍ୟରେ ନିମ୍ନୋକ୍ତ ଶ୍ଳୋକଟି ଆମକୁ ଶୁଣାଇଛନ୍ତି ।

**ପତ୍ରଂନୈବ ଯଦା କରୀଳବିଟପେ ଦୋଷୋ ବସନ୍ତସ୍ୟ କିଂ,**
**ନୋଲୂକୋଽପ୍ୟବଲୋକତେ ଯଦି ଦିବା ସୂର୍ଯ୍ୟସ୍ୟ କିଂ ଦୂଷଣମ୍।**
**ବର୍ଷା ନୈବ ପତନ୍ତି ଚାତକମୁଖେ ମେଘସ୍ୟ କିଂ ଦୂଷଣଂ,**
**ଯତ୍‌ପୂର୍ବଂ ବିଧିନା ଲଲାଟଲିଖିତଂ ତନ୍‌ମାର୍ଜିତୁଂ କଃ କ୍ଷମଃ ।। (୧୨/୬)**

ଶ୍ଳୋକଟିର ଅର୍ଥ ହେଲା, ଆହେ ସୁଜ୍ଞଜନମାନେ! ଆପଣ ଏବେ ଗୋଟିଏ ନିଦର୍ଶନ ଦେଖି ବିଚାର କରନ୍ତୁ ତ, ଘଟଣା ଘଟିବା ପଛରେ ପ୍ରକୃତରେ କିଏ ଦାୟୀ?

ବସନ୍ତ ଋତୁରେ ବୃକ୍ଷମାନଙ୍କରେ ଝଡ଼ାପତ୍ର ସବୁ ପୁଣି କଅଁଳି ଉଠେ। କିନ୍ତୁ ବାଉଁଶ ଗଛରେ ତ ଆଦୌ ପତ୍ର ଦେଖାଦିଏନା ! ତେବେ ସେଥିପାଇଁ କ'ଣ ଆମେ ବସନ୍ତଋତୁକୁ ଦାୟୀ କରିବା ? ଆଦୌ ନୁହଁ। ବିଧାତା ହିଁ ଏଥିପାଇଁ ଦାୟୀ। ମହାପ୍ରକୃତିମାତା କେତେବେଳେ କାହାପାଇଁ କ'ଣ ଘଟାଉଛନ୍ତି, ସେକଥା ଅବା କିଏ ବିଚାର କରିବ ? ବାଉଁଶ ଗଛ ତ କେବେବି ବସନ୍ତଋତୁରେ ପତ୍ର କଅଁଳାଏ ନାହିଁ। ମାତ୍ର ଯୋଉ ଗଛମାନେ ପ୍ରାୟ ଇ ବସନ୍ତଋତୁରେ ପତ୍ର କଅଁଳାନ୍ତି କିଂବା ଫୁଲ ଫୁଟାନ୍ତି। ମାତ୍ର ସବୁ ବର୍ଷ ବସନ୍ତ ଋତୁରେ ତାହା ନ ଘଟି ମଧ ପାରେ। ବସନ୍ତ ଋତୁରେ ଆମ୍ବଗଛ ବଉଳେ। ମାତ୍ର ବର୍ଷେ ବର୍ଷେ ବସନ୍ତଋତୁ ଆସେ ଓ ଯାଏ। କିନ୍ତୁ ଗୋଟେ ଗୋଟେ ଆମ୍ବଗଛରେ ଜମା ବଉଳ ଧରେନାହିଁ। ତା'ର ବିଭିନ୍ନ କାରଣ ଥାଇପାରେ। ବସନ୍ତଋତୁ ସେଥିପାଇଁ ଦାୟୀ ନୁହଁ।

ସେହିପରି ଦିବସର ଉଜ୍ଜ୍ୱଳ ଦିବାଲୋକରେ ସବୁ ପ୍ରାଣୀ ଖୁବ୍ ଭଲ ଦେଖିପାରନ୍ତି । ମାତ୍ର ପେଚା ଦିନ ଆଲୁଅରେ ଦେଖିପାରେନା । ରାତିର ଅନ୍ଧକାର ଭିତରେ ଇ ସେ ସବୁ ଦେଖିପାରେ । ଆମେ କ'ଣ ଏଥିପାଇଁ ସୂର୍ଯ୍ୟଙ୍କୁ ଦୋଷ ଦେବା ? ଆଦୌ ନୁହଁ । କାରଣ, ପ୍ରକୃତିମାତା ସବୁ ପ୍ରାଣୀଙ୍କୁ ଦୃଷ୍ଟିଶକ୍ତି ସମାନ ଭାବେ ଦେଇ ନାହାନ୍ତି । କେତେ ପ୍ରାଣୀ ଅନ୍ଧାରରେ ଭଲ ଦେଖିପାରନ୍ତି। ଆଉ କେତେ ପ୍ରାଣୀ କେବଳ ଆଲୁଅରେ ଦେଖିପାରନ୍ତି। ପେଚାପକ୍ଷୀ ଅନ୍ଧକାରରେ ରହିବାକୁ ଭଲ ପାଏ। ତେଣୁ ସେ ଅନ୍ଧାରରେ ଅନ୍ୟ ଜୀବଜନ୍ତୁଙ୍କୁ ଦେଖିପାରି ସେମାନଙ୍କୁ ଶିକାର କରିଖାଏ। ତେଣୁ ତାକୁ ଦିନରେ ଦେଖାଯାଏ ନାହିଁ ବୋଲି ଆମେ ସୂର୍ଯ୍ୟଙ୍କୁ ଦାୟୀ ନ କରି ତା'ର ଜନ୍ମଜାତକରେ ଯେଉଁ ବ୍ୟବସ୍ଥା ରହିଛି ତାକୁଇ ଦାୟୀ କରିପାରିବା। କିନ୍ତୁ ତାହା ମଧ ଠିକ୍ ନୁହଁ। କାରଣ, ପେଚାପକ୍ଷୀମାନେ ଦିନରେ ଦେଖିପାରୁନାହାନ୍ତି ବୋଲି ସୂର୍ଯ୍ୟଙ୍କୁ ଦାୟୀ କରି ତୁମ ଆଗରେ ଗୁହାରି କରୁଛନ୍ତି କି ?

ବିଧାତା ବା ପ୍ରକୃତିମାତାଙ୍କ ସୃଷ୍ଟିର ଉଦ୍ଦେଶ୍ୟ ଆମକୁ ଠିକ୍ ଭାବେ ଜଣାନାହିଁ । ଯଦିଓ ବିଜ୍ଞାନୀମାନେ ପ୍ରକୃତିମାନଙ୍କ ସୃଷ୍ଟିର ବହୁ ରହସ୍ୟକୁ ଉନ୍‌ମୋଚନ କରି ସାରିଲେଣି, ତଥାପି, ସେମାନେ ଏ ସୃଷ୍ଟିର କାର୍ଯ୍ୟକାରଣ ଓ ଉଦ୍ଦେଶ୍ୟକୁ ଏ ଯାବତ୍ ବୁଝିପାରି ନାହାନ୍ତି।

ଧରାଯାଉ, ପ୍ରାଣୀବିଜ୍ଞାନୀମାନେ ପେଚାପକ୍ଷୀର ଆଖିକୁ ବିଶ୍ଳେଷଣ କରି ତା'ର ଗଠନକ୍ରିୟା ଜାଣିଲେ ଓ କୋଉ କାରଣରୁ ତା' ଆଖିରେ ଦିନର ଆଲୁଅ ସହ୍ୟ ହେଉ ନାହିଁ, ସେ ରହସ୍ୟଟିକୁ ବୁଝିପାରିଲେ। କିନ୍ତୁ ପ୍ରକୃତିମାତା କାହିଁକି ବେଙ୍ଗର ଦୃଷ୍ଟିଶକ୍ତିକୁ ଏପରି କଲେ, ଆମ ମଣିଷଙ୍କ ଦୃଷ୍ଟିଶକ୍ତିକୁ ସେହିଭଳି କଲେ ନାହିଁ,

ତା'ର ଉତ୍ତର ବୈଜ୍ଞାନିକମାନେ ଏ ଯାବତ୍ ଦେଇପାରି ନାହାନ୍ତି। ସମସ୍ତେ ଜାଣନ୍ତି, ନିମ୍ବଗଛର ରସ, ଫୁଲ, ଫଳ ପିତା ଲାଗେ। ମାତ୍ର ବେଳେବେଳେ କେତେକ ଗଛକୁ ହାଣିଲେ, ସେ ଜାଗାରୁ ମିଠା ରସ ବାହାରେ। ପାଠକେ! ଏସବୁ ଆଚମ୍ବିତ କଥାମାନ ସବୁବେଳେ ସବୁ ସ୍ଥାନରେ ଘଟେ। ଈଶ୍ୱର ବା ପ୍ରକୃତିମାତା ଯାହାସବୁ ସୃଷ୍ଟି କରିଛନ୍ତି ରୂପ ଓ ଗୁଣରେ ସେମାନେ କେହି କାହା ସଂଗେ ସମାନ ନୁହନ୍ତି। କିନ୍ତୁ ଆମ୍ଭେମାନେ ଆଖୁଗଛକୁ ମିଠା ବୋଲି ପ୍ରଶଂସା କରିବା ଓ ନିମ୍ବଗଛକୁ ପିତା ବୋଲି ଘୃଣା କରିବା, ତାହା ଉଚିତ ନୁହଁ।



## ୧୧୫. କିଏ କାହାର ଗୁଣଗ୍ରାହୀ ?

**ସତ୍‌ସଙ୍ଗାଦ୍‌ଭବତି ହି ସାଧୁତା ଖଳାନାଂ**
**ସାଧୁନାଂ ନ ହି ଖଳସଙ୍ଗମାତ୍‌ଖଳତ୍ୱମ୍।**
**ଆମୋଦଂ କୁସୁମ-ଭବଂ ମୃଦେବ ଧତ୍ତେ**
**ମୃଦ୍‌ଗନ୍ଧଂ ନହି କୁସୁମାନି ଧାରୟନ୍ତି ॥ (୧୨/୭)**

ପାଠକେ! ଉପରିଲିଖିତ ଶ୍ଳୋକଟିର ଅର୍ଥ କି ଚମତ୍କାର ତାହା ଶୁଣନ୍ତୁ ଓ ମହାଜ୍ଞାନୀ ଚାଣକ୍ୟଙ୍କର ବାହ୍ୟଦୃଷ୍ଟି ଓ ଅନ୍ତର୍ଦୃଷ୍ଟି ମଧ କେତେ ତୀକ୍ଷ୍ଣ ତାହା ଶୁଣନ୍ତୁ । ଚାଣକ୍ୟ କହୁଛନ୍ତି, ଖଳଲୋକ, ଦୁଷ୍ଟଲୋକ ଓ ଅସାଧୁ ଲୋକମାନେ ଯଦି ଦୈବାତ୍ ସାଧୁ ସନ୍ଥ ଓ ସଦାଚାରୀ ଲୋକଙ୍କ ସଂସ୍ପର୍ଶରେ ଆସନ୍ତି ଏବଂ ସେମାନଙ୍କ ସହ ବହୁ ସମୟ ଅତିବାହିତ କରନ୍ତି, ତେବେ ସେମାନଙ୍କ ଚରିତ୍ର, ପ୍ରକୃତି ଓ କର୍ମପନ୍ଥାରେ ମଧ ସେହି ସଦାଚାରୀ ସାଧୁମାନଙ୍କର ଶୁଦ୍ଧ ପ୍ରଭାବ ପଡ଼ିଥାଏ । କିନ୍ତୁ ଏହାର ବିପରୀତ କଥାଟି ପ୍ରାୟଶଃ ଘଟେ ନାହିଁ । ଅର୍ଥାତ୍, କୌଣସି ସାଧୁଲୋକ ଅସାଧୁଙ୍କ ସଂସ୍ପର୍ଶରେ ଆସି ଅସାଧୁ ହୋଇଯାଏ ନାହିଁ । ଏକଥା ଅବଶ୍ୟ ବହୁଳାଂଶରେ ଠିକ୍, କିନ୍ତୁ ବେଳେବେଳେ ଏହାର ବିପରୀତ ମଧ ଘଟିବାର ଦେଖାଯାଇଛି । ଜଣେ ଅସାଧୁ ଲୋକ ସାଧୁବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସି ସାଧୁ ହୋଇପାରେ, ନ ହୋଇ ମଧ ପାରେ ବା କିଛିଦିନ ପାଇଁ ସେ ସାଧୁ ଆଚରଣ କରିଥାଏ । ମାତ୍ର ପୁଣି ତା'ର ପ୍ରକୃତି ଭିତରକୁ ପୂର୍ବ ଅସାଧୁତା ଆସିଯାଏ । ସେହିପରି ସାଧୁ ଲୋକଟିଏ ମଧ ଅସାଧୁମାନଙ୍କ ମେଳରେ ବହୁଦିନ ଚଳପ୍ରଚଳ ହେଲେ, ତା' ପ୍ରକୃତି ଭିତରକୁ କିଛି ଅସାଧୁତା ପ୍ରବେଶ କରିଯାଇପାରେ । ତେବେ ଚାଣକ୍ୟଙ୍କ ସିଦ୍ଧାନ୍ତ ବିରୋଧ ମୁଁ ଏହି ବିପରୀତ ସତ୍ୟଟିକୁ ଠିଆ କରୁ ନାହିଁ ।

ଚାଣକ୍ୟଙ୍କ ଶ୍ଳୋକରେ ଆଉ କେତୋଟି ସୁନ୍ଦର ଉଦାହରଣ ଅଛି । ଯଥା, ସୁରଭିତ ଫୁଲମାନଙ୍କର ଗନ୍ଧକୁ ମାଟି ଗ୍ରହଣ କରିଥାଏ । ମାତ୍ର ଫୁଲ କେବେ ମାଟିର ଗନ୍ଧକୁ ଗ୍ରହଣ କରି ନ ଥାଏ ।

ଏହି ଗ୍ରହଣଶୀଳତା ବଡ଼ ବିଚିତ୍ର ବ୍ୟାପାର । ଧରନ୍ତୁ କେତେକ ଲୋକ ଆମିଷ ଖାଇବାକୁ ଭଲ ପାନ୍ତି, ଆଉ କେତେକଙ୍କ ଆମିଷ ପ୍ରତି ରୁଚି ନ ଥାଏ । ସେମାନେ କେବଳ ପନିପରିବା ଶାକାଦି ଭକ୍ଷଣ କରନ୍ତି । ମାତ୍ର ବେଳେବେଳେ ଦେଖାଯାଏ, ସେ ଲୋକମାନେ ପରିବାସହିତ ଆମିଷ ମିଶାଇ ଖାଇବାକୁ ଭଲ ପାନ୍ତି । ପବନ ନିଜେ ସୁବାସକୁ ଧରି ବହୁଥାଏ ଏବଂ ଗନ୍ଧକୁ ମଧ୍ୟ ଧରି ବହୁଥାଏ ।

ତେବେ ମଣିଷର ପ୍ରକୃତି ବଡ଼ ବିଚିତ୍ର । ଜଣେ ଦସ୍ୟୁରତ୍ନାକର ଏକ ବିଶେଷ ପରିସ୍ଥିତି ଭିତରେ ପଡ଼ି ବାଲ୍ମୀକି ମୁନି ହୋଇପାରନ୍ତି; ଜଣେ ଋଷି ମଧ୍ୟ ଏକ ବିଶେଷ ପରିସ୍ଥିତିରେ ପଡ଼ି ଗୋଟିଏ ସ୍ୱର୍ଗୀୟ ଗଣିକା ବା ଅପ୍ସରାର ପାଲରେ ପଡ଼ି ଜଣେ ସାଧାରଣ କାମୁକ ହୋଇଯାଇପାରେ ।



## ୧୧୬. ସାଧୁଦର୍ଶନର ପୁଣ୍ୟଫଳ ତତ୍‌କ୍ଷଣାତ୍ ...

**ସାଧୂନାଂ ଦର୍ଶନଂ ପୁଣ୍ୟଂ ତୀର୍ଥଭୂତାହି ସାଧବଃ ।**
**କାଳେନ ଫଳତେ ତୀର୍ଥଂ ସଦ୍ୟଃ ସାଧୁ ସମାଗମଃ ! (୧୨/୮)**

ମହାପ୍ରାଜ୍ଞ ଚାଣକ୍ୟ ଏହି ଶ୍ଳୋକରେ କହୁଛନ୍ତି- ସାଧୁସନ୍ଥଙ୍କ ଦର୍ଶନଠାରୁ ପୁଣ୍ୟକାର୍ଯ୍ୟ ଆଉ ନାହିଁ । କାରଣ ସାଧୁମାନେ ହିଁ ଯଥାର୍ଥରେ ତୀର୍ଥସ୍ୱରୂପା; କିନ୍ତୁ ଜଣେ ଏ ପୃଥିବୀର ସବୁ ତୀର୍ଥ ଭ୍ରମଣ କରି ଯେଉଁ ପୁଣ୍ୟ ଅର୍ଜନ କରିଥାଏ, ଜଣେ ଯଥାର୍ଥ ସାଧୁସନ୍ଥଙ୍କୁ ଦର୍ଶନ କଲେ ତା'ଠାରୁ ବେଶି ପୁଣ୍ୟ ଅର୍ଜନ କରିଥାଏ ।

ଏବଂ ସାଧୁଦର୍ଶନର ବିଶେଷତ୍ୱଟି ହେଲା, ତୀର୍ଥଭ୍ରମଣ କଲେ ଜଣେ ସଙ୍ଗେ ସଙ୍ଗେ ପୁଣ୍ୟ ଫଳ ପାଇବ ନାହିଁ । ମାତ୍ର ସାଧୁଦର୍ଶନ ଓ ପୂଜନର ଫଳ ସଂଗେ ସଂଗେ ମିଳିଥାଏ ।

ପାଠକେ ! ଧାର୍ମିକ ବ୍ୟକ୍ତି ମାତ୍ରେ ଇ ପୁଣ୍ୟ ଅର୍ଜନ କରିବା ପାଇଁ ବହୁ ତୀର୍ଥ ଭ୍ରମଣ କରିଥାନ୍ତି । ସବୁ ଧର୍ମ ସଂପ୍ରଦାୟରେ ତୀର୍ଥ-ଦର୍ଶନ କରିବାର ବିଧି ରହିଛି । ଆମ ହିନ୍ଦୁଧର୍ମରେ ଚାରିଧାମ ଓ ବହୁ ତୀର୍ଥ ସ୍ଥାନ ରହିଛି । ରାମେଶ୍ୱର, ପୁରୀ, ଦ୍ୱାରକା, ଓ ବଦ୍ରିନାଥ - ଏହି ଚାରିଧାମ ପୁଣ୍ୟଧାମ ଭାବେ ବିଦିତ । ଧାର୍ମିକ ନରନାରୀ

ସୁବିଧା ସୁଯୋଗ ଥିଲେ ଜୀବନରେ ଏଇ ଚାରିଧାମ ଦର୍ଶନ କରି ଜୀବନରେ ପୁଣ୍ୟ ଅର୍ଜନ କରିଥାନ୍ତି । ଦ୍ୱାରକାରେ ଶ୍ରୀକୃଷ୍ଣଙ୍କର ପୂଜାର୍ଚ୍ଚନା ହୁଏ, ରାମେଶ୍ୱରରେ ରାମନାଥ ଶିବଙ୍କର ଉପାସନା ହୁଏ, ପୁରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ପୂଜାର୍ଚ୍ଚନା ହୁଏ, ଏବଂ ବଦ୍ରିନାଥରେ ମଧ୍ୟ ବଦ୍ରିନାଥ ଶିବଙ୍କର ଉପାସନା ହୁଏ । ଏହାଛଡ଼ା ମଧ୍ୟ କାଶୀକ୍ଷେତ୍ର, ଭୁବନେଶ୍ୱର, କାମାକ୍ଷା ପୁରୀ, ହରଦ୍ୱାର, ଋଷିକେଶ ପ୍ରଭାସ ସୋମନାଥ ପ୍ରୟାଗ, ମଥୁରା ପ୍ରଭୃତି ତୀର୍ଥମାନ ଭ୍ରମଣ କରି ଓ ପୂଜାର୍ଚ୍ଚନା କରି ଧର୍ମାର୍ଜନ କରିଥାନ୍ତି । ଏ ସବୁ ତୀର୍ଥ ଜାଗାରେ ମହିମାବନ୍ତ ଦେବଦେବୀଙ୍କ ମନ୍ଦିର ଅଛି ଓ ସାଧୁସନ୍ଥମାନଙ୍କର ତପସ୍ୟା ଫଳ ସହିତ ସେମାନଙ୍କ ପାଦଧୂଳି ମଧ୍ୟ ରହିଥାଏ । ତେଣୁ ଧର୍ମାର୍ଥୀମାନେ ସେଠାକୁ ଯାଇ ପୁଣ୍ୟ ଅର୍ଜନ କରିଥାନ୍ତି । ଏହା ସମୁଚିତ ଧର୍ମାଚାର ମଧ୍ୟ ।

କିନ୍ତୁ ମହାମତି ଚାଣକ୍ୟ କହୁଛନ୍ତି, ଏ ସବୁ ତୀର୍ଥ ଭ୍ରମଣ କରି ପୂଜାର୍ଚ୍ଚନା କରୁଥିବା ଲୋକଙ୍କର ବହୁ ପୁଣ୍ୟ ହୁଏ । କିନ୍ତୁ ସେହି ପୁଣ୍ୟଫଳ ବହୁ ବିଳମ୍ବରେ ମିଳିଥାଏ । ମାତ୍ର ସାଧୁସନ୍ଥମାନଙ୍କ ଦର୍ଶନ ଫଳରେ ପୁଣ୍ୟଫଳ ସଙ୍ଗେ ସଙ୍ଗେ ମିଳିଥାଏ । ସତ କଥା ! ଜୀବନ୍ତ ସାଧୁମାନେ ଯୋଗ ତପସ୍ୟା କରି ଓ ମହତ୍ କାର୍ଯ୍ୟରେ ଜୀବନ ଉତ୍ସର୍ଗ କରି ଦେବତା ପଦକୁ ଉନ୍ନୀତ ହୋଇଥାନ୍ତି । ଯେଉଁମାନେ ଏ ଯୁଗର ରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ, ମା ସାରଦା, ମହାତ୍ମାଗାନ୍ଧି, ସନ୍ଥବିନୋବା, ଶ୍ରୀମା ଶ୍ରୀଅରବିନ୍ଦ, ସିରିଡ଼ି ସାଇବାବା, ସତ୍ୟସାଇବାବା, ନିଗମାନନ୍ଦ, ପ୍ରଣବାନନ୍ଦ, ଓ ଠାକୁର ଅନୁକୂଳଚନ୍ଦ୍ର ଏବଂ ଆମ ସତ୍ୟବାଦୀ ଯୁଗର ଗୋପବନ୍ଧୁ, ଆଚାର୍ଯ୍ୟ ହରିହର, ପ୍ରଭୃତି ଋଷିପ୍ରତିମ ମଣିଷଙ୍କୁ ଦର୍ଶନ କରିଥିବେ-ସେମାନଙ୍କର ପୁଣ୍ୟଫଳ ତତ୍କ୍ଷଣାତ୍ ମିଳିଯାଏ ।



## ୧୧୭. କୁତ୍ସିତ ସମାଜରେ କିଏ ବଞ୍ଚେ ?

**ବିପ୍ରାସ୍ମିନ୍‌ନଗରେ ମହାନ୍ କଥୟ କସ୍ତାଳଦ୍ରୁମାଣାଂ ଗଣଃ,**
**କୋ ଦାତା ରଜକୋ ଦଦାତି ବସନଂ ପ୍ରାତର୍ଗୃହୀତ୍ୱା ନିଶି ।**
**କୋ ଦକ୍ଷଃ ପରବିତ୍ତଦାରହରଣେ ସର୍ବୋଽପି ଦକ୍ଷୋ ଜନଃ**
**କସ୍ମାଜ୍ଜୀବସି ହେ ସଖେ ବିଷକୃମିନ୍ୟାୟେନ ଜୀବାମ୍ୟହମ୍ ॥ (୧୨/୯)**

ପାଠକେ ! ଉପରେ ଲିଖିତ ଏଇ ବଚନିକା-ଶୈଳୀରେ ଲିଖିତ ମହାମତି ବିଦଗ୍ଧବାକ୍ ଚାଣକ୍ୟ ପଣ୍ଡିତଙ୍କର ଶ୍ଳୋକଟି ପାଠ କରି ଏ ଶ୍ଳୋକର ମର୍ମଟି ବୁଝିଲେ ତ ? କି ଚମତ୍କାରଭାବେ ଚାଣକ୍ୟ ଏହି ମର୍ମଦାହୀ କଥୋପକଥନଟି ଲେଖିଛନ୍ତି ।

ଜଣେ ବ୍ୟକ୍ତି ତାଙ୍କ ସମ୍ମୁଖରେ ଦଣ୍ଡାୟମାନ ଜଣେ ବ୍ରାହ୍ମଣଙ୍କୁ ଦେଖି ପ୍ରଶ୍ନ କରୁଛନ୍ତି, ହେ ବିପ୍ରବର ! ମୋର ମନେହେଉଛି, ଆପଣ ଏହି ଗ୍ରାମରେ ବାସ କରନ୍ତି। ଆଚ୍ଛା କହନ୍ତୁ ତ ! ଏହି ଗ୍ରାମରେ ମହାନ୍ କେହି ଅଛନ୍ତି କି ? ତାଙ୍କ ପ୍ରଶ୍ନର ଉଦ୍ଦେଶ୍ୟ ଥିଲା, ଏହି ଗ୍ରାମରେ ମହାନ୍ ବ୍ୟକ୍ତି କେହି ଅଛନ୍ତି କି ?

ବିପ୍ରବର ସଙ୍ଗେ ସଙ୍ଗେ ଉତ୍ତର ଦେଲେ, ହଁ ହଁ ବହୁତ ମହାନ୍ ତାଳଗଛ ସବୁ ଅଛନ୍ତି। ମହାନ୍ ଶବ୍ଦର ଅର୍ଥ - ମନରେ, ହୃଦୟରେ ଓ କର୍ମରେ ଖୁବ୍ ବଡ଼ କାମ କରିଥିବା ମଣିଷ । କିନ୍ତୁ ବ୍ରାହ୍ମଣ ସେହି ଶବ୍ଦର ବାହ୍ୟାର୍ଥଟିକୁ ବ୍ୟବହାର କରି ଏହା କହିଲେ । ତାଙ୍କ କଥାର ଅର୍ଥ ହେଲା, ଏ ଗ୍ରାମରେ ବଡ଼ ବଡ଼ ଗୁଣୀ, କୀର୍ତ୍ତିଶାଳୀ, ମହତ୍‌କର୍ମା ବ୍ୟକ୍ତି କେହି ନାହାନ୍ତି । ଏ ଗ୍ରାମର ନରନାରୀ ଖୁବ୍ ନଗଣ୍ୟ । ଏମାନେ ସର୍ବଦା କ୍ଷୁଦ୍ର ଜୀବନଟିଏ ବଂଚନ୍ତି । କିନ୍ତୁ ଏ ଗ୍ରାମରେ ବଡ଼ ବଡ଼ ତାଳଗଛ ସବୁ ଅଛି ।

ତା'ପରେ ସେ ଭଦ୍ରବ୍ୟକ୍ତି ସେହି ବ୍ରାହ୍ମଣଙ୍କୁ ପ୍ରଶ୍ନ କଲେ- ମହାଶୟ ! ଏ ଗ୍ରାମରେ କେହି ଦାନଶୀଳ ବ୍ୟକ୍ତି ବା ଦାତା ଅଛନ୍ତି କି ?

ଏହା ଶୁଣି ବ୍ରାହ୍ମଣ ଉତ୍ତର ଦେଲେ, ନା, ନା ! ତୁମେ ଯେଉଁ ଦାନଶୀଳ ବ୍ୟକ୍ତିଙ୍କ କଥା ପଚାରୁଛ - ସେଭଳି ମଣିଷ ଆମ ଗ୍ରାମରେ କେହି ନାହାନ୍ତି। ତେବେ ଆମର ଏଇ ଗ୍ରାମରେ ଦୁଇଜଣ ରଜକ ଅଛନ୍ତି, ସେମାନେ ଆମ ଘରୁ ମଇଳା ଲୁଗା ପୋଷାକ ସବୁ ନେଇ ସେଗୁଡ଼ିକୁ କାଚି ପରିଷ୍କାର କରି, ଖରାରେ ଶୁଖାଇ ତା ପରଦିନ ଆମକୁ ଆଣି ଦେଇଯାନ୍ତି । ସେମାନେ ଦାତା ହେଲେ କି ?

ତା'ପରେ ସେ ଭଦ୍ରବ୍ୟକ୍ତି ପଚାରିଲେ, ହେ ବିପ୍ରବର ! ଆପଣଙ୍କ ଗ୍ରାମରେ ଚତୁର ବ୍ୟକ୍ତି ସବୁ ଅଛନ୍ତି ତ ?

ବ୍ରାହ୍ମଣ ସଂଗେ ସଂଗେ ଉତ୍ତର ଦେଲେ, ହଁ ହଁ ! ଆମ ଗ୍ରାମଟି ସେ ଦୃଷ୍ଟିରୁ ଖୁବ୍ ନାମ ଅର୍ଜନ କରିଛି । କାରଣ ଆମ ଗ୍ରାମରେ ଏପରି ଚତୁର ଲୋକ ଅଛନ୍ତି, ଯେଉଁମାନେ ଖୁବ୍ କୌଶଳରେ ଅନ୍ୟ ଲୋକର ଧନ, ଦ୍ରବ୍ୟାଦି ଅପହରଣ କରିନେଇ ଅନ୍ୟ ସ୍ଥାନରେ ବିକ୍ରି କରି ଖୁବ୍ ଲାଭବାନ୍ ହୁଅନ୍ତି । ଆଉ ମଧ୍ୟ ଦଳେ ଚତୁର ବ୍ୟକ୍ତି ଅଛନ୍ତି, ଯେଉଁମାନେ ଅନ୍ୟ ଲୋକର ସୁନ୍ଦରୀ ସ୍ତ୍ରୀ ସହିତ ବାହାରେ ଭଲ ସଂପର୍କ ରଖିଥାନ୍ତି । କିନ୍ତୁ ଗୁପ୍ତରେ ସେମାନଙ୍କୁ ନେଇ ଯୌନସୁଖବିଳାସରେ ମାତିଥାନ୍ତି । ବାହାରେ ସେମାନଙ୍କୁ ଖୁଡ଼ୀ, ଭଉଣୀ, ମାଉସୀ ବୋଲି ଡାକନ୍ତି । କିନ୍ତୁ ଖୁବ୍ ଚତୁର ପଣରେ ଗୋପନରେ ସେଇ ନାରୀମାନଙ୍କ ସହିତ କାମଲାଳସା ଚରିତାର୍ଥ କରନ୍ତି ।

କେହି ଏ କଥା ଜାଣିପାରନ୍ତି ନାହିଁ । ଏଇ ଲୋକମାନଙ୍କଠାରୁ ଆଉ ଅଧିକ ଚତୁର କିଏ ହୋଇପାରିବ ?

ଏକଥା ଶୁଣି ପ୍ରଶ୍ନକର୍ତ୍ତା ହସିବେ କି କାନ୍ଦିବେ ? ଏ ବ୍ରାହ୍ମଣ ମହାଶୟ କି କଥା କହୁଛନ୍ତି ? ତାଙ୍କ ଗ୍ରାମ କ'ଣ ସତରେ ଗୋଟିଏ ଗ୍ରାମ ନା ନରକପୁରୀ ? ଏଭଳି କୁତ୍ସିତ ଗ୍ରାମରେ ଏହି ବିପ୍ରବର କିପରି ରହୁଛନ୍ତି ? ଏପରି ଭାବି ସେ ପୁନଶ୍ଚ ପ୍ରଶ୍ନ କଲେ-

ହେ ବିପ୍ରବନ୍ଧୁ ! ଆପଣ ଏ କ'ଣ କହୁଛନ୍ତି ? ଏପରି ଏକ ଗ୍ରାମରେ ଭଲ, ଆପଣଙ୍କ ଭଳି ବିପବର କିପରି ବାସ କରୁଛନ୍ତି ?

ଏହା ଶୁଣି ସେହି ବ୍ରାହ୍ମଣ ବ୍ୟକ୍ତିଜଣକ ବିମର୍ଷ-ବଦନରେ କହିଲେ,

ବନ୍ଧୁ ! ସେ କଥା ଆଉ ମୋତେ ପ୍ରଶ୍ନ କରି ଲଜ୍ୟା ଦିଅନ୍ତୁ ନାହିଁ । କାରଣ, ବିଷାକ୍ତ କୀଟଟିଏ ଯେପରି ତା'ର ବିଷକୁ ନେଇ ବଞ୍ଚିଥାଏ, ମୁଁ ସେହିପରି ସେ ଗ୍ରାମରେ ବଞ୍ଚିଛି । ମୋ ଗ୍ରାମର ଲୋକମାନେ ଯେପରି ସ୍ୱଭାବର, ମୁଁ ମଧ୍ୟ ପ୍ରାୟ ସେହି ପ୍ରକୃତି ଆଚରଣ ନେଇ ବଂଚିଛି । ତେଣୁ ମୋତେ ବିଶେଷ କିଛି ଖରାପ ଲାଗୁ ନାହିଁ ।

ପାଠକେ ! ଚାଣକ୍ୟ ମହାଶୟଙ୍କର ବାକ୍ୟ କୁଶଳତା ଦେଖିଲେ ତ ?



## ୧୧୮. ସାଧୁଲୋକର ଷଡ଼ବାନ୍ଧବ

**ସତ୍ୟଂ ମାତା ପିତା ଜ୍ଞାନଂ ଧର୍ମୋ ଭ୍ରାତା ଦୟା ସଖା ।**
**ଶାନ୍ତିଃ ପତ୍ନୀ କ୍ଷମା ପୁତ୍ରଃ ଷଡ଼େତେ ମମ ବାନ୍ଧବାଃ ॥ (୧୨/୧୦)**

ପାଠକେ ! ମହାନ୍ ଜୀବନର ଅଧିକାରୀ ମହାମତି ଚାଣକ୍ୟ ତାଙ୍କର ଏହି ଶ୍ଳୋକଟିରେ ଏକ ଉଦାର ଆଧ୍ୟାତ୍ମିକ ସତ୍ୟ ପ୍ରକାଶ କରିଛନ୍ତି । ଆମେ ସମସ୍ତେ ସାଂସାରିକ ମଣିଷ । ଆମ ସଂସାରରେ ଆମେ ଆମର ପରିବାର ଓ ବନ୍ଧୁ ସ୍ୱଜନମାନଙ୍କୁ ନେଇ ରହିଥାଉ । ସେମାନେ ଆମକୁ ଜୀବନରକ୍ଷଣରେ ସାହାଯ୍ୟ କରନ୍ତି ଓ ଆମ ଜୀବନକୁ ମଧୁର ମାୟାମମତାର ବନ୍ଧନରେ ବାନ୍ଧି ରଖିଥାନ୍ତି । ଆମେ ସେହିମାନଙ୍କ ଠାରୁ ପାଉ ଆନନ୍ଦ ଓ ନିରାପତ୍ତା ।

କିନ୍ତୁ ପାଠକେ ! ସବୁବେଳେ, ସବୁ କ୍ଷେତ୍ରରେ ଏହା ସମ୍ଭବ ହୁଏ ନାହିଁ । ବରଂ ଆମର ରକ୍ତଗତ ସଂପର୍କ ସବୁ ଆମର ଦୁଃଖ ବିପଦର ଓ ଅଶାନ୍ତି ନିରାନନ୍ଦର କାରଣ ହୋଇଥାଏ । କାରଣ ଆମ ନିଜ ଔରସରୁ ଜନ୍ମ ହେଲେ ବି କିମ୍ବା ଆମ ଭିତରେ ରକ୍ତଗତ ବଂଶସମ୍ପର୍କ ଥିଲେ ବି ବ୍ୟକ୍ତିର ଚରିତ୍ର ତା'ର ପୂର୍ବଜନ୍ମର ସଂସ୍କାର ଉପରେ ନିର୍ଭର କରିଥାଏ କିମ୍ବା ପୂର୍ବପୁରୁଷମାନଙ୍କ ଭିତରୁ କେଉଁ ଦୁଷ୍ଟ ନରନାରୀଙ୍କ ଦୁଷ୍ଟ ଜିନ୍ ମଧ ଆମର ପୁଅ, ଝିଅ, ଭାଇ, କକା, ଖୁଡ଼ୀ, ଏପରିକି ପିତାମାତାଙ୍କ ରକ୍ତରେ ରହି ତାକୁ ଦୂଷିତ କରିଥାଏ। ପ୍ରହ୍ଲାଦ ଓ ହରିଣ୍ୟକଶିପୁ ଥିଲେ ପୁତ୍ର ଓ ପିତା । କିନ୍ତୁ ପୁତ୍ର ପ୍ରହ୍ଲାଦଙ୍କର ଆଧ୍ୟାତ୍ମିକ ସ୍ୱଭାବ ଓ ତାଙ୍କ ପିତା ହିରଣ୍ୟକଶିପୁରୁ ଆସୁରିକ ସ୍ୱଭାବ ଭିତରେ ମେଳ ଥିଲା କି ? କାରଣ ଦୁହିଁଙ୍କ ପ୍ରକୃତିରେ ଥିଲା ଅମେଳ । ପାଣ୍ଡବ ଓ କୌରବଙ୍କ ଭିତରେ ରକ୍ତସମ୍ପର୍କ ଥିଲେ ବି ସେମାନଙ୍କ ଭିତରେ ଏଡ଼େ ଭୟଙ୍କର ଶତ୍ରୁତା ହେଲା କିପରି ? ତେଣୁ ଚାଣକ୍ୟ କହୁଛନ୍ତି, ଏ ସଂସାରରେ ଆମେ ଯେହେତୁ ଅଛୁ, ସେ ଦୃଷ୍ଟିରୁ ଆମେ ଆମର ସାଂସାରିକ ସମ୍ପର୍କକୁ ଯଥାରୀତି ରକ୍ଷା କରି ଚଳିବା। କିନ୍ତୁ ଆମର ଆତ୍ମାର ସମ୍ପର୍କ ରହିବ ଆଉଠାଏ । ଚାଣକ୍ୟ କହୁଛନ୍ତି, "ମୁଁ ମୋର ଅନ୍ତରାତ୍ମାରେ ସତ୍ୟକୁ ମାତା ତୁଲ୍ୟ ଭାବିବି ଓ ତାରି କୋଳରେ ରହି ବଢ଼ିବି । ମୋର ପିତା କିଏ ହେବ? ମୋର ପିତା ହେବେ ସଦ୍‌ଜ୍ଞାନ । ସେହି ପିତାଙ୍କ ନିର୍ଦ୍ଦେଶରେ ମୁଁ ଜୀବନ ବଞ୍ଚିବି । ମୋର ଭାଇମାନେ ହେବେ ଧର୍ମ । ସର୍ବବିଧ ମାନବୀୟ ଚରିତ୍ରର ସଦ୍‌ଧର୍ମ ହେବେ ମୋର ଭାଇଭଉଣୀ । ସେଇମାନଙ୍କୁ ନେଇ ମୁଁ ଏହି ସଂସାର ସମୁଦ୍ରକୁ ପାରିହେବି ।"

ମୋର ସଖା ଓ ବନ୍ଧୁ କିଏ ହେବେ ? ଦୟା, କରୁଣା, ସହାନୁଭୂତି ହେବେ ମୋର ସଖା ଓ ବନ୍ଧୁ । ମୋ ଜୀବନର ଉତ୍ଥାନରେ ସେମାନେ ମତେ ସାହାଯ୍ୟ କରିବେ । ମୋର ବିବାହ ହେବ 'ଶାନ୍ତି'ଙ୍କ ସହିତ । ସେଇ ଶାନ୍ତି ହେବେ ମୋର ପତ୍ନୀ ଏବଂ ତାଙ୍କରି ସହିତ ମୋର ନିତ୍ୟରତି ହେଉଥିବ । ମୋର ସର୍ବବିଧ କାମନା ଓ ବାସନାର ଜ୍ୱାଳାକୁ ସେ ହିଁ ଉପଶମ କରିବେ । ମୋର ଉପଯୁକ୍ତ ପତ୍ନୀ ସେହି ଶାନ୍ତି ହିଁ ମୋ ଜୀବନର ଚିର ସାଥି ହୋଇ ମୋର ସହଚାରିଣୀ ହେବେ । ଶେଷରେ ମୋର କ୍ଷମା ହିଁ ହେବେ ମୋର ପୁତ୍ର କନ୍ୟାଗଣ। ପୁତ୍ରକନ୍ୟାଗଣ ପିତାମାତାଙ୍କୁ ଅପତ୍ୟ ସୁଖ ପ୍ରଦାନ କରନ୍ତି । ପିତାମାତାଙ୍କ ହୃଦୟକୁ ସର୍ବଦା ବାତ୍ସଲ୍ୟ ରସରେ ଅଭିଭୂତ କରି ରଖନ୍ତି । ତେଣୁ ଏ ପୃଥିବୀ ପ୍ରତି, ଏହାର ପ୍ରତି ଜୀବଜନ୍ତୁଙ୍କ ପ୍ରତି ମୋର ସର୍ବଦା କ୍ଷମା ଭାବ ରହିବ । ପିଲାମାନେ ଯେତେ କଷ୍ଟ ଦେଲେ ବି, ବାପା ମାଆ ସେମାନଙ୍କୁ କ୍ଷମା କରନ୍ତି । ସେହିପରି 'କ୍ଷମା' ହିଁ ହେବ ମୋର ପୁତ୍ର ଓ କନ୍ୟା ।

ଫଳରେ ସାରା ଜଗତ ପ୍ରତି ମୋର ହୃଦୟ ସର୍ବଦା କ୍ଷମାଶୀଳ ହୋଇ ରହିବ । ସମସ୍ତଙ୍କୁ ମୁଁ ମୋର ପୁତ୍ରକନ୍ୟା ଭଳି ଭାବିବା ହେତୁରୁ ମୋ ଭିତରେ ଏକ ବିଶ୍ୱପିତୃତ୍ୱ ଜାଗିଉଠିବ ।

ପାଠକେ ! ମହାମତି ଚାଣକ୍ୟଙ୍କର ଏହି ଉକ୍ତିଟି ଆମ ଜୀବନକୁ ସୁନ୍ଦର, ମଧୁର ଓ ମହନୀୟ କରିବା ପାଇଁ ଅତି ଉପାଦେୟ ନୁହେଁ କି ?



## ୧୧୯. ମଣିଷ ଜୀବନର କର୍ତ୍ତବ୍ୟ କ'ଣ ?

ପିଲାଦିନେ ଆମେ ଭକ୍ତକବି ମଧୁସୂଦନ ରାଓଙ୍କ ବର୍ଣ୍ଣବୋଧରେ ପଢ଼ିଥିଲେ-

ବାଲ୍ୟକାଳୁ ଧର୍ମଧନ ମୁଁ ସଞ୍ଚିବି ଏ ଜୀବନ ଅନିଶ୍ଚିତ।
କେଜାଣି କାହାର ଆଜି ମୃତ୍ୟୁକାଳ ହୋଇଯିବ ଉପସ୍ଥିତ ॥

ଏ ପଦଟି ଭିତରେ ନିହିତ ଥିବା ସତ୍ୟଟି ଆମ ହୃଦୟରେ ଏ ଯାବତ ଲାଖି ରହିଛି। କହିବାରେ ଦ୍ୱିଧା ନାହିଁ ଯେ, ଏ ପଦଟିର ପ୍ରଭାବ ଆମକୁ ଆଜିପର୍ଯ୍ୟନ୍ତ ମୃତ୍ୟୁ-ସଚେତନ ଓ ଧର୍ମ-ସଚେତନ କରି ରଖିଛି ।

ଏବେ ମହାଧର୍ମଜ୍ଞ ଚାଣକ୍ୟ ପଣ୍ଡିତଙ୍କ ଶ୍ଳୋକଟି ପଢ଼ନ୍ତୁ । ଠିକ୍ ଏହି ଅର୍ଥଟିକୁ ଅନୁଭବ କରିବେ ।

ଚାଣକ୍ୟ କହୁଛନ୍ତି -

**ଅନିତ୍ୟାନି ଶରୀରାଣି ବିଭବୋ ନୈବ ଶାଶ୍ୱତଃ।**
**ନିତ୍ୟଂ ସନ୍ନିହିତୋ ମୃତ୍ୟୁଃ କର୍ତ୍ତବ୍ୟୋ ଧର୍ମସଂଗ୍ରହଃ ॥ (୧୨/୧୧)**

ଶ୍ଳୋକଟିର ଅର୍ଥ ହେଲା, ହେ ସଂସାରୀ ମଣିଷମାନେ ! ତୁମ୍ଭମାନଙ୍କୁ ଗୋଟିଏ ବିଷୟରେ ମୁଁ ସଚେତନ କରିଦେଉଛି । ସବୁ ମଣିଷ ଓ ଜୀବଜନ୍ତୁଙ୍କ ଶରୀର ଅନିତ୍ୟ । ମାନେ, ଏ ସବୁ ଶରୀର ସବୁ ସମୟ ପାଇଁ ରହିବ ନାହିଁ । ପୂର୍ବରୁ ରହି ନାହିଁ । ଏବେବି ରହୁ ନାହିଁ ଏବଂ ଭବିଷ୍ୟତ୍‌ରେ ମଧ୍ୟ ରହିବ ନାହିଁ । ସବୁ ଶରୀର ତିଆରି ହୋଇଛି ପାଞ୍ଚଟି ମୌଳିକ ଉପାଦାନରେ । ମାଟି, ପାଣି, ଅଗ୍ନି, ବାୟୁ ଓ ଆକାଶ ବା ଶୂନ୍ୟତାରେ । ଏ ସବୁ ସର୍ବଦା ଧ୍ୱଂସ ପାଆନ୍ତି ଉପଯୁକ୍ତ ସମୟରେ । ଜୀବର ଦେହରୁ ଆଗ ଆତ୍ମା ଚାଲିଯାଏ । ତା'ପରେ ଯାଏ ପ୍ରାଣ ଓ ଶେଷରେ ଚାଲିଯାଏ ମନ । ଶରୀରର ମାଟି ଅଂଶ ମାଟିରେ ମିଶିଯାଏ । ପାଣି ଅଂଶ ମିଶିଯାଏ ପାଣିରେ ।

ଅଗ୍ନି ମିଶିଯାଏ ଅଗ୍ନିରେ । ବାୟୁ ମିଶିଯାଏ ପବନରେ ଓ ଆକାଶ ବା ଶୂନ୍ୟଟ ମିଶିଯାଏ ଆକାଶରେ । ଆତ୍ମାପୁରୁଷ ମିଶିଯାନ୍ତି ପରମାତ୍ମାଙ୍କ ଭିତରେ ।

ସେହିପରି, ଆରେ ମୂଢ଼ ମାନବ ! ତୁ ଏ ଯେଉଁ ଧନ ସଂପଦ ଅର୍ଜନ କରି ଜମା କରିଛୁ, ତାହା ମଧ ତୋ' ପାଖରେ ସବୁଦିନେ ରହିବ ନାହିଁ, ଲକ୍ଷ୍ମୀ ସଦା ଚଞ୍ଚଳା । ଏ ହାତର ଧନ ସେ ହାତକୁ ଚାଲିଯାଏ । ସେ ହାତର ଧନ ଅନ୍ୟ ହାତକୁ ଚାଲିଯାଏ । ତୋର ଏ କୋଠାବାଡ଼ି, ଗାଡ଼ିମଟର, ବିଲ, ତୋଟା, ଖଣି ଏସବୁ ମଧ ତୋ' ପରେ ତୋ' ପିଲାଙ୍କ ପାଖକୁ ଯିବ। ତା' ପରେ ସେ ସବୁ ଧନସଂପଦ କୁଆଡ଼େ ଯିବ, ସେକଥା ଆଗରୁ କହି ହେବ ନାହିଁ। ତେଣୁ ଏହି ଧନସଂପଦ ମଧ ଚିରସ୍ଥାୟୀ ନୁହେଁ।

ଏବଂ ସବୁଠାରୁ ଭୟଙ୍କର ସତ୍ୟଟି ହେଲା, ମୃତ୍ୟୁ ସବୁବେଳେ ତୋ' ସହିତ ଛାଇଭଳି ଲାଗି ରହିଛି। ଅରଣ୍ୟ ଭିତରେ ଏକୁଟିଆ ପଥିକଟିକୁ ବାଘ ଛକି ଛକି ଚାଲିଥାଏ। ବାଗ ପଡ଼ିଲା ମାତ୍ରେ ତା' ଉପରକୁ କୁଦା ମାରି ତାକୁ ପାଟିରେ କାମୁଡ଼ି ନେଇ ତା'ର ରକ୍ତପାନ କରେ ଓ ତାକୁ ସମୁଦାୟ ଗ୍ରାସ କରେ। ସେହିପରି, ମୃତ୍ୟୁ କେତେବେଳେ ତୋ' ଉପରକୁ କୁଦି ପଡ଼ିବ କିମ୍ବା ଯମଦୂତମାନେ କେତେବେଳେ କୋଉ ରୋଗ ଛଳରେ ତୋ' ଭିତରେ ସଂଚରିଯାଇ ତୋତେ ମୃତ୍ୟୁଲୋକକୁ ଘେନି ଯିବେ, ତା'ର ମଧ କିଛି ଠିକଣା ନାହିଁ। ମୋଟ ଉପରେ ଏ ଜୀବନଲୀଳା ଅନିତ୍ୟ। ତେଣୁ ଏ ଜୀବନକୁ ବୃଥାରେ କାଟି ଦେ'ନା। ଜୀବନକୁ ବିଳାସବ୍ୟସନ କରି ମଧ ବିତାଇ ଦେ'ନା। ଭଗବାନ୍ ଆମକୁ କାହିଁକି ଏ ଜୀବନ ଦେଇଛନ୍ତି ? ପୁଣି ଆମେ ଏ ମଣିଷ ଜୀବନ କ'ଣ ପାଇଁ ପାଇଛେ ? ଆମେ କ'ଣ ଇତର ଜୀବଜନ୍ତୁ ହୋଇଛେ ? ଅବଶ୍ୟ ଭଗବାନ୍ ଏ ପୃଥିବୀରେ ଯେତେ ଜୀବଜନ୍ତୁ, ବୃକ୍ଷ ଲତା, କୀଟପତଙ୍ଗ ସୃଷ୍ଟି କରିଛନ୍ତି, ସେ ସବୁ ଜୀବନର କିଛି ଉଦ୍ଦେଶ୍ୟ ନିଶ୍ଚୟ ଅଛି। ଅନ୍ୟ ପ୍ରାଣୀମାନେ ସେମାନଙ୍କର ପ୍ରାଣୀ-ଧର୍ମ ପାଳନ କରୁଛନ୍ତି : ମାତ୍ର ସବୁ ମରିଷ ତା'ର ମାନବିକ ଧର୍ମ ପାଳନ କରୁନାହିଁ।

ତେଣୁ ମହାନୀତିଜ୍ଞ ଚାଣକ୍ୟ କହୁଛନ୍ତି, ହେ ମାନବ! ତୋର ମାନବ-ଧର୍ମ ପାଳନ କରି ବଂଚ ନ ହେଲେ ତୋ ଜୀବନ ବୃଥାରେ କାଟିବା ଠିକ୍ ହେବ ନାହିଁ । ମଣିଷର ମୂଳ ଧର୍ମ କ'ଣ ? ପ୍ରଥମ କଥା ହେଲା, ସେ ତା'ର ଜୀବନକୁ ସତ୍ୟରେ ବଂଚିବ। କେବଳ ନିଜର ମଙ୍ଗଳ ନୁହଁ, ସମସ୍ତଙ୍କର କିଛି ମଙ୍ଗଳ କରି ବଂଚିବ। ତା' ଜୀବନକୁ ମଧ ସେ ଖୁବ୍ ସୁନ୍ଦର କରି ବଂଚିବ ଓ ଏ ପୃଥିବୀର ଯେତିକି ଅଂଶ ତା' ଭାଗରେ ପଡ଼ିଛି ତାକୁ ସୁନ୍ଦର କରି ରଖିବ।

ତା'ପରେ ମଣିଷ ତା'ର ପ୍ରକୃତିରୁ ହିଂସା, ଦ୍ୱେଷ, କ୍ରୋଧ, କାମ, ଲୋଭ, ମୋହ, ମଦ ଇତ୍ୟାଦିକୁ ଦୂରକରି ପ୍ରେମ, ଦୟା, ସେବା, କରୁଣା, ବିନୟ, ମାଧୁର୍ଯ୍ୟ ଓ ମହତ୍ତ୍ୱ, ମର୍ଯ୍ୟାଦାଦି ଉତ୍ତମ ଗୁଣରେ ବିଭୂଷିତ କରି ଦିବ୍ୟ ମଣିଷଟିଏ ହେବ। ଶେଷରେ ଏହି ସବୁ ସାଧୁସୁଲଭ ଗୁଣକର୍ମରେ ନିଜକୁ ଶୁଦ୍ଧ କରି ସେ ଏ ସୃଷ୍ଟିର କର୍ତ୍ତା ସେହି ସଚ୍ଚିଦାନନ୍ଦ ସତ୍ୟ, ଶିବ, ସୁନ୍ଦର ଭଗବାନ୍‌ଙ୍କ ଭାବରେ ଭକ୍ତି-ବିହ୍ୱଳ ହୋଇ ଦିବାରାତ୍ର ଅତିବାହିତ କରିବ।

ଏହି ହେଲା ମାନବ ଧର୍ମ। ଏହି ଅସ୍ଥାୟୀ ଜୀବନରେ ଯୋଉ ମଣିଷ ସଚେତନ ଭାବେ ଏହି ଧର୍ମ ପାଳନ କରି ବଂଚେ ଓ ମରେ ତା'ରି ଜୀବନ ହିଁ ଯଥାର୍ଥରେ ଦିବ୍ୟ ଜୀବନ ବୋଲି ଭାବିବାକୁ ହେବ।



## ୧୨୦. ଉତ୍ସବାନନ୍ଦର ଉତ୍ସ କୋଉଠି ?

ମଣିଷ ଜୀବନର ଆନନ୍ଦ କୋଉଠୁ ମିଳେ ?

ଉତ୍ସବ ହିଁ ଆମକୁ ଆନନ୍ଦ ଦେଇଥାଏ । ଉତ୍ସବ ହେଉଛି ଏକ ଆନୁଷ୍ଠାନିକ ମିଳନ । ବିବାହ, ବ୍ରତ, ଗୃହପ୍ରତିଷ୍ଠା, ସନ୍ତାନ ଜନ୍ମ, ପ୍ରଭୃତି ଉତ୍ସବ ପାରିବାରିକ କିନ୍ତୁ ମଠ, ମନ୍ଦିର ପ୍ରତିଷ୍ଠା, ସ୍କୁଲ କଲେଜ ପ୍ରତିଷ୍ଠା ଉତ୍ସବଗୁଡ଼ିକ ସାମାଜିକ । ଯେକୌଣସି ଉତ୍ସବରେ ପ୍ରିୟଜନମାନେ ଏକତ୍ର ହୁଅନ୍ତି । ସଂଗୀତ, ପାଲା, ଦାସକାଠିଆ ଇତ୍ୟାଦି ହୁଏ । ନାନାବିଧ ସୁସ୍ୱାଦୁ ଅନ୍ନବ୍ୟଂଜନ ପ୍ରସ୍ତୁତ ହୁଏ । ସମସ୍ତେ ଆନନ୍ଦରେ ହୋ ହଲ୍ଲା କରନ୍ତି - ଏକାଠି ମିଶି ଖାଇପିଇ ଉତ୍ସବ ଦିନଟିକୁ ଆନନ୍ଦମୁଖର କରି କଟାଉଥାନ୍ତି । ମାତ୍ର ମହାନ୍ ଜ୍ଞାନୀପୁରୁଷ ଚାଣକ୍ୟ କହୁଛନ୍ତି -

**ଆମନ୍ତ୍ରଣୋତ୍ସବା ବିପ୍ରା ଗାବୋ ନବ ତୃଣୋତ୍ସବାଃ।**
**ପତ୍ୟୁତ୍ସାହଯୁତା ନାର୍ଯ୍ୟୋଽହଂ କୃଷ୍ଣ ଚରଣୋତ୍ସବଃ ॥** (୧୨/୧୨)

ଶ୍ଳୋକଟିର ଅର୍ଥ ହେଲା, ବିପ୍ର ବା ବ୍ରାହ୍ମଣମାନେ ଭୂରି ଭୋଜନ ପାଇଁ ନିମନ୍ତ୍ରଣ ପାଇଲେ କିମ୍ୱା କୌଣସି ଯାଗଯଜ୍ଞାଦି ଉତ୍ସବର ନିମନ୍ତ୍ରଣ ପାଇଲେ ଖୁବ୍ ଆନନ୍ଦିତ ହୁଅନ୍ତି ଏବଂ ପତ୍ନୀ ଯଦି ସ୍ୱପତିଠାରୁ ଆଦର, ସ୍ନେହ, ସୋହାଗ ପାଏ, ତେବେ ସେତେବେଳେ ସେ ଏହାକୁ ଏକ ଆନନ୍ଦ ଉତ୍ସବ ବୋଲି ଅନୁଭବ କରି ଖୁସୀ ହୁଏ ।

କିନ୍ତୁ ମୁଁ ଏସବୁକୁ ଉତ୍ସବାନନ୍ଦ ବୋଲି ମନେ କରେ ନାହିଁ । ମୋର ମନ ଓ ହୃଦୟ ଯେତେବେଳେ ଗୋପୀମାନଙ୍କ ହୃଦୟବଲ୍ଲଭ ଦିବ୍ୟପ୍ରେମ ଓ ଆନନ୍ଦର ଅବତାର ରସରାଜ ଭଗବାନ୍ ଶ୍ରୀକୃଷ୍ଣଙ୍କ ପାଦ ବନ୍ଦନା କରିବାର ସୁଯୋଗ ପାଏ- ସେତେବେଳେ ମୁଁ ଏକ ଦିବ୍ୟ ଉତ୍ସବାନନ୍ଦ ଅନୁଭବ କରେ ।



## ୧୨୧. ...ଯଃ ପଶ୍ୟତି, ସ ପଶ୍ୟତି

ପାଠକେ ! ଆମେ ସମସ୍ତେ ଦୁଇଟି ଆଖି ପାଇଥାଇଁ ଏବଂ ସେ ଆଖିରେ ଆମେ ଜଗତକୁ ଦେଖୁଛୁ । କିଏ ଜଗତକୁ ଦେଖି ଆଶ୍ଚର୍ଯ୍ୟ ହେଉଛି । କିଏ ଜଗତକୁ ଦେଖି ଦେଇ ଖୁସୀ ହେଉଛି । କିଏ ବା ଜଗତକୁ ଦେଖି ଭାବୁଛି ଏହା ଏକ ଦୁଃଖଯଂତ୍ରଣାର କାରାଗାର। ଆଉ କିଏ ପୁଣି ଭାବୁଛି - ଏ ଜଗତ ଆମର ଭୋଗବିଳାସ ପାଇଁ ଉଦ୍ଦିଷ୍ଟ । କିନ୍ତୁ ଆମର ମହାଜ୍ଞାନୀ ଓ ପ୍ରାଜ୍ଞପୁରୁଷ ଚାଣକ୍ୟ କ'ଣ କହୁଛନ୍ତି ଶୁଣନ୍ତୁ,

**ମାତୃବତ୍ ପରଦାରାଂଶ୍ଚ ପରଦ୍ରବ୍ୟାଣି ଲୋଷ୍ଟ୍ରବତ୍ ।**
**ଆତ୍ମବତ୍ ସର୍ବଭୂତାନି ଯଃ ପଶ୍ୟତି ସ ପଶ୍ୟତି ॥ (୧୨/୧୩)**

ଚାଣକ୍ୟ ପଣ୍ଡିତେ କହୁଛନ୍ତି, ସମସ୍ତେ ଶୁଣ । ଆମେ ସମସ୍ତେ ଆଖି ଦୁଇଟା ପାଇଥାଇଁ ଏବଂ ଜଗତକୁ ଦେଖୁଥାଇଁ । ମାତ୍ର ସେ ଦେଖା ପ୍ରକୃତ ଦେଖା ନୁହେଁ । ଦୃଷ୍ଟି ଦୁଇ ପ୍ରକାର । ପୁଣ୍ୟ ଦୃଷ୍ଟି ଓ ପାପ ଦୃଷ୍ଟି । ପାପ ଦୃଷ୍ଟିରେ ଯେ ଜଗତକୁ ଦେଖେ ତା'ର ଦୃଷ୍ଟି ବିଷାକ୍ତ । ବିଷାକ୍ତ ଦୃଷ୍ଟି ଠିକ୍ ନୁହେଁ, କିନ୍ତୁ ଯେଉଁ ଲୋକ ଅନ୍ୟ ଲୋକର ପତ୍ନୀଙ୍କୁ ମା'କୁ ଦେଖିଲା ଭଳି ଦେଖେ ଏବଂ ଅନ୍ୟର ଯେତେ ମୂଲ୍ୟବାନ୍ ଲୋଭନୀୟ ଦ୍ରବ୍ୟକୁ ସେ ସୁନା ହେଉ ବା ହୀରା ନୀଳା ହେଉ, ତାକୁ ଗୋଟାଏ ଗୋଡ଼ିଭଳି ହେୟ ଓ ତୁଚ୍ଛ ଜ୍ଞାନ କରେ ଏବଂ ଯେଉଁଲୋକ ସମାଜର ସବୁଲୋକଙ୍କୁ ନିଜର ଆତ୍ମୀୟଭାବି ସେମାନଙ୍କୁ ସ୍ନେହଚକ୍ଷୁରେ ଦେଖେସେହି ଲୋକର ଦୃଷ୍ଟି ହିଁ ଯଥାର୍ଥ ଦୃଷ୍ଟି । ତା'ରି ଆଖି ହିଁ ଦିବ୍ୟ ଆଖି । ଆଉମାନଙ୍କ ଆଖି ଅଶୁଦ୍ଧ ଆଖି । ତାଙ୍କ ଦୃଷ୍ଟି - ପାପ ଦୃଷ୍ଟି ।



# ୧୨୨. ଚାଣକ୍ୟଙ୍କର ଶ୍ରୀରାମସ୍ତୁତି

ପାଠକେ ! ମହାମତି ଚାଣକ୍ୟ କେବଳ ବୁଦ୍ଧିମାନ୍ ନ ଥିଲେ । କେବଳ ମହାଜ୍ଞାନୀ ମଧ୍ୟ ନ ଥିଲେ । ସେ ମଧ୍ୟ ଥିଲେ ଜଣେ ଆଧ୍ୟାତ୍ମିକ ପୁରୁଷ, ଜଣେ ଭକ୍ତ। ତାଙ୍କର ଭଗବାନ୍ ଶ୍ରୀକୃଷ୍ଣଙ୍କ ପ୍ରତି ଓ ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ଅଚଳାଭକ୍ତି ଥିଲା। ଏବେ ଗୋଟିଏ ଶ୍ଳୋକ ଶୁଣନ୍ତୁ -

**ଧର୍ମେ ତତ୍ପରତା ସୁଖେ ମଧୁରତା ଦାନେ ସମୁତ୍ସାହତା,**
**ମିତ୍ରେଽବଂଚକତା ଗୁରୌ ବିନୟତା ଚିତ୍ତେଽତି ଗମ୍ଭୀରତା।**
**ଆହାରେ ଶୁଚିତା ଗୁଣେ ରସିକତା ଶାସ୍ତ୍ରେଷୁ ବିଜ୍ଞାନତା,**
**ରୂପେ ସୁନ୍ଦରତା ଶିବେ ଭଜନତା ତ୍ୱୟ୍ୟଂସ୍ତି ଭୋ ରାଘବ ॥ (୧୨/୧୪)**

ରାମଭକ୍ତ ଚାଣକ୍ୟ ଭକ୍ତି ଗଦ୍‌ଗଦ କଣ୍ଠରେ ମର୍ଯ୍ୟାଦା ପୁରୁଷୋତ୍ତମ, ରଘୁକୁଳତିଳକ ଭଗବାନ୍ ରାମଚନ୍ଦ୍ରଙ୍କ ଗୁଣଗାନପୂର୍ବକ ସ୍ତୁତି କରୁଛନ୍ତି, ହେ ରାଘବେନ୍ଦ୍ର ରାମ ! ଆପଣ ସାଂସାରିକ ଓ ପାରମାର୍ଥିକ ଧର୍ମାଚରଣରେ ସଦାତତ୍ପର ଏବଂ ଆପଣ ସମସ୍ତଙ୍କ ସହିତ ମଧୁର ଆଳାପ ବା ବିଚାର ବିମର୍ଶ କରୁଥାନ୍ତି। ସାଧୁ, ସନ୍ଥ ଓ ଦରିଦ୍ର ବ୍ୟକ୍ତିଙ୍କୁ ଧନଦାନ କରିବାରେ ଆପଣଙ୍କ ଦକ୍ଷିଣ ହସ୍ତ ସର୍ବଦା ଉତ୍ସାହର ସହିତ ପ୍ରସାରିତ ରହିଥାଏ। ଆପଣ ଏତେ ବନ୍ଧୁବତ୍ସଳ ଯେ, କେବେହେଲେ ପରିହାସରେ ବି, ବନ୍ଧୁଙ୍କ ସହିତ କପଟ ବ୍ୟବହାର କରି ନ ଥାନ୍ତି। ନିଜର କୁଳଗୁରୁ ମହର୍ଷି ବଶିଷ୍ଠ ଓ ଅନ୍ୟ ଗୁରୁଜନମାନଙ୍କ ସହିତ ଆପଣ ସର୍ବଦା ବିନୟର ସହିତ ବ୍ୟବହାର କରନ୍ତି। ଆପଣଙ୍କ ଚିତ୍ତ ସର୍ବଦା ଗଭୀର ଗମ୍ଭୀର ଥାଏ। ମନ ନିର୍ମଳ ଥିଲେ ଓ ହୃଦୟ ସମ୍ବେଦନଶୀଳ ରହିଲେ ମଣିଷର ଚିତ୍ତବୃତ୍ତି ଗଭୀର ଗମ୍ଭୀର ହୋଇଥାଏ । ଶ୍ରୀରାମଙ୍କ ଚରିତରେ ଏହି ଗଭୀର ଗମ୍ଭୀରତା ଏକ ଶ୍ରେଷ୍ଠ ଗୁଣ। ଶ୍ରୀରାମଚନ୍ଦ୍ରଙ୍କ ଆହାର ମଧ୍ୟ ଶୁଦ୍ଧ। ଖାଦ୍ୟ ଲୋଭ ତାଙ୍କର ନ ଥିଲା। ସେ ଶୁଦ୍ଧ ଖାଦ୍ୟ ଦ୍ୱାରା ହିଁ ଉଦର-ପୂର୍ତ୍ତି କରୁଥିଲେ।

ଶ୍ରୀରାମଙ୍କର ଆଉ ଏକ ବିଶିଷ୍ଟ ଗୁଣ ହେଲା, ତାଙ୍କର ରସିକତା। ରସିକତା ଅର୍ଥ - କାବ୍ୟ, ସଂଗୀତ, ନୃତ୍ୟ, ନାଟକାଦି ପଠନ, ଶ୍ରବଣ ଓ ଦର୍ଶନ କରି ସେ ଖୁବ୍ ଆନନ୍ଦ ପାଉଥିଲେ। ତାଙ୍କର ଅନ୍ୟ ସହିତ ଆଳାପରେ ମଧ୍ୟ ସେହି ରସବୋଧ ପ୍ରକାଶ ପାଉଥିଲା। ବିଭିନ୍ନ ପ୍ରକାର ଶାସ୍ତ୍ର ଅଧ୍ୟୟନ କରି ସେ ବହୁବିଧ ଜ୍ଞାନ ଅର୍ଜନ କରିଥିଲେ; ଏବଂ ପରମ ମଙ୍ଗଳମୟ ଭଗବାନ୍ ଶିବଙ୍କ ପ୍ରତି ଥିଲା ତାଙ୍କର ପ୍ରଗାଢ଼ ଭକ୍ତି ।

ଏହି ସବୁ ସଦ୍‌ଗୁଣରେ ଶ୍ରୀରାମ ଥିଲେ ଅଦ୍ୱିତୀୟ । ସେହି ସବୁ ଦିବ୍ୟଗୁଣଗୁଡ଼ିକ କୀର୍ତ୍ତନ କରି ମହାଭକ୍ତ ଚାଣକ୍ୟ ତାଙ୍କୁ ସ୍ତୁତି କରି କହୁଛନ୍ତି, ହେ ରାଘବ ! ଏଇ ସବୁ ସଦ୍‌ଗୁଣରେ ଆପଣ ପରିପୂର୍ଣ୍ଣ ଓ ଅଦ୍ୱିତୀୟ ।

ଏହି ଭାବେ ଚାଣକ୍ୟ ଶ୍ରୀରାମଙ୍କୁ ଭକ୍ତି ବିଗଳିତ ଚିତ୍ତରେ ସ୍ତୁତି କରିଛନ୍ତି ।



## ୧୨୩. ଅନୁପମ ରାମ-ସ୍ତୁତି

**କାଷ୍ଠଂ କଳ୍ପତରୁଃ ସୁମେରୁରଚଳଶ୍ଚିନ୍ତାମଣିଃ ପ୍ରସ୍ତରଃ**
**ସୂର୍ଯ୍ୟସ୍ତୀବ୍ରକରଃ ଶଶୀ କ୍ଷୟକରଃ କ୍ଷାରୋଂ ହି ବାରାଂନିଧିଃ ।**
**କାମୋ-ନଷ୍ଟତନୁର୍ବଳିର୍ଦିତିସୁତୋ ନିତ୍ୟଂ ପଶୁଃ କାମଗୌ**
**ନୈତାଂସ୍ତେ ତୁଳୟାମି ଭୋ ରଘୁପତେ, କସ୍ୟୋପମା ଦୀୟତେ ॥ (୧୨/୧୫)**

ମହାଜ୍ଞାନୀ ଓ ମହାଭକ୍ତ ଚାଣକ୍ୟ ଉପରୋକ୍ତ ଶ୍ଳୋକଟିରେ ମର୍ଯ୍ୟାଦାପୁରୁଷୋତ୍ତମ ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କର ଅତୁଳନୀୟ ଗୁଣ ବର୍ଣ୍ଣନା କରୁଛନ୍ତି । ସେ କହୁଛନ୍ତି ଶ୍ରୀରାମଚନ୍ଦ୍ରଙ୍କର ଯୋଉସବୁ ସଦ୍‌ଗୁଣ ରହିଛି, ମୁଁ ତାକୁ କାହା ସଙ୍ଗେ ତୁଳନା କରିବି ? ସାରା ପୃଥିବୀରେ ମୁଁ ତାଙ୍କ ସଙ୍ଗେ ସରି ହେବାକୁ ପ୍ରତିଷ୍ଠିତ ମହିମାବନ୍ତ ଉପମାମାନଙ୍କୁ ଖୋଜିଲି । ପ୍ରଥମେ ମୋ ମନକୁ ଆସିଲା- 'କଳ୍ପତରୁ' ସହିତ କ'ଣ ରାମଙ୍କୁ ତୁଳନା କରାଯାଇପାରିବ ? ନା-ନା - କଳ୍ପତରୁ ଗୋଟାଏ କାଷ୍ଠ । ସେ କାଠ ଯେତେ ମହନୀୟ ହେଲେ ବି, ରାମଙ୍କ ସଙ୍ଗେ ତୁଳିତ ହୋଇପାରେନା । ତା'ପରେ ମନକୁ ଆସିଲା, ସୁମେରୁ ପର୍ବତ। ସବୁଠାରୁ ଉଚ୍ଚତାରେ ବଡ଼ । ମାତ୍ର ସେ କ'ଣ ଶ୍ରୀରାମଙ୍କର ଚାରିତ୍ରିକ ଉଚ୍ଚତା ସଙ୍ଗେ ସମାନ ହୋଇପାରିବ ? ସେ ପରା ପଥର । ପଥର ମାତ୍ରେ ତ ଅଚଳ । ତା' ହେଲେ କ'ଣ ଚିନ୍ତାମଣି ନାମକ ମୂଲ୍ୟବାନ୍ ଓ ଗୁଣବାନ୍ ଧାତୁ ସଙ୍ଗେ ଶ୍ରୀରାମଙ୍କୁ ତୁଳନା କରିବା ? ନା-ନା ! ଚିନ୍ତାମଣି ମଧ୍ୟ ଯେତେ ମୂଲ୍ୟବାନ୍ ହେଲେ ବି ପଥର ।

ତା' ହେଲେ କ'ଣ ଆମେ ସବୁଠାରୁ ଉଜ୍ଜ୍ୱଳ ଓ ସମସ୍ତଙ୍କର ପ୍ରାଣଦାତା ସୂର୍ଯ୍ୟ ଶ୍ରୀରାମଙ୍କ ସଙ୍ଗେ ତୁଳିତ ହେବେ ? ଅସମ୍ଭବ ! ଯଦିଓ ଶ୍ରୀରାମ ସୂର୍ଯ୍ୟବଂଶରେ ଜାତ ହୋଇଥିଲେ; ଏବଂ ସୂର୍ଯ୍ୟଙ୍କ ଭଳି ତେଜସ୍ୱୀ ଥିଲେ, ତଥାପି ତାଙ୍କର କ୍ଷାତ୍ରତେଜ ସୂର୍ଯ୍ୟଙ୍କ ତେଜ ଭଳି ଏତେ ତୀବ୍ର ନୁହଁ । ଆଉ କ'ଣ ଚନ୍ଦ୍ରଙ୍କ ସଙ୍ଗେ ତାକୁ ତୁଳନା କରିବା ? ନା-ନା, ତାହା ମଧ୍ୟ ହୋଇପାରିବନି । କାରଣ, ଚନ୍ଦ୍ରଙ୍କ କିରଣ ଯଦି ଓ

ଶୀତଳ-କିନ୍ତୁ ସେ ସବୁବେଳେ କ୍ଷୟରୋଗରେ ପୀଡ଼ିତ ଥା'ନ୍ତି । ତାଙ୍କ ଭାଗ୍ୟରେ କେବଳ ପୂର୍ଣ୍ଣିମା ଦିନଟି ସେ ସଂପୂର୍ଣ୍ଣ ସୁସ୍ଥ ଥା'ନ୍ତି । ତା' ପରଠାରୁ ସେ ପୁଣି ପ୍ରତିଦିନ କ୍ଷୟ ହୋଇ ହୋଇ ଅମାବାସ୍ୟା ଦିନ ପୂରା ଲୁପ୍ତ ହୋଇଯାନ୍ତି । ମାତ୍ର ଶ୍ରୀରାମଙ୍କ ମହିମାର କ୍ଷୟ ନ ଥାଏ । ବରଂ ଏହା ଦିନକୁଦିନ ବଢୁଥାଏ ।

ସମୁଦ୍ର ସଙ୍ଗେ ଅବା ତୁଳନା କରାଯାନ୍ତା ! କିନ୍ତୁ ସମୁଦ୍ରର ଜଳ ଲବଣାକ୍ତ ଓ କ୍ଷାରଯୁକ୍ତ । ମାତ୍ର ରାମଙ୍କ ଚରିତ ଯେପରି ବିଶାଳ, ସେହିପରି ମଧୁର । ମହାଭକ୍ତ ପ୍ରହ୍ଲାଦଙ୍କ ନାତି ଦାନବୀର ବଳୀଙ୍କ ଖ୍ୟାତି କାଳକାଳକୁ ରହିଛି । ମାତ୍ର ତାଙ୍କୁ ଆମେ ଶ୍ରୀରାମଙ୍କ ଗୁଣ ସଂଗେ ସମାନ କରିପାରିବାନି । କାରଣ, ଯେତେହେଲେ ବଳୀ ଜଣେ ଅସୁର । ଶ୍ରୀରାମ ହେଲେ ଦେବଅଂଶୀ ଭଗବାନ୍ ।

ଆଉ ରହିଲେ କାମଧେନୁ । କାମଧେନୁ ସମସ୍ତଙ୍କ କାମନା ପୂର୍ଣ୍ଣ କରୁଥିବାରୁ ତାଙ୍କ ମହିମା ବିଶ୍ୱବିଦିତ। ମାତ୍ର ଯେତେହେଲେ ବି ସେ ଗୋଟିଏ ଗାଈ । ମାନେ ପଶୁକୁଳରେ ଜାତ। ସୂର୍ଯ୍ୟବଂଶୀ ରାଘବ ରାମଚନ୍ଦ୍ରଙ୍କ ସଙ୍ଗେ ସେ କିପରି ସମାନ ହେବ ? ଚାଣକ୍ୟ ଏହା ପରେ କହୁଛନ୍ତି - ହେ ରାଘବ ଶ୍ରୀରାମ ! ଆପଣଙ୍କୁ ମୁଁ କାହା ସଂଗେ ତୁଳନା କରିବି ? ଆପଣ ଅତୁଳନୀୟ ।



## ୧୨୪. ଅଳ୍ପ ଅଳ୍ପରୁ ବେଶି ବେଶି ହୋଇଯାଏ

**ଜଳବିନ୍ଦୁନିପାତେନ କ୍ରମଶଃ ପୂର୍ଯ୍ୟତେ ଘଟଃ ।**
**ସ ହେତୁଃ ସର୍ବବିଦ୍ୟାନାଂ ଧର୍ମସ୍ୟ ଚ ଧନସ୍ୟ ଚ ॥** (୧୨/୧୯)

ମହାମତି ଚାଣକ୍ୟ କେବଳ ଜଣେ ଜ୍ଞାନୀ ନ ଥିଲେ, ସେ ମଧ ଥିଲେ ଜଣେ ନୀତିବାଦୀ କବି । ଉପରୋକ୍ତ ଶ୍ଲୋକଟିରେ ଚାଣକ୍ୟ କହୁଛନ୍ତି, ବିନ୍ଦୁବିନ୍ଦୁ କରି ଜଳ ଢାଳିଲେ, ବହୁ ସମୟ ଧରି ହେଉ ପଛେ, ଗୋଟିଏ ଖାଲି ମାଠିଆ ଜଳରେ ପୂର୍ଣ୍ଣ ହୋଇଯାଏ । ସେହି ରୀତିରେ ମଧ ପଇସାଟିଏ ବା ଅଧୁଲାଟିଏ ବାକ୍ସରେ ରଖୁ ରଖୁ ଦିନେ ସେ ବାକ୍ସଟି ବହୁ ଅର୍ଥରେ ପୂର୍ଣ୍ଣ ହୋଇଯାଏ । ସେହିପରି ବର୍ଣ୍ଣପରିଚୟ ଗ୍ରନ୍ଥଟି ପଢୁପଢୁ ଦିନେ ଜଣେ ବଡ଼ ବିଦ୍ୱାନ୍ ହୋଇଯାଏ ।

ଶେଷରେ ଚାଣକ୍ୟ ଧର୍ମସଂଚୟ ସମ୍ବନ୍ଧେ ବି ସେହି କଥା କହୁଛନ୍ତି। ଧର୍ମାଚରଣ କହିଲେ କ'ଣ ବୁଝାଯାଏ ? ମନ ଓ ହୃଦୟରେ ଦୟା, ଦାକ୍ଷିଣ୍ୟ, ଦାନ, ସତ୍ୟ, କ୍ଷମା, ସ୍ନେହ, ଉଦାରତା, ସାଧୁ ସନ୍ଥ ଓ ଦେବଦେବୀ ଏବଂ ପରମେଶ୍ୱରଙ୍କଠାରେ

ଭକ୍ତି, ଆତ୍ମସମର୍ପଣ, ସଦାଚାର, ଆତ୍ମସନ୍ତୋଷ, ନିରହଂକାର, ବିଦ୍ୱେଷହୀନତା, ଅହିଂସା, ସହନଶୀଳତା ଇତ୍ୟାଦି ସଦ୍‌ଗୁଣଗୁଡ଼ିକୁ ନିଜ ଭାବନାରେ ଓ ବ୍ୟବହାରରେ ପ୍ରଦର୍ଶନ କରିବା ।

ଚାଣକ୍ୟ କହୁଛନ୍ତି, ଏଇ ସବୁ ଆଚରଣ ବା ଅନୁଭବ ଗୋଟିଏ ଦିନରେ ହୁଏ ନାହିଁ । ବାଲ୍ୟକାଳରୁ ଏହି ସବୁ ଦିବ୍ୟଗୁଣଗୁଡ଼ିକୁ ଜାଣିବା ଓ ତାକୁ ନିଜ ଆଚରଣରେ ପ୍ରକାଶ କରିବା ଦ୍ୱାରା କିଛିଦିନ ପରେ ଜଣେ ସାଧାରଣ ବ୍ୟକ୍ତି ମଧ୍ୟ ଧର୍ମାତ୍ମା ହୋଇଯାଏ । ଜଣେ ଅତି ସାମାନ୍ୟ କାର୍ଯ୍ୟଟିଏ କରି ମଧ୍ୟ ଧର୍ମଫଳ ଲାଭ କରିଥାଏ । ଯଥା, ରାସ୍ତାରେ ଗୋଟିଏ କଣ୍ଟା ପଡ଼ିଛି । "ଆହା ! ଏ କଣ୍ଟାଟି କାହାର ଅଜାଣତରେ ତା' ଗୋଡ଼ରେ ପଶିଗଲେ ସେ କେତେ କଷ୍ଟ ପାଇବଟି ! ଏତିକି ଭାବି ରାସ୍ତାରୁ କଣ୍ଟାଟି ଉଠାଇ ପଦାରେ ପକାଇଦେବା ମଧ୍ୟ ଛୋଟ କାମଟିଏ ହେଲେ ବି ଏହା ତା'ର ଧର୍ମଭଣ୍ଡାରକୁ ପୂର୍ଣ୍ଣ କରୁଥାଏ ।



## ୧୨୫. ସାର୍ଥକ ଜୀବନ ବଞ୍ଚ !

ମୁହୂର୍ତ୍ତମପି ଜୀବେଚ୍ଚ ନରଃ ଶୁକ୍ଲେନ କର୍ମଣା ।
ନ କଳ୍ପମପି କଷ୍ଟେନ ଲୋକଦ୍ୱୟବିରୋଧିନା ॥ (୧୩/୧)

ଅର୍ଥାତ୍, ଉତ୍ତମ କର୍ମ କରି ମନୁଷ୍ୟ ବରଂ ମୁହୂର୍ତ୍ତ ମାତ୍ର ବଂଚି ରହିବା ଶ୍ରେୟସ୍କର- କିନ୍ତୁ ଉଭୟ ଲୋକବିରୋଧୀ ଦୁଷ୍କର୍ମ ଦ୍ୱାରା କଳ୍ପ କଳ୍ପ ଧରି ବଂଚିରହିବା ନିରର୍ଥକ ଅଟେ ।

ଏହି ଶ୍ଳୋକରେ ନୀତିଜ୍ଞ ଚାଣକ୍ୟ କହୁଛନ୍ତି, ମଣିଷ ଏ ପୃଥିବୀରେ ଜନ୍ମ ହୁଏ, ଏବଂ କିଛି ଦିନ, ମାସ ବା ବର୍ଷେ ବଂଚି ଶେଷରେ ମୃତ୍ୟୁଗ୍ରସ୍ତ ହୁଏ । କିନ୍ତୁ ତା'ର ଏଇ କ୍ଷଣସ୍ଥାୟୀ ଜୀବନଟି ସାର୍ଥକ ହେବ କିପରି ? କିପରି କ'ଣ କଲେ ତା'ର ଇହଲୋକର ଜୀବନ ଓ ପରଲୋକର ଜୀବନ ସୁଖୀ ହେବ ଓ ସାର୍ଥକ ହେବ ? ଜଣେ ମଣିଷ ଯଦି ମାତ୍ର କୋଡ଼ିଏ ତରିଶି ବର୍ଷ ବଂଚିବା ଭିତରେ ବହୁ ଭଲ କାମ କଲା, ବହୁ ମହତ କାମ କଲା, ତେବେ ତା'ର ସେହି ସ୍ୱଳ୍ପକାଳର ଜୀବନଟି ସାର୍ଥକ ହୁଏ । ସେହି ସ୍ୱଳ୍ପକାଳର ଜୀବନ-ସୀମା ଭିତରେ ସେ ଯଦି ଏପରି କିଛିକରେ, ଯଦ୍ୱାରା ସମାଜର କିଛି ଉପକାର ହେଲା; କିମ୍ବା ସେ ଯଦି ସମାଜକୁ କିଛି ଭଲ ନିର୍ଦ୍ଦେଶ ଦେଲା, ତେବେ ସେହି ଅଳ୍ପକାଳର ଜୀବନଯାତ୍ରା ତା'ର ମହନୀୟ

ହେବ । ମାତ୍ର ଜଣେ ଯଦି ଶତାଧିକ ବର୍ଷ ବଂଚିଲା ମାତ୍ର ସେହି ଜୀବନକାଳ ଭିତରେ ସେ ଅତି ନାରକୀୟ ଜୀବନ ବଂଚିଲା, ତା' ଉପରେ ସମସ୍ତେ ଅସନ୍ତୁଷ୍ଟ ହେଲେ, ତା'ର ଅକାର୍ଯ୍ୟ ଦ୍ୱାରା ସମାଜର ବହୁ କ୍ଷତି ହେଲା, ତେବେ ତା'ର ଏହି ଦୀର୍ଘ ଜୀବନ ବଂଚିବା ତ ନିଶ୍ଚୟ ନିରର୍ଥକ ହେଲା, ମୃତ୍ୟୁ ପରେ ମଧ୍ୟ ସେ ପରଲୋକରେ ବହୁ କଷ୍ଟ ପାଇବ । ତାକୁ ସ୍ୱର୍ଗ ପ୍ରାପ୍ତି ହେବ ନାହିଁ କି ସେ ମଧ୍ୟ ଜନ୍ମମରଣ ଚକ୍ରରୁ ମୁକ୍ତି ପାଇବ ନାହିଁ; ବରଂ ତା'ର ପ୍ରେତାତ୍ମା ବହୁ ଅନୁତପ୍ତ ହୋଇ ଓ ଜ୍ୱାଳାଗ୍ରସ୍ତ ହୋଇ ଏଇ ଶୂନ୍ୟମଣ୍ଡଳରେ ବହୁ କଷ୍ଟରେ ବହୁକାଳ ଧରି ବୁଲୁଥିବ ।



## ୧୨୬. ପ୍ରବର୍ତ୍ତନ୍ତେ ବିଚକ୍ଷଣାଃ

**ଗତେ ଶୋକୋ ନ କର୍ତ୍ତବ୍ୟୋ ଭବିଷ୍ୟଂ ନୈବ ଚିନ୍ତୟେତ୍ ।**
**ବର୍ତ୍ତମାନେନ କାଳେନ ପ୍ରବର୍ତ୍ତନ୍ତେ ବିଚକ୍ଷଣାଃ ।। (୧୩/୨)**

ଏ ପୃଥିବୀ କାଳସ୍ରୋତରେ ବହିଯାଉଛି କି କାଳସ୍ରୋତ ଏ ପୃଥିବୀ ଉପରେ ବହିଯାଉଛି, ସେ କଥା ଦାର୍ଶନିକ ବା ବୈଜ୍ଞାନିକମାନେ ବିଚାର କରିବେ । କିନ୍ତୁ ଜୀବନାଭିଜ୍ଞ ଚାଣକ୍ୟ ପଣ୍ଡିତେ ଏହି ଶ୍ଳୋକରେ ଭଲ କଥାଟିଏ କହୁଛନ୍ତି ଆମ ମଣିଷମାନଙ୍କ ଉଦ୍ଦେଶ୍ୟରେ । ସେ କହୁଛନ୍ତି, ହେ ମନୁଷ୍ୟମାନେ ! ଆମ ଜୀବନରେ ଆମକୁ ଶୋକାର୍ତ୍ତ କରିବା ପାଇଁ ବହୁ ଘଟଣା ଘଟିଥାଏ । ଏ ଜୀବନ ଦୁଃଖପୂର୍ଣ୍ଣ ବୋଲି ଭଗବାନ୍ ବୁଦ୍ଧ କହିଛନ୍ତି । ଦାର୍ଶନିକ କବିମାନେ ମଧ୍ୟ କହନ୍ତି, ଜୀବନରେ ସୁଖ ନାହିଁ । ଯଦି ସୁଖ ବୋଲି କିଛି ହାତକୁ ଆସେ, ତେବେ ତାହା ହାତକୁ ଆସୁ ଆସୁ ହାତରୁ ଖସିଯାଏ ଓ ଦୁଃଖ ମାଡ଼ିବସେ । ସୁଖ ହେଉଛି ମଣିଷ ଜୀବନରେ ଆକାଶ କୁସୁମ ଭଳି ଅବାସ୍ତବ । ସୁଖ ଏକ କଳ୍ପନା । ଦୁଃଖ ହିଁ ସତ୍ୟ । ସୁଖ ଅଳୀକ ।

କିନ୍ତୁ ଏହା କିଛି ପରିମାଣରେ ସତ୍ୟ । ପୂର୍ଣ୍ଣ ସତ୍ୟ ନୁହଁ । ଏ ଜୀବନରେ ସୁଖ ଦୁଃଖ ଜାଆଁଳା ଭାଇଭଉଣୀ ପରି ଅଛନ୍ତି । ସକାଳେ ସୁଖ ଆସିଥିଲା । ମାତ୍ର ରାତିକୁ ଆସିଗଲା ଦୁଃଖ । ଗତକାଲି ଦୁଃଖ ଆସିଥିଲା । ଆଜି ସୁଖ ଆସିଛି । ମାତ୍ର ତାକୁ ଭୋଗି ହେଉ ନାହିଁ । ଆଶଙ୍କା ହେଉଛି, ଏହା ପରେ ଆସନ୍ତାକାଲି ଦୁଃଖ ଆସି ଯାଇପାରେ କିଏ କହିବ ?

ମାତ୍ର ମହାମତି ଚାଣକ୍ୟ କହୁଛନ୍ତି, ହେ ମନୁଷ୍ୟମାନେ ! ଯେଉଁ ଦୁର୍ଘଟଣା କାଲି ଦୁଃଖ ଦେଇଥିଲା, ତାକୁ ଆଜି ଭୁଲିଯାଅ । କାରଣ, ଯାହା ଘଟିଗଲା, ଘଟିଗଲା,

ଭବିଷ୍ୟତ୍ କଥା ମଧ ଭାବ ନାହିଁ । କାରଣ ଭବିଷ୍ୟତ୍ ଆମ ହାତରେ ନାହିଁ । ବିଚକ୍ଷଣ ମଣିଷ ମାନେ ଏହା ବୁଝିଛନ୍ତି ବୋଲି ସେମାନେ କେବଳ ବର୍ତ୍ତମାନକୁ ନେଇ ବଂଚନ୍ତି । ଅତୀତ ଓ ଭବିଷ୍ୟତ୍ କଥା ଆଉ ଭାବନ୍ତୁ ନାହିଁ ।



## ୧୨୭. କିଏ ରକ୍ଷା ପାଏ? କିଏ ବିନଷ୍ଟ ହୁଏ?

**ଅନାଗତବିଧାତା ଚ ପ୍ରତ୍ୟୁତ୍ପନ୍ନମତିସ୍ତଥା ।**
**ଦ୍ୱାବେତୌ ସୁଖମେଧେତେ ଯଦ୍‌ଭବିଷ୍ୟୋ ବିନଶ୍ୟତି ॥ (୧୩/୬)**

ଏହି ଚମତ୍କାର ବ୍ୟାବହାରିକ ଶ୍ଳୋକଟିର ଅର୍ଥ ହେଲା, ଏ ସଂସାରରେ ତିନିପ୍ରକାର ମିଣିଷ ଅଛନ୍ତି। ଏକପ୍ରକାର ମଣିଷ ଅଛନ୍ତି, ଯାହାଙ୍କୁ "ଅନାଗତବିଧାତା" ବୋଲି କୁହାଯାଏ । କାରଣ, ସେମାନେ କୌଣସି ବିପଦ ଆସିବାପୂର୍ବରୁ ବିପଦର ଆଶଙ୍କା କରି ସାବଧାନ ହୋଇଯାନ୍ତି । ଦ୍ୱିତୀୟ ପ୍ରକାର ମଣିଷ ହେଲେ "ପ୍ରତ୍ୟୁତ୍ପନ୍ନମତି" । ସେମାନେ କୌଣସି ବିପଦର ଆଶଙ୍କା ଆଗରୁ କରି ନ ଥାନ୍ତି । ତେବେ ବିପଦ ଆସି ପହୁଁଚିବାମାତ୍ରେ, ସେମାନେ ସେଥିରୁ ରକ୍ଷାପାଇବାର ଉପାୟ ଖୁବ୍‌ଶୀଘ୍ର ବାହାର କରି ବଂଚିଯାନ୍ତି। ତୃତୀୟ ପ୍ରକାର ଲୋକଙ୍କୁ କୁହାଯାଏ, ଦୀର୍ଘସୂତ୍ରୀ ଭାଗ୍ୟବାଦୀ । ସେମାନେ ଭାଗ୍ୟଉପରେ ନିର୍ଭରକରି ଶୋଇଥାନ୍ତି। ସେହି ଲୋକମାନେ ହିଁ ବିପଦର ଶିକାର ହୋଇ ବିନଷ୍ଟ ହୁଅନ୍ତି ।

ଉଦାହରଣସ୍ୱରୂପ ଭୟଙ୍କର ବନ୍ୟାହେବ ବୋଲି ଆଗରୁ ସରକାର ଘୋଷଣା କରିଛନ୍ତି । ତାହା ଜାଣି ଅନାଗତବିଧାତାମାନେ ପୂର୍ବରୁ ସାବଧାନ ହୋଇଯାନ୍ତି । ସେମାନେ ମୂଲ୍ୟବାନ୍ ଜିନିଷପତ୍ର ଧରି ଉଚ୍ଚ ସ୍ଥାନକୁ ଚାଲିଯାନ୍ତି । ତେଣୁ ବନ୍ୟା ଆସିଲେ ସେମାନେ ବଂଚିଯାନ୍ତି ଓ ସେମାନଙ୍କର ବିଶେଷ କିଛି ନିଷ୍ଟ ହୁଏନାହିଁ ।

ଦ୍ୱିତୀୟ ପ୍ରକାର ଲୋକ ବନ୍ୟା ଆଗରୁ ପ୍ରସ୍ତୁତ ନ ଥାନ୍ତି । ମାତ୍ର ବନ୍ୟା ଆସିଗଲା ମାତ୍ରେ ସେମାନେ ପିଲାଛୁଆ ଓ ମୂଲ୍ୟବାନ୍ ଜିନିଷପତ୍ର ଧରି ନିକଟବର୍ତ୍ତୀ ଜଣେ ଧନୀଲୋକର କୋଠାଘର ଛାତ ଉପରକୁ ଉଠିଯାନ୍ତି । ସେମାନେ ମଧ ରକ୍ଷା ପାଇଯାନ୍ତି ।

ମାତ୍ର ଯେଉଁମାନେ ଦୀର୍ଘସୂତ୍ରୀ, ସେମାନେ ବନ୍ୟା ମୁଖରୁ ରକ୍ଷାପାଇବାକୁ ଆଗରୁ ଉପାୟକରି ନ ଥାନ୍ତି କି ବନ୍ୟା ଆସିଗଲା ପରେ କିଛି ଡପାୟ କରିପାରନ୍ତି ନାହିଁ । ତାଙ୍କ ଘରଦ୍ୱାର ବନ୍ୟାରେ ବୁଡ଼ିଯାଏ ସେମାନେ ବୁଡ଼ିମରନ୍ତି ।

ତେଣୁ ଜୀବନରେ ବୁଦ୍ଧିମାନ୍ ମଣିଷ କେବେ ଦୀର୍ଘସୂତ୍ରୀ ହେବା ଉଚିତ ନୁହଁ ।



## ୧୨୮. ମହାତ୍ମାଙ୍କ ଚରିତ ବିଚିତ୍ର

ଅହୋବତ ବିଚିତ୍ରାଣି ଚରିତାନି ମହାଽଽତ୍ମନାମ୍ ।
ଲକ୍ଷ୍ମୀଂ ତୃଣାୟ ମନ୍ୟନ୍ତେ ତଦ୍‌ଭାରେଣ ନିମନ୍ତି ଚ ॥ (୧୩/୪)

ବୁଦ୍ଧିଦୀପ୍ତ ଦ୍ରଷ୍ଟାପୁରୁଷ ଚାଣକ୍ୟ ପଣ୍ଡିତେ ଏହି ଶ୍ଳୋକରେ ଗୋଟିଏ ବିଚିତ୍ର ସତ୍ୟ ପ୍ରକାଶ କରିଛନ୍ତି । ସେ କହୁଛନ୍ତି,

"ମତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି, ମହାତ୍ମାମାନଙ୍କ ଚରିତ ପ୍ରକୃତରେ ବଡ଼ ବିଚିତ୍ର ଅଟେ । ସେମାନେ ଲକ୍ଷ୍ମୀଙ୍କୁ ତୃଣବତ୍ ମନେକରନ୍ତି । ଏବଂ ତାହା ଫଳରେ ସେମାନେ ବଡ଼ ନମ୍ର ଓ ନମନୀୟ ହୋଇଯାନ୍ତି ।

ପ୍ରକୃତରେ କଥାଟି ବଡ଼ ବିଚିତ୍ର । ଲକ୍ଷ୍ମୀ ହେଉଛନ୍ତି ସୌନ୍ଦର୍ଯ୍ୟ, ସଙ୍ଗତ, ଧନସଂପତ୍ତି, କ୍ଷମତା, ଯଶ, କୀର୍ତ୍ତି ଇତ୍ୟାଦିର ଦେବୀ, ଅଧିଶ୍ୱରୀ । ସେଥିପାଇଁ ସଂସାରୀ ଲୋକମାନେ ତାଙ୍କର ଉପାସନା କରି ମନୋମତ ବର ବା ଫଳ ଲାଭ କରିଥାନ୍ତି ।

ମାତ୍ର ଯେଉଁମାନେ ପ୍ରକୃତରେ ମହାତ୍ମା ସେମାନେ ଏହିସବୁ ସାଂସାରିକ ଐଶ୍ୱର୍ଯ୍ୟରେ ନ ଥାନ୍ତି । ସେମାନେ ଏସବୁ ପାଇବାକୁ ଲାଳାୟିତ ହୁଅନ୍ତି ନାହିଁ । ସେମାନେ କେବଳ ଧର୍ମସାଧନାରେ ଲାଗିଥାନ୍ତି । ଭଗବାନ୍‌ଙ୍କୁ ଉପଲବ୍ଧି କରିବା ଲାଗି ପୂଜା, ଆରାଧନା, ଯୋଗ, ଧ୍ୟାନ, ତପସ୍ୟା, ଶ୍ରବଣ, କୀର୍ତ୍ତନରେ ମାତିଥାନ୍ତି । ଧନସମ୍ପଦ ବା ଯଶକୀର୍ତ୍ତି କ୍ଷମତାଦିକୁ ସେମାନେ ତୃଣବତ୍ ତୁଚ୍ଛ ମନେକରନ୍ତି ଏବଂ ଏହିସବୁ ବିଷୟକୁ ଲାଭକରି ସାଧାରଣ ଲୋକମାନଙ୍କର ଓଜନ ବଢ଼ିଯାଏ ।

କିନ୍ତୁ ମହାତ୍ମାମାନେ ଏ ସବୁକୁ ବର୍ଜନ କରି ନିଜକୁ ଖୁବ୍ ଲଘୁ ଓ ପବିତ୍ର ମନେ କରନ୍ତି ।



## ୧୨୯. ଯଥା ରାଜା, ତଥା ପ୍ରଜାଃ ...

ରାଜ୍ଞି ଧର୍ମିଣି ଧର୍ମିଷ୍ଠାଃ ପାପେ ପାପାଃ ସମେ ସମାଃ ।
ରାଜାନମନୁବର୍ତ୍ତନ୍ତେ ଯଥା ରାଜା ତଥା ପ୍ରଜାଃ ॥ (୧୩/୭)

ଏହି ଶ୍ଳୋକଟିରେ ମହାକୂଟନୀତିଜ୍ଞ ପ୍ରଜ୍ଞାବାନ୍ ଚାଣକ୍ୟ କହୁଛନ୍ତି, ଯେଉଁ ଦେଶର ରାଜା ଧର୍ମାତ୍ମା ହୁଅନ୍ତି, ସେହି ଦେଶର ପ୍ରଜାମାନେ ମଧ୍ୟ ଧର୍ମାଚାରୀ ହୋଇଥାନ୍ତି ।

ରାଜା ଯଦି ପାପକାର୍ଯ୍ୟରେ ରତ ଥାନ୍ତି, ତେବେ ପ୍ରଜାମାନେ ମଧ ପାପକରିବାକୁ ପ୍ରବୃତ୍ତ ହୁଅନ୍ତି । କାରଣ, ପ୍ରଜାମାନେ ସର୍ବଦା ରାଜାଙ୍କୁ ହିଁ ଅନୁସରଣ କରିଥାନ୍ତି । ରାଜା ଯେପରି, ପ୍ରଜା ମଧ ସେହିପରି ହୋଇଥାନ୍ତି ।

ଏ ଶ୍ଳୋକଟିର ଅର୍ଥ ଚିରନ୍ତନ । ଆଜି ମଧ ଆମେ ଦେଖିବା, ଏବେ ରାଜତଂତ୍ର ଲୋପହୋଇ ବହୁ ବର୍ଷ ଧରି ପ୍ରଜାତନ୍ତ୍ର ଓ ଗଣତନ୍ତ୍ର ପ୍ରତିଷ୍ଠା ହେଲାଣି । ରାଜତନ୍ତ୍ରରେ ଯାହା, ନୀତିକ୍ଷେତ୍ରରେ ପ୍ରଜା ବା ଗଣତଂତ୍ରରେ ମଧ ତାହାହିଁ ଘଟିଥାଏ । ଗଣତଂତ୍ରରେ ପ୍ରଜାମାନେ ତାଙ୍କର ନେତାମାନଙ୍କୁ ଅନୁସରଣ କରନ୍ତି । ଯଦି ନେତାମାନେ ଅନୀତି କରୁଥାନ୍ତି, ତେବେ ତା'ର ପ୍ରଭାବ ପ୍ରଜାଙ୍କ ଉପରେ ପଡ଼େ । ଖାଲି ନେତାମାନେ ନୁହନ୍ତି, ଗଣତଂତ୍ରରେ ଅମଲାମାନେ ମଧ ଯଦି ଅନୀତି କରୁଥାନ୍ତି, ତେବେ ପ୍ରଜାମାନେ ମଧ ଅନୀତି କରନ୍ତି ଓ ଭ୍ରଷ୍ଟାଚାରୀ ହୁଅନ୍ତି । ଏହା ଏକ ବାସ୍ତବ ସତ୍ୟ ନୁହେଁ କି ?

ମୋଟ କଥା - ସମାଜରେ ଶ୍ରେଷ୍ଠ ଲୋକମାନେ ଅର୍ଥାତ୍ ନେତା, ସରକାରୀ କର୍ମଚାରୀ, ଉଚ୍ଚଶିକ୍ଷିତ ବ୍ୟକ୍ତିମାନେ ଓ ବୈଷ୍ଣବ, ସନ୍ନ୍ୟାସୀମାନେ ମଧ ଯଦି ବ୍ୟଭିଚାରୀ ହୁଅନ୍ତି, ତେବେ ସାଧାରଣ ଲୋକମାନେ ମଧ ସେହି ବ୍ୟଭିଚାର ପଥରେ ଯା'ନ୍ତି । କାରଣ, ଜନସାଧାରଣଙ୍କ ଆଗରେ ସେ ଦେଶରେ ଆଦର୍ଶ ମଣିଷ କେହି ନ ଥାନ୍ତି ।



## ୧୩୦. ଧାର୍ମିକ ଲୋକ ଅମର ରହେ

**ଜୀବନ୍ତଂ ମୃତବନ୍ମନ୍ୟେ ଦେହିନଂ ଧର୍ମବର୍ଜିତମ୍ ।**
**ମୃତୋ ଧର୍ମେଣ ସଂଯୁକ୍ତୋ ଦୀର୍ଘଜୀବୀ ନ ସଂଶୟଃ ।। (୧୩/୮)**

ଯେଉଁ ଜୀବନ ଧର୍ମହୀନ - ଅର୍ଥାତ୍, ଯେଉଁ ଲୋକ ଜୀବନରେ କିଛି ଧର୍ମକାର୍ଯ୍ୟ କରି ନ ଥାଏ ସେ ବଂଚିଥିଲେ ବି, ତାକୁ ମୃତ ଲୋକ ବୋଲି ଗଣାଯାଏ । କିନ୍ତୁ ଯେଉଁ ବ୍ୟକ୍ତି ଧର୍ମ ଜୀବନଟିଏ ବଂଚିଥାଏ, ସେ ପ୍ରକୃତରେ ଯଥାର୍ଥ ଜୀବନଟିଏ ବଂଚେ ଏବଂ ତା'ର ଦୈହିକ ମୃତ୍ୟୁ ହେଲେ ମଧ ଏ ସଂସାରରେ ସେ ତା'ର ସତ୍‌କାର୍ଯ୍ୟ ପାଇଁ ଅମର ରହିଥାଏ । ଅର୍ଥାତ୍, ତାକୁ ଲୋକେ ବହୁକାଳଯାଏ ସ୍ମରଣ ରଖନ୍ତି । ସେ ତା'ର କୀର୍ତ୍ତି ଯୋଗୁଁ ଲୋକଙ୍କ ମନରାଜ୍ୟରେ ବଂଚିଥାଏ ।

ଏ ଶ୍ଳୋକରେ ଚାଣକ୍ୟ ଧର୍ମ ଶବ୍ଦକୁ ହିନ୍ଦୁଧର୍ମ, ଇସ୍‌ଲାମ୍ ଧର୍ମ, ଖ୍ରୀଷ୍ଟିଆନ୍ ଧର୍ମ ଅର୍ଥରେ ବ୍ୟବହାର କରିନାହାନ୍ତି । ଜଣେ ବ୍ୟକ୍ତି ଯୋଉ ଧର୍ମ-ସଂପ୍ରଦାୟର ହେଲେ ବି, ସେ ଯଦି ଜୀବନରେ ସର୍ବଦା ଈଶ୍ୱରାଭିମୁଖୀ ଥାଏ, ସତ୍‌କର୍ମରେ ଲିପ୍ତ ଥାଏ,

ସତ୍‌ଚିନ୍ତା କରୁଥାଏ ଏବଂ ସେ ଯଦି ତା'ର ସ୍ୱଭାବରେ ଦୟାଳୁ, ଦାନୀ, ସେବାପରାୟଣ, ଦେବ ଦ୍ୱିଜଙ୍କ ପ୍ରତି ଭକ୍ତିପ୍ରବଣ, କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ- ଏହି ଛଅଟି ଦୁର୍ଗୁଣକୁ ଯେ ଜୀବନରେ ପ୍ରଶ୍ରୟ ଦିଏ ନାହିଁ, ସେ ହିଁ ପ୍ରକୃତ ଧାର୍ମିକ ବ୍ୟକ୍ତି। ତା'ର ଜୀବନ ପବିତ୍ର ଏବଂ ତା'ର ଯଶକୀର୍ତ୍ତି କାଳକାଳକୁ ରହିଥିବ।



## ୧୩୧. ତସ୍ୟ ଜନ୍ମ ନିରର୍ଥକମ୍

ଧର୍ମାର୍ଥ କାମ ମୋକ୍ଷାଣାଂ ଯସ୍ୟୈକୋଽପି ନ ବିଦ୍ୟତେ।
ଅଜାଗଳସ୍ତନସ୍ୟୈବ ତସ୍ୟ ଜନ୍ମ ନିରର୍ଥକମ୍ ।। (୧୩/୯)

ଏହି ଶ୍ଳୋକଟିରେ ମହାମତି ଚାଣକ୍ୟ କହନ୍ତି, ଆମ ସନାତନ ଧର୍ମରେ କୁହାଯାଇଛି ଯେ, ପ୍ରତି ମଣିଷ ପାଇଁ ଚାରୋଟି ମୁଖ୍ୟ ବର୍ଗ ବା କର୍ତ୍ତବ୍ୟ ରହିଛି। ଏହାକୁ "ଚଉବର୍ଗ" ବୋଲି କୁହାଯାଏ। ଏହି ଚଉବର୍ଗରୁ ସାମାନ୍ୟ କିଛି ଅର୍ଜନ କଲେ ବି, ମନୁଷ୍ୟର ଜୀବନ ସାର୍ଥକ ହୁଏ। ତା' ନ ହେଲେ ମଣିଷ ଜନ୍ମ ନିରର୍ଥକ ହୋଇଥାଏ।

ପ୍ରଥମ କର୍ତ୍ତବ୍ୟଟି ହେଲା, ପ୍ରତି ମଣିଷ ତା'ର ଜୀବନରେ କିଛି ଧର୍ମ କାର୍ଯ୍ୟ କରିବ । ତା ହୃଦୟରେ ରହିବ, ଦୟା କରୁଣା, ଅହିଂସା ଓ ତ୍ୟାଗଭାବ । ସେ ହେବ ଦାନଶୀଳ ଓ ସତ୍ୟବାନ୍ । ତା'ର ମନରେ କୁଟୀଳତା ରହିବ ନାହିଁ । ସେ ମଧ ଈଶ୍ୱରପରାୟଣ ହେବ । ସଂସାର ପ୍ରତି ପ୍ରେମ ଓ ଭଗବାନ୍‌ଙ୍କ ପ୍ରତି ଭକ୍ତିଭାବ ହେଲା ପ୍ରକୃତ ଧର୍ମାଚରଣ। ଦ୍ୱିତୀୟ ବର୍ଗଟି ହେଲା, ଜୀବନରେ ବଂଚିବା ପାଇଁ ଯଥାରୀତି ପରିଶ୍ରମ କରି କିଛି ଅର୍ଥ ଉପାର୍ଜନ କରିବା । କର୍ମକୁଣ୍ଠ ହୋଇ ଭିକ୍ଷୁକ ହେବା ଉଚିତ ନୁହଁ । ଅନ୍ୟାୟ ନ କରି ନ୍ୟାୟ ପଥରେ ଅର୍ଥ ଉପାର୍ଜନ କରି ବଂଚିବ ଓ କିଛି ଦାନ କରିବ । ତୃତୀୟ ବର୍ଗଟି ହେଲା, କାମ । ତା' ଅର୍ଥ - ଜୀବନରେ ବିବାହ କରି କିଛି କାମସୁଖ ଭୋଗକରିବ । ମନ ଭିତରେ ବହୁ ସତ୍‌କର୍ମ କରିବା ପାଇଁ କାମନା ବା ଅଭିଳାଷ ରଖିବା ଉଚିତ । ଶେଷ ବର୍ଗ ବା ଚତୁର୍ଥ ବର୍ଗଟି ହେଲା, ମୋକ୍ଷ । ମୋକ୍ଷ ଅର୍ଥ ଯେତେ ଲୋଭନୀୟ ହେଲେ ବି କାହାର ବନ୍ଧନରେ ବାନ୍ଧିହୋଇ ଯିବନାହିଁ । ଜୀବନର ଶେଷଭାଗରେ ଆଉ ସଂସାର ପ୍ରତି ମୋହ ମାୟା ନ ରଖି ସେଥିରୁ ମୁକ୍ତହୋଇ କେବଳ ଈଶ୍ୱରଙ୍କ ପ୍ରତି ଧ୍ୟାନଶୀଳ ରହିବା। ତାହା ଯେଉଁମାନେ ନ କରନ୍ତି, ସେମାନଙ୍କ ଜୀବନ ବୃଥା ହୋଇଯାଏ । ଚାଣକ୍ୟ କହୁଛନ୍ତି, କେଉଁ

କେଉଁ ଅଣ୍ଡିରା ଛେଳି ବେକରେ ସ୍ତନ ଭଳି କିଛି ମାଂସ ଓହଳିଥାଏ । କିନ୍ତୁ ତାହ ସ୍ତନଭଳି ଦେଖାଗଲେ ବି, ତାହା ସ୍ତନ ନୁହଁ କି ସେଥିରୁ କ୍ଷୀର ବାହାରେ ନାହିଁ । ଚାଣକ୍ୟ କହୁଛନ୍ତି - ଧର୍ମ, ଅର୍ଥ, କାମ, ମୋକ୍ଷ-ଏହି ଚାରିବର୍ଗରୁ କିଛି କିଛି ଅର୍ଜନ ନ କଲା ଲୋକର ଜୀବନ, ଏହି ଛେଳିର ବେକରୁ ବାହାରିଥିବା ସ୍ତନସଦୃଶ ମାଂସ ଭଳି ନିରର୍ଥକ ।

ସତ କଥା, ମଣିଷ ଗୋଟିଏ ପ୍ରାଣୀ ସତ; କିନ୍ତୁ ସେ ଇତର ପ୍ରାଣୀ ଭଳି କେବଳ ଖାଇପିଇ ଶୋଇ ବଂଚେ ନାହିଁ । ତା'କୁ ଭଗବାନ୍ ମନ, ବୁଦ୍ଧି ଓ ହୃଦୟ ଦେଇ ଇତର ପ୍ରାଣୀଙ୍କଠାରୁ ବଡ଼ କରି ଗଢ଼ିଛନ୍ତି । ମଣିଷର ଧର୍ମାଚାର ତାକୁ ପଶୁଠାରୁ ପୃଥକ୍ କରିଛି । ମଣିଷ ନିଜେ ଅର୍ଜନ କରି ବଂଚେ । ମଣିଷ ଭିତରେ ବହୁ ଉଚ୍ଚାଭିଳାଷ ଥାଏ । ତେଣୁ ସେ ଜ୍ଞାନ ବିଜ୍ଞାନରେ ପାରଦର୍ଶୀ ହୋଇଥାଏ ।

ଶେଷରେ ମଣିଷ ଏହି କ୍ଷୁଦ୍ର ଜୀବନରୁ ମୁକ୍ତ ହୋଇ ପରଲୋକର କଥା ଭାବେ ଓ ଈଶ୍ୱରଙ୍କ ପ୍ରତି ଆକର୍ଷିତ ହୋଇଥାଏ। ସେହି ଭାବରେ ରହି ଯେଉଁ ଲୋକ ମୃତ୍ୟୁବରଣ କରେ, ତା'ରି ଜୀବନ ଧନ୍ୟ ଏବଂ ଅନ୍ୟମାନଙ୍କ ଜୀବନ ନିରର୍ଥକ ଅଟେ।

●

## ୧୩୨. ସୁଖ ସନ୍ତୋଷ କିପରି ଚଳିବ ?

**ଇପ୍‌ସିତଂ ମନସଃ ସର୍ବଂ କସ୍ୟ ସଂପଦ୍ୟତେ ସୁଖମ୍।**
**ଦୈବାଽଽୟତ୍ତଂ ଯତଃ ସର୍ବଂ ତସ୍ମାତ୍‌ସନ୍ତୋଷମାଶ୍ରୟେତ୍ ॥ (୧୩/୧୩)**

ଆମର ଜୀବନ ଦୁଃଖସୁଖକୁ ନେଇ ଗଠିତ । ଆମେ କିନ୍ତୁ ଦୁଃଖ ଚାହୁଁନା । ଆମେ ଚାହୁଁ ସୁଖ । ସବୁବେଳେ ସୁଖ, ଆନନ୍ଦ ଭୋଗିବା ପାଇଁ ଆମେ ଇଚ୍ଛା କରୁ । କେହି ମଣିଷ ଦୁଃଖ ଚାହେଁ ନାହିଁ ।

କିନ୍ତୁ ମହାଜ୍ଞାନୀ ଚାଣକ୍ୟ କହୁଛନ୍ତି, ହେ ମାନବ! ତୁମ ମନ ଚାହୁଁଛି, ସବୁବେଳେ ସୁଖ ଭୋଗ କରିବ । ତୁମକୁ ଆବଶ୍ୟକୀୟ ଧନ ମିଳୁ । କ୍ଷମତା ମିଳୁ । ବିଳାସ ବ୍ୟସନର ସବୁ ଉପକରଣ ମିଳୁ । ତୁମର ବା ତୁମ ଜ୍ଞାତିକୁଟୁମ୍ବଙ୍କର କାହାର ରୋଗ ନ ହେଉ । ମନ ଯେତେବେଳେ ଯାହା ଚାହୁଁଛି, ତାହା ତତ୍‌କ୍ଷଣାତ୍ ମିଳିଯାଉ ଏବଂ ତୁମେ ସର୍ବଦା ସୁଖ ଆନନ୍ଦରେ ରହିଥାଅ ।

ମାତ୍ର ସୁଖ ଆନନ୍ଦର ଉପକରଣ ସବୁ କ'ଣ ତୁମ ହାତରେ ଅଛି ? ତୁମେ ଇଚ୍ଛା କଲେ ଧନସଂପଦ ତୁମ ଇଚ୍ଛାନୁସାରେ ମିଳିବ ନାହିଁ। ରୋଗଶୋକ ମଧ ତୁମ ହାତରେ ନାହିଁ। ତୁମ ଜ୍ଞାତିକୁଟୁମ୍ବମାନଙ୍କ ସୁଖଦୁଃଖ ବି ତୁମ ହାତରେ ନାହିଁ।

ଏ ଜୀବନ ଆମର ଦୈବାଧୀନ। ଦୈବ କେତେବେଳେ କାହାକୁ ରାଜା କରୁଛି, କେତେବେଳେ କାହାକୁ ଭିକାରି କରୁଛି, ତାହା କହିହେବନି। ଆମ ଭକ୍ତକବି ମଧୁସୂଦନ କହି ନାହାନ୍ତି ? "ମୁକୁଟ ମଣ୍ଡିତ ରାଜଶିର-ନୁହଇ ଶାନ୍ତି ଆସ୍ପଦ, ଆଶଙ୍କା ଭୟ ବିପଦ, ନିରନ୍ତର ରାଜମନ କରଇ ଅସ୍ଥିର। ଆଜି ଯେ ରାଜେନ୍ଦ୍ରାସେନ କାଲି ସେ ଫକୀର।

ସତ କଥା। ସୁଖର ଉପାଦାନ ସବୁ ପାଇବା ଆମ ହାତରେ ନାହିଁ। ତାହା ଦୈବାଧୀନ। କିନ୍ତୁ ତା' ହେଲେ ମଧ ଆମେ ଯଦି ସେହି ସଚ୍ଚିଦାନନ୍ଦ ଭଗବାନ୍‌ଙ୍କ ଭାବରେ ସର୍ବଦା ରହିବା, ତେବେ ଆମର ମନ ନିଶ୍ଚୟ ସୁଖୀ ହେବ। ଆମ ଭିତରେ ଶାନ୍ତି ଓ ଆନନ୍ଦ ଭରି ଉଠିବ।



## ୧୩୩. କର୍ତ୍ତା ପଛରେ କର୍ମ ଗୋଡାଏ

**ଯଥା ଧେନୁସହସ୍ରେଷୁ ବତ୍ସୋ ଗଚ୍ଛତି ମାତରମ୍ ।**
**ତଥା ଯଚ୍ଚ କୃତଂ କର୍ମ କର୍ତ୍ତାରମନୁଗଚ୍ଛତି ।। (୧୩/୧୪)**

ଏହି ଶ୍ଳୋକଟିରେ ଜ୍ଞାନସିଦ୍ଧ ପଣ୍ଡିତ ଚାଣକ୍ୟ ମନୁଷ୍ୟର କର୍ମ ଓ କର୍ମଫଳ ସଂପର୍କରେ ବିଚାର କରି ସିଦ୍ଧାନ୍ତ ଦେଇଛନ୍ତି । ଏକ ଚମତ୍କାର ଉଦାହରଣ ଦେଇ ସେ କହୁଛନ୍ତି, ଗୋଟିଏ ପ୍ରାନ୍ତରରେ ହଜାର ହଜାର ଗାଈ ସେମାନଙ୍କ ବାଛୁରୀ ସହିତ ଚରୁଥାନ୍ତି ଏବଂ ଯେତେବେଳେ ସନ୍ଧ୍ୟା ସମୟ ଉପସ୍ଥିତ ହୁଏ, ସେତେବେଳେ ସେମାନେ ପ୍ରାନ୍ତରରୁ ହମା ରାବ କରି ଗୃହକୁ ଫେରନ୍ତି ।

ସେତେବେଳେ ଦେଖାଯାଏ ଯେ, ଯୋଉ ଗାଈର ଯୋଉ ବାଛୁରୀ, ସେ ବାଛୁରୀଟି ସେହି ଗାଈ ପଛରେ ଚାଲିଥାଏ । ସେ ଆଉ କେଉଁ ଗାଈ ପାଖକୁ ବାଉଳାରେ ଯାଏ ନାହିଁ । ପ୍ରତି ବାଛୁରୀ ଓ ତା'ର ମାଆ ଗାଈ ପରସ୍ପରକୁ ଚିହ୍ନନ୍ତି ଏବଂ ବାଛୁରୀ ମାତ୍ରେ ଇ ତା'ର ମାଆକୁ ଠିକ୍ ଚିହ୍ନିପାରେ ଓ ତା'ରି ପଛରେ ଅନୁଧାବନ କରେ ।

ସେହିପରି ଏ ସଂସାରରେ ଆମେ ମଣିଷମାନେ ଯୋଉ ସବୁ କର୍ମ ଅକର୍ମ, ସତ୍‌କର୍ମ କରିଥାଉ, ସେହି କର୍ମଗୁଡ଼ିକ ଆମ ପିଛା ଧରିଥାନ୍ତି। ଆମକୁ ଛାଡ଼ି ସେ

ଆଉ କାହା ପାଖକୁ ଯା'ନ୍ତି ନାହିଁ । ମୋର କର୍ମ ଫଳ ମୁଁ ଭୋଗିବି ଓ ତୁମ କର୍ମ ଫଳ ତୁମେ ଭୋଗିବ । ମୁଁ ମନ୍ଦକର୍ମ କଲେ ତା'ର ମନ୍ଦଫଳ ମୋ ପିଛା ଧରିବ । ତୁମେ ସତ୍‌କର୍ମ କଲେ ସେ କର୍ମର ଫଳ ତୁମ ପିଛା ଧରିବ । ଆଉ କାହା ଜୀବନରେ ଫଳିବ ନାହିଁ ।

ଏହାହିଁ କର୍ମଫଳ । ଆମ ଧର୍ମଶାସ୍ତ୍ର ମଧ୍ୟ ସେଇ ଏକା କଥା କହନ୍ତି । ଏପରି ଆମର ପୂର୍ବଜନ୍ମରେ ଆମେ ଯଦି କିଛି ସତ୍‌କର୍ମ କରିଥିବା କି ଅସତ୍‌କର୍ମ କରିଥିବା, ତେବେ ତା'ର ସୁଫଳ ଓ କୁଫଳ ସବୁ ଆମକୁ ହିଁ ଏ ଜନ୍ମରେ ଭୋଗିବାକୁ ହେବ ।



## ୧୩୪. ସାଧୁ-ବଚନ କେବେ ଟଳେନା

**ଯୁଗାନ୍ତେ ପ୍ରଚଳତେମେରୁଃ କଳ୍ପାନ୍ତେ ସପ୍ତ ସାଗରାଃ ।**
**ସାଧବଃ ପ୍ରତିପନ୍ନାର୍ଥାନ୍ନ ନ ଚଳନ୍ତି କଦାଚନ ।। (୧୩/୧୯)**

ପରମ ନୀତିବାନ୍ ଚାଣକ୍ୟ ଉପରିଲିଖିତ ଶ୍ଳୋକଟିରେ ସାଧୁବ୍ୟକ୍ତିମାନଙ୍କର ବହୁ ସଦ୍‌ଗୁଣ ଭିତରୁ ଗୋଟିଏ ବଡ଼ ସଦ୍‌ଗୁଣର କଥା କହୁଛନ୍ତି । ଦୁଇଟି ଉଦାହରଣ ଦେଇ ସେ କହୁଛନ୍ତି ଯେ, ଗୋଟିଏ ଯୁଗ ଶେଷ ହେଲେ- ଆମ ପୃଥିବୀର ଉପର ତଳ ଦୁଇଟି ଯାକ ମେରୁପର୍ବତ ଟଳି ପଡ଼ନ୍ତି । ଚାରୋଟି ଯୁଗରେ ଗୋଟିଏ କଳ୍ପ ହୁଏ । ଏବଂ ଗୋଟିଏ କଳ୍ପର ଆୟୁଶେଷ ହେଲେ ଆମର ସାତୋଟି ଯାକ ସମୁଦ୍ର ମହାଶୂନ୍ୟକୁ ଉଛୁଳି ପଡ଼ନ୍ତି । ମାତ୍ର ସାଧୁଲୋକଙ୍କ ବାକ୍ୟ କେବେବି ଟଳେ ନାହିଁ । ଯେଉଁମାନେ ସତ୍‌ରେ ବଂଚନ୍ତି, ସତ୍ୟରକ୍ଷାକୁ ଆଦର୍ଶ ବୋଲି ଜୀବନରେ ଗ୍ରହଣ କରିଥାନ୍ତି ସେମାନେ ଯାହାକହିଥାନ୍ତି ତାହା ନିଶ୍ଚୟ ପାଳନ କରନ୍ତି । ଯେତେ ବାଧାବିଘ୍ନ ଆସିଲେ ବି, ଯେତେ ଦୁଃଖ କଷ୍ଟ ଆସିଲେ ବି, ସତ୍ ଲୋକମାନେ ଆପଣା ଦତ୍ତ ବାକ୍ୟକୁ ନିଶ୍ଚୟ ରକ୍ଷା କରିଥାନ୍ତି । ଏହା ଏକ ମହତ୍‌ଗୁଣ ।

"ରାମଚରିତ ମାନସ" ମହାକାବ୍ୟରେ ଗୋସ୍ୱାମୀ ତୁଳସୀ ଦାସ ଦଶରଥଙ୍କ ମୁଖରେ କହୁଛନ୍ତି -

ରଘୁକୁଳ ରୀତି ସଦା ଚଲି ଆଈ ।
ପ୍ରାଣ ଜାହୁଁ ୱରୁ ୱଚନୁ ନ ଜାଈ ।।

ଅର୍ଥାତ୍, ଦଶରଥ ତାଙ୍କର ରାଣୀ କୈକେୟୀଙ୍କୁ କହୁଛନ୍ତି, ରାଣୀ ! ମୁଁ ତୁମକୁ ଯେଉଁ ଦୁଇଟି ବର ଦେବି ବୋଲି କହିଥିଲି, ତାହା ବର୍ତ୍ତମାନ ମୋତେ ଯେତେ

କଷ୍ଟ ହେଲେ ବି ଦେବି । କାରଣ ଆମର ପବିତ୍ର ରଘୁବଂଶର ଏକ ମହତ୍ ରୀତି ବାରଂବାର ଚଳି ଆସିଛି । ତାହା ହେଲା, ଆମେ ଯେଉଁ ବାକ୍ୟ କହିଥିବୁ-ତାକୁ ଆମେ ନିଶ୍ଚୟ ରଖିବୁ । ଏପରିକି ସେଥିରେ ଆମର ମୃତ୍ୟୁ ହେଲେ ବି, ଆମେ ଭୟ କରିବୁ ନାହିଁ ।



## ୧୩୫. କିଏ ସଂସାର ମାୟାରୁ ମୁକ୍ତ ହେବ ?

**ଧର୍ମାଽଽଖ୍ୟାନେ ଶ୍ମଶାନେ ଚ୍ ରୋଗିଣାଂ ଯା ମତିର୍ଭବେତ୍ ।**
**ସା ସର୍ବଦୈବ ତିଷ୍ଠେଚ୍ଚେତ୍ କୋ ନ ମୁଚ୍ୟତେ ବନ୍ଧନାତ୍ ॥ (୧୪/୬)**

ଅର୍ଥାତ୍, ଧର୍ମକଥା ଶ୍ରବଣ ସମୟରେ ପ୍ରିୟ ଜନର ଶବଦାହ କରିବାକୁ ଶ୍ମଶାନରେ ଥିବାବେଳେ ଏବଂ ବହୁ କଷ୍ଟ ପାଉଥିବା ରୋଗୀଙ୍କ ସେବା କରିବାବେଳେ ବା ନିଜେ ରୋଗ ଭୋଗିଲା ବେଳେ, ମଣିଷଠାରେ ଯେଉଁ ସଂସାର ପ୍ରତି ବିରାଗଭାବ ଆସିଥାଏ, ସେହି ଚିନ୍ତା ବା ବୈରାଗ୍ୟ ଭାବ ଯଦି ମଣିଷ ମନରେ ସର୍ବଦା ରହୁଥାନ୍ତା, ତେବେ କିଏ ଭଲା ଏ ସଂସାର ବନ୍ଧନରୁ ମୁକ୍ତି ନ ପାଇପାରନ୍ତା ?

ସତ କଥା । ସଂସାରୀ ମାୟାସକ୍ତ ଲୋକମାନଙ୍କର ମତିଗତିକୁ ଭଲ ଭାବେ ପର୍ଯ୍ୟବେକ୍ଷଣ କରି ମହାମତି ଚାଣକ୍ୟ ଯାହା କହିଛନ୍ତି, ତାହା ଅତି ବାସ୍ତବ କଥା। ଅସଲ କଥା ହେଲା, ମଣିଷ ଏ ସଂସାର ମାୟାରେ ବୁଡ଼ି କରି ରହିଥାଏ । ଅବଶ୍ୟ ବେଳେବେଳେ ତା' ମନରେ ବୈରାଗ୍ୟ ଭାବ ଆସେ । ଯେତେବେଳେ ସେ ନିଜେ ଖୁବ୍ ଦୈହିକ ବା ମାନସିକ ପୀଡ଼ା ପାଏ; କିମ୍ବା ସେ ଯେତେବେଳେ ମୃତବ୍ୟକ୍ତିକୁ ଶ୍ମଶାନରେ ଦେଖେ; କିମ୍ବା ସେ ଯଦି କେବେ କୋଉଠି ଧର୍ମପ୍ରସଙ୍ଗ ଶ୍ରବଣ କରେ, ଭଗବାନ୍‌ଙ୍କ କଥା ଶୁଣେ, ସାମୟିକ ଭାବେ ତା'ର ମନେ ହୁଏ, ଏ ସଂସାର ତୁଚ୍ଛ, ଏ ଜୀବନ ନାନାଦି ଦୁଃଖରେ ପରିପୂର୍ଣ୍ଣ, ଏଠି ସବୁ ଅସ୍ଥାୟୀ, କେବଳ ଭଗବାନ୍ ହିଁ ସତ୍ୟ । ଏ ସଂସାରରୁ ମାୟାମୋହ ତ୍ୟାଗ କରି ବୈରାଗୀ ହୋଇଯିବା ଉଚିତ ଓ ଈଶ୍ୱରଙ୍କୁ ହିଁ ସର୍ବଦା ଭଜନ କରିବା ଉଚିତ ।

କିନ୍ତୁ ମଣିଷର ଦୁର୍ଭାଗ୍ୟ, ଯେତେବେଳେ ସେ ସମୟ କଟିଯାଏ, ସେତେବେଳେ ସେ ପୁଣି ଜୀବନକୁ ଭଲ ପାଏ ଓ ସଂସାର ପ୍ରତି ଆସକ୍ତ ହୋଇ ମୋହମାୟାରେ ଘାଣ୍ଟି ହୋଇ ଦୁଃଖ ପାଏ । କିନ୍ତୁ ଯେଉଁ ବ୍ୟକ୍ତି ଧର୍ମଶାସ୍ତ୍ର ଶ୍ରବଣ କରି ଓ ଏ ସଂସାରର ଦୁଃଖଶୋକ ଭୋଗି ଏ ସଂସାର ଓ ଜୀବନ ପ୍ରତି ଆସକ୍ତି ତ୍ୟାଗ କରେ, ସେ ହିଁ ଏଥିରୁ ମୁକ୍ତି ପାଏ ।



# ୧୩୬. କିଏ ପାଖରେ ? କିଏ ଦୂରରେ ?

**ଦୂରସ୍ଥୋଽପି ନ ଦୂରସ୍ଥୋ ଯୋ ଯସ୍ୟ ମନସି ସ୍ଥିତଃ ।**
**ଯୋ ଯସ୍ୟ ହୃଦୟେ ନାସ୍ତି ସମୀପସ୍ଥୋଽପି ଦୂରତଃ ॥ (୧୪/୯)**

ଏହି ଚମତ୍କାର ମନସ୍ତାତ୍ତ୍ୱିକ ଶ୍ଳୋକଟିରେ ମହାଜ୍ଞାନୀ ଚାଣକ୍ୟ କହୁଛନ୍ତି, ଯଦି ଜଣେ ପ୍ରିୟଲୋକ ତୁମ ମନ ଓ ହୃଦୟରେ ସର୍ବଦା ରହିଛନ୍ତି, ତେବେ ସେ ଯେତେ ଦୂରରେ ଥିଲେ ବି, ଦୂରରେ ନଥାନ୍ତି। କାରଣ, ତୁମେ ତ ତାଙ୍କୁ ସବୁବେଳେ ତୁମ ମନ ହୃଦୟରେ ଦେଖୁଛ ବା ଗଭୀର ଭାବେ ଅନୁଭବ କରୁଛ। କିନ୍ତୁ ଯଦି କେହି ଲୋକ ତୁମ ମନ କି ହୃଦୟରେ ନାହିଁ ତେବେ, ସେ ତୁମ ପାଖରେ ଥିଲେ ବି, ତା'ର ଉପସ୍ଥିତ ଅନୁଭବ କରିପାରିବ ନାହିଁ। ବରଂ ସେ ଖୁବ୍ ଦୂରରେ ଅଛି ବୋଲି ମନେ ହେବ।

ପାଠକେ ! ଏ ବିଷୟଟି ହେଲା ମନସ୍ତତ୍ତ୍ୱର ପ୍ରମାଣିତ ସତ୍ୟ ଏବଂ ଏହା ମଧ୍ୟ ପ୍ରେମ, ପ୍ରଣୟ, ସ୍ନେହ ଭକ୍ତିର ସତ୍ୟ । ଯେ ଯାହାକୁ ସ୍ନେହ କରେ କି ପ୍ରେମ କରେ- ସେ ତା'ର ସେଇ ପ୍ରେମାସ୍ପଦକୁ ତା'ର ମନ ଓ ହୃଦୟରେ ସର୍ବଦା ରଖିଥାଏ। ତା ବିଷୟ ସ୍ମରଣ ହେଲାମାତ୍ରେ ମନେହୁଏ ସତେକି ସେ ଅତି ପାଖରେ ଅଛି । କିନ୍ତୁ ଏହାର ବିପରୀତ ସତ୍ୟଟିହେଲା ଯଦି କୌଣସି ବ୍ୟକ୍ତି ତୁମର ମନରେ ନାହିଁ କି ହୃଦୟରେ ନାହିଁ, ଅର୍ଥାତ୍ ତୁମେ ଯଦି ତାକୁ ତୁମ ମନ ଓ ହୃଦୟରେ ଧାରଣ ନ କରିଛ, ତେବେ ସେ ତୁମ ପାଖରେ ବସିଥିଲେ କି ଶୋଇଥିଲେ ବି, ତୁମେ ତା'ର ଉପସ୍ଥିତି ଆଦୌ ଅନୁଭବ କରିପାରିବ ନାହିଁ ।

କାରଣ, ମଣିଷର ମନ ଓ ହୃଦୟଟି ହେଉଛି ତା' ପାଖରେ ସବୁଠାରୁ ତା' ସତ୍ତାର ବଡ଼ ଇନ୍ଦ୍ରିୟ । ଏହି ମନ ଓ ହୃଦୟର ଗଭୀରତା ଯୋଗୁଁ ମଣିଷ ଅନ୍ୟ ପ୍ରାଣୀଙ୍କଠାରୁ ବଡ଼ ବୋଲି ଦାବିକରିଥାଏ । ତେବେ ସବୁ ମଣିଷଙ୍କର ମନଟିଏ ଓ ହୃଦୟଟିଏ ଥିଲେ ବି, ସବୁ ମଣିଷଙ୍କର ମନର ମଣିଷମାନେ ନ ଥାନ୍ତି କି ହୃଦୟର ମଣିଷମାନେ ନ ଥାନ୍ତି । କାରଣ, ସବୁ ମଣିଷଙ୍କର ମନ ଓ ହୃଦୟ ବିକଶିତ ନୁହଁ କି ଗଭୀର ମଧ୍ୟ ନୁହଁ।



# ୧୩୭. କାହା ଜୀବନ ନିରର୍ଥକ ?

**ସ ଜୀବତି ଗୁଣା ଯସ୍ୟ ଯସ୍ୟ ଧର୍ମଃ ସ ଜୀବତି ।**
**ଗୁଣଧର୍ମବିହୀନସ୍ୟ ଜୀବିତଂ ନିଷ୍ପ୍ରୟୋଜନ ।। (୧୪/୧୩)**

ଏଇ ଶ୍ଳୋକଟିରେ ଜ୍ଞାନୀପ୍ରବର ଚାଣକ୍ୟ କହୁଛନ୍ତି, ଯେଉଁମାନେ ଯଥାର୍ଥରେ ଗୁଣବାନ୍ ବା ଧର୍ମାଚାରୀ ସେହିମାନଙ୍କ ଜୀବନ ଧନ୍ୟ ଓ ସେଇମାନଙ୍କ ବଂଚିବା ହେଲା ସାର୍ଥକ ।

ସତ କଥା । ଏ ପୃଥିବୀରେ ବହୁବିଧ ପ୍ରାଣୀ ଅଛନ୍ତି । ଛପନ କୋଟି ପ୍ରକାର ଜୀବଜନ୍ତୁ ବି ଅଛନ୍ତି । ମଣିଷ ସେମାନଙ୍କ ଭିତରେ ନିଜକୁ ବଡ଼ ବୋଲି ମନେକରେ । କିନ୍ତୁ ଇତର ପ୍ରାଣୀଙ୍କ ମଧ୍ୟରେ ମଣିଷ କାହିଁକି ବଡ଼ ? କାହିଁକି ଭଗବାନ୍ ମନୁଷ୍ୟକୁ ଏ ପୃଥିବୀର ବହୁଭାଗ ଭୋଗ କରିବାକୁ ଦେଇଛନ୍ତି ?

ତା'ର ଏକମାତ୍ର କାରଣ ହେଲା, କୋଟି କୋଟି ମଣିଷଙ୍କ ଭିତରେ କେତେ ଲୋକ ନାନା ଗୁଣରେ ଗୁଣୀ ଅଟନ୍ତି । କିଏ କବି, କିଏ ପୁଣି ଦାର୍ଶନିକ, କିଏ ବୈଜ୍ଞାନିକ, କିଏ ସଙ୍ଗୀତଜ୍ଞ, କିଏ ଅଭିନେତା-କିଏ ସଂଗଠକ, କିଏ ଶାସକ ବା ପ୍ରଶାସକ, କିଏ କ୍ରୀଡ଼ାବିତ୍, କିଏ ଉଦ୍‌ଭାବକ, କିଏ ପୁଣି ଶିଳ୍ପୀ, କିଏ ମଧ୍ୟ ପୃଥିବୀର ଧନବର୍ଦ୍ଧନରେ ସହାୟକ - ଏହି ଗୁଣୀ ଲୋକମାନଙ୍କ ଜୀବନ ସାର୍ଥକ । ଗୁଣହୀନ ଲୋକର ଜୀବନ ଇତର ପ୍ରାଣୀଙ୍କ ଜୀବନ ଭଳି ।

ଅନ୍ୟ ପକ୍ଷରେ ଯେଉଁ ବ୍ୟକ୍ତିମାନେ ଧାର୍ମିକ ଅର୍ଥାତ୍, ଯେଉଁ ମଣିଷମାନେ ଈଶ୍ୱର ଭକ୍ତ, ଦୟାଳୁ, ଦାନଶୀଳ, ପରଦୁଃଖକାତର, ସତ୍ୟଶୀଳ, ପରୋପକାରୀ, ନମ୍ର, ଭଦ୍ର, ପରଦୁଃଖକାତର, ସେବାପରାୟଣ, ସେହି ବ୍ୟକ୍ତିମାନଙ୍କ ଜୀବନ ଧନ୍ୟ ଓ ସେହିମାନଙ୍କର ବଂଚିବା ହେଲା ସାର୍ଥକ ।

ପାଠକେ ! ଚାଣକ୍ୟ ପଣ୍ଡିତେ ସତ କହି ନାହାନ୍ତି କି ? ଏ ପୃଥିବୀରେ କୋଟି କୋଟି ମଣିଷଙ୍କ ଜୀବନରେ କି ମୂଲ୍ୟ ଅଛି, ଯଦି ସେମାନଙ୍କଠାରେ କିଛି ସଦ୍‌ଗୁଣ ନାହିଁ ବା ଧର୍ମଭାବ, ଧର୍ମାଚାର ନାହିଁ ? ସେହି ଗୁଣହୀନ ଓ ଧର୍ମାଚାରହୀନ ମଣିଷମାନେ କେବଳ ପୃଥିବୀର ଭାରସଦୃଶ ଅଛନ୍ତି; ଏବଂ ଏ ପୃଥିବୀର ଅନ୍ନ ଧ୍ୱଂସ କରନ୍ତି । ମଣିଷକୁ ଈଶ୍ୱର କିଛି କିଛି ଗୁଣ ଦେଇଛନ୍ତି । ଉଣାଅଧିକେ ସମସ୍ତଙ୍କୁ କିଛି ଧର୍ମବୁଦ୍ଧି ବି ଦେଇଛନ୍ତି । କିନ୍ତୁ ମଣିଷ ଯଦି ଗୁଣପ୍ରକାଶ ନ କରେ ବା ଧର୍ମାଚାରୀ ନ ହୁଏ, ତେବେ ତା'ର ଜୀବନ ବୃଥା ନୁହେଁ କି ?



## ୧୩୮. କାହାକୁ ଲକ୍ଷ୍ମୀ ଛାଡ଼ନ୍ତି ?

କୁଚୈଲିନଂ ଦନ୍ତମଲୋପ ସୃଷ୍ଟଂ
ବହ୍ୱାଶିନଂ ନିଷ୍ଠୁରଭାଷିଣଂ ଚ ।
ସୂର୍ଯ୍ୟୋଦୟେ ଚାସ୍ତମିତେ ଶୟାନଂ
ବିମୁଞ୍ଚତି ଶ୍ରୀର୍ଯଦି ଚକ୍ରପାଣିଃ ॥

ଏହି ଶ୍ଳୋକଟିର ଅର୍ଥ ହେଲା, ଯେଉଁ ବ୍ୟକ୍ତି ସର୍ବଦା ମଳିନ ଓ ଛିନ୍ନବସ୍ତ୍ର ପିନ୍ଧୁଥାଏ, ପ୍ରତିଦିନ ଦାନ୍ତ ଘଷୁ ନ ଥିବାରୁ ପାଟିରେ ମଇଳା ଭର୍ତ୍ତିହୋଇଥାଏ (ଏବଂ ଦୁର୍ଗନ୍ଧ ବାହାରୁଥାଏ) ଆବଶ୍ୟକତାଠାରୁ ବେଶି ଭୋଜନ କରୁଥାଏ ଏବଂ ଅନ୍ୟ ସହିତ କଟୁଭାଷା ଓ ସ୍ୱରରେ କଥାବାର୍ତ୍ତା କରୁଥାଏ, ସୂର୍ଯ୍ୟୋଦୟବେଳେ ବା ସୂର୍ଯ୍ୟାସ୍ତ ସମୟରେ ନିଦ୍ରା ଯାଉଥାଏ, ସେ ଯଦି ସ୍ୱୟଂ ବିଷ୍ଣୁ ହୋଇ ଏ ପୃଥିବୀରେ ଅବତରି ଥାନ୍ତି -ତେବେ ତାକୁ ଲକ୍ଷ୍ମୀ ଛାଡ଼ିଯାନ୍ତି । ଏଭଳି ଲୋକ ଲକ୍ଷ୍ମୀଛଡ଼ା ହୋଇଯାଏ ।

ନାନା ବ୍ୟାବହାରିକ ଜ୍ଞାନର ଅଧିକାରୀ ଚାଣକ୍ୟ ମହାଶୟ ମଣିଷର ଦୈନନ୍ଦିନ ଜୀବନଯାପନର ଦୋଷଗୁଣ ଉପରେ ମଧ ତାଙ୍କର ଶୁଭ ବିଚାର ଓ ସିଦ୍ଧାନ୍ତ ରଖିଛନ୍ତି । ମଣିଷ ପାଇଁ ଆଳସ୍ୟ ମହାଶତ୍ରୁ । ଅଳସୁଆ ଲୋକର ଦେହ ରୁଗ୍ଣ ହୋଇଥାଏ । ତା'ର ମନ ମଧ ଦୁର୍ବଳ ହୋଇପଡ଼ିଥାଏ । ତା'ର ପ୍ରାଣଶକ୍ତି କମି କମି ଯାଉଥାଏ; ଏବଂ ସେ କିଛି କର୍ମ କରିପାରେ ନାହିଁ । କିଛି ଚିନ୍ତା କରିପାରେ ନାହିଁ । ସେ ମଧ କିଛି ଅନୁଭବ କରିପାରେନା ।

ଏଭଳି ବ୍ୟକ୍ତିପାଖରେ ଲକ୍ଷ୍ମୀ ବା ରହିବେ କିପରି ? ଲକ୍ଷ୍ମୀ ହେଉଛନ୍ତି ସୌନ୍ଦର୍ଯ୍ୟ, ପ୍ରେମ, ସଙ୍ଗତି ଓ ସାଫଲ୍ୟର ଦେବୀ । ଅଳସୁଆ, ଅପରିଛନ୍ନ, ନିଜ ଦୋଷରୁ ଦୈହିକ ଓ ମାନସିକ ରୋଗ ଭୋଗୁଥିବା ଲୋକଙ୍କୁ ଲକ୍ଷ୍ମୀ ତ ଛାଡ଼ି ଯାନ୍ତି । ସେ ମଧ ନିଜଆଡୁ ଲକ୍ଷ୍ମୀଙ୍କୁ ଛାଡ଼ିଦିଏ ।

ଏକଥା ମଧ ସତ ଯେ, ଯାହାକୁ ଲକ୍ଷ୍ମୀ ଛାଡ଼ିଯାନ୍ତି, ସେ ମଧ ଧର୍ମଛଡ଼ା ହୋଇଯାଏ ଓ ସମାଜରେ ତାକୁ କେହି ଭଲ ପା'ନ୍ତି ନାହିଁ ।



## ୧୩୯. କରୁଣା ହିଁ ଶ୍ରେଷ୍ଠ ଧର୍ମ

ଯସ୍ୟ ଚିତ୍ତଂ ଦ୍ରବୀଭୂତଂ କୃପୟା ସର୍ବଜନ୍ତୁଷୁ।
ତସ୍ୟ ଜ୍ଞାନେନ, ମୋକ୍ଷେଣ କିଂ ଜଟାଭସ୍ମଲେପନୈଃ ॥ (୧୫/୧)

ମହାମତି ଚାଣକ୍ୟ ଏହି ଶ୍ଳୋକଟିରେ କହୁଛନ୍ତି, ଶ୍ରେଷ୍ଠ ଧର୍ମ କାହାକୁ କହିବା ? ପ୍ରକୃତ ଯୋଗୀ କାହାକୁ କହିବା । ପ୍ରକୃତ ଧାର୍ମିକ ସେହି ଏବଂ ପ୍ରକୃତ ଯୋଗୀ ସେହି, ଯାହାର ହୃଦୟ ସବୁ ପ୍ରାଣୀଙ୍କ ଦୁଃଖରେ ତରଳିଯାଏ, ତା' ପାଇଁ ଆଉ କିଛି ଧର୍ମଶାସ୍ତ୍ର ପଢ଼ିବା ଆବଶ୍ୟକ ନାହିଁ । କାରଣ ସବୁ ଜ୍ଞାନର ଶେଷ ଉପଦେଶ ହେଲା, ଅନ୍ୟର ଦୁଃଖ ପ୍ରତି ସହାନୁଭୂତିଶୀଳ ହୁଅ । କେବଳ ମଣିଷ ନୁହଁ, ସାମାନ୍ୟ ଚଢ଼େଇଟିର ଦୁଃଖ ଓ ବିପଦରେ ବି ତା' ପ୍ରତି କରୁଣା ଦେଖାଅ ଓ ତା'ର ଦୁଃଖ ବିମୋଚନ କରିବା ପାଇଁ ଚେଷ୍ଟା କର । ଯାହାର ହୃଦୟ ସବୁପ୍ରାଣୀଙ୍କ ଦୁଃଖରେ ତରଳିଯାଏ, ସେ ମୁଣ୍ଡରେ ଜଟା ଧାରଣ କରିବା ଦରକାର ନାହିଁ । ତା'ର ମଧ ଦେହରେ ପାଉଁଶ ବୋଳି ହୋଇ ମୋକ୍ଷ ବା ମୁକ୍ତିପାଇଁ ବ୍ୟାକୁଳ ହେବା ଦରକାର ନାହିଁ ।

କାରଣ, ଦୟାଳୁ ବ୍ୟକ୍ତି, ଅନ୍ୟ ଦୁଃଖରେ କାତର ବ୍ୟକ୍ତି ଛାଏଁ ଛାଏଁ ମୁକ୍ତି ପାଇଥାଏ । ସବୁ ଜ୍ଞାନର ସାରକଥାଟି ତାକୁ ଜଣାଥାଏ ଏବଂ ସେ ସହଜରେ ଈଶ୍ୱରଙ୍କ ଅନୁଭୂତି ପାଇଥାଏ ।

ମୋଟ କଥା ହେଲା, ମଣିଷ ପାଇଁ "କରୁଣାଭାବ" ହିଁ ସବୁଠାରୁ ବଡ଼ ଆଧ୍ୟାତ୍ମିକ ଭାବ। "କରୁଣା" ଯେ ମଣିଷ ପାଇଁ ଶ୍ରେଷ୍ଠ ଧର୍ମ ସେ କଥା ପରମକାରୁଣିକ ଭଗବାନ୍ ବୁଦ୍ଧ, ପରମକାରୁଣିକ ଈଶ୍ୱରପୁତ୍ର ଯିଶୁଖ୍ରୀଷ୍ଟ ଓ ମହାବୀର ଜୈନ ଓ ପରମବୈଷ୍ଣବ ଏବଂ ଦିବ୍ୟପ୍ରେମ ଓ ଆନନ୍ଦର ଅବତାର ଶ୍ରୀଚୈତନ୍ୟ ମଧ କହିଛନ୍ତି।



## ୧୪୦. କାହାକୁ ଚାଣ୍ଡାଳ କହିବା ?

ଦୂରାଗତଂ ପଥି ଶ୍ରାନ୍ତଂ ବୃଥା ଚ ଗୃହମାଗତମ୍।
ଅନର୍ଚ୍ଚୟିତ୍ୱା ଯୋ ଭୁଂକ୍ତେ ସ ବୈ ଚାଣ୍ଡାଳ ଉଚ୍ୟତେ ॥ (୧୫/୧୧)

ଏହି ଶ୍ଳୋକରେ ଆଚାର-ନୀତି-ପ୍ରାଜ୍ଞ ଚାଣକ୍ୟ ମହାଶୟ ଗୃହସ୍ଥର ଧର୍ମ ବା କର୍ତ୍ତବ୍ୟ ସଂପର୍କରେ ବିହିତ ମତ ବ୍ୟକ୍ତ କରୁଛନ୍ତି । ସେ କହୁଛନ୍ତି, ଯଦି ବହୁଦୂରରୁ

ଆସିଥିବା ଜଣେ ଶ୍ରାନ୍ତକ୍ଳାନ୍ତ ପଥିକ ତୁମ ଘରେ ଆଶ୍ରୟ ନେବାକୁ ଅନୁରୋଧ କରନ୍ତି କିମ୍ବା ଜଣେ ବିନା କାରଣରେ, ଅର୍ଥାତ୍ ସେ ତୁମର ବନ୍ଧୁବାନ୍ଧବ ନୁହନ୍ତି, କିମ୍ବା ସେ ମଧ ତୁମଠାରୁ କିଛି ବଡ଼ ସାହାଯ୍ୟ ମାଗୁ ନାହାନ୍ତି, ସେ କେବଳ ତୁମ ଘରେ ଆଶ୍ରୟ ନେଇ ତୁମ ଦ୍ୱାରା ଚର୍ଚ୍ଚିତ ହେବାକୁ ଚାହାନ୍ତି, ସେମାନଙ୍କୁ ଯଦି ବିହିତ ଅର୍ଚ୍ଚନା ନ କରି, ଅର୍ଥାତ୍ ତାକୁ ଯଦି କିଛି ଖାଦ୍ୟପେୟ ନ ଦେଇ, ବିଶ୍ରାମ ପାଇଁ କିଛି ସୁବିଧା ନ ଦେଇ ତୁମେ ସପରିବାର ସେ ଆଡକୁ ଆଦୌ ଦୃଷ୍ଟି ନ ଦେଇ ତୁମେ ତୁମର ପେଟପୂରା ଖାଇ ପିଇ ଖଟ ଉପରେ ଆରାମରେ ଶୋଇଗଲ ତେବେ ତୁମକୁ ଇ ଚାଣ୍ଡାଳ କୁହାଯିବ । କାରଣ, ତୁମ ମନରେ ଶ୍ରାନ୍ତକ୍ଳାନ୍ତ ଅଭୁକ୍ତ ଅତିଥିଟି ପ୍ରତି ଶ୍ରଦ୍ଧା ନାହିଁ, ସହାନୁଭୂତି ନାହିଁ, କି ସେମାନଙ୍କ ପ୍ରତି ବିହିତ କର୍ତ୍ତବ୍ୟ ଜ୍ଞାନ ତୁମର ନାହିଁ ।

ସତ କଥା। ଆମ ସନାତନ ଧର୍ମରେ ଅତିଥିଙ୍କୁ ଦେବତା ବା ଭଗବାନ୍ ରୂପେ ପୂଜା କରିବାକୁ ଓ ଅର୍ଚ୍ଚନା କରିବାକୁ ନିର୍ଦ୍ଦେଶ ଦିଆଯାଇଛି । ଆମ ଧର୍ମଶାସ୍ତ୍ରରେ କୁହାଯାଇଛି ଯେ ଯେଉଁମାନେ ଅତିଥିଙ୍କର ଉପଯୁକ୍ତ ସତ୍କାର କରନ୍ତି ନାହିଁ; କିଂବା ସେମାନଙ୍କ ପ୍ରତି ସମ୍ବେଦନଶୀଳ ହୁଅନ୍ତି ନାହିଁ, ସେମାନେ ମନୁଷ୍ୟ ପଦବାଚ୍ୟ ନୁହନ୍ତି । ସେମାନେ ହୃଦୟହୀନ ଇତର ପ୍ରାଣୀତୁଲ୍ୟ ଜୀବନ ଇ ବଂଚୁଥାନ୍ତି । ତେଣୁ ଅତିଥି ସେବା ଆମର ମହାନ୍ ଧର୍ମ ।



## ୧୪୧. ଶାସ୍ତ୍ରଜ୍ଞାନ ଏବଂ ଆତ୍ମଜ୍ଞାନ

ପଠନ୍ତି ଚତୁରୋ ବେଦାନ୍ ଧର୍ମଶାସ୍ତ୍ରାଣ୍ୟନେକଶଃ ।
ଆତ୍ମାନଂ ନୈବ ଜାନନ୍ତି ଦର୍ବୀ ପାକରସଂ ଯଥା ।। (୧୫/୧୨)

ପାଠକେ ! ବହୁ ଶାସ୍ତ୍ରଦର୍ଶୀ, ଆତ୍ମଜ୍ଞାନୀ ଓ ନୀତି-ନିପୁଣ ଚାଣକ୍ୟ ଏହି ଶ୍ଳୋକରେ କହୁଛନ୍ତି, ଆମ ସମାଜରେ କେତେ ଲୋକ ଅଛନ୍ତି, ଯେଉଁମାନେ ଆମର ଚାରିବେଦ ଅଧ୍ୟୟନ କରିଛନ୍ତି; ଏବଂ ବହୁ ଧର୍ମଶାସ୍ତ୍ର ମଧ ଅଧ୍ୟୟନକରି ମୁଖସ୍ଥ କରିଛନ୍ତି । ସଭାସମିତିରେ ମଧ ସେ ଧର୍ମ ଓ ଈଶ୍ୱରଙ୍କ ସମ୍ବନ୍ଧେ ଅନର୍ଗଳ ଚମତ୍କାର ବକ୍ତୃତା ଦେଇ ଶ୍ରୋତାମାନଙ୍କୁ ମୁଗ୍ଧ କରିଦେଇ ସମସ୍ତଙ୍କର ପ୍ରଶଂସାଭାଜନ ହୋଇଥାନ୍ତି ।

ମାତ୍ର ଚାଣକ୍ୟ କହୁଛନ୍ତି, ଏଥିରୁ କିଛି ଆଧାତ୍ମିକ ସିଦ୍ଧି ମିଳେ ନାହିଁ। ଯଦି ଜଣେ ନିଜର ଅନ୍ତରାତ୍ମାକୁ ଚିହ୍ନିନାହିଁ; ବା ବିଶ୍ୱାତ୍ମାଙ୍କୁ ଅନୁଭବ କରିନାହିଁ; ବା ପରମାତ୍ମାଙ୍କୁ

ଉପଲବ୍ଧି କରି ନାହିଁ; ତେବେ ଆମେ ତାକୁ ତରକାରି ହାଣ୍ଡିରେ ଡଙ୍କା ବା କର୍‌ଚୁଲୀ ସଂଗେ ସମାନ ବୋଲି ଭାବିବା। କାରଣ, ଗୋଟିଏ ଡଙ୍କା ବା କର୍‌ଚୁଲୀ ଖୁବ୍ ସ୍ୱାଦିଷ୍ଟ ତରକାରି ହାଣ୍ଡିରେ ପଡ଼ିଥାଏ। ମାତ୍ର ସେ କ'ଣ ସେଇ ତରକାରିର ସ୍ୱାଦ ଗ୍ରହଣ କରିପାରେ ?

ସେହିପରି ଜଣେ ବେଦବେଦାଙ୍ଗ ପଢ଼ି ମୁଖସ୍ଥ କରିଥାଉ, କିନ୍ତୁ ଧର୍ମ ଶାସ୍ତ୍ର ପଢ଼ି ମନେରଖିଥାଉ ବା ପ୍ରବଚନ ଦେଉଥାଉ, ସେ ଗୋଟିଏ ଡଙ୍କା ବା କର୍‌ଚୁଲୀ ସଦୃଶ। ସେଥିପାଇଁ ଆଧ୍ୟାତ୍ମିକ ଗୁରୁମାନେ ବାରଂବାର କହନ୍ତି, ଆଗ ନିଜକୁ ଦେଖ, ନିଜର ମନକୁ ବିଶ୍ଳେଷଣ କର, ନିଜ ହୃଦୟକୁ ବୁଝ, ନିଜର ଶରୀରର କ୍ରିୟାପ୍ରକ୍ରିୟାକୁ ବୁଝ, ଶେଷରେ ତୁମ ଅନ୍ତରର ଗୁହା-ଭିତରେ ଦୀପ୍ତିମାନ୍ ଅନ୍ତରାତ୍ମାଙ୍କୁ ପ୍ରତ୍ୟକ୍ଷ କର। ନିଜ ଅନ୍ତରାତ୍ମାଙ୍କୁ ଜାଣିଲା ପରେ ତୁମେ ବୁଝିପାରିବ ଯେ, ତୁମର ଅନ୍ତରାତ୍ମାର ଏକ ବ୍ୟାପ୍ତରୂପ ହେଲେ ବିଶ୍ୱାତ୍ମା, ଏବଂ କୋଟି କୋଟି ବିଶ୍ୱବ୍ରହ୍ମାଣ୍ଡର ଅଧୀଶ୍ୱର ବି ସେଇ ପରମାତ୍ମା।



## ୧୪୨. ପ୍ରେମର ବନ୍ଧନ ଅଛିଣ୍ଡା

**ବନ୍ଧନାନି ଖଲୁ ସନ୍ତି ବହୂନି ପ୍ରେମରଜ୍ଜୁଦୃଢବନ୍ଧନମନ୍ୟତ୍।**
**ଦାରୁଭେଦନିପୁଣୋଽପି ଷଡଂଘ୍ରିନିଷ୍କ୍ରିୟୋ ଭବତି ପଙ୍କଜକୋଶେ ॥ (୧୫/୧୭)**

ଏ ଶ୍ଳୋକଟିରେ ମହାଜ୍ଞାନବନ୍ତ ଚାଣକ୍ୟ ଗୋଟିଏ ଚମତ୍କାର ଜୀବନ-ଦର୍ଶନ-ତତ୍ତ୍ୱ ଉଦ୍‌ଘାଟନ କରିଛନ୍ତି । ସେ କହୁଛନ୍ତି, ଏ ସଂସାର ଗୋଟିଏ ବନ୍ଧନର କ୍ଷେତ୍ର । ଏଠି ଆମେ ନାନାଦି ବନ୍ଧନରେ ପଡ଼ି ସେଥିରୁ ମୁକ୍ତି ପାଇଁ ଛଟପଟ ହେଉଥାଉ । କେହି କେହି ବନ୍ଧନକୁ କାଟି ଦେଇ ମୁକ୍ତ ହେବାକୁ ନାନାଦି କଷ୍ଟ ପାଉଥାନ୍ତି । ଆଉ କେତେକ ଅଛନ୍ତି, ଯେଉଁମାନେ "ଚାରିଦଉଡ଼ି କଟା" ରୂପେ ଖ୍ୟାତି ଅର୍ଜିଥାନ୍ତି । ଚାରିଦଉଡ଼ିରେ ବନ୍ଧା ହେବା ଲୋକଙ୍କର ବେକରେ ଦଉଡ଼ି ବନ୍ଧା ହୋଇଥାଏ, ଦୁଇହାତରେ ଦଉଡ଼ି ବନ୍ଧା ହୋଇଥାଏ-ଅଣ୍ଟାରେ ଦଉଡ଼ି ବନ୍ଧା ହୋଇଥାଏ । ଏବଂବିଧ ଚାରିଦଉଡ଼ିକୁ କାଟି ମୁକ୍ତହେବା ସହଜ କଥା ନୁହେଁ । କିନ୍ତୁ ଏଥିରୁ ମୁକ୍ତି ପାଇଥାନ୍ତି ଦୃଢ଼ମନା ବ୍ୟକ୍ତିମାନେ । ଧନର ବନ୍ଧନ, ଯଶକୀର୍ତ୍ତିର ବନ୍ଧନ, କ୍ଷମତାର ବନ୍ଧନ, ନିଜର ବଡ଼ପଣିଆର ବନ୍ଧନ, ଏଇ ସବୁ ବନ୍ଧନରେ ପଡ଼ି କେତେକ ସଂସାରୀ ମଣିଷ ଛଟପଟ ହୋଇଥାନ୍ତି ।

କିନ୍ତୁ ଏଇ ସବୁ ବନ୍ଧନ ଭିତରେ "ପ୍ରେମର ବନ୍ଧନ" ସବୁଠାରୁ କଠିଣ ବନ୍ଧନ । ସବୁ ସାଂସାରିକ ବନ୍ଧନ ଛିଣ୍ଡାଇ ଦେଇ ହୁଏ। କିନ୍ତୁ ପ୍ରେମର ବନ୍ଧନ ଛିଣ୍ଡାଇବା ସହଜ ନୁହେଁ । କେହି ମଧ୍ୟ ପ୍ରେମର ବନ୍ଧନ ଛିଣ୍ଡାଇବାକୁ ଚାହାନ୍ତି ନାହିଁ ।

ଚାଣକ୍ୟ ଗୋଟିଏ ସୁନ୍ଦର ଉଦାହରଣ ଦେଇ କହୁଛନ୍ତି, ଭ୍ରମର ଗୋଟିଏ ପୋକ । ସେ କଠିଣ କାଠକୁ କାଟି ତା' ଭିତରେ ଗୋଟିଏ ଗାତ କରି ତହିଁରେ ବାସ କରେ । ମାତ୍ର ସେଇ ଭ୍ରମର ଯେତେବେଳେ ପଦ୍ମଫୁଲରୁ ମହୁ ଶୋଷିବା ପାଇଁ ତା'ଭିତରେ ପଶେ, ସେତେବେଳେ ପଦ୍ମଫୁଲ ଛାଏଁ ଛାଏଁ ବୁଜି ହୋଇଯାଏ; ଏବଂ ଭ୍ରମର ମହୁ ଖାଇବାରେ ଏତେ ମଗ୍ନଥାଏ ଯେ, ସେ ପଦ୍ମର ବନ୍ଧନକୁ କାଟି ସେଥିରୁ ବାହାରି ପାରେନା ।

ଭାଗବତ ପୁରାଣରେ ଅଛି, ଗୋପାଳୁଣୀ ମାତା ଯଶୋଦାଙ୍କ ପ୍ରେମରଜ୍ଜୁରେ ଶ୍ରୀକୃଷ୍ଣ ନିଜଇଚ୍ଛାରେ ବନ୍ଦୀହୋଇ ରହିଥିଲେ । ମା ଯଶୋଦା ଦିନେ ତାଙ୍କ ଦୁଷ୍ଟାମିରେ ବିରକ୍ତ ହୋଇ ଶ୍ରୀକୃଷ୍ଣକୁ ଗୋଟିଏ ଦଉଡ଼ିରେ ବାନ୍ଧିରଖିଲେ । ମାତ୍ର ଶ୍ରୀକୃଷ୍ଣ ଭଗବାନ୍ ହେଲେ ବି, ଯଶୋଦାଙ୍କର ସେ ଦଉଡ଼ିକୁ କାଟିଲେ ନାହିଁ ।



## ୧୪୩. ନତ୍ୟଜତି ଶୀଳଗୁଣାନ୍ କୁଳୀନଃ ...

ଛିନ୍ନୋଽପି ଚନ୍ଦନତରୁର୍ନଜହାତି ଗନ୍ଧଂ
ବୃଦ୍ଧୋଽପି ବାରଣପତିର୍ନଜହାତି ଲୀଳାମ୍ ।
ଯନ୍ତ୍ରାର୍ପିତୋ ମଧୁରତାଂ ନ ଜହାତି ଚେକ୍ଷୁଃ
କ୍ଷୀଣୋଽପି ନତ୍ୟଜତି ଶୀଳଗୁଣାନ୍ କୁଳୀନଃ ।। (୧୫/୧୮)

ଏହି ଶ୍ଳୋକଟିରେ ବହୁଦର୍ଶୀ ପଣ୍ଡିତ ଚାଣକ୍ୟ ଗୋଟିଏ ସୁନ୍ଦର ତଥ୍ୟ ଆମକୁ ଶୁଣାଇଛନ୍ତି । ସେ କହୁଛନ୍ତି, ଚନ୍ଦନଗଛକୁ କାଟି ତା'ର କାଠକୁ ଯେତେ ଘୋରୁଥାଅ ବା ଯେତେ ଚୂନା କରୁଥାଅ, ସେ ତା'ର ସ୍ୱାଭାବିକ ସୁଗନ୍ଧ ଛାଡ଼ି ଦିଏ କି ? ଯୂଥପତି ବୃଦ୍ଧହସ୍ତୀ ଯେତେ ବୁଢ଼ାହେଲେ ବି ତା'ର ସ୍ୱାଭାବିକ ଗଜ-ଲୀଳା ନକରି ରହିପାରେକି ? ଆଖୁକଳରେ ଆଖୁକାଣ୍ଡକୁ ଯେତେ ପେଡ଼ିଲେବି ଆଖୁ ତା'ର ସ୍ୱାଭାବିକ ମଧୁରତା ହରାଏ ନାହିଁ । ସେହିପରି କୁଳୀନ ବା ସମ୍ଭ୍ରାନ୍ତ ବା ଅଭିଜାତ କୁଳରେ ଜନ୍ମ ହୋଇଥିବା ଲୋକମାନେ ଯେତେ ଦରିଦ୍ର ହୋଇଗଲେ ବି ନିଜର ବଂଶଗତ କୁଳୀନତା ବା

ସଂଭ୍ରାନ୍ତପଣ ହରାନ୍ତି ନାହିଁ । ଏଠାରେ କୁଳୀନ ଶବ୍ଦର ଅର୍ଥ ଧନୀ ନୁହଁ । ଏହା ମହତ ଗୁଣ ବା ମର୍ଯ୍ୟାଦାବାଚକ ଶବ୍ଦ ।

ଯେଉଁ ବଂଶର ପୁରୁଷ ପୁରୁଷ ଧରି କେହି ଛୋଟଲୋକୀ କରି ନାହାନ୍ତି, କେହି ଆତ୍ମମର୍ଯ୍ୟାଦା ହରାଇ ନାହାନ୍ତି, କାହାର ନୈତିକ ବା ଧାର୍ମିକ ଅଧଃପତନ ହୋଇ ନାହିଁ ସେମାନଙ୍କର ସେହି ଅଭିଜାତ ବଂଶ ହୁଏତ କାଳଚକ୍ରରେ ପଡ଼ି ଦିନେ ଖୁବ୍ ଦରିଦ୍ର ହୋଇଯାଇପାରନ୍ତି । ମାତ୍ର ଯେତେ ଦରିଦ୍ର ହେଲେ ବି, ସେମାନେ କେବେ ଛୋଟଲୋକୀ କରିବେ ନାହିଁ। ନୀଚ ଆଚରଣ କରିବେ ନାହିଁ । ଧର୍ମବିରୁଦ୍ଧ କି ନୀତି-ବିରୁଦ୍ଧ କର୍ମ କରିବେ ନାହିଁ । କ୍ଷୁଧାରେ ନିଜ ପେଟ ପୋଡ଼ିଯାଉଥିଲେ ବି, ସେମାନେ ଅନ୍ୟ ଠାରୁ ଛଡ଼ାଇ ଖାଇଦେବେ ନାହିଁ । ଶ୍ରୀରାମଚରିତମାନସ ମହାକାବ୍ୟରେ ଗୋସ୍ୱାମୀ ତୁଳସୀ ଦାସ ରଘୁବଂଶୀୟ ରାଜା ଦଶରଥଙ୍କ ମୁଖରେ କୁହାଇଛନ୍ତି- "ରଘୁବଂଶ ରୀତି ସଦା ଚଲିଆଇ-ପ୍ରାଣ ଯାଇ ବରୁ ବଚନ ନ ଯାଇ" ଅର୍ଥାତ୍ ମହାକୁଳୀନ ମହାଯଶା ରଘୁବଂଶରେ ଏଇ ରୀତି ସର୍ବଦା ଚଳି ଆସିଛି, ପ୍ରାଣ ଯାଉ ପଛେ-କେହି ସତ୍ୟକୁ ଲଂଘିବେ ନାହିଁ।"



## ୧୪୪. ତଥାପି ... ଦୃଷ୍ଟା ରଘୁନନ୍ଦନସ୍ୟ ...

**ନ ନିର୍ମିତଃ କେନ ନ ଦୃଷ୍ଟପୂର୍ବଃ**
**ନ ଶ୍ରୂୟତେ ହେମମୟଃ କୁରଙ୍ଗଃ।**
**ତଥାପି ଦୃଷ୍ଟା ରଘୁନନ୍ଦନସ୍ୟ**
**ବିନାଶ କାଳେ ବିପରୀତ ବୁଦ୍ଧି ॥** (୧୬/୫)

ଏହି ବିଖ୍ୟାତ ଶ୍ଳୋକଟିରେ ମହାଜ୍ଞାନୀ ଚାଣକ୍ୟ ମନୁଷ୍ୟ-ଜୀବନର ଏକ ବିଡ଼ମ୍ବନାମୟ ମାନସିକତା ସମ୍ବନ୍ଧେ କହୁଛନ୍ତି । ରାମାୟଣ ମହାକାବ୍ୟରେ ଅଛି- ମାରୀଚ ନାମକ ମାୟାବୀ ରାକ୍ଷସ ଦୁରାଚାରୀ ରାବଣ ଦ୍ୱାରା ପ୍ରରୋଚିତ ହୋଇ ନିଜକୁ ଏକ ସୁନାମୃଗରୂପେ ସଜାଇ ପତ୍ର କୁଡ଼ିଆରେ ଥିବା ଲକ୍ଷ୍ମଣ, ରାମ ଓ ସୀତାଙ୍କ ଆଗରେ ଡେଇଁଲା । ସେହି ମାୟାସୁବର୍ଣ୍ଣ ମୃଗକୁ ଦେଖି ସୀତାଙ୍କର ତାକୁ ପାଇବାର ଲୋଭ ହେଲା । ସେ ତାଙ୍କ ଅନୁରକ୍ତ ପତି ରାମକୁ ସେଇ ସ୍ୱର୍ଣ୍ଣମୃଗଟିକୁ ମାରି ତା'ର ସୁନ୍ଦର ସ୍ୱର୍ଣ୍ଣିମ ଚମଡ଼ାଟି ତାଙ୍କୁ ଦେବାକୁ କହିଲେ । କହିଲା ମାତ୍ରେ ପତ୍ନୀଅନୁରକ୍ତ

ରାମ ଧନୁଶର ଧରି ତାକୁ ଗୋଡ଼ାଇଲେ । ଲକ୍ଷ୍ମଣ ବାରଂବାର ସାବଧାନ କରି କହୁଥାନ୍ତି "ଭାଇ ! ଏ ମୃଗ ସତରେ ସୁନାମୃଗ ନୁହଁ, ଏ ଗୋଟାଏ ଅସୁର, ମାୟାରେ ହରିଣ ହୋଇ ଆମକୁ ପ୍ରତାରିତ କରୁଛି । ଏହା ସଙ୍ଗେ ତୁମେ ଦୂରକୁ ଗଲେ -ସେ ସେଠାରେ ତୁମକୁ ବଧ କରିପାରେ ।"

ଅନୁଗତ ଭାଇ ଲକ୍ଷ୍ମଣଙ୍କର ଏ ସାବଧାନ ବାଣୀ ଶୁଣି, ରାମ କହିଲେ- "ଲକ୍ଷ୍ମଣ ! ଏ ମୃଗ ହେଉ ବା ରାକ୍ଷସ ହେଉ, ମୋ ହାତରେ ନିଶ୍ଚୟ ମରିବ । ତୁମେ ଭୟ କରନା ।"

... ପାଠକେ ! ଏହା ପରର ଘଟଣା ଆପଣମାନେ ଜାଣନ୍ତି । ରାମ ମାରୀଚକୁ ବଧ କଲେ ଓ ସେଇ ମୃତ ହରିଣ ସତକୁ ସତ ପୁଣି ମାରୀଚ ରାକ୍ଷସର ମୁର୍ଦ୍ଧାର ହୋଇଗଲା । ମାତ୍ର ରାମକୁ ରକ୍ଷା କରିବାକୁ ଲକ୍ଷ୍ମଣ ମଧ ଭାଇ ପାଖକୁ ଦଉଡ଼ି ଆସିଥିଲେ । ସୀତା ଏକାକୀ ଥିଲେ ପତ୍ରକୁଡ଼ିଆଟି ଭିତରେ । ଏହି ଅବସରରେ କିଂଚିତ୍ ଦୂରରେ ଅପେକ୍ଷା କରିଥିବା ଦୁରାଚାରୀ ରାବଣ କୁଡ଼ିଆ ଭିତରେ ସୀତାଙ୍କୁ ଏକାକୀ ଦେଖି ତାଙ୍କୁ ଅପହରଣ କରିନେଲା । ହାୟ ! ହାୟ ! କାହିଁକି ଏ ଦୁର୍ଘଟଣା ଘଟିଲା ? ରାମ ସ୍ୱୟଂ ଅବତାର ପୁରୁଷ ହୋଇ ମଧ ଏହି ମାୟା ସ୍ୱର୍ଣ୍ଣମୃଗକୁ ସତ ବୋଲି ଭାବି କିପରି ତାକୁ ମାରିବାକୁ ଧାଇଁଲେ ? ପୁଣି ଲକ୍ଷ୍ମଣଙ୍କର ସାବଧାନ ବାଣୀକୁ ଉପେକ୍ଷା କରି ?

ଏହି ଘଟଣାର କାରଣ ବୁଝାଇବାକୁ ଯାଇ ମହାମତି ଚାଣକ୍ୟ କହୁଛନ୍ତି, ଯେତେବେଳେ ବିନାଶକାଳ ଉପସ୍ଥିତ ହୁଏ, ସେତେବେଳେ ରାମଙ୍କପରି ଧୀମାନ୍ ମଣିଷଙ୍କର ବି ବୁଦ୍ଧିଭ୍ରମ ହୁଏ । ସେମାନେ ସତ୍ୟ, ବାସ୍ତବ ଓ ଛଳନା ବା ମାୟା ଭିତରେ ଫରକ ବୁଝିପାରନ୍ତି ନାହିଁ । ଏକଥା ଅବଶ୍ୟ ସତ । ମାତ୍ର ରାମଙ୍କ ସଂପର୍କରେ ଆଉ ଗୋଟିଏ କଥା ଚିନ୍ତା କରାଯାଇପାରେ । ଦୀର୍ଘ ବନବାସ କାଳରେ ଜନକ ରାଜାଙ୍କ କନ୍ୟା ଓ ରାଜା ଦଶରଥଙ୍କ ବୋହୂ ଓ ତାଙ୍କର ପ୍ରାଣାଧିକା ପତ୍ନୀ ତାଙ୍କୁ ତାଙ୍କର ଅସହାୟ ଅବସ୍ଥାରେ କିଛି ମାଗି ନ ଥିଲେ । ଆଜି ଏଇ ସାମାନ୍ୟ ଅନୁରୋଧଟିକୁ ତାଙ୍କ ଭଳି ପ୍ରେମିକ ପତି ଉପେକ୍ଷା କରିଥାନ୍ତେ ବା କିପରି ? ତେବେ ଚାଣକ୍ୟଙ୍କ କଥା ବି ସତ । ବିନାଶ କାଳେ ବିପରୀତ ବୁଦ୍ଧି । ରାମ ସ୍ୱୟଂ ପୁରୁଷୋତ୍ତମ ହୋଇଥିବାରୁ ସିନା ତାଙ୍କର ବିନାଶ ହେଲାନାହିଁ, କିନ୍ତୁ କିଛି ସମୟପାଇଁ ଭ୍ରଷ୍ଟ ହୋଇଯାଇଥିଲେ ।



# ୧୪୫. କାକଃ କିଂ ଗରୁଡ଼ାୟତେ ?

**ଗୁଣୈରୁତ୍ତମତାଂ ଯାନ୍ତି ନୋଚ୍ଚୈରାସନସଂସ୍ଥିତାଃ ।**
**ପ୍ରାସାଦ ଶିଖରସ୍ଥୋଽପି କାକଃ କିଂ ଗରୁଡ଼ାୟତେ ॥ (୧୬।୬)**

ଏହି ଶ୍ଳୋକଟିରେ ମହାମତି ଚାଣକ୍ୟ ମନୁଷ୍ୟର ଉଚ୍ଚାସନ ଅପେକ୍ଷା ତା'ର ସଦ୍‌ଗୁଣଗୁଡ଼ିକ ଉପରେ ଅଧିକ ମୂଲ୍ୟ ଦେଇଛନ୍ତି । ଆମ ସମାଜରେ ଭାଗ୍ୟବଶରୁ ବା ଯେ କୌଣସି କାରଣରୁ ଜଣେ ଉଚ୍ଚାସନରେ ଅଧିରୂଢ଼ ହୋଇଯାଏ । ସେ ଜଣେ ଏମ୍.ଏଲ୍.ଏ. ହୋଇପାରେ, ବା ଜଣେ ମଂତ୍ରୀ ହୋଇ ଯାଇପାରେ; ବା ଜଣେ କ୍ଷମତାଶାଳୀ ପ୍ରଶାସକର ଆସନରେ ବସିଯାଇଥାଇପାରେ । ଉଚ୍ଚାସନରେ ବସିବା ଭାଗ୍ୟର ଅବଦାନ ହୋଇପାରେ ବା କିଛି ପରିଶ୍ରମ କରି ସେ ଉଚ୍ଚାସନର ଅଧିକାରୀ ହୋଇପାରେ । ତେବେ ସେ ବ୍ୟକ୍ତି କେବଳ ଉଚ୍ଚାସନର ଅଧିକାରୀ ହୋଇଛି ବୋଲି ଅନ୍ୟମାନଙ୍କ ଦ୍ୱାରା ସମ୍ମାନିତ ହୁଏ ନାହିଁ; ବା ଆଦରଣୀୟ ହୁଏ ନାହିଁ ।

ଜଣେ ଉଚ୍ଚାସନରେ ଆସୀନ ହେଉ ବା ନିମ୍ନସ୍ତରୀୟ ଆସନରେ ଅଧିରୂଢ଼ ହେଉ, ସେ ଯଦି ସଦ୍‌ଗୁଣର ଅଧିକାରୀ ହୋଇଥାଏ, ତେବେ ଲୋକେ ତାକୁ ହୃଦୟରୁ ମାନ୍ୟତା ପ୍ରଦର୍ଶନ କରନ୍ତି ଓ ଭଲ ମଧ ପାଆନ୍ତି । ଜଣେ ଉଚ୍ଚାସନରେ ବସିଥିବା ଅଫିସର ଯଦି ତା'ର କ୍ଷମତା ପ୍ରୟୋଗ କରି ଅନୀତି ଆଚରଣ କରୁଥାଏ, ଜଣେ ଉଚ୍ଚପଦସ୍ଥ ବ୍ୟକ୍ତି ଯଦି ଅତି ନୀଚକର୍ମ କରୁଥାଏ, ଦୁରାଚାରୀ ହୋଇଥାଏ, ତେବେ ଲୋକେ ତାକୁ ସମ୍ମାନ ଦେଖାନ୍ତି ନାହିଁ, ବରଂ ତାକୁ ଘୃଣା କରନ୍ତି ।

ଚାଣକ୍ୟ ଗୋଟିଏ ଉପମା ଦେଇ ତାଙ୍କ କଥାକୁ ସମର୍ଥନ କରୁଛନ୍ତି । ମଳ ଓ ଅନ୍ୟପ୍ରକାର କୁତ୍ସିତ ଖାଦ୍ୟ ଖାଉଥିବା ଓ କର୍କଶ ରାବ କରୁଥିବା ଗୋଟାଏ କୁଆ ଯଦି ପାଞ୍ଚମହଲା କୋଠାର ଛାତ ଉପରେ ବସିଥାଏ, ଆମେ ତାକୁ ଗରୁଡ ବୋଲି ମାନ୍ୟ କରିବା ? ଆଦୌ ନୁହଁ ଗରୁଡ ଯଦିଓ ଗୋଟିଏ ପକ୍ଷୀ, ମାତ୍ର ତା'ର ସଦ୍‌ଗୁଣ ଓ ସଦାଚାର ଦେଖି ଭଗବାନ୍ ବିଷ୍ଣୁ ତାକୁ ନିଜର ବାହନପଦରେ ନିଯୁକ୍ତ କରିଛନ୍ତି । ସେଥିପାଇଁ ଈଶ୍ୱର ଭକ୍ତମାନେ ଗରୁଡ଼ଙ୍କୁ ମଧ ପ୍ରଣତି ଜଣାଇଥାନ୍ତି । ଏବଂ ତାଙ୍କ ମାଧମରେ ନିଜର ଦୁଃଖକଥା ଭଗବାନ୍‌ଙ୍କୁ ଜଣାଇଥାନ୍ତି । ଗରୁଡ କେବଳ ପକ୍ଷୀଜଗତର ଶ୍ରେଷ୍ଠାସନରେ ବସି ନାହାନ୍ତି; ସେ ମଧ ଭଗବାନ୍ ବିଷ୍ଣୁଙ୍କ ସହିତ ବୈକୁଣ୍ଠସ୍ଥ ଏକ ସମୁଚ୍ଚ ସ୍ତମ୍ଭ ଉପରେ ବିଷ୍ଣୁଙ୍କ ଆଜ୍ଞାକୁ ଅପେକ୍ଷା କରି ଧ୍ୟାନସ୍ଥ ହୋଇ ବସି ରହିଥାନ୍ତି ।



## ୧୪୬. ସାରକଥା ଗ୍ରହଣ କର

**ଅନନ୍ତଶାସ୍ତ୍ରଂ ବହୁଳାଶ୍ଚ ବିଦ୍ୟା**
**ଅଳ୍ପଶ୍ଚକାଲୋ ବହୁବିଘ୍ନିତା ଚ।**
**ଯଦ୍‌ସାରଭୂତଂ ତଦୁପାସନୀୟମ୍‌**
**ହଂସୋ ଯଥା କ୍ଷୀରମିବାମ୍ବୁମଧ୍ୟାତ୍‌ ।।** (୧୫/୧୦)

ଏହି ଶ୍ଳୋକଟିରେ ମହାପ୍ରାଜ୍ଞ ଚାଣକ୍ୟ ଖୁବ୍‌ ସାର କଥାଟିଏ କହୁଛନ୍ତି। କଥାଟି ହେଲା, ଏ ଜଗତରେ ଓ ଜୀବନରେ ଜ୍ଞାନର ସୀମା ନାହିଁ- ଗ୍ରନ୍ଥ ମଧ୍ୟ ଅସୀମ। ଏ ପୃଥିବୀରେ ସବୁ ବିଷୟରେ ଜ୍ଞାନୀ ବିଜ୍ଞାନୀମାନେ କମ୍‌ ଗ୍ରନ୍ଥ ଲେଖିଛନ୍ତି ? କିନ୍ତୁ ଆମେ କ'ଣ ସବୁ ଜ୍ଞାନ ଏ ଜୀବନକାଳଭିତରେ ଅର୍ଜନ କରିପାରିବା ? ସବୁ ପ୍ରକାର ଗ୍ରନ୍ଥ ପଢ଼ିପାରିବା ?

ଏ ଜୀବନକୁ ସବୁ ଆଡୁ ସମୃଦ୍ଧ କରିବାକୁ ହେଲେ ବହୁ କର୍ମ କରିବାକୁ ହେବ। ବହୁବିଧ କର୍ମଧାରା ଭିତରେ ପ୍ରବେଶ କରିବାକୁ ହେବ। କିନ୍ତୁ ଆମେ କ'ଣ ଆମର ଏଇ ସୀମିତ ଜୀବନକାଳ ଭିତରେ ସବୁ କର୍ମ କରିପାରିବା ? ନା କେହି ତାହା କରିପାରିଛି ?

ଜୀବନରେ ବହୁତ ବାଧାବିଘ୍ନ ମଧ୍ୟ ଭୋଗିବାକୁ ପଡ଼େ। ଯେତେ ପରିଶ୍ରମ କଲେ ବି, ଯେତେ ଉପାୟ କଲେ ବି, ଆମେ ଆମର ଲକ୍ଷସିଦ୍ଧ କରିପାରୁ ନାହିଁ। ତେଣୁ ଆମେ କିପରି ଆମର ଜୀବନକୁ ସବୁଆଡୁ ସାର୍ଥକ କରିପାରିବା ?

ଚାଣକ୍ୟ ପଣ୍ଡିତେ କହୁଛନ୍ତି, ଦୁଧ ଓ ପାଣି ଏକାଠି ମିଶାଇ ଗୋଟିଏ ପାତ୍ରରେ ହଂସ ପାଖେ ଥୋଇଦିଅ । ଦେଖିବ, ଅଳ୍ପକ୍ଷଣ ଭିତରେ ହଂସଟି ପାତ୍ରରୁ ଦୁଧତକ ଖାଇଦେଇଛି । କେବଳ ପାତ୍ରରେ ପାଣିତକ ଅଛି ।

ସେହିପରି ବୁଦ୍ଧିମାନ୍‌ ଲୋକ ଏ ଜୀବନରେ ସବୁ କଥା ଭିତରୁ ସାର କଥାଟି ବାଛିନେବ ଏବଂ ସମସ୍ତ ଶକ୍ତି ଓ ଏକାଗ୍ରତା ଦେଇ ସେଇ କଥାଟିକୁ ହାସଲ କରିବା ପାଇଁ ଖୁବ୍‌ ଅଧ୍ୟବସାୟ କରିବ। ତା' ହେଲେ ଯାଇ ତା'ର ଜୀବନ ସାର୍ଥକ ହେବ ।



# ୧୪୭. ପାପଧନ କେତେବର୍ଷ ରହେ ?

**ଅନ୍ୟାୟୋପାର୍ଜିତଂ ଦ୍ରବ୍ୟଂ ଦଶବର୍ଷାଣି ତିଷ୍ଠତି ।**
**ପ୍ରାପ୍ତେ ଚୈକାଦଶେ ବର୍ଷେ ସମୂଳଂ ତଦ୍ ବିନଶ୍ୟତି ॥ (୧୫/୬)**

ମହାନୀତିଜ୍ଞ ଚାଣକ୍ୟ ଏହି ଶ୍ଳୋକରେ "ଧନ" ଉପରେ ମନ୍ତବ୍ୟ ଦେଇ କହୁଛନ୍ତି ବା ଭବିଷ୍ୟବାଣୀ କରୁଛନ୍ତି, ଯେଉଁ ଧନ ଅନ୍ୟାୟ ଭାବରେ ଅର୍ଜନ କରାଯାଇଥିବ, ମାନେ ତୁମ ପରିଶ୍ରମର ଝାଳବୁହା ଧନ ନୁହଁ, ନ୍ୟାୟୋଚିତ କର୍ମ କରି ନ୍ୟାୟୋଚିତ ପାରିଶ୍ରମିକ ହୋଇ ନ ଥିବ, ସେ ଧନର ପରିମାଣ ଯେତେ ବେଶି ହେଲେ ବି, ଦଶବର୍ଷ ଭିତରେ ଶେଷ ହୋଇଯିବ । ହୁଏତ ଚୋରି, ଡକାଏତୀ, ରାହାଜାନୀରେ ସେ ଧନ ଲୁଟ୍‌ପାଟ ହୋଇଯିବ; କିମ୍ବା ପାପର ଫଳସ୍ୱରୂପ କୌଣସି ଅସାଧ ରୋଗର ଚିକିତ୍ସାରେ ସେ ଅର୍ଥ ବ୍ୟୟ ହୋଇଯିବ; କିମ୍ବା ପରିବାରର ଉନ୍ମାର୍ଗଗାମୀ ପିଲାମାନେ ତାକୁ ବଦଖର୍ଚ୍ଚ କରି ଉଡ଼ାଇଦେବେ । ଏହି ଭାବେ ଦଶବର୍ଷରେ ତୁମର ଅନ୍ୟାୟ-ଉପାର୍ଜିତ ପାପଧନତକ କୁଆଡ଼େ ଉଡ଼ିଯିବ ।

ଏବଂ ଚାଣକ୍ୟ ପୁଣି କହୁଛନ୍ତି, ଦଶବର୍ଷ ଭିତରେ ପାପ-ଧନ ନିଶ୍ଚୟ କୁଆଡ଼େ ଉଡ଼ିଯିବ । କିନ୍ତୁ ତଥାପି, ଯଦି କିଛି ଧନ ସେଥିରୁ ରହିଗଲା, ତେବେ ଆଉ ବର୍ଷକ ପରେ, ମାନେ ଏଗାର ବର୍ଷ ବେଳକୁ ସେ ଧନତକ ସମୂଳେ ଉଡ଼ିଯିବ । ତା' ମାନେ ଆଉ ଗୋଟିଏ ପଇସା ବି ବାକ୍ସରେ ନ ଥିବ, ବ୍ୟାଙ୍କ୍ ଜମାରେ ବି ଉଡ଼ିଯାଇଥିବ ।

ତେଣୁ ହେ ଉପାର୍ଜନକାରୀମାନେ ! କେବେ ହେଲେ ଅନ୍ୟାୟରେ ଧନ ଉପାର୍ଜନ କର ନାହିଁ। ସରକାରୀ କର୍ମଚାରୀ ହୋଇଥିଲେ ଲାଞ୍ଚ ମିଛରେ ଧନ ରୋଜଗାର କରନା । ସରକାରୀ ତହବିଲକୁ ନିଜ ସ୍ୱାର୍ଥରେ ଖର୍ଚ୍ଚ କରନା । ବେପାରୀ ହୋଇଥିଲେ, ଲାଭ-ଲୋଭରେ ଓଜନରେ ଠକ ନାହିଁ । ଅପମିଶ୍ରଣ କରି ଦ୍ରବ୍ୟ ବିକ୍ରୟ କର ନାହିଁ । ଚୋରି, ଡକାଏତୀ, ରାହାଜାନି କରି ଧନ ଅର୍ଜନ କର ନାହିଁ । ସର୍ବସାଧାରଣଙ୍କ ଧନକୁ ଲୋଭ କରି ନିଜ ସ୍ୱାର୍ଥରେ ଲଗାଅ ନାହିଁ ।

କାରଣ ଧନର ଦେବୀ ମହାଲକ୍ଷ୍ମୀ ଓ ଦେବତା ଶ୍ରୀଗଣନାଥ, ଅନ୍ୟାୟ କର୍ମ କରି ଧନ ଉପାର୍ଜନକୁ ସହ୍ୟ କରନ୍ତି ନାହିଁ ।



## ୧୪୮. ଦୁର୍ଜନଙ୍କର ସର୍ବାଙ୍ଗରେ ବିଷ ...

**ତକ୍ଷକସ୍ୟ ବିଷଂ ଦନ୍ତେ ମକ୍ଷିକାୟାସ୍ତୁ ମସ୍ତକେ ।**
**ବୃଷ୍ଚିକସ୍ୟ ବିଷଂ ପୁଚ୍ଛେ ସର୍ବାଙ୍ଗେ ଦୁର୍ଜନେ ବିଷମ୍ ॥ (୧୭/୮)**

ଏ ଶ୍ଳୋକରେ ଚାଣକ୍ୟ କହୁଛନ୍ତି, ତକ୍ଷକପ୍ରଭୃତି ସର୍ପମାନଙ୍କର ବିଷ ତାଙ୍କ ପାଟିର ଗୋଟିଏମାତ୍ର ଦାନ୍ତ ଭିତରେ ଥାଏ । ସେଇ ଦାନ୍ତରେ ଆଘାତ କଲେ ପ୍ରାଣୀମାନେ ତା'ର ବିଷଜ୍ୱାଳାରେ ମରିଯାନ୍ତି । ଭ୍ରମର, ମଶକ, ଡାଆଂସ ଓ ମହୁମାଛି ବିରୁଡ଼ି ପ୍ରଭୃତି ବିଷାକ୍ତ କୀଟମାନଙ୍କ ବିଷ ଥାଏ ସେମାନଙ୍କ ମସ୍ତକରେ ବା ସେମାନଙ୍କ ନାହୁଡ଼ରେ । ବିଛାଙ୍କ ବିଷ ଥାଏ ତାଙ୍କ ଲାଞ୍ଜରେ ।

କିନ୍ତୁ ଦୁର୍ଜନ ବା ଦୁଷ୍ଟ ମଣିଷମାନଙ୍କର ବିଷ ଥାଏ ତା'ର ସର୍ବାଙ୍ଗରେ ଓ ତା'ର ସର୍ବ ଆଚରଣ ବ୍ୟବହାରରେ । ଦୁର୍ଜନ ତା'ର ପାଟିରୁ ବାକ୍ୟବାଣ ମାରି ତୁମକୁ କଷ୍ଟ ଦେଇପାରେ । ତା'ର ହାତରେ ଅସ୍ତ୍ର ଧରି ତୁମକୁ ଆଘାତ କରିପାରେ । ସେ ତା'ର ଗୋଡ଼ରେ ଗୋଇଠା ମାରି ତୁମକୁ ପୀଡ଼ା ଦେଇପାରେ । ସେ ତା'ର ଦୁଇ ଆଖିରେ ତୁମକୁ ରାଗରେ କଟମଟ କରି ଚାହିଁ ତୁମକୁ ଭୟାର୍ତ୍ତ କରିପାରେ । ସେ ତା'ର ମସ୍ତକରୁ ନାନାଦି କୁବୁଦ୍ଧିର ଫାନ୍ଦ ମେଲାଇ ତୁମକୁ ନାନାବିଧ କଷ୍ଟ ଦେଇପାରେ ।

ମୋଟ ଉପରେ ଦୁଷ୍ଟ ଲୋକର ସାରା ଶରୀରରେ ବିଷ ଥାଏ । ଏପରିକି ତା'ର ମସ୍ତିଷ୍କସ୍ଥ ବୁଦ୍ଧି ମଧ୍ୟ ବିଷାକ୍ତ ପ୍ରତିକ୍ରିୟା ବା କ୍ରିୟା ସୃଷ୍ଟି କରିଥାଏ । ଦୁର୍ଜନ ଶବ୍ଦର ଅର୍ଥ ହେଉଛି- ଯେଉଁ ଲୋକ ଅନ୍ୟକୁ ପୀଡ଼ା ଦେଇ, ଯନ୍ତ୍ରଣା ଦେଇ, କଷ୍ଟ ଦେଇ ଖୁସୀ ହେଉଥାଏ । ଇଂରାଜୀରେ ଏଭଳି ଲୋକକୁ Sadist (ସାଡିଷ୍ଟ) କୁହାଯାଏ । ଏଭଳି ଲୋକଙ୍କ ପ୍ରକୃତି ଅସୁର, ରାକ୍ଷସ ବା ପିଶାଚର ବୋଲି ବୁଝିବାକୁ ହେବ ।



## ୧୪୯. ...ଜ୍ଞାନେନ ହୀନାଃ ପଶୁଭିଃ ସମାନାଃ

ଆହାର-ନିଦ୍ରା-ଭୟ-ମୈଥୁନଂଚ
ସମାନି ଚୈତାନି ନୃଣାଂ ପଶୂନାମ୍ ।
ଜ୍ଞାନଂ ନରାଣାମଧିକୋ ବିଶେଷୋ
ଜ୍ଞାନେନ ହୀନାଃ ପଶୁଭିଃ ସମାନାଃ ॥ (୧୬/୧୭)

ଏହି ଶ୍ଳୋକଟିରେ ମହାଜ୍ଞାନବନ୍ତ ପଣ୍ଡିତ ଶିରୋମଣି ଚାଣକ୍ୟ କହୁଛନ୍ତି, ଇତର ପ୍ରାଣୀ ଓ ମନୁଷ୍ୟ ଭିତରେ ପ୍ରଭେଦ କ'ଣ ? ଭୋକ ହେଲେ ଖାଇବା, ନିଦ ମାଡ଼ିଲେ ଶୋଇବା, ଆକ୍ରମଣକାରୀ ବା ପ୍ରାଣଘାତୀ କାହାକୁ ଦେଖିଲେ ଭୟ କରିବା ଏବଂ ଯଥା ବୟସରେ ଯୌନ-ପ୍ରବେଗ ଅନୁଭବ କରି ଯୌନମିଳନ ପ୍ରତି ପ୍ରବଳ ଆଗ୍ରହ ଜାତ ହେବା ଇତ୍ୟାଦି କେତୋଟି ପ୍ରବୃତ୍ତିରେ ମଣିଷ ଓ ପଶୁ ସମାନ । ପ୍ରକୃତି ମାତା ଦୁହିଁଙ୍କୁ ଏ ପ୍ରବୃତ୍ତି ନେଇଛନ୍ତି ।

ମାତ୍ର ଜୀବର କ୍ରମବିକାଶରେ ମନୁଷ୍ୟ ତା' ହେଲେ କୋଉ ଗୁଣରେ ଇତର ପ୍ରାଣୀଙ୍କଠାରୁ ପୃଥକ୍ ବା ବଡ଼ ବୋଲି ଦାବି କରିଥାଏ ? ସେଇଟି ହେଲା, ମଣିଷର ସଦ୍‌ବୁଦ୍ଧି ଓ ସତ୍‌ଜ୍ଞାନର ବିକାଶ । ମଣିଷର ମନବୁଦ୍ଧି ସୃଜନଶୀଳତାରେ ଅଧିକ । ସେ ଜ୍ଞାନବିଜ୍ଞାନରେ ବହୁତ ଅଗ୍ରଗତି କରି ପ୍ରକୃତିର ସୀମାକୁ ଅତିକ୍ରମ କରିଛି ।

ମନୁଷ୍ୟ ତା'ର ଏକ ଉଚ୍ଚ ଆଦର୍ଶ ପାଇଁ ନିଜକୁ ଓ ନିଜର ସବୁକିଛିକୁ ତ୍ୟାଗ କରିପାରେ । ମନୁଷ୍ୟ ଏ ବିଶ୍ୱର ସ୍ରଷ୍ଟା ଭଗବାନ୍‌ଙ୍କୁ ଜାଣିବା ପାଇଁ ଓ ତାଙ୍କୁ ଉପଲବ୍ଧି କରିବା ପାଇଁ କଠିଣ ତପସ୍ୟା କରିପାରେ । ମନୁଷ୍ୟ ଭିତରେ ଦୟା, ମାୟା, କରୁଣା, ତ୍ୟାଗ, ସେବା, ଅହିଂସା ଓ ସତ୍ୟ ପ୍ରତି ନିଷ୍ଠା ରହିଥାଏ । ଯୋଉ ମଣିଷର ପ୍ରକୃତିରେ ଅଳ୍ପେ ବହୁତେ ଏଇ ସବୁ ଜ୍ଞାନ ଓ ସଦ୍‌ଗୁଣ ନ ଥାଏ, ସେ ମଣିଷ ପଶୁ ସଂଗେ ସମାନ । ମଣିଷର ଆକୃତିରେ ତା'ର ପଶୁର ପ୍ରକୃତି ଥାଏ ।



## ୧୫୦. ... କିମୁ ଯତ୍ର ଚତୁଷ୍ଟୟମ୍ ?

ଯୌବନଂ ଧନସଂପତ୍ତିଃ ପ୍ରଭୁତ୍ୱଂ ଅବିବେକିତା ।
ଏକୈକମପ୍ୟନର୍ଥାୟ କିମୁ ଯତ୍ର ଚତୁଷ୍ଟୟମ୍ ।। (୧୭/୨୨)

ଉପରିଲିଖିତ ଶ୍ଳୋକରେ ମହାମତି ଚାଣକ୍ୟ କହୁଛନ୍ତି-

ମଣିଷ ପାଇଁ ଧନସଂପତ୍ତିର ଅଧିକାରୀ ହେବା କିମ୍ୱା ଯୌବନାବସ୍ଥାରେ ଉପନୀତ ହେବା କିମ୍ବା ବହୁବିଧ ପ୍ରଭୁତ୍ୱ ବା କ୍ଷମତାର ଅଧିକାରୀ ହେବା ଏବଂ ତା'ର ବିବେକଶକ୍ତି ଲୋପ ପାଇଁ ସେ ଅବିବେକୀର ଜୀବନ ବିତାଉଥିବା ବଡ଼ ଅନର୍ଥର କାରଣ ଅଟେ । ଅବଶ୍ୟ ଉତ୍କଟ ଦାରିଦ୍ର୍ୟ ନ ଭୋଗି ଜଣେ କିଛିମାତ୍ରାରେ ଧନଐଶ୍ୱର୍ଯ୍ୟର ଅଧିକାରୀ

ହେବା ଉଚିତ । ମଣିଷ ଜୀବନରେ ତା'ର ଚାରି ଅବସ୍ଥା ଭିତରେ ଯୌବନାବସ୍ଥା ଭଲ । କାରଣ ସେ ଏହି ଅବସ୍ଥାରେ ଅନେକ କାର୍ଯ୍ୟ କରିବାକୁ ସମର୍ଥ ହୁଏ

ଜଣକ ହାତରେ କିଛି କ୍ଷମତା ଥିଲେ ସେ ନିଜର ଓ ଅନ୍ୟର କିଛି ଭଲ କଥା କରିପାରେ। କିନ୍ତୁ ଦୁର୍ଭାଗ୍ୟର କଥା ହେଲା, ମଣିଷ ଯଦି ଅବିବେକୀ ହୁଏ ତେବେ ତା'ର ଧନସଂପଦ, ତାର'ପ୍ରଭୁତ୍ୱ, ତା'ର ଯୌବନ, ଏସବୁ ତା'ର ଅନର୍ଥର କାରଣ ହୋଇଯାଏ। ଅବିବେକିତା ଫଳରେ ମଣିଷ ଯୌବନରେ ପ୍ରମତ୍ତ ହୋଇ, ଧନସଂପଦରେ ପ୍ରମତ୍ତ ହୋଇ, ପ୍ରଭୁତ୍ୱରେ ମଧ୍ୟ ପ୍ରମତ୍ତ ହୋଇ ନାନାଦି ପାପ ପ୍ରମାଦ କରିବସେ।

ଶେଷରେ ଚାଣକ୍ୟ କହୁଛନ୍ତି, ଯୌବନ, ଧନ, ପ୍ରଭୁତ୍ୱ ସଙ୍ଗେ ଅବିବେକିତା ଥିଲେ ଏଇ ଚାରୋଟି ଗୁଣ ମଣିଷର ଜୀବନକୁ ନଷ୍ଟଭ୍ରଷ୍ଟ କରିଦିଏ । କେତେଦୂର ନଷ୍ଟଭ୍ରଷ୍ଟ କରେ, ସେକଥା ଆଗରୁ କହିହେବ ନାହିଁ ।





## ମହାପାତ୍ର ନୀଳମଣି ସାହୁ

ଓଡ଼ିଶାର ବର୍ଷୀୟାନ ସାହିତ୍ୟିକ, କଥାଶିଳ୍ପୀ, ଦାର୍ଶନିକ, ସମାଜ ସଂସ୍କାରକ, ଗ୍ରନ୍ଥକାର ମହାପାତ୍ର ନୀଳମଣି ସାହୁ ବର୍ତ୍ତମାନର ସମାଜ ସ୍ଥିତି, ଆଚାର ବ୍ୟବହାର, ଲୋକମାନଙ୍କ ଆଚରଣର ଘୋର ପତନ ହେଉଥିବା ଦେଖି 'ଏକ ବଚନ ବହୁ ପ୍ରବଚନ', 'ପଲ୍ଲୀ-ପ୍ରଜ୍ଞା', 'ନଗର-ପ୍ରଜ୍ଞା', ଆଦି ସାରଗର୍ଭକ ଲେଖା ରଚନା କରିବାରେ ଲାଗିଛନ୍ତି ଏବଂ ଓଡ଼ିଆ ସମ୍ବାଦପତ୍ର ମାନଙ୍କରେ ତାହା ଧାରାବାହିକ ପ୍ରକାଶିତ ହୋଇ ବିଶେଷ ଲୋକପ୍ରିୟ ହେବାରେ ଲାଗିଛି । ଆଧ୍ୟାତ୍ମବାଦୀ ସାଧକ ବହୁ ପ୍ରାଚୀନ ନୀତି-ପରମ୍ପରାକୁ ଅନୁଧ୍ୟାନ କରି ମଣିଷପଣିଆ ଗୁଣ ଆହରଣକରି ସମାଜ ଓ ଜନମାନସ ସୁଧାରିବାର ଆଶା ରଖି ଏବେ ରଚନା କରିଛନ୍ତି 'ଚାଣକ୍ୟ-ନୀତି ରତ୍ନମାଳା' ପୁସ୍ତକ । ଶୁଭଦର୍ଶୀ କଥାଶିଳ୍ପିଙ୍କ ଏହି ପୁସ୍ତକ ସର୍ବଜନାଦୃତ ହେବ ଏବଂ ପାଠକଙ୍କୁ ସୁସଂସ୍କୃତ କରିବ - ଏହା ନିଃସନ୍ଦେହ ।

ପ୍ରକାଶକ